ସଂସ୍କୃତ

# ଶ୍ରୀମଦ୍ ଭାଗବତ

(ଓଡ଼ିଆ ଅନୁବାଦ)

ପ୍ରଥମ ଖଣ୍ଡ - ପ୍ରଥମରୁ ଚତୁର୍ଥ ସ୍କନ୍ଧ

ଅନୁବାଦକ

**ପଣ୍ଡିତ ଧନେଶ୍ୱର ଦାଶ**

ଅବସର ପ୍ରାପ୍ତ ବରିଷ୍ଠ ଶିକ୍ଷକ

ଭଗବତୀ ବିଦ୍ୟାପୀଠ

ଶୁକ୍ଲେଶ୍ୱର, ମାହାଙ୍ଗା, କଟକ

ପ୍ରକାଶକ

**କୌସ୍ତୁଭ ଦାଶ**

ଏ/୩୨୨, ଶହୀଦ ନଗର, ଭୁବନେଶ୍ୱର

ସଂସ୍କୃତ

**ଶ୍ରୀମଦ୍ ଭାଗବତ**

*(ଓଡ଼ିଆ ଅନୁବାଦ)*

ପ୍ରଥମ ଖଣ୍ଡ - ପ୍ରଥମରୁ ଚତୁର୍ଥ ସ୍କନ୍ଧ

ଅନୁବାଦକ :
**ପଣ୍ଡିତ ଧନେଶ୍ୱର ଦାଶ**
ପୃଥିବୀ, ଏ/୩୨୨, ଶହୀଦ ନଗର
ଭୁବନେଶ୍ୱର-୭୫୧୦୦୭



ପ୍ରକାଶକ :
**କୌସ୍ତୁଭ ଦାଶ**

ମୁଦ୍ରଣ :
ମା' ତାରିଣୀ କମ୍ୟୁନିକେସନ
୩୯୯, ଶହୀଦ ନଗର, ଭୁବନେଶ୍ୱର

ପ୍ରଥମ ସଂସ୍କରଣ
ନୂଆଖାଇ, ୩୦.୦୮.୨୦୧୪

ମୂଲ୍ୟ : ଦୁଇଶହ ଟଙ୍କା ମାତ୍ର

*Sanskrit*

***Srimad Bhagabat***

*(Odia Translation)*

*Part-1 : First to Fourth Skandha*

*Translator :*
***Pt. Dhaneswar Das***
*Pruthibi, A/322, Saheed Nagar*
*Bhubaneswar-751007*



*Publisher :*
***Kaustuv Das***

*Printed :*
*Maa Tarini Communication*
*399, Saheed Nagar, Bhubaneswar*

*First Edition :*
*Nuakhai, 30.08.2014*

*Price : Two hundred rupees only*

# ଉତ୍ସର୍ଗ

ମୋ ପରିବାରର ଆରାଧ୍ୟ ଦେବତା ପରମପ୍ରିୟ
ଶ୍ରୀ ଶ୍ରୀ ଦାମୋଦର ଜୀଉଙ୍କର
ପଦାରବିନ୍ଦରେ
ଏହି ପୁସ୍ତକ ଅର୍ପଣ କରି ତାଙ୍କର
ଆଶିଷ କାମନା କରୁଛି ।

*ସଭକ୍ତି ପ୍ରଣାମ ସହ*
*ଧନେଶ୍ୱର*

*ଏଥି ସହିତ ମୋ ଦୁଃଖ ସୁଖରେ ସହଭାଗୀ ହୋଇ ମୋ ଜୀବନକୁ*
*ସାର୍ଥକ କରିଥିବା ମୋର ସହଧର୍ମିଣୀ ଶ୍ରୀମତୀ କନକଲତା ଦେବୀଙ୍କ ନିମନ୍ତେ*
*ଏହା ମୋର ସଶ୍ରଦ୍ଧା ଉପହାର ।*



ଇଷ୍ଟ ଦେବତା ଶ୍ରୀ ଶ୍ରୀ ଦାମୋଦର ଜୀଉ



ସହଧର୍ମିଣୀ ଶ୍ରୀମତୀ କନକଲତା ଦେବୀଙ୍କ ସହିତ ପଣ୍ଡିତ ଧନେଶ୍ୱର ଦାଶ

# ମୁଖବନ୍ଧ

ଓଡ଼ିଶାର ସୁନାମଧନ୍ୟ ସଂସ୍କୃତ ବିଦ୍ୱାନ, ବର୍ଷୀୟାନ ପଣ୍ଡିତ ଧନେଶ୍ୱର ଦାଶଙ୍କ ଦ୍ୱାରା ସଂସ୍କୃତ ଭାଗବତ ଗ୍ରନ୍ଥର ଓଡ଼ିଆ ଅନୁବାଦ ପାଠ କରି ଅତ୍ୟନ୍ତ ଆନନ୍ଦିତ ହେଲି । ସଂସ୍କୃତରେ ଭାଗବତ ଶାସ୍ତ୍ର ଆମ ଭାରତୀୟ ଜନ ଜୀବନକୁ ହଜାର ହଜାର ବର୍ଷ ଧରି ଉଦ୍‌ବୁଦ୍ଧ କରି ଆସିଛି, ଭଗବତ୍ ତତ୍ତ୍ୱ, ସାଧନ-ସରଣୀ, ଆଧ୍ମ୍-ଭବନା, ଆଦି ଦୈବିକ ବିଚାରରେ ଏକ ସମନ୍ୱିତ ସ୍ରୋତସ୍ୱିନୀ ହେଉଛି ସଂସ୍କୃତ ଭାଗବତ ଗ୍ରନ୍ଥ ।

ମହର୍ଷି ବ୍ୟାସଙ୍କ ରଚିତ ଭାଗବତର ଅନୁବାଦ ଓଡ଼ିଆ ଭାଷାରେ ଏହାପୂର୍ବରୁ କରାଯାଇଛି । ଓଡ଼ିଶାର ପ୍ରଖ୍ୟାତ ବିଦ୍ୱାନ ସ୍ୱର୍ଗତ ପଣ୍ଡିତ ବାଲୁଙ୍କେଶ୍ୱର ମହାପାତ୍ର ଓ ପଣ୍ଡିତ ବାସୁଦେବ ମହାପାତ୍ରଙ୍କ ଅନୁବାଦ ବହୁବର୍ଷ ପୂର୍ବରୁ ଓଡ଼ିଆ ପାଠକଙ୍କୁ ଆମୋଦିତ କରିଛି । ସଂପ୍ରତି ବର୍ଷୀୟାନ ବିଦ୍ୱାନ ଶ୍ରୀ ଧନେଶ୍ୱର ଦାଶ ସଂସ୍କୃତ ଭାଗବତ ଗ୍ରନ୍ଥର ଓଡ଼ିଆ ଅନୁବାଦ କରି ଓଡ଼ିଆ ସାହିତ୍ୟିକ ଜଗତ ନୂତନ ଆଲୋକ ପ୍ରଦାନ ପାଇଁ ଉଦ୍ୟମ କରି ଧନ୍ୟବାଦାର୍ହ ହୋଇଛନ୍ତି ।

ପଣ୍ଡିତ ଦାଶଙ୍କର ଅନୁବାଦର ବିଶେଷତ୍ୱ, ମହତ୍ତ୍ୱ, ଶବ୍ଦ ବିନ୍ୟାସର ପ୍ରୟୋଗରେ ଯଥାର୍ଥତା ଓ ପ୍ରାସଙ୍ଗିକତା ଆମ ରସପିପାସୁ ପାଠକଙ୍କୁ ନିଶ୍ଚିତ ଭାବେ ଉଦ୍‌ବୁଦ୍ଧ କରିବ ବୋଲି ମୋର ଦୃଢ଼ ବିଶ୍ୱାସ । ସଂସ୍କୃତ ଭାଗବତର ଭାବ, ଭାଷା, ସାବଲୀଳ କ୍ରମ ରକ୍ଷାକରି ପଣ୍ଡିତ ଦାଶ ହୃଦୟ ଅତ୍ୟନ୍ତ ରସସ୍ନିଗ୍ଧ ଭାବରେ ଅନୁବାଦ କରିଥିବା ବିଶେଷ ଲକ୍ଷଣୀୟ କେତୋଟି ଉଦାହରଣ ଏଠାରେ ପ୍ରାସଙ୍ଗିକ ମନେହୁଏ ।

ପ୍ରଥମ ସ୍କନ୍ଧ ନୈମେଷିକ ଉପାଖ୍ୟାନରେ ପଣ୍ଡିତଜୀ ଉଲ୍ଲେଖ କରିଛନ୍ତି,

ଯଥା – ଚିତ୍ତର ତ୍ରିଗୁଣ ବିକାର — ମାଳିନ୍ୟ ହୋଇଅଛି ଦୂର
ଅହଂକାରାଦି ସୁକ୍ଷ୍ମଦେହ — କ୍ଷେତ୍ରମନରେ କରିଥୟ
ମନକୁ ଆତ୍ମାରେ ବିଲୀନ — ଅଛିମାତ୍ର ପ୍ରାଣ ସ୍ପନ୍ଦନ

ସେହିପରି କବିଙ୍କ ଅନୁବାଦ ଅତ୍ୟନ୍ତ ରସାଳ, ପ୍ରାଣବନ୍ତ ଓ ସାବଳୀଳ ହୋଇଛି ଯଥା

କ୍ରୋଧ ଅହଂକାର ନିବୃତ୍ତ — ସଦା ଈଶ୍ୱର ସେବାରତ
ସେ ଆତ୍ମାରାମ ମୁନିଗଣ — ହେଲେ ଯେ ମୋହମାୟାହୀନ
ଏମନ୍ତ ଶ୍ରୀହରି ମହିମା — କେ ଅବା କରିବ ବର୍ଣ୍ଣନା ।

ଇତ୍ୟାଦି ପଣ୍ଡିତ ଦାଶଙ୍କର କଠୋର ସାରସ୍ୱତ ସାଧନାର ସାଫଲ୍ୟ ବାହକ ହୋଇଛି, ଏହି ଭାଗବତ । ଅନେକ ବର୍ଷ ପୂର୍ବରୁ ମହାନ ବିଦ୍ୱାନ ସାଧକ ଜଗନ୍ନାଥ ଦାସଙ୍କ ଭାଗବତ ଭଳି ଏହା ସୁଗେୟ, ସୁଶ୍ରାବ୍ୟ ଓ ସୁଠାମ ସାଂଗୀତିକ କଲ୍ଲୋଳରେ ଲୀଳାୟିତ ।

ପଣ୍ଡିତ ଦାଶ ମାହାଙ୍ଗା ମାଟିରେ ନିଜ ସାରସ୍ୱତ ସାଧନାର ଅୟମାରମ୍ଭ କରିଛନ୍ତି । ଯେଉଁ ମାହାଙ୍ଗା – ସାଲେପୁର ବହୁ ଯଶସ୍ୱୀ, ମନିଷୀ, ସାଧକ, ସଂଗ୍ରାମୀ କବି ଓ କଳାକାରଙ୍କୁ ଜନ୍ମ ଦେଇଛି । ପଣ୍ଡିତ ଦାଶ ସଂସ୍କୃତ ଭାରତୀଙ୍କର ସାଧନାରେ ମଗ୍ନରହି ଏକ ପାରମାର୍ଥିକ ତତ୍ତ୍ୱର ଅବଗାହନ, ଅବବୋଧନ ଓ ପ୍ରଚାରଣରେ ବ୍ରତୀ ହୋଇ ଉତ୍କଳ ଭାରତୀଙ୍କ କେଳି ନିଳୟକୁ ସୁରଭିତ କରି ଅମର କର୍ମା ହୋଇଛନ୍ତି । ତାଙ୍କର ପୁତ୍ର ବିଭୁଦତ୍ତ ଓ ପୁତ୍ରବଧୂ ଅପରାଜିତା ଏହି ଗ୍ରନ୍ଥର ପ୍ରକାଶନ କରି ଓଡ଼ିଶାକୁ ଏକ ନୂତନ ସାହିତ୍ୟିକ ଅବଦାନ ଦେବାରେ ସହାୟକ ହୋଇଥିବାରୁ ସେମାନେ ମଧ୍ୟ ଧନ୍ୟବାଦାର୍ହ ।

ପୂଣ୍ୟାତ୍ମା ପଣ୍ଡିତ ଦାଶଙ୍କର ଏହି ସାଧନାକୁ ମୁଁ ସ୍ୱାଗତ କରୁଛି ଏବଂ ଅଧିକରୁ ଅଧିକ ଅବଦାନ ଓଡ଼ିଆ ଜାତିକୁ ଦେବାପାଇଁ ନିବେଦନ କରୁଛି । ସେ ଶତାୟୁ ପୁରୁଷ ଭାବରେ ସଂସ୍କୃତ ଭାଷା ଭାରତୀୟ ବିକାଶ, ପ୍ରସାରରେ ବ୍ରତୀ ରହି ଏ ଜାତିକୁ ଉଦ୍‌ବୁଦ୍ଧ କରୁଥାନ୍ତୁ ।

ସୁସ୍ୱାଗତମ୍<br>
ପଣ୍ଡିତ ପ୍ରବୋଧ କୁମାର ମିଶ୍ର<br>
୨୦.୦୮.୨୦୧୪

# ଅଭିନନ୍ଦନ

ଏଭଳି କିଛି ଅନନ୍ୟ ଗ୍ରନ୍ଥଥାଏ, ଯାହାକୁ ଯେତେଥର ପଢ଼ିଲେ ନୂଆ ଲାଗେ । ଯେତେ ବୁଝିଲେ ଆହୁରି ଅବୁଝା ରହିଯାଏ । ସଂସ୍କୃତ ଶ୍ରୀମଦ୍ ଭାଗବତ ସେହିଭଳି ଏକ ଗ୍ରନ୍ଥ ଯାହା ମନୁଷ୍ୟକୁ ଉତ୍ତରଣର ମାର୍ଗ ଦେଖାଏ । ତା'ର ଚିତ୍ତକୁ ସ୍ଥିର କରେ । ତାକୁ ଠିକ୍ ଭୁଲ ବାଛିବାର ଶକ୍ତି ଦିଏ । ତେଣୁ ଚିରକାଳ ଶ୍ରୀମଦ୍ ଭାଗବତର ପଠନ, ମନନ ଓ ଲିଖନ ଗୁରୁତ୍ୱପୂର୍ଣ୍ଣ ହୋଇ ରହିଛି ।

ଆମେ ଜାଣୁ, ଥରେ ମହାମନା ଜଗନ୍ନାଥ ଦାସଙ୍କର ନିରକ୍ଷରା ଜନନୀ ଆଉ ଶ୍ରୀମନ୍ଦିର ପରିସରକୁ ଭାଗବତ ଶୁଣିବାକୁ ଯିବେ ନାହିଁ ବୋଲି ଅଭିମାନରେ ଅଶ୍ରୁ ବିସର୍ଜନ କଲେ । କାରଣ ସେ ସଂସ୍କୃତ ବୁଝିପାରୁନଥିଲେ ଓ ବ୍ରାହ୍ମଣଙ୍କୁ ଦକ୍ଷିଣା ଦେବାକୁ ମଧ୍ୟ ସମର୍ଥ ନଥିଲେ । ପଣ୍ଡିତ ପୁତ୍ର ଜଗନ୍ନାଥ ମାତାଙ୍କର ଆକୂତି ବୁଝିଲେ ଓ ନିଷ୍ଠାର ସହିତ ସଂସ୍କୃତ ଭାଗବତକୁ ଓଡ଼ିଆରେ ଅନୁବାଦ କଲେ ଯାହା ଆଜିପର୍ଯ୍ୟନ୍ତ କୋଟି କୋଟି ନିରକ୍ଷରା ଓଡ଼ିଆ ଜନନୀଙ୍କ ଦେହାନ୍ତ କାଳରେ ପଠିତ ହୋଇ ସେମାନଙ୍କର ସ୍ୱର୍ଗଯାତ୍ରାର ପଥ ପରିଷ୍କାର କରିଚାଲିଛି । ପରବର୍ତ୍ତୀ କାଳରେ ଅନେକ ସାଧୁସନ୍ଥ, ପଣ୍ଡିତ ଓ ଜ୍ଞାନୀ ଏହି ଅନୁବାଦ କର୍ମରେ ହାତ ଦେଇଛନ୍ତି । ପ୍ରତ୍ୟେକଙ୍କର ସାମର୍ଥ୍ୟ ସମୟର କଷଟିରେ ପରୀକ୍ଷିତ ହୋଇ ଜାଜ୍ୱଲ୍ୟମାନ ହୋଇ ଉଠିଛି । ସେହିଭଳି ଜଣେ ନିରବ ସାଧକ ହେଲେ ବାଲିପଢ଼ିଆ ନିବାସୀ ପଣ୍ଡିତ ଧନେଶ୍ୱର ଦାଶ । ପରିଣତ ବୟସରେ ପ୍ରାୟ ପାଞ୍ଚବର୍ଷ କଠିନ ପରିଶ୍ରମ କରି ସେ ଏହି ଜାତୀୟ କାର୍ଯ୍ୟ ସଂପାଦନ କରିଛନ୍ତି ।

ଏହି ଅନୂଦିନ ଭାଗବତ ସଂପର୍କରେ କିଛି ଲେଖିବା ଆମର ସାଧ୍ୟାତୀତ, କାରଣ ତାଙ୍କର ଅଗାଧ ସଂସ୍କୃତ ଜ୍ଞାନ ନିକଟରେ ଆମେ ଚିରକାଳ ନତମସ୍ତକ । ସେ ଚବିଶି ଘଣ୍ଟା ଭାଗବତୀ ଭାବରେ ବୁଡ଼ି ରହୁଥିବା ବେଳେ ଆମକୁ ଓଡ଼ିଆ ଭାଗବତ ପଠନର ସାମର୍ଥ୍ୟ ଦେଇଥିବାରୁ ଆମ ପିତାମାତାଙ୍କ ନିକଟରେ କୃତଜ୍ଞତା ଜଣାଇଥାଉ । ଆମର ଗୋଟିଏ ଦିଗ ଉଜ୍ଜ୍ୱଳ ଯେଉଁଥିପାଇଁ ଏ ଜ୍ଞାନର ଅଗାଧ ସାଗରକୁ ସ୍ପର୍ଶ କରିବାକୁ ସକ୍ଷମ ହୋଇଛୁ । ତାହା ହେଉଛି ଆମେ ଦୃଢ଼ ସାମାଜିକ ବନ୍ଧନରେ ବନ୍ଧା । ପଣ୍ଡିତ ଦାଶଙ୍କର ସୁପୁତ୍ର ଆୟୁଷ୍ମାନ ବିଭୁଦତ୍ତ ଓ ଆମର କନ୍ୟା ଆୟୁଷ୍ମତୀ ଅପରାଜିତାଙ୍କ ଶୁଭପରିଣୟ ଆମକୁ ଏକ ଅନନ୍ୟ ସୌଭାଗ୍ୟ ଦେଇଛି । ଆଜିର ସ୍ୱାର୍ଥ ସର୍ବସ୍ୱ ସମୟରେ ମାନନୀୟ ପିତୃପୁରୁଷଙ୍କ ଆନନ୍ଦ ପାଇଁ ଆମର

କନ୍ୟା ଓ ଜାମାତା ଯେଉଁଭଳି ଏ ବଳିଷ୍ଠ ଶ୍ରମ କରି ଚାଲିଛନ୍ତି, ତାହା ଦେଖି ଆମେ ମୁଗ୍ଧ ଓ ଚକିତ । ଉଭୟଙ୍କର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଆମେ ପୀଠଦେବୀ ମା' ଦୁର୍ଗାଦେବୀଙ୍କ ଆଶୀର୍ବାଦ କାମନା କରୁଅଛୁ ।

ପଣ୍ଡିତ ଧନେଶ୍ୱର ଦାଶ ମହାଶୟ ସଂସ୍କୃତ ସାହିତ୍ୟର ସର୍ବମାନ୍ୟ ବିଦ୍ୱାନ । ତାଙ୍କର ଅସଂଖ୍ୟ ଗୁଣଗ୍ରାହୀ ଛାତ୍ର ଓ ମିତ୍ର ସାରା ଓଡ଼ିଶାରେ ରହିଛନ୍ତି । ଯେଉଁମାନେ ଏଭଳି ଏକ ଉତ୍ସବ ପାଇଁ ପ୍ରତିକ୍ଷା କରିଥିଲେ । ନିରଳସ ପଠନ ଓ ଲିଖନ ତାଙ୍କ ଆତ୍ମବିଶ୍ୱାସକୁ ଯେଉଁ ଦମ୍ଭ ଦେଇଛି ସେଥିପାଇଁ ସେ ବାଳବୃଦ୍ଧ ନିର୍ବିଶେଷରେ ସମସ୍ତଙ୍କର ସମ୍ମାନ ଓ ଶ୍ରଦ୍ଧାର ପାତ୍ର ହୋଇପାରିଛନ୍ତି ।

ତାଙ୍କର ଏହି ପୁସ୍ତକର ଶୁଭ ଉନ୍ମୋଚନ ଅବସରରେ ତାଙ୍କର ପ୍ରଜ୍ଞା ଓ ପ୍ରତିଭାକୁ ଅଜସ୍ର ପ୍ରଣାମ । ତାଙ୍କର ଦୀର୍ଘ ଓ ନିରାମୟ ଜୀବନ କାମନା କରି ରହୁଛୁ ।

ଡାକ୍ତର ଜଗନ୍ନାଥ ମହାପାତ୍ର
ଡକ୍ଟର ସଂଘମିତ୍ରା ମିଶ୍ର
*ବି/୩୫, ଶହୀଦ ନଗର, ଭୁବନେଶ୍ୱର*

# ନିଜକଥା

ମୋ ହାତ ଲେଖାକୁ ଆଜି ମୁଦ୍ରିତ ରୂପରେ ଦେଖି ମୁଁ ଅନେକ ଆନନ୍ଦିତ । ଭୁବନେଶ୍ୱର ପୁସ୍ତକମେଳା ସମୟରେ ମୋ ସାନବୋହୂ ଅପରାଜିତା ମୋତେ ସଂସ୍କୃତ ଭାଗବତ ସେଟ୍‌ଟିଏ କିଣି ଉପହାର ଦେଇଥିଲା । ଶୁକ୍ଳେଶ୍ୱର ଭଗବତୀ ବିଦ୍ୟାପୀଠରେ ଚାକିରୀ କରିବା ସମୟରୁ ଛାତ୍ରମାନେ, ବନ୍ଧୁମାନେ ମୋତେ ସାରସ୍ୱତ କାର୍ଯ୍ୟ ପାଇଁ ସର୍ବଦା ଉତ୍ସାହିତ କରୁଥିଲେ । ଅନେକ କାବ୍ୟ କବିତା ଆଜି ମଧ୍ୟ କାଗଜ ତଳେ ଚାପି ହୋଇ ରହିଯାଇଛି, ହେଲେ ଅପରାଜିତାର ଉପହାର ପୁଣି ମୋ ଭିତରେ ହଜିଯାଇଥିବା ଲେଖକଟିକୁ ଜାଗ୍ରତ କରାଇଲା । ଏ ଅବସରରେ ତାର ସର୍ବାଙ୍ଗୀନ ଉନ୍ନତି କାମନା କରିବା ସହିତ ତାକୁ ଅନେକ ଆଶିଷ ଦେଉଛି । ଅନୁବାଦ କାର୍ଯ୍ୟରେ ଲାଗିପଡିଲି । ପ୍ରାୟ ୫ବର୍ଷ ସମୟ ନେଲା କେଉଁଦିନ ୧୦-୧୫ ଶ୍ଳୋକ ଅନୁଦିତ ହେଉଥିଲା ତ କେଉଁଦିନ ଜମାରୁ ବି କଲମ ଚାଲୁନଥିଲା । କେତେବେଳେ ଶାରିରୀକ ଅସୁସ୍ଥତା ତ କେତେବେଳେ ଖାଲି ଅନିଚ୍ଛା । ମୋ ପରିବାରର ଆରାଧ୍ୟ ଦେବତା ଶ୍ରୀ ଶ୍ରୀ ଦାମୋଦର ଜୀଉଙ୍କର ଅପାର କରୁଣାରୁ ଆଜି ତାହା ମୁଦ୍ରିତ ହୋଇ ପୁସ୍ତକର ରୂପ ନେଇଛି ସେଥିପାଇଁ ଆଜି ମୋର ଅନେକ ଆନନ୍ଦ ଓ ଶିହରଣ । ଏ ଅବସରରେ ମୁଁ ସଭିଙ୍କୁ ଆର୍ଶୀବାଦ କରୁଛି ଓ ଶ୍ରୀ ଦାମୋଦରଙ୍କ ପାଖରେ ଶରଣ ଯାଉଛି ।

ଏହି କାର୍ଯ୍ୟରେ ଯିଏ ମୋତେ ସଦାସର୍ବଦା ସାହାଯ୍ୟ କରିଛନ୍ତି ମୋର ଧର୍ମପତ୍ନୀ ଶ୍ରୀମତୀ କନକଲତା ଦେବୀ । ତାଙ୍କ ଆଗରେ ମୋ ମନର ଭାବନା କେବେ ପ୍ରକାଶ କରିନାହିଁ ଆଜି ଏହି ପବିତ୍ର ଉତ୍ସବରେ ସ୍ୱୀକାର କରୁଛି ତାଙ୍କରି ଯୋଗୁଁ ହିଁ ମୋର ଜୀବନ ସାର୍ଥକ ଓ ଏ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି । ମୋର ଦୁଇ ପୁତ୍ର ଦେବଦତ୍ତ ଓ ବିଭୁଦତ୍ତ ଓ ପୁତ୍ରବତ୍ ଜାମାତା ରବୀନ୍ଦ୍ର କୁମାରଙ୍କୁ ମଧ୍ୟ ମୋର ଧନ୍ୟବାଦ ଓ ସ୍ନେହାର୍ଶୀବାଦ । ଶ୍ରୀ ଦାମୋଦର ଜୀଉ ସେମାନଙ୍କର ମଙ୍ଗଳ କରନ୍ତୁ । ମୋର ଏକମାତ୍ର କନ୍ୟା ପ୍ରବାସିନୀ ଓ ବଡ ବୋହୂ ସୁବାସିନୀଙ୍କ ଶ୍ରଦ୍ଧା, ସମ୍ମାନଙ୍କୁ ମଧ୍ୟ ଏଠି ସ୍ମରଣ କରୁଛି । ମା ଦୁର୍ଗା ସେମାନଙ୍କର ସମସ୍ତ ରିଷ୍ଟ ଖଣ୍ଡନ କରନ୍ତୁ । ଏ ପୁସ୍ତକ ମୋର ଉତ୍ତର ପୁରୁଷ ମୋର ପଞ୍ଚୁ ପାଣ୍ଡବ (୫ ନାତି- ଜାନକୀବଲ୍ଲଭ, ମାନସ, ପ୍ରିୟବ୍ରତ, ସତ୍ୟବ୍ରତ ଓ କୌସ୍ତୁଭ) ଓ ତ୍ରିବେଣୀ (୩ ନାତୁଣୀ - ରଶ୍ମିପ୍ରଭା, ସ୍ମୃତିପ୍ରଭା ଓ ସ୍ୱୟଂପ୍ରଭା)ଙ୍କୁ ନିଜ ପରଂପରା, ଐତିହ୍ୟ ଓ ଜାତି ପ୍ରତି ଜାଗ୍ରତ ଓ ସଜାଗ କରାଇବ ଏହା ମୋର ଦୃଢ଼ ବିଶ୍ୱାସ । ପ୍ରଭୁ ସେମାନଙ୍କୁ ଓ ତାଙ୍କର ପରିବାରକୁ ଘଣ୍ଟ ଘୋଡାଇ ରଖନ୍ତୁ ।

ମୋ ପରିବାରର ସମସ୍ତ ସଦସ୍ୟ, ଶ୍ୟାଳକ ଉମାକାନ୍ତ, ଶରତଚନ୍ଦ୍ର, ଭିଣୋଇ ଗୌରାଙ୍ଗ, ପୁତୁରା ମାନେ ଭଣଜାମାନେ, ସମୁଦି, ସମୁଦୁଣୀ ମାନେ,  ନାତି ରଂଜନ, ସୁବାସ, ଛାତ୍ରଗଣ ବିଶେଷକରି ଶ୍ରଦ୍ଧେୟ ଉପେନ୍ଦ୍ର, ଦେବ, ପ୍ରଶାନ୍ତ, କାଳିନ୍ଦୀ, ମତ୍‌ଲୁବ, ଅଜୟ, ଅନୀଲ,  ଜୟନ୍ତ ଆଜିର ଅବସରରେ ସେମାନଙ୍କର ଉନ୍ନତି କାମନା କରୁଛି । ଭଗବାନ ସେମାନଙ୍କୁ ସୁସ୍ଥ, ନିରାମୟ ଦୀର୍ଘ ଜୀବନ ପ୍ରଦାନ କରନ୍ତୁ । ମା' ତାରିଣୀ କମ୍ୟୁନିକେସନ କର୍ମକର୍ତ୍ତା ଓ ପ୍ରଦୀପ୍ତ ଅନେକ ଶ୍ରମ ସ୍ୱୀକାର କରି ଏହି କାର୍ଯ୍ୟ କରିବାରେ ପ୍ରମୁଖ ଭୂମିକା ନେଇଛନ୍ତି । ସେମାନଙ୍କୁ ମୋର ଆନ୍ତରିକ ସ୍ନେହ ଓ ଆଶିଷ ।

**ପଣ୍ଡିତ ଧନେଶ୍ୱର ଦାଶ**

୩୦.୦୮.୨୦୧୪

# ସୂଚୀପତ୍ର

# ପ୍ରଥମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍
ମୂକଂ କରୋତି ବାଚାଳଂ ପଙ୍ଗୁ ଲଘଂୟତେ ଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ

ବନ୍ଦଇ ସତ୍ୟ ନାରାୟଣ ଅନାଦି ପରମ କାରଣ
ସଚ୍ଚିଦାନନ୍ଦ ଆତ୍ମାରାମ ଅବ୍ୟକ୍ତ ସତ୍ୟ ନିତ୍ୟଧାମ
କରମ କାରଣ କରତା ସର୍ବ ଅଭୀଷ୍ଟ ଫଳଦାତା
ଯେମାୟା ଶକ୍ତି ପ୍ରଭାବରେ ଏକୁ ଅନେକ ରୂପଧରେ

ମାୟାରେ ବିମୋହିତ ହୋଇ ଜୀବ ଯାହାକୁ ନ ଜାଣଇ
ଭବ ବିରଞ୍ଚି ଯାଚରଣ ଧ୍ୟାନେ ଚିନ୍ତନ୍ତି ଅନୁକ୍ଷଣ
ବିଧାତା କୁବେର ବରୁଣ ମରୁତ ଅଗ୍ନି ଯମ ସୋମ
ପର୍ବତ ସରିତ ସାଗର ଗ୍ରହଗଣ ନର କିନ୍ନର

ଦ୍ୱୀପ ରକ୍ଷ ସିଦ୍ଧ ଚାରଣ ସବିତା ମୁନି ଋଷି ବ୍ୟୋମ
ସକଳ ଯାହା ଦେହେ ସ୍ଥିତ ଯେ ବିଶ୍ୱରୂପ ଜଗନ୍ନାଥ
ସେ ବ୍ରହ୍ମ ସତ୍ୟ ସନାତନ ଦୀନେ ଦିଅନ୍ତୁ ଦିବ୍ୟଜ୍ଞାନ
ଯହୁଁ ଏ ଦୃଶ୍ୟ ଜଗତର ହୁଏ ଜନ୍ମ ସ୍ଥିତି ସଂହାର

ଘଟରୁ ମୃତ୍ତିକାର ଜ୍ଞାନ ଅନ୍ୱୟ ଅଟେ ଯାର ନାମ
ଘଟ ନାଶେ ମୃତ୍ତିକା ରହି ଏହାକୁ ବ୍ୟତିରେକ କହି
ଘଟ ମୃତ୍ତିକାର ନ୍ୟାୟରେ ଅନ୍ୱୟ ବ୍ୟତିରେକରେ
କାର୍ଯ୍ୟ କାରଣ ସମ୍ବନ୍ଧରେ ସର୍ବଦା ରହି ସବୁଠାରେ

ଯେ ସର୍ବ ବିଷୟ ଜାଣଇ ଯା ବିନା ଅନ୍ୟ ସ୍ଥିତି ନାହିଁ
ଯେ ନିଜେ ହୋଇ ପ୍ରକାଶିତ ପ୍ରକାଶ କରଇ ଜଗତ
ସେହି ସ୍ୱୟଂ ଜ୍ୟୋତି ସ୍ୱତନ୍ତ୍ର ସ୍ୱରାଟ ନାମରେ ବିଦିତ
ଅତି ଗହନ ବେଦ ତତ୍ତ୍ୱ ଯହିଁ ଜ୍ଞାନୀ ଏ ବିମୋହିତ

ଆଦି କବି ବ୍ରହ୍ମା ହୃଦରେ ଯେ ବେଦ ସାର ବିସ୍ତାରିଲେ
ମୃତ୍ତିକା ବିକାର ଯେମନ୍ତ ଜଳତେଜରେ ନିୟନ୍ତ୍ରିତ
ତେଜ ଯେ ମୃତ୍ତିକା ସଲିଳ ବିନିମୟ ଯଥା ଉତ୍ପଳ
ତେଜଯୋଗେ ଦିଗ୍‌ବଳୟରେ ଜଳ ଜ୍ଞାନ ମରିଚିକାରେ

ମିଥ୍ୟା ତ୍ରିଗୁଣସୃଷ୍ଟି ଯହିଁ ସତ୍ୟ ପରି ଜଣା ପଡ଼ଇ
ଯେ ସନ୍ଧିନୀ ଆଦିଶକ୍ତିର ପ୍ରଭାବେ ତ୍ରିଗୁଣ ସୃଷ୍ଟିର
ଜୟ କରି ମାୟା କୁହୁକ ସର୍ବଦା ଅଦ୍ୱିତୀୟ ଏକ
ସେହି ନିତ୍ୟ ସତ୍ୟ ପରମ ବ୍ରହ୍ମଙ୍କୁ ଆମେ କରୁଧ୍ୟାନ

ମହାମୁନି ଶ୍ରୀନାରାୟଣ କୃତ ଭାଗବତ ପୁରାଣ
କପଟଧର୍ମ ଯହିଁ ନାହିଁ ପରମ ଶାସ୍ତ୍ର ସେ ଅଟଇ
ନିଷ୍କାମ ଭାଗବତ ଧର୍ମ ଜନ୍ମାଏ ଶୁଦ୍ଧ ଆତ୍ମଜ୍ଞାନ
କରେ ତ୍ରିତାପ ଉନ୍ମୂଳନ ନିରହଙ୍କାର ସାଧୁଗଣ

ଏ ଧର୍ମ କରନ୍ତି ପାଳନ ହୃଦେ ଧ୍ୟାଇ ହରି ଚରଣ
କୃତୀ ସୁକୃତି ପରାଣୟ ଯେ ଏହି ଭାଗବତ ପୁରାଣ
ଭକ୍ତିରେ ପଢ଼ଇ ଶୁଣଇ ଈଶ୍ୱର ସଦା ବନ୍ଦୀ ହୋଇ
ହୃଦେ ବିରାଜନ୍ତି ତକ୍ଷଣ ଅନ୍ୟ ଶାସ୍ତ୍ରେ କି ପ୍ରୟୋଜନ

ଏବେଦ କଳ୍ପତରୁ ଫଳ ନିଷ୍କାମ ଭକ୍ତି ରସ ଆଳ
ଶୁକ ପକ୍ଷୀ ଚଞ୍ଚୁଘାତରେ ଫଳ ସୁସ୍ୱାଦୁ ଯେ ପ୍ରକାରେ
ଶୁକ ମୁନି ମୁଖ ନିଃସୃତ ମହାପୁରାଣ ଭାଗବତ
ମଧୁର ରସ ପରିପୂର୍ଣ୍ଣ ସୁଧାନିନ୍ଦଇ ସ୍ୱାଦୁଗୁଣ

ରସିକ ଭାବୁକ ସୁଜ୍ଞାନ ପୃଥ୍ୱୀରେ ଅଛ ଯେତେ ଜନ
ମୁକତି ଲଭିବା ନିମିତ୍ତ ମହାପୁରାଣ ଭାଗବତ
ସୁଧା ମଧୁର ରସ ପାନ କରନ୍ତୁ ସର୍ବେ ପୁନପୁନ
ଶୌନକ ଆଦି ମୁନିଗଣ ଦେଖି କଳିର ଆଗମନ

ତ୍ୟାଗ କରି ନିଜ ଆଶ୍ରମ ମିଳିଲେ ନୈମିଷ ଅରଣ୍ୟ
ସ୍ୱଭାବେ ସେତ ଦେବସ୍ଥାନ ଯହି ବିଜୟ ନାରାୟଣ
ଶ୍ରୀବିଷ୍ଣୁ ପ୍ରାପ୍ତି କାମନାରେ ସକଳେ ଏକାଗ୍ରେ ଚିତ୍ତରେ
ସହସ୍ର ବର୍ଷ ସଙ୍କଳ୍ପିତ ଯଜ୍ଞରେ ହୋଇଲେ ଦୀକ୍ଷିତ

ଦିନେ ମୁନିଏ ପ୍ରଭାତରେ ଆହୁତି ଦେଇ ଅନଳରେ
ନିତ୍ୟ ନୈମିତ୍ତିକ କରମ ସାରି ମିଳିଲେ ଯଜ୍ଞସ୍ଥାନ
ଯଜ୍ଞ ଦର୍ଶନେ ସମାଗତ ସୂତଙ୍କୁ କରି ପ୍ରଣିପାତ
ବସାଇ ଉଚ୍ଚଆସନରେ ମୁନିଏ ପୁଛିଲେ ଆଦରେ ॥

## ଋଷୟଃ ଉବାଚ

ଆହେ ନିଷ୍ପାପ ମୁନିଈଶ ମହାଭାରତ ଇତିହାସ
ଧର୍ମ ଶାସ୍ତ୍ର ବେଦ ପୁରାଣ କରିଛ ବ୍ୟାଖ୍ୟାନ ଶ୍ରବଣ
ସକଳ ତତ୍ତ୍ୱଜ୍ଞାନୀ ଶ୍ରେଷ୍ଠ ଯେ ବ୍ୟାସଦେବ ବ୍ରହ୍ମନିଷ୍ଠ
ଅନ୍ୟାନ୍ୟ ସଗୁଣ ନିର୍ଗୁଣ ବ୍ରହ୍ମତତ୍ତ୍ୱଜ୍ଞ ମୁନିଗଣ

କୃପାରୁ ସର୍ବଜ୍ଞ ଆପଣ କୁହନ୍ତୁ ସେହି ତତ୍ତ୍ୱ ଜ୍ଞାନ
ଏକାନ୍ତ ଶ୍ରେୟ ଯା ଜୀବର ପ୍ରକାଶ କର ମୁନିବର
ହେ ସାଧୁ ଏ କଳିଯୁଗରେ ସ୍ୱଳ୍ପାୟୁ ରୁଗ୍‌ଣ ନାରୀ ନରେ
ସଦା ଆଳସ୍ୟ ପରାୟଣ ବ୍ୟାକୁଳ ଚିତ୍ତ ବୁଦ୍ଧି ହୀନ

ପ୍ରାଣୀର ଚିତ୍ତ ଶୁଣି ଯାହା ପ୍ରଶାନ୍ତି ଲଭେ କହ ତାହା
ଭକ୍ତ ପାଳକ ଭଗବାନ କିମ୍ପା ଦେବଙ୍କ ଗର୍ଭେ ଜନ୍ମ
ଜୀବର ପାଳନ ପୋଷଣ ସମୃଦ୍ଧି ପାଇଁ ନାରାୟଣ
କୃଷ୍ଣ ରୂପରେ ଅବତରି ଯେ ଲୀଳା କରିଲେ ବିସ୍ତାରି

ବର୍ଣ୍ଣନା କରନ୍ତୁ ଆପଣ ଶୁଣିବା ପାଇଁ ଆମ ମନ
ସର୍ବଦା ଶ୍ରୀକୃଷ୍ଣ ନାମରେ ଯେ ଭବନିତ୍ୟ ଭୟ କରେ
ଦୁସ୍ତର ଭବସାଗରରେ ପତିତ ବ୍ୟକ୍ତି ବିବଶରେ
ଯାନାମ ଉଚ୍ଚାରଣ କରି ହେଳେ ତରଇ ଭବବାରି

ଧର୍ମ ରକ୍ଷକ ଭଗବାନ କୃଷ୍ଣ ଗମନ୍ତେ ନିତ୍ୟଧାମ
ଧର୍ମ ନେଲା କାହା ଶରଣ ହେ ସୂତ କୁହନ୍ତୁ ଆପଣ
ଶ୍ରୀ ବିଷ୍ଣୁ ଚରଣ ନିଃସୃତ ଗଙ୍ଗା ସ୍ନାନେ ଜୀବ ପବିତ୍ର
ଶ୍ରୀ କୃଷ୍ଣ ଚରଣ ଆଶ୍ରିତ ବାସନା ଶୂନ୍ୟେ ମୁନି ସନ୍ଥ

ଆଶ୍ରୟ ମାତ୍ରେ ଜୀବ ଏହି ତକ୍ଷଣେ ପବିତ୍ର ହୁଅଇ
କଳିର କଳୁଷ ହାରିଣୀ ଯେ ଲୀଳା ମୁକ୍ତି ପ୍ରଦାୟିନୀ

ପୁଣ୍ୟ ଶ୍ଲୋକ ମହାତ୍ମାଗଣ କରିଅଛନ୍ତି ବିତରଣ
ସ୍ୱେଚ୍ଛାରେ ଯେ ନାନା ପ୍ରକାର ହୁଏ ପୃଥ୍ୱୀରେ ଅବତାର

ନାରଦ ଆଦି ମୁନି ଗଣ ସେ ଲୀଳା କରନ୍ତି ଗାୟନ
କଳୁଷ ତ୍ରିତାପ ହାରିଣୀ ସେ ଲୀଳା କରନ୍ତୁ ହେ ମୁନି
ସେ ଲୀଳା ଶୁଣି ପୁନ ପୁନ ତୃପ୍ତି ନ ଲଭେ ଆମ ମନ
କପଟ ଗୁପ୍ତ ରୂପଧରି ମାନବ ରୂପେ ଅବତରି

ଯେ ଲୀଳା କଲେ ରାମ ହରି ବର୍ଣ୍ଣନା କରନ୍ତୁ ବିସ୍ତାରି
ଜାଣି କାଳିର ଆଗମନ ଆମେ ତେଜି ନିଜ ଆଶ୍ରମ
ଆସିଛୁ ନୈମିଷ ଅରଣ୍ୟେ ଏ ଅପ୍ରକୃତ ଦେବସ୍ଥାନେ
ଦୀର୍ଘ କାଳ ସାଧ୍ୟ ସାଧନ ଏ ଯଜ୍ଞ କରି ଅନୁଷ୍ଠାନ

ସେ ଲୀଳା ଶୁଣିବା ଇଚ୍ଛାରେ ଅପେକ୍ଷା କରିଛୁ ଏଠାରେ
ଭବ ସାଗରୁ ତାରିବାକୁ ନାବିକ ରୂପେ ଆପଣଙ୍କୁ
ବିଧାତା ହୋଇଣ ସଦୟ ପଠାଇ ଅଛନ୍ତି ନିଶ୍ଚୟ
ଯେ କୃଷ୍ଣ ଧର୍ମ ସଂସ୍ଥାପକ ଗୋ ବ୍ରାହ୍ମଣ ସନ୍ଥ ପାଳକ

ଧର୍ମଜ୍ଞାନ ଆଦି ସଙ୍ଗରେ ଗମନ୍ତେ ପରମ ଧାମରେ
ଧର୍ମ ନେଲା କାରଶରଣ ବର୍ଣ୍ଣନା କରନ୍ତୁ ଆପଣ
ଏ ସୂତ ଶୌନିକ ସମ୍ବାଦ ହରଉ ତାପତ୍ରୟ ଖେଦ
ସୁଜନେ ବୋଲ ରାମ ହରି ଭବ ସାଗରୁ ହେବ ପାରି
କହଇ ଧନେଶ୍ୱର ଦାଶ ସୁଜନେ କ୍ଷମା କର ଦୋଷ

**ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ସୂତ ଶୌନକ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟ ।**

* * * * *

# ଦ୍ୱିତୀୟ ଅଧ୍ୟାୟ

## ବ୍ୟାସ ଉବାଚ

*ତଦେବଂ ପ୍ରଥମୋଽଧ୍ୟାୟେ ଷଟ୍‌ପ୍ରଶ୍ନା ମୁନିଭିଃ କୃତାଃ*
*ଦ୍ୱିତୀୟେ ତୂତ୍ତରଂ ସୂତ ଚତୂର୍ଣାମାହ ତେଷ୍ୱଥ*

ଶୌନକ ଆଦି ମୁନିଙ୍କର ଶୁଣିଣ ପ୍ରଶ୍ନ ଏପ୍ରକାର
ଲୋମ ହର୍ଷଣ ମୁନି ପୁତ୍ର ସୂତ ହୋଇଣ ଆନନ୍ଦିତ
ଋଷିଙ୍କୁ ଧନ୍ୟବାଦ ଦେଇ ଗୁରୁ ଚରଣ ହୃଦେଧ୍ୟାୟି
ପ୍ରଶ୍ନମାନଙ୍କର ଉତ୍ତର ଆରମ୍ଭ କରିଲେ ସତ୍ୱର

## ସୂତ ଉବାଚ

ଯେ ଶୁକ ହେବା ମାତ୍ରେ ଜନ୍ମ ଉପେକ୍ଷି ବ୍ରତୋପନୟନ
ଗୃହକୁ ତେଜିଣ ତକ୍ଷଣ କରିଲେ ଅରଣ୍ୟ ଗମନ
ଯା ଦେଖି ବ୍ୟାସ ମୁନିବର ବିରହରେ ହୋଇ କାତର
ହା ବୋଲି ପୁତ୍ର ଉଚ୍ଚସ୍ୱରେ ଡାକିଣ ଧାଇଁଲେ ପଛରେ

ପ୍ରତିଧ୍ୱନି ଛଳରେ ଦ୍ରୁମ କଲେ ତାହା ଅଭିନନ୍ଦନ
ସେ ଶୁକ ଦେବ ମୁନିବର ଚରଣେ ମୋର ନମସ୍କାର
ଅଜ୍ଞାନ ଘୋର ଅନ୍ଧକାରେ ଅନ୍ଧ ଏ ସଂସାରୀ ଜୀବରେ
ଯେ କୃପା କଲେ ଅକାରଣ ଯା ପ୍ରଭାବ ଅସାଧାରଣ

ଯେ ସର୍ବବେଦ ସାରତତ୍ତ୍ୱ ମହାପୁରାଣ ଭାଗବତ
ଶାସ୍ତ୍ରକୁ କରିଲେ ପ୍ରଚାର ଯେ ଗୁରୁ ସର୍ବ ମୁନିଙ୍କର
ସେ ବ୍ୟାସ ମୁନିଙ୍କ ନନ୍ଦନ ଶୁକ ମୁନି ପଦେ ଶରଣ
ନରୋତ୍ତମ ଶ୍ରୀ ନାରାୟଣ ଶ୍ରୀ ବ୍ୟାସ ଦେବଙ୍କ ଚରଣ

ବାଗ୍‌ଦେବୀ ମା ସରସ୍ୱତୀ ଚରଣେ କରିଣ ପ୍ରଣତି
ଜୟ ବା ଧର୍ମ ଶାସ୍ତ୍ରମାନ ଉଚିତ ପଠନ ଶ୍ରବଣ
ତଥା ଶାସ୍ତ୍ରର ଲବ୍ଧଜ୍ଞାନ ଉଚିତ ଅଟେ ପ୍ରଚାରଣ
ହେ ମୁନି ଗଣ ପ୍ରଶ୍ନ ତୁମ ସୁସଙ୍ଗତ ଅତି ଉତ୍ତମ

ଯେ ପ୍ରଶ୍ନ କୃଷ୍ଣ ବିଷୟକ ଜଗତ ମଙ୍ଗଳ କାରକ
ଯାକଲେ ଭକ୍ତିରେ ଶ୍ରବଣ ହୁଅଇ ଚିତ୍ତ ସୁ ପ୍ରସନ୍ନ
ଯେ ଧର୍ମ କରିଲେ ପାଳନ ଇନ୍ଦ୍ରିୟାତୀତ ଭଗବାନ
କୃଷ୍ଣତତ୍ତ୍ୱ ଜନ୍ମେ ପ୍ରେମ ଭକ୍ତି ଚିତ୍ତ ଲଭେ ପୂର୍ଣ୍ଣ ପ୍ରଶାନ୍ତି

ଯେ ଧର୍ମ ମାନବ ପକ୍ଷରେ ପାଳନ ଉଚିତ ସଂସାରେ
ଏକାଗ୍ର ଚିତ୍ତେ ଭଗବାନ ବାସୁଦେବ କଲେ ଭଜନ
ବାସନା ରହିତ ନିଷ୍କାମ ବିଷୟେ ବୈରାଗ୍ୟ ଜନମ
ପ୍ରକାଶ ପାଏ ତତ୍ତ୍ୱଜ୍ଞାନ ହରି ଚରଣେ ରହେ ଧ୍ୟାନ

ବର୍ଣ୍ଣ ଆଶ୍ରମ କୁଳ ଧର୍ମ କଲେ ବି ନିଷ୍ଠାରେ ପାଳନ
ଯାହାର ଗୋବିନ୍ଦ କଥାରେ ରୁଚି ନ ଜନ୍ମଇ ଚିତ୍ତରେ
ତେବେ ସେ ଧର୍ମ ଅନୁଷ୍ଠାନ କେବଳ ବୃଥା ପରିଶ୍ରମ
ଧର୍ମର ଅଟେ ମୋକ୍ଷ ଫଳ ଧନାର୍ଜନ ନୁହେଁ କେବଳ

ଅର୍ଥ ଉଦ୍ଦେଶ୍ୟ ଧର୍ମ ପ୍ରାପ୍ତି ବିଷୟଭୋଗେ ଅନାଶକ୍ତି
ତୃପତି ଇନ୍ଦ୍ରିୟ ଗଣର ଲକ୍ଷ୍ୟ ନୁହଁ କାମନାର
ଜୀବନ ଧାରଣ ପର୍ଯ୍ୟନ୍ତ ତତ୍ତ୍ୱ ଜିଜ୍ଞାସା ହିଁ ଏକାନ୍ତ
ଜୀବ ପକ୍ଷରେ ଅଟେ ଶ୍ରେୟ ଏଥିରେ ସଦା ରଖ ଲୟ

ସ୍ୱର୍ଗ ପ୍ରାପ୍ତି ମଧ୍ୟ କର୍ମର ନୁହେଁ କଦାପି ମୁଖ୍ୟଫଳ
ସେ ଏକ ଅଦ୍ୱିତୀୟ ବ୍ରହ୍ମ ବସ୍ତୁକୁ ତତ୍ତ୍ୱବିଦ ଗଣ
ତତ୍ତ୍ୱ ବୋଲିଣ କହିଥାନ୍ତି ଜ୍ଞାନୀ ପରଂବ୍ରହ୍ମ ବୋଲନ୍ତି
ଯୋଗୀ କହେ ପରମାତ୍ମନ ଭକ୍ତର ସେତ ଭଗବାନ

ମନନଶୀଳ ଶ୍ରଦ୍ଧା ଯୁକ୍ତ ଜ୍ଞାନୀ ଗୁଣୀ ଯୋଗୀ ଭକତ
ଶ୍ରୀଗୁରୁ ମୁଖରୁ ସାଧନ ମାର୍ଗଶୁଣି କରେ ସାଧନ
ଅନୁଷ୍ଠାନ କରେ ଶ୍ରଦ୍ଧାରେ ଜ୍ଞାନ ବୈରାଗ୍ୟ ସୁଚିତ୍ତରେ
ଭକ୍ତିରେ ଜନ୍ମେ ଅନୁଭୂତି ଏହି ଅଦ୍ୱୟ ତତ୍ତ୍ୱପ୍ରତି

ଶୁଣ ସକଳ ମୁନିଗଣ ବର୍ଣ୍ଣାଶ୍ରମଧର୍ମ ପାଳନ
ଫଳ ହିଁ ଗୋବିନ୍ଦ ତୋଷଣ ମାନବ ପକ୍ଷେ ଶେଷ କର୍ମ
ଭକ୍ତ ପାଳକ ଶ୍ରୀକୃଷ୍ଣଙ୍କର ନାମ ରୂପ ଗୁଣ ଲୀଳାର
ଶ୍ରବଣ ଭଜନ କୀର୍ତ୍ତନ ଭକ୍ତର ଅତି ପ୍ରୟୋଜନ

ବିବେକ ସଂଯତ ଚିତ୍ତରେ
କର୍ମ ଗ୍ରନ୍ଥିମାନ ଛେଦନ
ବାସ କରି ପୁଣ୍ୟ କ୍ଷେତ୍ରରେ
ଈଶ୍ୱର ଲୀଳା ଶ୍ରବଣରେ
ଶ୍ରୀକୃଷ୍ଣ ଭକ୍ତି ଖଡ଼ଗରେ
ଭକ୍ତର ଅତି ପ୍ରୟୋଜନ
ଭକ୍ତର ଚରଣ ସେବାରେ
ଶ୍ରଦ୍ଧାଳୁ ଭକତ ଚିତ୍ତରେ

ଭଗବତ ଲୀଳା ଶ୍ରବଣ
ଯା ଲୀଳା ଶ୍ରବଣ କୀର୍ତ୍ତନ
ସେ ହରି ହୃଦେ ବିଜେକରି
କାମନା ବାସନା ସକଳ
ଅଭିରୁଚି ହୁଏ ଜନମ
ଅଟଇ ପରମ ପାବନ
ଶ୍ରଦ୍ଧାଳୁ ଭକ୍ତ ହିତ କାରୀ
ବିନାଶ କରନ୍ତି ତତ୍‌କାଳ

କୃଷ୍ଣ ପୁତଲୀଳା ଶ୍ରବଣ
କାମ ବାସନା ହୋଇ କ୍ଷୀଣ
ଶ୍ରୀ ଗୋବିନ୍ଦ ଶ୍ରୀଚରଣେ
ନୈଷ୍ଠିକୀ ଭକ୍ତି ଅଭ୍ୟୁଦୟ
ଭକ୍ତର ଚରଣ ସେବନ
ହୃଦ ଗ୍ରନ୍ଥି କରେ ଛେଦନ
ଅଚଳା ଭକତି ଜନମେ
ନାଶ ସତ୍ତ୍ୱାଦି ଗୁଣତ୍ରୟ

କାମନା ନହୁଏ ଜନମ
ପ୍ରେମରେ ଶ୍ରବଣ କୀର୍ତ୍ତନେ
ନିର୍ମଳ ହୁଏ ଭକ୍ତ ମନ
ମିଳେ ଈଶ୍ୱର ସାକ୍ଷାତ୍‌କାର
ଚିତ୍ତ ହୁଅଇ ସୁପ୍ରସନ୍ନ
ଭକତି ଯୋଗ ଅନୁଷ୍ଠାନେ
ସଂସାରେ ଅନାସକ୍ତି ଜନ୍ମ
ଏ ଦୁର୍ଲ୍ଲଭ ଭକ୍ତି ଭାବର

ହେଲେ ଈଶ୍ୱର ସାକ୍ଷାତ୍‌କାର
ନ ଜନ୍ମେ ଲୀଳାରେ ସନ୍ଦେହ
ଏଣୁ ସର୍ବଦା ଜ୍ଞାନୀ ଗଣ
ପରମ ପୁରୁଷ କୃଷ୍ଣ ହିଁ
ବିନାଶହୁଏ ଅହଙ୍କାର
ସଂଚିତ କର୍ମ ହୁଏ କ୍ଷୟ
ଭଜନ୍ତି ଶ୍ରୀକୃଷ୍ଣ ଚରଣ
ସୃଷ୍ଟି ସ୍ଥିତି ଲୟ କରଇ

ଯୁଗେ ଯୁଗେ ଗୁଣାଶ୍ରୟରେ
ହୁଅନ୍ତି ଭବେ ଅବତାର
ଏତିନି ଦେବତା ମଧ୍ୟମରେ
ବାସୁଦେବ ଠାରୁ କଲ୍ୟାଣ
ବ୍ରହ୍ମା ବିଷ୍ଣୁ ଶିବ ନାମରେ
ଧରି ମାନବ କଳେବର
ଅଧିଷ୍ଠିତ ସତ୍ତ୍ୱ ଗୁଣରେ
ଏ ଜୀବ ଲଭଇ ତକ୍ଷଣ

ଜଡ଼ କାଷ୍ଠରୁ ଶ୍ରେଷ୍ଠଧୂମ
ଅଗ୍ନି ଅଟେ ଯଜ୍ଞ ସାଧନ
ତମରୁ ଆବରଣ ବୃତ୍ତି
ସତ୍ତ୍ୱର ପ୍ରକାଶକ ଗୁଣ
ଧୂମରୁ ଅଗ୍ନି ଶ୍ରେଷ୍ଠ ପୁଣ
ଯାଗ ଯଜ୍ଞରେ ପ୍ରୟୋଜନ
ରଜରୁ ଜନ୍ମଇ ପ୍ରବୃତ୍ତି
ତ୍ରିଗୁଣେ ସତ୍ତ୍ୱହିଁ ପ୍ରଧାନ

କରାଏ ଈଶ୍ୱର ଦର୍ଶନ
ସେ ହେତୁ ପୂର୍ବେ ମୁନି ଗଣ
କରିଲେ ଶ୍ରୀକୃଷ୍ଣ ଭଜନ
ଏହିମତ ଅନୁସରଇ
ନିବାରଇ ଜନ୍ମ ମରଣ
ବିଶୁଦ୍ଧ ମୂର୍ତ୍ତି ଭଗବାନ
ସଂସାର ମଧ୍ୟ ଯେଉଁ ଜନ
ପରମ କଲ୍ୟାଣ ଲଭଇ

ମୋକ୍ଷାଭିଳାଷୀ ବ୍ୟକ୍ତିଗଣ
ଶାନ୍ତରୂପ ବିଶ୍ୱପତିଙ୍କୁ
ସଦା କରନ୍ତି ଉପାସନା
ରଜ ତାମସ ପ୍ରକୃତିର
ବରଜି ବିଷୟ ବନ୍ଧନ
ତଥା ତାଙ୍କର ବିଭୂତିଙ୍କୁ
ଏଥିରେ ନାହିଁ ବିକଳ୍ପନା
ବ୍ୟକ୍ତିଗଣ ନାନା ପ୍ରକାର

କାମନା ବାସନା ଅଧୀନ
ଉପାସନା ସଦା କରନ୍ତି
ବେଦ ପଠନ ତପ ଧର୍ମ
ଏହି ସକଳ ଧର୍ମ ପ୍ରତି
ଭୂତ ପ୍ରେତ ଯେ ପିତୃଗଣ
ସ୍ୱ କର୍ମ ଫଳ ଲାଭ ଚିନ୍ତି
ଯଜ୍ଞାଦି ନୈମିତ୍ତିକ କର୍ମ
ବାସୁଦେବରେ ପରାଭକ୍ତି

ସେ ସର୍ବ ବ୍ୟାପୀ ଗୁଣାତୀତ
ତ୍ରିଗୁଣାତ୍ମିକା ମାୟାବଳେ
ଏ ମାୟା ସୃଷ୍ଟି ବ୍ରହ୍ମାଣ୍ଡରେ
ହେଉ ମଧ୍ୟ ସେ ଗୁଣାତୀତ
ସ୍ୱଇଚ୍ଛା ଶକ୍ତି ନିୟନ୍ତ୍ରିତ
ବିଶ୍ୱ ସୃଜନ୍ତି ଅବହେଳେ
ପ୍ରବେଶି ଚିତ୍‌ଶକ୍ତି ରୂପରେ
ସଗୁଣ ସ୍ୱରୂପେ ପ୍ରତୀତ

ବିବିଧ ଇନ୍ଧନ ଯୋଗରେ
ମାତ୍ର କାଷ୍ଠରୁ ଅଗ୍ନି ଭିନ୍ନ
ବିବିଧ ପ୍ରାଣୀ ଶରୀରରେ
ନାନା ଗୁଣ ନାମ ରୂପରେ
ଅନଳ ବହୁ ରୂପଧରେ
ତେମନ୍ତତ ଏକ ଭଗବାନ
ରହି ଅନ୍ତର୍ଯ୍ୟାମୀ ରୂପରେ
ପ୍ରତୀତ ବିବିଧ ପ୍ରକାରେ

ନିଜ ଇଚ୍ଛାରେ ଭଗବାନ
ଇନ୍ଦ୍ରିୟ ବିକାର ରୂପରେ
ରହି ଅନ୍ତର୍ଯ୍ୟାମୀ ଭାବରେ
ଏପରି ପଶୁ ପକ୍ଷୀ ନର
ରଚିତ ଅହଙ୍କାର ମନ
ଚତୁର୍ବିଧ ପ୍ରାଣୀ ଦେହରେ
ପ୍ରେରନ୍ତି ବିଷୟ ଭୋଗରେ
ଦେବାସୁର ରୂପେ ଈଶ୍ୱର

ବିବିଧ ଲୀଳା ଅବତାରେ
ଜୀବକୁ କରନ୍ତି ପାଳନ
ଅଶେଷ ଶ୍ରୀକୃଷ୍ଣ ମହିମା
ସେ ଶ୍ରୀହରି କମଳଚରଣ
ସାତ୍ତ୍ୱିକ ଗୁଣ ଆଶ୍ରୟରେ
ସ୍ୱୟଂ ସେ ସର୍ବ ଶକ୍ତିମାନ
କିଅବା ଦେବା ତା ଉପମା
ସର୍ବଦା ଭଜ ସୁଜ୍ଞଜନ

କହଇ ଦାଶ ଧନେଶ୍ୱର ସୁଜନେ ଦୋଷ କ୍ଷମାକର ।

**ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେନୈମିଷିୟୋପାଖ୍ୟାନେ ଶ୍ରୀଭଗବଦନୁଭାବ ବର୍ଣ୍ଣନଂ ନାମ ଦ୍ୱିତୀୟୋଽଧ୍ୟାୟ ।**

*******

## ତୃତୀୟ ଅଧ୍ୟାୟ

### ଶ୍ରୀସୂତ ଉବାଚ

ସଂସାର ସୃଷ୍ଟି ଇଛା କରି ଇଛାମୟ ବିଶ୍ୱ ବିହାରୀ
ମହଦାଦି ତତ୍ତ୍ୱେ ମିଳିଣ ସେ ପରିପୂର୍ଣ୍ଣ ଶକ୍ତିମାନ
ପୁରୁଷ ମୂରତି ଧାରଣ କରନ୍ତି ପ୍ରଭୁ ଭଗବାନ
ଯୋଗ ନିଦ୍ରା ଅବଲମ୍ବନ କରି ଗର୍ଭୋଦକେ ଶୟନ

ନାଭି କମଳରୁ ତାଙ୍କର ଜନମ ବ୍ରହ୍ମା ବେଦବର
ଯା ଅଙ୍ଗେ ଚଉଦ ଭୁବନ କଳ୍ପନା କରେ ଯୋଗୀ ଜନ
ସେ କୃଷ୍ଣଙ୍କର ଶ୍ରୀବିଗ୍ରହ ଅପ୍ରାକୃତିକ ସତ୍ତ୍ୱମୟ
ପ୍ରେମ ଭକ୍ତିପୁତ ନେତ୍ରରେ ପ୍ରଶାନ୍ତ କୋମଳ ଚିତ୍ତରେ

ସହସ୍ର ଚରଣ ବଦନ ଉରୁବାହୁ ସସ୍ତ୍ରନୟନ
ମସ୍ତକ ଶ୍ରବଣ ସଂଯୁକ୍ତ ମୁକୁଟ କୁଣ୍ଡଳ ଶୋଭିତ
ପୁରୁଷ ସ୍ୱରୂପ ଦର୍ଶନ କରନ୍ତି ସଦା ଭକ୍ତଗଣ
ଈଶ୍ୱରଙ୍କର ଶ୍ରୀବିଗ୍ରହ ଜଗତର ବୀଜ ଅକ୍ଷୟ

ଏ ଅଙ୍ଗୁ ଅବତାର ମାନ ଜନମି ତହି ହୁଏ ଲୀନ
ଅଂଶ କଳରେ ଏହାଙ୍କର ସୃଷ୍ଟି ଯେ ପଶୁ ପକ୍ଷୀ ନର
ବ୍ରହ୍ମାଙ୍କ ମାନସ ସନ୍ତାନ ସନତ୍ କୁମାରାଦି ଜନମ
ଜନ୍ମିଲେ ସୃଷ୍ଟି ପ୍ରାରମ୍ଭରେ ବ୍ରହ୍ମଜ୍ଞ ବ୍ରାହ୍ମଣ ରୂପରେ

ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତ ଆଚରଣ କରି ଏକାନ୍ତ
କରିଲେ ଏହାର ପ୍ରଚାର ଶୁଣ ଶୌନକ ମୁନିବର
ଦ୍ୱିତୀୟେ ଯଜ୍ଞେଶ ଈଶ୍ୱର ଉଦ୍‌ଭବ ପାଇଁ ଜଗତର
ଜଳମଗ୍ନ ପୃଥ୍ୱୀ ଉଦ୍ଧାର ଯଜ୍ଞବରାହ ଅବତାର

ତୃତୀୟରେ ମରିଚି ଅତ୍ରି ଋଷି ଏ ବ୍ରହ୍ମାଙ୍କୁ ଉତ୍ପତ୍ତି
ତାହାଙ୍କ ମଧ୍ୟେ ଭଗବାନ ନାରଦ ରୂପେ ଅବତୀର୍ଣ୍ଣ
ପଞ୍ଚରାତ୍ର ସୂତ୍ର ଆଗମ ସଂସାରେ କଲେ ପ୍ରଚାରଣ
କରିଲେ ଶ୍ରୀହରି ଭଜନ କର୍ମବନ୍ଧନ ହୁଏ ଛିନ୍ନ

ଏହା ସେ ଶାସ୍ତ୍ର ମାନଙ୍କର ମତ ଅଟଇ ନିରାଧାର
ଚତୁର୍ଥରେ ଶ୍ରୀଭଗବାନ ଅତ୍ରି ସ୍ତ୍ରୀ ମୂର୍ତ୍ତି ଗର୍ଭୁ ଜନ୍ମ
ନରନାରାୟଣ ରୂପରେ ଦୁଷ୍କର ତପ ଆଚରିଲେ
ପଞ୍ଚମେ ପୂଜ୍ୟ ସିଦ୍ଧଗଣ କପିଳ ରୂପେ ଅବତୀର୍ଣ୍ଣ

ଆସୁରୀନାମ ବ୍ରାହ୍ମଣଙ୍କୁ ଉପଦେଶ ସାଂଖ୍ୟ ଶାସ୍ତ୍ରକୁ
ସପ୍ତମରେ ଶ୍ରୀଭଗବାନ ଯଜ୍ଞନାମ କରି ଧାରଣ
ରଚିକ ପତ୍ନୀ ମନୁପୁତ୍ରୀ ଆକୃତି ଗର୍ଭୁ ଉତପତ୍ତି
ସୁପୁତ୍ର ଯମାଦି ଦୈବତ ସହିତ ହୋଇ ସମ୍ମିଳିତ

ସ୍ୱାୟମ୍ଭୁବ ମନ୍ୱନ୍ତର ପାଳନେ ହୋଇଣେ ତତ୍ପର
ଅତ୍ରି ପତ୍ନୀ ଅନସୂୟାର ପ୍ରାର୍ଥନାରେ ହୋଇ କାତର
ଷଷ୍ଠେ ଦତ୍ତାତ୍ରେୟ ରୂପରେ ଜାତ ଅନସୂୟା ଗର୍ଭରେ
ଅଳର୍କ ପ୍ରହ୍ଲାଦ ଆଦିକୁ ଦାନ କଲେ ବ୍ରହ୍ମ ବିଦ୍ୟାକୁ

ଅଷ୍ଟେମେ ମୁମୁକ୍ଷୁ ମାନଙ୍କୁ ପରମହଂସ ସୁମାର୍ଗକୁ
ଦେଖାଇବା ପାଇଁ ଶ୍ରୀଧର ଅଗ୍ନିଧ୍ରପୁତ୍ର ନାଭିଙ୍କର
ପତ୍ନୀ ମେରୁଦେବୀ ଗର୍ଭରେ ଜନ୍ମିଲେ ଋଷଭ ନାମରେ
ହରି ନବମ ଅବତାରେ ଋଷିଗଣଙ୍କ ପ୍ରାର୍ଥନାରେ

ପାର୍ଥିବ ଶରୀରକୁ ଧରି ଔଷଧ ଦୁଗ୍ଧ ଆଦିକରି
ପୃଥ୍ୱୀରୁ କରିଲେ ଦୋହନ ଏ ଲୀଳା ଅତି ମନୋରମ
ଦଶମେ ମୀନ ଅବତାରେ ଚାକ୍ଷୁଷ ନାମ ମନ୍ୱନ୍ତରେ
ଉଚ୍ଛଳ ପ୍ରଳୟ ଜଳରେ ନୌକା ସ୍ୱରୂପେ ପୃଥିବୀରେ

ବୈବସ୍ୱତମନୁ ବସାଇ ରକ୍ଷା କରିଲେ ବିଶ୍ୱସାଇଁ
ମିଳିତ ହୋଇ ଦେବାସୁରେ ସମୁଦ୍ର ମନ୍ଥନ କାଳରେ
ଏକାଦଶ ଅବତାରରେ ଅବତରି କୂର୍ମ ରୂପରେ
ପୃଷ୍ଠରେ ମନ୍ଦର ଧାରଣ କରିଲେ ପ୍ରଭୁ ନାରାୟଣ

ଦ୍ୱାଦଶ ଅବତାରରେ    ଜନ୍ମି ଧନ୍ତରୀ ରୂପରେ
ସୁଧା ଭାଣ୍ଡ ଧରି ହସ୍ତରେ    ମୋହିନୀ କନ୍ୟା ସ୍ୱରୂପରେ
ଅସୁରେ କରି ସମ୍ମୋହନ    ଦେବେ କରାଇ ସୁଧାପାନ
ଚତୁର୍ଦ୍ଦଶେ ଶ୍ରୀ ଭଗବାନ    ନୃସିଂହ ରୂପେ ଅବତୀର୍ଣ୍ଣ

କଟ ନିର୍ମାଣ କାରୀଜନ    ଯଥା ଏରକା ତୃଣବନ
ବିଦାରଣ କରଇ ହେଳେ    ତଥା ଦର୍ପାନ୍ଧ ବାହୁବଳେ
ହିରଣ୍ୟ କଶିପୁକୁ ବଳେ    ପକାଇ ଜଘନ ଉପରେ
କଲେ ନଖରେ ବିଦାରଣ    ହରିଙ୍କ ମହିମା ଅସୀମ

ପଞ୍ଚଦଶ ଅବତାରେ    ଅପୂର୍ବ ବାମନ ରୂପରେ
ଦୈତ୍ୟେନ୍ଦ୍ର ବଳୀ ସମ୍ମୁଖରେ    ପ୍ରବେଶି ଦେବଙ୍କ ହିତରେ
ସ୍ୱର୍ଗ ଅଧିକାର ଇଚ୍ଛାରେ    ତ୍ରିତାପ ଭୂମି ଭିକ୍ଷାଛଳେ
ଯଜ୍ଞସ୍ଥଳେ କଲେ ଗମନ    ଶୁଣ ଶୌନକ ମୁନିଗଣ

ଷୋଡ଼ଶ ହେଲେ ପର୍ଶୁରାମ    ବିପ୍ର ବିଦ୍ୱେଷୀ କ୍ଷତ୍ରୀଗଣ
ଏକବିଂଶ ବାର ନିଧନ    କଲେ ପୃଥିବୀ କ୍ଷତ୍ରୀ ଶୂନ୍ୟ
ସପ୍ତଦଶେ ସେ ଦୟାନିଧି    ଦେଖି ଲୋକଙ୍କୁ ଅଳ୍ପବୁଦ୍ଧି
ପରାଶରଙ୍କ ଔରସରୁ    ଦେବୀ ସତ୍ୟବତୀ ଗର୍ଭରୁ

ଜନ୍ମି ବେଦ ବ୍ୟାସ ରୂପରେ    ବେଦକୁ ଚାରିଭାଗ କଲେ
ଏ ଅନ୍ତେ ହୋଇଲେ ଶ୍ରୀରାମ    ମୁରତି ନୀଳାମ୍ବୁଜ ଶ୍ୟାମ
ସମୁଦ୍ରେ ବାନ୍ଧି ସେତୁବନ୍ଧ    ବଧ କରିଲେ ଦଶକନ୍ଧ
ଊନବିଂଶ ଅବତାରରେ    ବଳରାମ କୃଷ୍ଣ ରୂପରେ

ଯଦୁକୁଳେ ଲଭି ଜନମ    କରିବେ ଭୂଭାର ହରଣ
ଅସୁର ସ୍ୱଭାବ ଲୋକଙ୍କୁ    ପ୍ରଭାବେ ମୋହ କରିବାକୁ
ପବିତ୍ର ଗୟା ପ୍ରଦେଶରେ    ଅଜନଙ୍କ ପୁତ୍ର ରୂପରେ
ବୁଦ୍ଧ ନାମରେ ଆବିର୍ଭୂତ    ହୋଇବେ ସେ ପ୍ରଭୁ ଅନନ୍ତ

ଦସ୍ୟୁ ସ୍ୱଭାବ ନୃପଗଣ    କରିବାପାଇଁ ସମ୍ମୋହନ
କରି କଳ୍କି ନାମଧାରଣ    ବିଷ୍ଣୁଯଶା ନାମ ବ୍ରାହ୍ମଣ
ପୁତ୍ର ରୂପେ ଶ୍ରୀନାରାୟଣ    କଳି ଶେଷେ ହେବେ ଜନମ
ଯଥା ଅକ୍ଷୟ ସରୋବର    ମଧ୍ୟରୁ ହଜାର ହଜାର

ଜଳ ପ୍ରବାହ ସଂଖ୍ୟାତୀତ    ସର୍ବା ହୁଅଇ ସମ୍ଭୂତ
ତଥା ବିଶ୍ୱାତ୍ମା ଦାମୋଦର    ଅଙ୍ଗୁ ଅସଂଖ୍ୟ ଅବତାର
ଋଷି ଦେବତା ମନୁପୁତ୍ର    ଲୋକପାଳ ଆଦି ସହିତ
ମହା ପ୍ରଭାବ ଜୀବଯେତେ    ଈଶ୍ୱରଙ୍କ ଅଂଶ ସମସ୍ତେ

ଏହି ଅବତାର ସମସ୍ତ    ବିଷ୍ଣୁଙ୍କ ଅଂଶ କଳାମାତ୍ର
ସକଳ ସୁଲକ୍ଷଣ ପୂର୍ଣ୍ଣ    ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ
ଲୋକଙ୍କୁ ପ୍ରତ୍ୟେକ ଯୁଗରେ    ସୁଖୀ କରାନ୍ତି ଏ ବିଶ୍ୱରେ
ଯେ ନର ବିଶୁଦ୍ଧ ଚିତ୍ତରେ    ପ୍ରତ୍ୟହ ପ୍ରଭାତ ସନ୍ଧ୍ୟାରେ

କରନ୍ତି ନାମ ସଂକୀର୍ତ୍ତନ    ଅବତାର ଲୀଳା ଶ୍ରବଣ
ସଂସାର ଦୁଃଖରୁ ମୁକତି    ଲଭି ପାଏ ଚିର ପ୍ରଶାନ୍ତି
ଚିନ୍ମୟ ଭଗବାନଙ୍କର    ଏହି ଯେ ରୂପ ଅବତାର
ଗୁଣ ତ୍ରୟମୟୀ ମାୟାର    ମହ ଦାଦି ପଞ୍ଚ ତତ୍ତ୍ୱର

ବିକାର ଦ୍ୱାରା ବନିର୍ମିତ    ଜୀବର ଶରୀର ସହିତ
ସମ୍ବନ୍ଧ ସ୍ଥାପନ ନିମିତ୍ତ    ସର୍ବଦା ଅଟଇ କଳ୍ପିତ
ଯେପରି ମେଘ ଗଗନରେ    ପାର୍ଥିବ ରଜକୁ ବାୟୁରେ
କହନ୍ତି ଅଜ୍ଞ ବୁଦ୍ଧି ଜନ    ମାତ୍ର ସେ ପରସ୍ପର ଭିନ୍ନ

ସାଧକ ମାନେ ଯେ ପ୍ରକାରେ    ସାଧନା ଆରମ୍ଭ ବେଳରେ
ନିମିତ୍ତ ବିଭୂ ଉପାସନା    କରେ ସ୍ଥୂଳ ରୂପ କଳ୍ପନା
ଆଉ ଏକ ସୂକ୍ଷ୍ମ ଶରୀର    ଅଛି ଶ୍ରୀ ଭଗବାନଙ୍କର
ଯା ଯୋଗୁ ଜୀବ ପୁନ ପୁନ    ଭବେ ଲଭେ ଜନ୍ମ ମରଣ

ଏ ରୂପ ଅଦୃଷ୍ଟ ଅଶ୍ରୁତ    କେବା ପାଇବ ତାର ଅନ୍ତ
ସତ ଅସତ ମଧ୍ୟେ ଯେହି    ସମ୍ବନ୍ଧ ସର୍ବଦା ଅଛଇ
ତାହା ସିନା କାର୍ଯ୍ୟ ମାୟାର    ଭଗବାନଙ୍କ ସାକ୍ଷାତ କାର
ବଳେ ସେ ମାୟା ହେଲେ ଦୂର    ଜ୍ଞାନ ଜନ୍ମ ହୁଏ ଜୀବର

ଜୀବ ଆତ୍ମଜ୍ଞାନ ଲଭଇ    ନିଜର ସ୍ୱରୂପ ହେଜଇ
ଏହାକୁ ସର୍ବ ଜ୍ଞାନୀ ଜନ    କହିଥାନ୍ତି ବ୍ରହ୍ମ ଦର୍ଶନ
ଏହି ଦୈବୀ ମାୟା ଦୁସ୍ତର    ବିଭୂ କୃପାରେ ହେଲେ ଦୂର
ମିଳେ ପରଂ ବ୍ରହ୍ମ ଦର୍ଶନ    ପରମାନନ୍ଦ ଲାଭ ପୁନ

ଆତ୍ମ ସ୍ୱରୂପ ଅବଗତ ଭକତ ହୁଅଇ କୃତାର୍ଥ
ଅକର୍ତ୍ତା ଅଜ ସନାତନ ହୃଦୟ ପତି ଭଗବାନ
ତାଙ୍କର ଦିବ୍ୟ ମାୟାତୀତ ଜନମ କରମ ବିଚିତ୍ର
ତା ଲୀଳା କବି ଭକ୍ତଗଣ କରନ୍ତି ଉପଲବ୍ଧି ଜାଣ

ଅମୋଘ କର୍ମା ଭଗବାନ ବିଶ୍ୱ ସୃଷ୍ଟି ନାଶ ପାଳନ
କରି ମଧ୍ୟ ସ୍ୱୟଂ ସ୍ୱାଧୀନ ଷଡ ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ
ରହି ସର୍ବ ଜୀବ ଅନ୍ତରେ ରସାଦି ଆସ୍ୱାଦନ କରେ
ଯେପରି ଜ୍ଞାନ ହୀନ ଜନ ନର୍ତ୍ତକୀର ନୃତ୍ୟ ଦର୍ଶନ

କଲେ ବି କିଛି ନ ବୁଝଇ ସେପରି ଯାର ଭକ୍ତି ନାହିଁ
ସେ ଭଗବାନଙ୍କର ନାମ ରୂପ ଅମୃତ ଲୀଳାମାନ
ଯୁକ୍ତି ତର୍କାଦି କୌଶଳରେ ମନରେ କି ଅବା କଥାରେ
କେବେ ହେଁ ଜାଣି ନ ପାରଇ ତୁଚ୍ଛ ବିଷୟେ ମଜ୍ଜି ରହି

କୁଟ କପଟ ଯେ କାମନା ତେଜି ହୋଇ ତଦ୍‌ଗତମନା
ଗୋବିନ୍ଦ ପଙ୍କଜ ଚରଣ ଯେ କରେ ଭଜନ ଅର୍ଚ୍ଚନ
ସେ ଲୀଳା ଜାଣିବାକୁ କ୍ଷମ ଲଭେ ପରଂବ୍ରହ୍ମ ଦର୍ଶନ
ଏଣୁ ସଂସାରେ ଭକ୍ତ ଗଣ ଜୀବନ ଧନ୍ୟ ପୂର୍ଣ୍ଣକାମ

ସେମାନେ ଗୋବିନ୍ଦ ଚରଣ ଭକ୍ତିରେ କରି ଆରାଧନ
କଦାପି ଦୁଃଖ ପରିପୂର୍ଣ୍ଣ ସଂସାରେ ନ ଲଭନ୍ତି ଜନ୍ମ
ପରମ ଶାସ୍ତ୍ର ଭାଗବତ ପରମ ବ୍ରହ୍ମ ହିଁ ସାକ୍ଷାତ
ଜୀବର କଲ୍ୟାଣ ନିମିତ୍ତ ଶ୍ରୀ ବ୍ୟାସଦେବ ବିରଚିତ

ଶ୍ରୀକୃଷ୍ଣଙ୍କ ଲୀଳା ପ୍ରଧାନ ପରମ ଶାସ୍ତ୍ର ବୋଲି ଜାଣ
ପୂଜ୍ୟ ମହର୍ଷି ବେଦବ୍ୟାସ ବେଦ ପୁରାଣ ଇତିହାସ
ସର୍ବ ସାରକରି ଗ୍ରହଣ ରଚିଲେ ଏ ମହାପୁରାଣ
ନିଜ ପୁତ୍ର ଶୁକ ଦେବକୁ ପ୍ରଥମେ ପଢ଼ାଇ ଏହାକୁ

ରାଜା ପରୀକ୍ଷିତ ଯେ ବେଳରେ ମହର୍ଷି ମାନଙ୍କ ମେଳରେ
ପବିତ୍ର ଜାହ୍ନବୀ କୂଳରେ ଥିଲେ ପ୍ରାୟୋପ ବେଶନରେ
ଶୁକଦେବ ଏହି କାଳରେ ମହାପୁରାଣ ଶୁଣାଇଲେ
ଶ୍ରୀକୃଷ୍ଣ ପୁରୁଷ ପରମ ଧର୍ମଜ୍ଞାନ ସହ ସ୍ୱାଧାମ

ଗମନ୍ତେ ଏ କଳି ଯୁଗରେ ଧର୍ମ ନଷ୍ଟ ହେବା ବେଳରେ
ମହାପୁରାଣ ଭାଗବତ ସୂର୍ଯ୍ୟ ସମହେଲା ଉଦିତ
ଶ୍ରୀ ଶୁକ ମୁନିଙ୍କ କୃପାରୁ ଶୁଣିଛି ଯା ତାଙ୍କ ମୁଖରୁ
ତାହା କରାଇବି ଶ୍ରବଣ ସକଳେ ହୁଅ ସାବଧାନ

କହଇ ଦାଶ ଧନେଶ୍ୱର ସକଳ ଧର୍ମ ଶାସ୍ତ୍ର ସାର
ଏ ଭାଗବତ ପୁରାଣ ସୁଜନେ ମନ ଦେଇ ଶୁଣ
ତୁଟିବ ଏଭବ ବନ୍ଧନ ମିଳିବ ବୈକୁଣ୍ଠରେ ସ୍ଥାନ

*ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେନୈମିଷିୟୋପାଖ୍ୟାନେ ଶ୍ରୀଭଗବତନୁଭାବ ବର୍ଣ୍ଣନଂ ନାମ ତୃତୀୟୋଽଧ୍ୟାୟ*

********

## ଚତୁର୍ଥ ଅଧ୍ୟାୟ

### ବ୍ୟାସ ଉବାଚ

ସୂତ ଏହି କଥା ସମସ୍ତ କହିଣ ହେବାରୁ ବିରତ
ନୈମିଷା ଶ୍ରମ କୁଳପତି ସେ ବୟୋ ବୃଦ୍ଧ ମହାମତି
ଋକ ବେଦର ଅଧ୍ୟାପକ ମୁନିବର ବିଜ୍ଞ ଶୌନକ
ସୂତାଙ୍କୁ ଅତି ଆଦରରେ ପ୍ରଶଂସା କରିଣ ପୁଛିଲେ

### ଶୌନକ ଉବାଚ

ହେ ସୂତ ମହା ଭାଗ୍ୟବାନ ଆପଣ ପ୍ରବକ୍ତା ପ୍ରଧାନ
ସେ ଭଗବାନ ଶୁକ ମୁନି ଶ୍ରୀ ଭାଗବତ ପୁଣ୍ୟ ବାଣୀ
ଯା କହିଲେ ଆପଣଙ୍କୁ ବିସ୍ତାରି କହନ୍ତୁ ଆମକୁ
କେଉଁ ଯୁଗେ କି କାରଣରେ କେଉଁ ସ୍ଥାନେ କା ପ୍ରେରଣାରେ

ଭାଗବତ ହେଲା ରଚନା ବିସ୍ତାରି କରନ୍ତୁ ବର୍ଣ୍ଣନା
ସେ ବ୍ୟାସ ଦେବଙ୍କ କୁମାର ସମଦରଶୀ ଯୋଗେଶ୍ୱର
ଉଲଗ୍ନ ଶୁକ ଯେବେଳରେ ଯାଉଥିଲେ ବନ ପଥରେ
ବ୍ୟାସ ମୁନି ପୁତ୍ର ସ୍ନେହରେ ଧାଉଁଥିଲେ ତାଙ୍କ ପଛରେ

ଦେବ କନ୍ୟା ସରୋବରରେ କ୍ରୀଡା କରୁଥିଲେ ଜଳରେ
ଯୁବା ଶୁକଙ୍କୁ ଉପସ୍ଥିତ ଦେଖି ନ ହୋଇଲେ ଲଜ୍ଜିତ
ବ୍ୟାସଙ୍କୁ ଦେଖିଣ ତକ୍ଷଣ ପରିଧାନ କଲେ ବସନ
ତେଣୁ ବ୍ୟାସ ହୋଇ ଉଦ୍‌ବିଗ୍ନ ପୁଚ୍ଛିଲେ ଏହାର କାରଣ

କହିଲେ ସକଳ ଯୁବତୀ ଆମେ ରସଜ୍ଞା କଳାବତୀ
ଦେଖି ନାରୀ ବା ପୁରୁଷକୁ ଜାଣିପାରୁ ମନୋଭାବକୁ
ଯୁବକ ଏ ତୁମ କୁମାର ନାହିଁ ତାଙ୍କ ଚିତ୍ତେ ସଂସାର
ନାରୀ ପୁରୁଷ ନ ଜାଣନ୍ତି ପରଂ ବ୍ରହ୍ମଂରେ ସ୍ଥିର ମତି

ଆପଣ ବୃଦ୍ଧ ହେଲେ ସୁଦ୍ଧା ସଂସାର ପ୍ରତି ଅଛି ଶ୍ରଦ୍ଧା
ଏପରି କହି ନାରୀଗଣ କରିଲେ ସ୍ୱପୁରେ ଗମନ
ଯାହାଙ୍କୁ ପୁରବାଣୀ ଜନ ଭାବନ୍ତି ମୂକ ଜଡ଼ ସମ
ସେ ଶୁକ ମୁନି ବା କିପରି କୁରୁ ଜାଙ୍ଗଳ ହୋଇ ପାରି

ମିଳିଲେ ହସ୍ତିନା ପୁରରେ ପରୀକ୍ଷିତ ରାଜସଭାରେ
ପବିତ୍ର ପଣ୍ଡୁ ବଂଶ ଜାତ ରାଜର୍ଷି ପରୀକ୍ଷ ସହିତ
କିପରି କରିଲେ ଆଳାପ ଯହୁ ପବିତ୍ର ଭାଗବତ
ସଂହିତା ହେଲା ପ୍ରକାଶିତ ବିସ୍ତାରି କହନ୍ତୁ ହେ ସୂତ

ଯେ ଗୋ ଦୋହ ମାତ୍ର ରହି ଗୃହୀଙ୍କୁ ତୀର୍ଥ ଫଳଦେଇ
କରନ୍ତି ଆଶ୍ରମେ ଗମନ ଯେ ଭଗବାନ ଧ୍ୟାନ ମଗ୍ନ
ହେ ସୂତ ଅଭିମନ୍ୟୁ ସୁତ ଭକତ ଶ୍ରେଷ୍ଠ ପରୀକ୍ଷିତ
ତାଙ୍କ ଲୌକିକା ଜନ୍ମ କର୍ମ ପ୍ରକାଶ କରନ୍ତୁ ଆପଣ

ପଣ୍ଡୁ କୁଳ ମାନ ବର୍ଦ୍ଧନ ସମ୍ରାଟ ଉତ୍ତରା ନନ୍ଦନ
ସକଳ ସୁଖର ଆସ୍ୱାଦ ତ୍ୟାଗ କରି ରାଜ ସଂପଦ
କି ପାଇଁ ଜାହ୍ନବୀ କୂଳରେ ପ୍ରାୟୋପ ବେଶନ କରିଲେ
ଶତ୍ରୁଏ ନିଜ ଶୁଭଚିନ୍ତନ୍ତି ଯାହାଙ୍କ ଚରଣ ସେବନ୍ତି

ଯେ ସଦା ପର ଉପକାରେ ଶରୀର ଧରନ୍ତି ସଂସାରେ
ସେ ରାଜା ଯୁବା ବୟସରେ କିମ୍ବା ପ୍ରାଣତ୍ୟାଗ ରଚିଲେ
ସେ ସଦାପର ଉପକାରେ ଜୀବନ ଧରଇ ସଂସାରେ
ଭକ୍ତ ଶ୍ରେଷ୍ଠ ସେ ପରୀକ୍ଷିତ କିମ୍ପାଇ ବୈରାଗ୍ୟ ବଶତଃ

କଲେ ଶରୀର ପରିତ୍ୟାଗ କହନ୍ତୁ ସୂତ ମହାଭାଗ
ଆହେ ସୂତ ବେଦ ବ୍ୟତୀତ ଆପଣ ଜାଣନ୍ତି ସମସ୍ତ
ଆମର ସକଳର ପ୍ରଶ୍ନର ଦିଅନ୍ତୁ ଯଥାର୍ଥ ଉତ୍ତର

### ସୂତ ଉବାଚ

ତ୍ରେତୟା ଯୁଗର ଶେଷରେ ଦ୍ୱାପର ତୃତୀୟ ଭାଗରେ
ଭଗବାନଙ୍କ କଳାଶଂରେ ପରାଶରଙ୍କ ଔରସରେ
ସତ୍ୟବତୀ ଗର୍ଭୁ ଜନମ ହୋଇଲେ ବ୍ୟାସ ଦ୍ୱୈପାୟନ
ଦିନେ ବ୍ୟାସ ପ୍ରାତଃ କାଳରେ ପୂତ ସରସ୍ୱତୀ ଜଳରେ

ସ୍ନାନାଦି କୃତ୍ୟର ଶେଷରେ ବସିଲେ ନିର୍ଜନ ସ୍ଥାନରେ
ଏବେଳେ ଦେଖିଲେ ନେତ୍ରରେ କାଳର ଅଲକ୍ଷ୍ୟ ଗତିରେ
ପ୍ରତି ଯୁଗରେ ଯୁଗଧର୍ମ ଘଟିବା ହେତୁ ବ୍ୟତିକ୍ରମ
ଦୈହିକ ମାନସିକ ଶକ୍ତି କ୍ଷୀଣ ହୁଅଇ ନିତି ନିତି

ସର୍ବେ ହୋଇବେ ଲୋଭଗ୍ରସ୍ତ ମନ୍ଦ ମତି ଅତି କୁତ୍ସିତ
ସ୍ୱଳ୍ପାୟୁ ସୌଭାଗୀ ବିହୀନ ଦୁଃଖରେ କାଟିବେ ଜୀବନ
ବର୍ଣ୍ଣାଶ୍ରମବାସୀ ବ୍ୟକ୍ତିର ହିତହୋଇବ କି ପ୍ରକାର
ଏମନ୍ତ ଦୁଶ୍ଚିନ୍ତା ବ୍ୟାକୁଳ ହୋଇଲେ ସତ୍ୟବତୀ ବାଳ

ଚତୁର୍ହୋତ୍ର ବୈଦିକ କର୍ମ ସାଧିବ ଜନତା କଲ୍ୟାଣ
ଏହା ବିଚାରି ବ୍ୟାସ ଦେବ ବେଦକୁ କଲେ ଚାରିଭାଗ
ଇତିହାସ ଆଦି ପୁରାଣ ହୋଇଲା ଯେ ବେଦ ପଞ୍ଚମ
ପୈଲ ଋଷି ଋକବେଦରେ ଜୈମିନି ମହର୍ଷି ସାମରେ

ଯଜୁରେ ବଇଶଂପାୟନ ସୁମନ୍ତ ଋଷି ଅଥର୍ବଣ
କରିଲେ କୃତିତ୍ୱ ଅର୍ଜନ ମୋର ପିତା ଲୋମ ହର୍ଷଣ
ଇତିହାସ ପୁରାଣାଦିରେ ପାରଦର୍ଶିତା ଲାଭ କଲେ
ପୌଲସ୍ତୀ ଆଦି ଋଷିମାନେ ସ୍ୱଶିଷ୍ୟେ ପରଂପରା କ୍ରମେ

ଗୃହୀତ ବେଦମାନଙ୍କରେ ଶାଖା ପ୍ରଶାଖା ଭାଗକଲେ
ପୂର୍ବେ ମେଧାବୀ ବିଜ୍ଞଜନେ ବେଦକୁ ରଖୁଥିଲେ ମନେ
ସ୍ୱଳ୍ପ ବୁଦ୍ଧି ଜନେ ଯେପରି ବେଦକୁ ବୁଝିବେ ବିଚାରି
ବ୍ୟାସଦେବ ଦୀନ ବତ୍ସଳ ବ୍ୟବସ୍ଥା କଲେ ଏପ୍ରକାର

ସ୍ତ୍ରୀ ଶୂଦ୍ର ପତିତ ଜନର ନାହିଁ ବେଦର ଅଧିକାର
ବେଦ ବିମୁଖ ଜନତାର କଲ୍ୟାଣ ହେବ କିପ୍ରକାର
ଭାବି ରଚିଲେ ବେଦ ବ୍ୟାସ ମହାଭାରତ ଇତିହାସ
ହେ ଦ୍ୱିଜ ଗଣ ଏବେ ଶୁଣ ଯେ ବ୍ୟାସ କୃଷ୍ଣ ଦ୍ୱୈପାୟାନ

ସଦା ସର୍ବାନ୍ତ କରଣରେ ପ୍ରାଣୀଙ୍କ ହୀତ ସାଧନରେ
ରହିଲେ ବି ସଦା ନିରତ ହୃଦନୋହିଲା ପରିତୃପ୍ତ
ଧର୍ମ ନୀତିଜ୍ଞ ଧର୍ମ ପ୍ରାଣ ଧାର୍ମିକ ସତ୍ୟ ପରାୟଣ
ବ୍ୟାସ ଅସନ୍ତୁଷ୍ଟ ଚିତ୍ତରେ ପବିତ୍ର ସରସ୍ୱତୀ ତୀରେ

ବସିଣ ନିର୍ଜନ ସ୍ଥାନରେ ଏମନ୍ତ ଭାବିଲେ ଚିତ୍ତରେ
ମୁଁ ନିଷ୍ଠା ବ୍ରତ ଆଚରିଲି ବେଦ ଅଗ୍ନି ଗୁରୁ ପୂଜିଲି
ଶାସ୍ତ୍ରର ଯେ ଅନୁଶାସନ ନିଷ୍କପଟେ କଲି ପାଳନ
ସ୍ତ୍ରୀ ଶୂଦ୍ରେ ପତିତ ଜନଙ୍କୁ ଧର୍ମ ପଥ ଦେଖାଇବାକୁ

ବିରଚିଲି ମହାଭାରତ ଦେହାଭିମାନୀ ମୋର ଚିତ୍ତ
ଶ୍ରୀଭଗବାନଙ୍କ ସହିତ ସମ୍ବନ୍ଧ ନୋହିଲା ସ୍ଥାପିତ
ପରିପୂର୍ଣ୍ଣ ବ୍ରହ୍ମତେଜରେ ତଥାପି କେଉଁ କାରଣରେ
ମୋ ଚିତ୍ତେ ଶାନ୍ତି ନ ଜନ୍ମଇ ପ୍ରାଣ ମୋ ବ୍ୟଥିତ ହୁଅଇ

ତେବେ ମୋ ରଚିତ ଶାସ୍ତ୍ରରେ କିଅବା ଯଥାର୍ଥ ଭାବରେ
ଭକତ ଭଗବାନଙ୍କର ଆଦରଣୀୟ ବସ୍ତୁସାର
ହୋଇ ନାହିଁ କି ନିରୂପିତ ଭକ୍ତି ଜ୍ଞାନର ଗୂଢ଼ତତ୍ତ୍ୱ
ଶ୍ରୀବ୍ୟାସ ଦେବ ଏହିପରି ନିଜକୁ ନ୍ୟୂନ ମନେକରି

ବ୍ୟଥିତ ହେବା ସମୟରେ ପୁତ ସରସ୍ୱତୀ ତୀରରେ
ଦେବ ଦାନବ ପ୍ରପୂଜିତ ନାରଦ ହେଲେ ଉପସ୍ଥିତ
ସହସାତାଙ୍କ ଆଗମନ ଦେଖି ସତ୍ୟବତୀ ନନ୍ଦନ
ଆନନ୍ଦେ ଆସନୁ ଉଠିଲେ ବିଧିରେ ଅଭ୍ୟର୍ଥନା କଲେ

ଏ ସୂତ ଶୌନକ ସମ୍ବାଦ ବିଷୟା ବିଷର ଅଗଦ
ସୁଜନେ କରନ୍ତୁ ସେବନ ତୁଟିବ ସଂସାର ବନ୍ଧନ
କହଇ ଦାଶ ଧନେଶ୍ୱର ସୁଜନେ ଶ୍ରୀହରି ସୁମର
ଦୟା କରିବେ ନରହରି ଭବସାଗରୁ ହେବପାରି

**ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ନୈମିଷୀୟ ଉପାଖ୍ୟାନେ ନାମ ଚତୁର୍ଥୋଽଧ୍ୟାୟ ।**

*******

# ପଞ୍ଚମ ଅଧ୍ୟାୟ

### ସୂତ ଉବାଚ

ହରଷେ ଶଉନକ ଆଗେ ସୂତ କରନ୍ତି ଅନୁରାଗେ
ନାରଦ ମୁନି ଏହାପରେ ବୀଣା ଧରି ନିଜ ହସ୍ତରେ
ଆନନ୍ଦେ ରାମ ନାମ ଗାଇ ବସିଲେ ଆସନରେ ଯାଇ
ସମାସୀନ ନିଜ ପାଖରେ ବ୍ୟାସକୁ ଆନନ୍ଦେ କହିଲେ

### ନାରଦ ଉବାଚ

ଶ୍ରୀ ପରାଶରଙ୍କ ନନ୍ଦନ ହେ ବ୍ୟାସ ତୁମେ ଭାଗ୍ୟବାନ
ଶରୀର ଚିତ୍ତ ଅଭିମାନୀ ଆତ୍ମାସହିତ ମନଘେନି
ଆପଣ ସୁଖେ ଅଛନ୍ତିତ ଆଶ୍ରମେ ସର୍ବ କୁଶଳତ
ଜିଜ୍ଞାସା ସକଳ ଧର୍ମର ପୂର୍ଣ୍ଣ ହୋଇଛି ତ ତୁମର

ସର୍ବ ଧର୍ମାର୍ଥ ପରିପୂର୍ଣ୍ଣ ମହାଭାରତ ପ୍ରଣୟନ
ପରମ ବ୍ରହ୍ମ ସନାତନ ବିଚାର ଅନୁଭୂତି ମାନ
ଥିଲେ ବି କାହିଁ କି ଆପଣ ନିଜକୁ ଭାବି ଅସପୂର୍ଣ୍ଣ
ଅପଥା କରୁଛ ଶୋଚନା ହେ ବେଦ ବ୍ୟାସ ମହାମନ୍ୟ

### ବ୍ୟାସ ଉବାଚ

ବୋଲନ୍ତି ମୁନି ବ୍ୟାସ ଦେବ ଶୁଣହେ ଦେବର୍ଷି ନାରଦ
ଯା ସବୁ ପୁଛିଲେ ଆପଣ ପ୍ରକୃତ ଅଛି ମୋର ଜ୍ଞାନ
ତଥାପି ଜାଣି ପାରୁ ନାହିଁ ଚିତ୍ତରେ ବିଷାଦ କିଂପାଇ
ଚିତ୍ତ ବିଷାଦର କାରଣ ତୁମକୁ କରଇ ମୁଁ ପ୍ରଶ୍ନ

ହେଲେ ବି ନିଃସଙ୍ଗ ନିର୍ଗୁଣ ସଙ୍କଳ୍ପ ମାତ୍ରେ ଭଗବାନ
ତ୍ରିଗୁଣେ ବ୍ରହ୍ମାଣ୍ଡ ସୃଜନ୍ତି ସଂହାର ପାଳନ କରନ୍ତି
ନିୟନ୍ତା କାର୍ଯ୍ୟ କାରଣର ପ୍ରଭୁଶ୍ରୀ ନାରାୟଣଙ୍କର
ମୁଁ ସଦା ଅର୍ଚ୍ଚନା ନିରତ କିଛି ନାହିଁ ତବ ଅଜ୍ଞାତ

ଆଦିତ୍ୟ ସମାନ ଆପଣ  କରନ୍ତି ତ୍ରିଲୋକ ଭ୍ରମଣ
ଆପଣ ଯୋଗ ପ୍ରଭାବରେ  ପ୍ରାଣୀର ଅନ୍ତଃ କରଣରେ
ପ୍ରବେଶି ପ୍ରାଣ ବାୟୁସମ  ଜାଣନ୍ତି ମନୋଭାବମାନ
ଆତ୍ମା ପରି ପ୍ରାଣୀ ଗଣର  ସାକ୍ଷୀ ରୂପେ କରି ବିହାର

ମୁଁ ବ୍ରହ୍ମନିଷ୍ଠ ଯୋଗବଳେ  ବ୍ରତ ଅଧ୍ୟୟନ ବ୍ୟାପାରେ
ବେଦ ପାରଗ ଚିତ୍ତଶୁଦ୍ଧ  କିଂପା ମୋ ଅପୂର୍ଣ୍ଣତା ବୋଧ
ଏହାର ସକଳ କାରଣ  ବିଚାରି କହନ୍ତୁ ଆପଣ

### ନାରଦ ଉବାଚ

ବୋଲନ୍ତି ବିଧାତା ନନ୍ଦନ  ହେ ବ୍ୟାସ ଶୁଣ ତା କାରଣ
କୌଣସି ଗ୍ରନ୍ଥରେ ଆପଣ  ଶ୍ରୀକୃଷ୍ଣ ଦିବ୍ୟ ଲୀଳାମାନ
କରିନଥିବାରୁ ବର୍ଣ୍ଣନ  ସଦା ଅତୃପ୍ତ ତବ ମନ
ଆହେ ମୁନିବର ଆପଣ  ରଚିତ ଗ୍ରନ୍ଥେ ଅର୍ଥ କାମ

ଧର୍ମ ମୋକ୍ଷ ଆଦି ବର୍ଣ୍ଣନ  କରିଛ ଯେପରି କୀର୍ତ୍ତନ
ସେପରି ଶ୍ରୀକୃଷ୍ଣ ମହିମା  ନାହିଁ କିଛି ତହିଁ ବର୍ଣ୍ଣନା
ବିବିଧ ରସ ଅଳଙ୍କାରେ  ମଣ୍ଡିତ ଗ୍ରନ୍ଥମାନଙ୍କରେ
ଶ୍ରୀଗୋବିନ୍ଦ ଯଶ କୀର୍ତ୍ତନ  ନଥିଲେ ତହିଁ ସାଧୁଜନ

କଦାପି ତୋଷ ନ ଲଭଇ  ତାହାକୁକାକ ତୀର୍ଥ କହି
ଭକ୍ତ ମାନସ ହଂସପାଇଁ  କେବେ ସୁଖକର ନୁହଁଇ
ଭଗବାନଙ୍କ ଯଶ ନାମ  ଶ୍ରବଣ କୀର୍ତ୍ତନ ଗାୟନ
ଭକ୍ତ ମାନସ ହଂସ ପାଇଁ  କେବେ ସୁଖକର ନୁହଁଇ

ଭଗବାନଙ୍କ ଯଶ ନାମ  ଶ୍ରବଣ କୀର୍ତ୍ତନ ଗାୟନ
କରନ୍ତି ସଦା ସାଧୁ ଜନ  ଭକ୍ତି ରସରେ ନିମଗନ
ପ୍ରତି ଶ୍ଳୋକରେ ଯେ ଶାସ୍ତ୍ରର  ଜଗଦୀଶ ଶ୍ରୀହରିଙ୍କର
ଅନନ୍ତ ନାମ ଗୁଣଥାଏ  ତହିଁ ଅପଶବ୍ଦ ଥିଲେ ହେଁ

ସେହି ବଚନ ଶ୍ରବଣରେ  ଜନଗଣର ପାପ ହରେ
ସକଳ ଉପାଧି ବିହୀନ  ସୁନିର୍ମଳ ଯେ ବ୍ରହ୍ମଜ୍ଞାନ
ଦୁଃଖଦିଅଇ କାମ୍ୟ କର୍ମ  ଭବ ବନ୍ଧନରେ କାରଣ
ପୁଣି ସକଳ କର୍ମ ମାନ  ଈଶ୍ୱରେ ନକଲେ ଅର୍ପଣ

ହୁଅଇ ଅକାରଣ ସିନା  ଶ୍ରୀ ନାରାୟଣ ଭକ୍ତି ବିନା
ହେ ବ୍ୟାସ ମହା ଭାଗ୍ୟବାନ  ତତ୍ତ୍ୱଜ୍ଞ ସତ୍ୟ ପରାୟଣ
ଶମାଦି ବ୍ରତକୁ ପାଳିଣ  ନିର୍ମଳ ଯଶସ୍ୱୀ ଆପଣ
ଅଖିଳ ବିଶ୍ୱ ଜୀବଗଣ  ଘୋର ଭବ ବନ୍ଧ ଶୋଚନ

କାରଣେ ଏକାଗ୍ର ଚିତ୍ତରେ  ଗୋବିନ୍ଦ ଲୀଳା ବିଷୟରେ
ବାରମ୍ବାର କରି ସ୍ମରଣ  ପ୍ରକାଶ କରନ୍ତୁ ଆପଣ
ଯଦି ଆପଣ ବୁଦ୍ଧି ହୁଡି  କୃଷ୍ଣଲୀଳା କୀର୍ତ୍ତନ ଛାଡି
କଲେ ରୂପନାମ ବର୍ଣ୍ଣନ  ତେବେ ତହିଁରେ ମଜ୍ଜି ତୁମ

ଭ୍ରମିବ ଏ ଚପଳ ମନ  ବାୟୁବେଗରେ ନୌକାସମ
ରସ ଆସ୍ୱାଦ ନ ମିଳିବ  କେବଳ ବିପଦ ଘଟିବ
ମାନବ ପ୍ରକୃତି ସତତ  ବିଷୟ ବାସନା ଜଡିତ
ବିଚରିତ ଧର୍ମ ଶାସ୍ତ୍ରରେ  କାମ୍ୟ କରମ ବିଷୟରେ

ଘୃଣ୍ୟ ପଶୁ ବଧ କର୍ମକୁ  ନିନ୍ଦିତ ବିଧି ବିଧାନକୁ
ଶାସ୍ତ୍ରର ଉପଦେଶ ଚିନ୍ତି  ଜନତା ସଦା ପାଳୁଛନ୍ତି
ଏହାତ ଏକ ବ୍ୟତିକ୍ରମ  ଶତଚେଷ୍ଟାରେ ବର୍ତ୍ତମାନ
ଏ ଦୁର୍ଗତିକୁ ଆପଣ  କରି ନ ପାରିବେ ବାରଣ

ଭୋଗନିଃସ୍ପୃହ ଭକ୍ତଗଣ  ଶ୍ରୀ ଭଗବାନଙ୍କ ଚରଣ
ସେବା ଆନନ୍ଦ ଲାଭେ କ୍ଷମ  ତେଣୁ ହେ ବ୍ୟାସଦେବ ଶୁଣ
ବିବଶ ତ୍ରିଗୁଣ ମାୟାରେ  ସଦା ଭ୍ରମନ୍ତି ଯେଉଁ ନରେ
ତାଙ୍କ ହିତ ପାଇଁ ଆପଣ  କର କୃଷ୍ଣଲୀଳା ବର୍ଣ୍ଣନ

ଯଦି ସ୍ୱ ଧର୍ମ ତେଜି କେହି  ଶ୍ରୀକୃଷ୍ଣ ଚରଣ ସେବଇ
ଯେବା କୌଣସି କାରଣରୁ  ଭ୍ରଷ୍ଟ ହୋଇଲେ ଭଜନରୁ
ତାହାର ଅମଙ୍ଗଳ ନାହିଁ  ଅନ୍ତେ ସେ ବୈକୁଣ୍ଠ ଲଭଇ
ଭଜନ ହୀନ ମୂଢ଼ଜନ  କି ଲାଭ ସ୍ୱଧର୍ମ ପାଳନ

ବ୍ରହ୍ମ କୀଟ ଯୋନି ପର୍ଯ୍ୟନ୍ତ  ଭ୍ରମଣ କଲେନି ଏକାନ୍ତ
କେବେ ହେଁ ଯାହା ନ ମିଳଇ  ସେହି ଭଜନାନନ୍ଦ ପାଇଁ
ତେଣୁ ବିବେକ ବନ୍ତ ଜନ  ଯତ୍ନ କରିବା ପ୍ରୟୋଜନ
ବୈଷୟିର ସୁଖର ସମସ୍ତ  ପ୍ରାରବ୍ଧ କରମ ବଶତ

ଯଥା କାଳେ ବିନାଚେଷ୍ଟାରେ ମିଳଇ ତ ସବୁ ସ୍ଥାନରେ
ହେ ବ୍ୟାସ ହେ ଏବେ ଶୁଣ ମୁକୁନ୍ଦ ପଦ ସେବୀ ଜନ
କୌଣସି କାରଣ ବଶତ ହେଲେ ବି ସାଧନା ବିଚ୍ୟୁତ
ତୁଚ୍ଛ ସଂସାର ଭୋଗ ପ୍ରତି କେବେ ନଜନ୍ମେ ତାଙ୍କ ପ୍ରୀତି

ଗୋବିନ୍ଦ ଅର୍ଚ୍ଚନ ଭଜନ ଭକ୍ତି ରସ କରି ସ୍ମରଣ
ସେ ଦିବ୍ୟାନନ୍ଦ ତ୍ୟାଗ ପାଇଁ ସେ କେବେ ସ୍ପୃହା ନକରଇ
ଏ ବିଶ୍ୱ ସ୍ୱୟଂ ଭଗବାନ ବିଶ୍ୱରୁ ହୋଇଲେ ଭିନ୍ନ
ବିଶ୍ୱ ତାଙ୍କଠାରୁ ଅଭିନ୍ନ ସେ ଏକ ଅଦ୍ୱିତୀୟ ପୂର୍ଣ୍ଣ

ସୃଷ୍ଟି ସ୍ଥିତି ଲୟ କାରଣ ଏହାତ ଜାଣନ୍ତି ଆପଣ
ମୁଁ କେବଳ ଏ ବିଷୟରେ ପଥ କହିଲି ସଂକ୍ଷେପରେ
ହେ ବ୍ୟାସ ଅମୋଘ ଦର୍ଶନ ମୋ କଥା ସାବଧାନେ ଶୁଣ
ପରାତ୍ମା ପୁରୁଷ ପୁରାଣ ଅଜ ଅନନ୍ତ ଭଗବାନ

ହେଲେ ବି ଜନମ ରହିତ ଜଗତ ମଙ୍ଗଳ ନିମିତ୍ତ
ନିଜର ଅଂଶ କଳାନେଇ ଯୁଗେ ଯୁଗେ ଅବତରଇ
ତାଙ୍କ ଜନମ ଲୀଳାଗୁଣ ଶାସ୍ତ୍ରରେ କରନ୍ତୁ ବର୍ଣ୍ଣନ
ଗୋବିନ୍ଦ ଲୀଳାକୁ କୀର୍ତ୍ତନ ତପସ୍ୟା ବେଦ ଅଧ୍ୟୟନ

ଯଜ୍ଞ ମନ୍ତ୍ର ପାଠ ଜ୍ଞାନର ତଥା ନାନା ଧର୍ମ କର୍ମର
ସୁଫଳ ତତ୍ତ୍ୱ ଦର୍ଶୀଗଣ କରିଅଛନ୍ତି ନିରୂପଣ
ହେ ବ୍ୟାସ ଅତୀତ କଳ୍ପରେ ମୁଁ ନିଜେ ପୂର୍ବ ଜନମରେ
ଜଣେ ବେଦଜ୍ଞାନୀ ବ୍ରାହ୍ମଣ ଦାସୀ ଗର୍ଭୁ ହେଲି ଜନମ

ମୁନିଏ ହୋଇ ଏକ ମେଳ କଟାଇବାକୁ ବର୍ଷା କାଳ
ମିଳିଲେ ଆମର ଗୃହରେ ଏ ଘୋର ଦୁର୍ଦ୍ଦିନ ବେଳାରେ
ମୀତ-ଭାଷୀ ସେବା ନିରତ ଖେଳା ଲୀଳାରେ ଅନାସକ୍ତ
ସଂଯତେନ୍ଦ୍ରିୟ ଆଜ୍ଞାବହ ମତେ ଦେଖି ମୁନି ସମୂହ

ସନ୍ତୋଷ ଲଭି ମୋ ସେବାରେ କୃପା କରିଲେ ମୋ ଉପରେ
ତାଙ୍କ କୃପାରୁ ଆଜ ମୁହିଁ ଦେବର୍ଷି ଯେ ହୋଇ ଅଛଇ
ଦିନେକ ମୁନିମାନଙ୍କର ଆଦେଶ ମାତ୍ରେ ମୁ ସତ୍ୱର
ଭିକ୍ଷାର ପାତ୍ରରେ ସଂଲଗ୍ନ ଉଚ୍ଛିଷ୍ଟ କରିଲି ଭୋଜନ

ଏପରି ଭୁଂଜି ପ୍ରତିଦିନ ବିଶୁଦ୍ଧ ହେଲା ଚିତ୍ତ ମମ
ସେହି ବ୍ରାହ୍ମଣଙ୍କ ଧର୍ମରେ ରୁଚି ଜନ୍ମିଲା ଧୀରେ ଧୀରେ
ସେ ବିପ୍ରଗଣ ପ୍ରତିଦିନ କରନ୍ତି କୃଷ୍ଣ ଲୀଳାଗାନ
ଶ୍ରଦ୍ଧା ଭକ୍ତିରେ ପ୍ରତିକ୍ଷଣ ସେହି ଲୀଳା କରି ଶ୍ରବଣ

ମୋ ହୃଦେ ସେହି ଲୀଳା ପ୍ରତି ଜନ୍ମିଲା ଅତିଶୟ ପ୍ରୀତି
କ୍ରମେ ଆବିର୍ଭାବ ଭାବର ହୁଅନ୍ତେ ଚିତ୍ତ ବୃତ୍ତି ମୋର
ଶ୍ରୀକୃଷ୍ଣ ଚରଣେ ମଜ୍ଜିଲା ବୁଦ୍ଧି ମୋ ନିର୍ମଳ ହୋଇଲା
ଏହି ସ୍ଥୁଳ ସୂକ୍ଷ୍ମ ଶରୀର କେବଳ ଶ୍ରୀ ଗୋବିନ୍ଦଙ୍କର

ସେବାରେ କରି ସମର୍ପଣ ଧନ୍ୟ ହେଲା ମୋର ଜୀବନ
ଏପରି ବର୍ଷା ଶରତରେ ନିରନ୍ତର ଚାରିମାସରେ
ମୁଖରୁ ମୁନିମାନଙ୍କର ସର୍ବ ଦୁଃଖ ହାରୀ କୃଷ୍ଣର
ପୁଣ୍ୟ ଗାଥା କରି ଶ୍ରବଣ ହେଲା ଦୃଢ଼ ଭକ୍ତି ଜନମ

ତ୍ରିଗୁଣ ଲଭିଲା ବିନାଶ ହୃଦୟ ହୋଇଲା ସରସ
ମତେ ନିତାନ୍ତ ଅନୁରକ୍ତ ବିନୟୀ ନମ୍ର ଶୁଦ୍ଧଚିତ୍ତ
ଜିତ ଇନ୍ଦ୍ରିୟ ଶ୍ରଦ୍ଧାବାନ ଆଜ୍ଞାଧୀନ କରି ଦର୍ଶନ
ଚତୁର୍ମାସ୍ୟା ବ୍ରତଶେଷରେ ଗୃହରୁ ମେଲାଣି ବେଳରେ

ସଦୟ ହୋଇ ମୁନିଗଣ ଭକ୍ତି ତତ୍ତ୍ୱ ମୁଖ୍ୟ ପରମ
ଉପଦେଶ କଲେ ପ୍ରଦାନ କରି ଭକ୍ତି ଯୋଗ ସାଧନ
ସେ ମାୟାଧୀଶ ଭଗବାନ କୃପା ଶକତିର ମହାତ୍ମ୍ୟ
ବୈଭବ ଜ୍ଞାନ ହେଲା ମୋର ସେ ସର୍ବ ବ୍ୟାପୀ ସର୍ବେଶ୍ୱର

ଶ୍ରୀ ଗୋବିନ୍ଦ ଚରଣରେ ସକଳ କର୍ମ ଅର୍ପଣରେ
ତ୍ରିତାପ ରୋଗର ବିନାଶ ଏହା ମହୌଷଧି ସଦୃଶ
ସାବଧାନେ ଶୁଣ ସୁବ୍ରତ ଭୋଜନ କଲେ ଯେ ପଦାର୍ଥ
ଜୀବର ରୋଗ ଜନମଇ ଚିକିତ୍ସା ଶାସ୍ତ୍ର ମତେ ସେହି

ସେ ଦ୍ରବ୍ୟ କଲେ ବ୍ୟବହାର ରୋଗକି ହେଇ ଯାଏ ଦୂର
ସଂସାର ବନ୍ଧନ କାରଣ କର୍ମ କଲେ ହରି ଅର୍ପଣ
ସେ କର୍ମ ହିଁ କର୍ମ ବନ୍ଧନ କ୍ଷୟ କରଇ ତତ୍କ୍ଷଣ
ଶ୍ରୀକୃଷ୍ଣାର୍ପିତ କର୍ମାଧୀନ ଭକତି ଯୋଗ ଯୁକ୍ତ ଜ୍ଞାନ

କୃଷ୍ଣ ପ୍ରୀତିରେ କଲେ କର୍ମ ଲାଭ ହୁଅ ଆତ୍ମ ଜ୍ଞାନ
ନିଜର ସକଳ କରମ କଲେ ଶ୍ରୀକୃଷ୍ଣେ ସମର୍ପଣ
ନାମ ଗୁଣାଦି ସଂକୀର୍ତ୍ତନ କୃତାର୍ଥ ହୁଅଇ ଜୀବନ
ସ୍ୱୟଂ ପ୍ରକାଶ ଭଗବାନ ଯେ ଷଡ଼ ଐଶ୍ୱର୍ଯ୍ୟ ସଂପନ୍ନ

ଶ୍ରୀ ବାସୁଦେବ ସଙ୍କର୍ଷଣ ଅନିରୁଦ୍ଧ ପୁଣି ପ୍ରଦ୍ୟୁମ୍ନ
ଚରଣରେ ମୋର ପ୍ରଣାମ କରନ୍ତୁ ଦୁର୍ଗତି ହରଣ
ହେ ବ୍ରାହ୍ମଣ ବେଦବ୍ୟାସ ଶ୍ରୀକୃଷ୍ଣ ପରମ ପୁରୁଷ
ନିଗମ ଉପଦେଶ ମାନ କରିବାରୁ ମୁଁ ଅନୁଷ୍ଠାନ

ଜାଣି ମୁନିଏ ତୋଷ ହେଲେ ଜ୍ଞାନ ଭକତି ଦାନ କଲେ
ସେ ଭଗବାନ ସର୍ବେଶ୍ୱର ପ୍ରାକୃତ ରୂପ ନାହିଁ ତାର
ତଥା ଯେଉଁ ଜ୍ଞାନୀ ଜନ ଶ୍ରୀ ବାସୁଦେବ ସଙ୍କର୍ଷଣ
ଅନିରୁଦ୍ଧ ପ୍ରଦ୍ୟୁମ୍ନ ମନ୍ତ୍ର ମୂର୍ତ୍ତି କରେ ଅର୍ଚ୍ଚନ

ପ୍ରକୃତ ତତ୍ତ୍ୱଦର୍ଶୀ ସେହି ଶ୍ରୀ ଗୋବିନ୍ଦ କୃପା ଲଭଇ
ଆହେ ବେଦବ୍ୟାସ ଆପଣ ଲଭିଛ ସର୍ବଶାସ୍ତ୍ର ଜ୍ଞାନ
ଭଗବାନଙ୍କ ଯଶ ଗୁଣ ଯାହା ବିଖ୍ୟାତ ତ୍ରିଭୁବନ
ଭକ୍ତିରେ କରନ୍ତୁ ବର୍ଣ୍ଣନ କୃଷ୍ଣ ଚରଣେ ଥାପି ମନ

ତହିଁରୁ ସମସ୍ତ ଜ୍ଞାତବ୍ୟ ବିଷୟ ହେବ ଉପଲବ୍ଧ
ଜନମ ମରଣ ଜୀବର ଏ ଭବକ୍ଲେଶ ହେବ ଦୂର
ଏ ପଥ ଅଟଇ ସୁଗମ କହିଅଛନ୍ତି ସୁଧୀ ଜନ
କହଇ ଧନେଶ୍ୱର ଦାଶ ମୁତବ ଦାସ ଅନୁ ଦାଶ

ସୁଜନେ ନ ଧରିବ ଦୋଷ କୃଷ୍ଣ ପାଦେ ରଖି ମାନସ
ସଦା ନିଷ୍କାମ କର୍ମ କର ଭବ ସାଗର ହେବ ପାର

**ଇତିଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ନାରଦ ବ୍ୟାସ ସମ୍ବାଦେ ନାମ ପଞ୍ଚମୋଽଧ୍ୟାୟ ।**

*******

## ଷଷ୍ଠ ଅଧ୍ୟାୟ

### ସୂତ ଉବାଚ

ସୂତ କହନ୍ତି ତୋଷ ଚିତ୍ତେ ଶୌନକ ମୁନିଙ୍କ ଅଗ୍ରତେ
ଏମନ୍ତ ଦେବର୍ଷି ବଚନ ଶୁଣି ସତ୍ୟବତୀ ନନ୍ଦନ
ସେ ବ୍ୟାସ ଦେବ ଭଗବାନ ନାରଦଙ୍କର ଜନ୍ମ କର୍ମ
ବୃତ୍ତାନ୍ତ ଜାଣିବା ଇଚ୍ଛାରେ ଆନନ୍ଦେ ପୁଣି ପଚାରିଲେ

### ବ୍ୟାସ ଉବାଚ

ବ୍ରାହ୍ମଣ ମାନେ ଯିବାପରେ ସେହି ଶୈଶବ ଅବସ୍ଥାରେ
କି କି କର୍ମ କଲେ ଆପଣ ତାହା କହନ୍ତୁ ବିସ୍ତାରିଣ
ଶୈଶବ ଶେଷରେ ଆପଣ କିପରି କାଟିଲେ ଜୀବନ
ଦାସୀ ଗର୍ଭ ଜାତ ଶରୀର ତ୍ୟାଗ କରିଲେ କି ପ୍ରକାର

କାଳତ ଅତିବଳ ବାନ ସକଳ ବିନାଶରେ କ୍ଷମ
ଆପଣଙ୍କର କଳ୍ପାନ୍ତର ଜନ୍ମ ସ୍ମୃତିକୁ କି ପ୍ରକାର
ବିଲୋପ କରି ନ ପାରିଲା ଆମକୁ ଆଶ୍ଚର୍ଯ୍ୟ ଲାଗିଲା
ଭଣିଲେ ବିଧାତା ନନ୍ଦନ ହେ ବ୍ୟାସ ସାବଧାନେ ଶୁଣ

ମତେ ଉପଦେଶ ପ୍ରଦାନ କରି ଗମନ୍ତେ ମୁନିଗଣ
ମୁଁ ତାଙ୍କ ଉପଦେଶ ପାଇ ନିରତେ ହରିଙ୍କୁ ଭଜଇ
ରମଣୀ ସୁଲଭ ଗୁଣରେ ଜନନୀ ମତେ ସ୍ନେହ କରେ
ମୁଁ ତାର ଏକୋଇର ବଳା ସାକ୍ଷାତେ ନୟନ ପିତୁଳା

ଆଖିକୁ ଆଖିପତା ପରି ସେ ଥାଏ ମତେ ରକ୍ଷା କରି
ପୁଣି ସେ ବ୍ରାହ୍ମଣ କିଙ୍କରୀ ଚଳଇ କର୍ମକୁ ଆଦରି
ଦିନେ ସେ କାଳ ରଜନୀରେ ଗୋଦାହନର ମାନସରେ
ଯିବାବେଳେ ପଥ ମଧ୍ୟରେ ଚରଣ ପଡନ୍ତେ ଉପରେ

ଭୁଜଙ୍ଗ କରିଲା ଦଂଶନ ଜନନୀ ତେଜିଲା ଜୀବନ
ଏ ଜୀବ ଈଶ୍ୱର ଅଧୀନ କାଠର ପିତୁଳା ସମାନ
ଜନନୀଙ୍କର ଏ ମରଣ ମଣି ଈଶ୍ୱରଙ୍କ କଲ୍ୟାଣ
ଉତ୍ତର ଦିଗକୁ ଗମନ କରିଲି ମୁହିଁ ତତକ୍ଷଣ

ସମୃଦ୍ଧ ଜନପଦଗ୍ରାମେ କଗ୍ର ଗୋପୁର ପଲ୍ଲୀମାନ
ପୁଷ୍ପ ଉଦ୍ୟାନ ପବନ ନଦୀ ନିର୍ଝର ଅଦ୍ରିଗଣ
କୃଷି ପ୍ରଧାନ ନାନାସ୍ଥାନ ବିହଙ୍ଗ ନିନାଦିତ ବନ
ଗୌରିକଧାତୁ ସୁଶୋଭିତ ପର୍ବତ ଶ୍ରେଣୀ ହସ୍ତୀ ଯୂଥ

ଅତି ବିଶାଳ ଭଗ୍ନ ଦ୍ରୁମ ଭ୍ରମର ଶୋଭୀ ପଦ୍ମବନ
ଦେବ ସେବିତ ସିଦ୍ଧ ସ୍ଥାନ ତୃଣ ଗୁଳ୍ମ କଣ୍ଟକ ବନ
ପେଚା ଶୃଗାଳ କ୍ରୀଡା ସ୍ଥଳୀ ଦେବ ମନ୍ଦିର ଦୃଶ୍ୟା ବଳି
ଆନନ୍ଦେ କରି ଅତିକ୍ରମ ପ୍ରବେଶ ନିବିଡ ଅରଣ୍ୟ

ଏପରି ଚାଲି ଚାଲି ନିତ୍ୟ ଶରୀର ହେଲା ଅତି କ୍ଳାନ୍ତ
କାତର କ୍ଷୁଧା ତୃଷାରେ ସ୍ନାନ କରି ନଦୀ ଜଳରେ
ବିଧିରେ କରି ଆଚମନ କିଞ୍ଚିତ ଜଳ କରିପାନ
ସେହି ନିର୍ଜନ ଅରଣ୍ୟରେ ବସି ଅଶ୍ୱତ୍ଥ ବୃକ୍ଷ ମୂଳେ

ମୁନି ଉପଦେଶ ସ୍ମରିଣ ହୃଦୟ ସ୍ଥିତ ଭଗବାନ
ଶ୍ରୀହରିଙ୍କ ପଦ୍ମ ଚରଣ ଧ୍ୟାନରେ ହୋଇଲି ନିମଗ୍ନ
ଶ୍ରୀହରିଙ୍କର ଦରଶନ ଉତ୍କଣ୍ଠା ବୁଦ୍ଧି ହେଲା ମମ
ନେତ୍ରୁ ଆନନ୍ଦାଶ୍ରୁ ଗଳିଲା ଭକ୍ତି ଭାବେ ଚିତ୍ତ ଦ୍ରବିଲା

ଭକ୍ତ ତାପହାରୀ ଶ୍ରୀହରି ମନମୋହନ ରୂପ ଧରି
ଚିତ୍ତ ମନ୍ଦିରେ ଧୀରେ ଧୀରେ ତକ୍ଷଣେ ଆବିର୍ଭୂତ ହେଲେ
ପ୍ରେମ ଅତିଶୟ ବଢ଼ିଲା ସର୍ବାଙ୍ଗେ ପୁଲକ ଜାଗିଲା
ଭଗବାନଙ୍କୁ ଲାଭକଲି ମୂର୍ଚ୍ଛିତ ପରାୟ ହୋଇଲି

ସେ ବେଳେ ମୋର ଆତ୍ମଜ୍ଞାନ ହରିଙ୍କ ପ୍ରତ୍ୟକ୍ଷ ଦର୍ଶନ
ସମସ୍ତ ବିଲୋପ ଘଟିଲା ବାହ୍ୟ ଜ୍ଞାନ ମୋ ନରହିଲା
ଶ୍ରୀଭଗବାନ ମନୋରମ ଶୋକ ହାରୀ ମୂର୍ତ୍ତି ଧରିଣ
ସାକ୍ଷାତ ଦେଇ ଦରଶନ କ୍ଷଣକେ ହେଲେ ଅନ୍ତର୍ଦ୍ଧାନ

ମୁଁ ଅତି ଦୁଃଖିତ ହୋଇଲି ଆସନରୁ ଉଠି ବସିଲି
ଆଶାରେ ସେ ରୂପ ଦର୍ଶନ ସ୍ଥିର କରି ହୃଦୟ ମନ
ବାର ବାର ଚେଷ୍ଟା କରିଲି ତଥାପି ଦେଖି ନ ପାରିଲି
ବାସନା ମୋ ପୂର୍ଣ୍ଣ ନୋହିଲା ଚିତ୍ତେ ବ୍ୟାକୁଳତା ଜନ୍ମିଲା

ଏପରି ନିର୍ଜନ ବନରେ ପୁଣି ମୁଁ ଦର୍ଶନ ଇଚ୍ଛାରେ
ବାର ବାର ଚେଷ୍ଟା କାଳରେ ଗମ୍ଭୀର ମଧୁର ବାଣୀରେ
ସେ ସର୍ବ ବ୍ୟାପକ ଶ୍ରୀହରି କହିଲେ ସମ୍ବୋଧନ କରି
ହେ ବତ୍ସ ତୁମେ ଏ ଜନ୍ମରେ ଏହି ସାଧନ ଶରୀରରେ

ନ ପାଇବ ମୋର ଦର୍ଶନ ଅସତ୍ୟ ନୁହେଁ ମୋ ବଚନ
କମାଦି ମଳିନତା ଯାର ଚିତ୍ତରୁ ନ ହୋଇଛି ଦୂର
ଯୋଗୀ ହେଲେ ବି ସେହିଜନ ନ ଲଭଇ ମୋର ଦର୍ଶନ
ହେ ନିଷ୍ପାପ ଏବେ ଶୁଣ କେବଳ ମୋ ରୂପ ଦର୍ଶନ

ଇଚ୍ଛା ନିଷ୍ପାପ ଏବେ ଶୁଣ କେବଳ ମୋ ରୂପ ଦର୍ଶନ
ଇଚ୍ଛା ବଢ଼ାଇବା ନିମିତ୍ତ ମୁ ଦେଖା ଦେଲି ଥରେ ମାତ୍ର
ମୋର ସ୍ୱରୂପ ଦର୍ଶନରେ କାମନା ଥାଏ ଯା ହୃଦରେ
ବିଷୟ ବାସନା ସକଳ ତକ୍ଷଣେ ହୁଅଇ ନିର୍ମୂଳ

କିଛି କାଳ ସାଧୁ ସେବାରେ ବୁଦ୍ଧି ଦୃଢ଼ ହେଲେ ମୋ ଠାରେ
ତେଜିଏ ଅସାର ସଂସାର ପାରିଷଦ ହୋଇବ ମୋର
ତୁମର ଚିତ୍ତ ବୃତ୍ତିଥରେ ନିଶ୍ଚଳ ହେଲେ ମୋ ପୟରେ
ଟଳିବ ନାହିଁ ପୁନର୍ବାର ଏହି ସାଧକ ଶରୀରର

ସ୍ମରଣ ରହିବ ଜାଗ୍ରତ କଳ୍ପ କଳ୍ପାନ୍ତର ପର୍ଯ୍ୟନ୍ତ
ଆକାଶ ପରି ସବୁଠାରେ ଯେ ବ୍ୟାପିଛନ୍ତି ସଂସାରରେ
ସେ ନିରାକାର ଭଗବାନ ଏହା କହି ସେ ହେଲେ ମୌନ
ଅନୁଗ୍ରହ ଲଭି ତାଙ୍କର ସେ ମହୀୟାନ ପ୍ରଭୁଙ୍କର

ଉଦ୍ଦେଶ୍ୟ କରିଲି ପ୍ରଣତି କରି ମସ୍ତକ ଅବନତି
କରି ହରି ନାମ କୀର୍ତ୍ତନ ମଙ୍ଗଳ ଚରିତ ଶ୍ରବଣ
ବିଷୟ ସ୍ପୃହା ଅହଙ୍କାର ମାତ୍ସର୍ଯ୍ୟ ଦୂର ହେଲା ମୋର
ଉଚିତ କାଳ ପ୍ରତୀକ୍ଷାରେ ପର୍ଯ୍ୟଟନ କଲି ପୃଥ୍ୱୀରେ

ହେ ବେଦ-ବ୍ୟାସ ଏହିପରି ଶ୍ରୀକୃଷ୍ଣ କୃପା ଲାଭକରି
କୃଷ୍ଣାର୍ପିତ ଶୁଦ୍ଧ ଚିତ୍ତରେ କେତେକ ଦିନ ଗଲା ପରେ
ଗୋଟିଏ ଵିଦ୍ୟୁତରୁ ଯଥା ଅନ୍ୟ ବିଦ୍ୟୁତ ଜନ୍ମେ ତଥା
ଏ ସ୍ଥୂଳ ଶରୀର ତେଜି ପାରିଷଦଦେହ ଲଭିଲି

ତେଜି ଏ ଭୌତିକ ଶରୀର ପାର୍ଷଦ ହେବ ତୁମେ ମୋର
ଏପରି ପ୍ରତିଶ୍ରୁତି ଦାନ କରିଥିଲେ ସେ ଭଗବାନ
ପ୍ରଭୁ ହରିଙ୍କର ଇଛାରେ ସବୁ ମିଳେ ଯଥା କାଳରେ
ତେଣୁ ଭୌତିକ ଶରୀର ପ୍ରାରବ୍ଧ ସର୍ବ କର୍ମ ମୋର

ସହସା ଅବସାନ ହେଲା ଏ ପାର୍ଷଦ ଦେ ମିଳିଲା
ସେ କଳ୍ପ ଶେଷରେ ଶ୍ରୀହରି ଲୋକତ୍ରୟ ସଂହାର କରି
ଏକାର୍ଣ୍ଣବ ଜଳେ ଶୟନ ନିମିତ୍ତ ବଳାଇଲେ ମନ
ସେତେବେଳେ ମୁ ବ୍ରହ୍ମାଙ୍କର ନିଃଶ୍ୱାସ ସହ ବିଷ୍ଣୁଙ୍କର

ଶରୀର ମଧ୍ୟେ ପ୍ରବେଶିଲି କେତେକ କାଳ କଟାଇଲି
ହେବାରୁ ବ୍ରହ୍ମ ରାତି ଶେଷ ସୃଷ୍ଟି ଇଛାକରି ଲୋକେଶ
ଏହି କଳ୍ପର ପ୍ରାରମ୍ଭରେ ମରୀଚି ପ୍ରଭୃତି ସଙ୍ଗରେ
ପ୍ରାଣ ବାୟୁରୁ ବ୍ରହ୍ମାଙ୍କର ଜନ୍ମହୋଇଲି ପୁନର୍ବାର

ସେ କାଳୁ ଗୋବିନ୍ଦ କୃପାରେ ଅବଚଳିତ ହୃଦୟରେ
ରକ୍ଷାକରି ଭକ୍ତି ନିୟମ ବୈକୁଣ୍ଠପୁର ତ୍ରିଭୁବନ
ଏ ବିଶ୍ୱ ବାହୀ ଅଭ୍ୟନ୍ତରେ ମୁଁ ଅପ୍ରତିହତ ଗତିରେ
ଗାଇ ଶ୍ରୀହରି ନାମ ଶୁଣ ସର୍ବଦା କରଇ ଭ୍ରମଣ

ଏ ସ୍ୱର ବ୍ରହ୍ମ ସମନ୍ୱିତ ଭଗବାନ କୃଷ୍ଣ ପଦତ୍ତ
ବୀଣାରେ ମୂର୍ଛନା ସଂଯୋଗ କରି ଅଚରି ଭକ୍ତି ଯୋଗ
ଶ୍ରୀ ଗୋବିନ୍ଦ ଲୀଳା କୀର୍ତ୍ତନ ସର୍ବତ କରଇ ଭ୍ରମଣ
ଶ୍ରୀକୃଷ୍ଣଙ୍କ ପଦ୍ମ ଚରଣ ସକଳ ତୀର୍ଥ ବାସ ସ୍ଥାନ

ଯାହାର କିରତି ମଙ୍ଗଳ ସକଳ ଜଗତର ମୂଳ
ଶ୍ରବଣ ମାତ୍ରେ ଗୁଣ ଗାନ ସେହି କୃପାଳୁ ଭଗବାନ
ଆହୂତ ବ୍ୟକ୍ତିର ସଦୃଶ ମୋ ହୃଦେ କରନ୍ତି ପ୍ରବେଶ
କାମ ମୋହ ଲୋଭ ଜଡିତ ବିଷୟ ବିଚଳିତ ଚିତ୍ତ

ଗୋବିନ୍ଦ ଚରଣ ସେବାରେ ପ୍ରଶାନ୍ତି ଲଭେ ଯେ ପ୍ରକାରେ
କ୍ଷମାଦି ଯୋଗ ସାଧନରେ ନଆସେ ଶାନ୍ତି ସେ ପ୍ରକାରେ
ଶ୍ରୀହରି ଗୁଣ ଗାନ ଏକା ଏ ଭବ ସାଗରର ନୌକା
ଏହା ମୁ ସଦା ପ୍ରତ୍ୟକ୍ଷରେ ଚିତ୍ତରେ ଅନୁଭବ କରେ

ଶୁଣିଲ ପରାଶର ସୁତ ମୋ ଜନ୍ମ ରହସ୍ୟ ବୃତ୍ତାନ୍ତ
ଚିତ୍ତ ଅଶାନ୍ତି ବିଷୟରେ ଆପଣ ଜାଣିବା ଇଛାରେ
ପୁଛିଥିଲେ ଯେ ପ୍ରଶ୍ନମାନ ସମସ୍ତ କଲି ମୁଁ ବର୍ଣ୍ଣନ

### ସୂତ ଉବାଚ

ସୂତ କହିଲେ ଏବେ ଶୁଣ ହେ ଶୌନକାଦି ମୁନିଗଣ
ଯେ ସର୍ବଦା ନିଜ ଇଛାରେ ବ୍ୟାସଙ୍କୁ ସମ୍ଭାଷଣ କରି
ତାଙ୍କର ଅନୁମତି ନେଇ ସୁସ୍ୱରେ ବିପଥୀ ବଜାଇ
କରି ଶ୍ରୀହରି ଲୀଳା ଗାନ ଅନ୍ୟତ୍ର କରିଲେ ଗମନ

ସେ ଦେବର୍ଷି ନାରଦ ଧନ୍ୟ ବୀଣାରେ ହରି ନାମ ଗାନ
ଯେ ତ୍ରିତାପ ଦଗଧ ଜଗତେ ଆନନ୍ଦ ବିତରନ୍ତି ନିତ୍ୟେ
ସେ ଦେବର୍ଷିଙ୍କୁ ପ୍ରଣାମ କରଇ ଏ ଦୀନ ଅଧମ
କହଇ ଦାଶ ଧନେଶ୍ୱର ସୁଜନେ ରାମ ନାମ ସ୍ମର
ଦୁଃଖ ପୂର୍ଣ୍ଣ ଭବସାଗର ସତ୍ୱରେ କରିବେ ସେ ପାର

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ନାରଦ ବ୍ୟାସ ସମ୍ବାଦେ ନାମ ଷଷ୍ଠୋଽଧ୍ୟାୟ ।

*******

## ସପ୍ତମ ଅଧ୍ୟାୟ

### ଶୌନକ ଉବାଚ

ନାରଦ କରନ୍ତେ ପ୍ରସ୍ଥାନ ତାଙ୍କ ଉପଦେଶ ଗ୍ରହଣ
ସର୍ବଜ୍ଞ ବ୍ୟାସ ଭଗବାନ କରିଲେ କେଉଁ କର୍ମମାନ
ହେ ସୂତ ବକତା ପ୍ରଧାନ କହନ୍ତୁ ତାହା ବିସ୍ତାରିଣ

### ସୂତ ଉବାଚ

ବ୍ରହ୍ମନଦୀ ସରସ୍ୱତୀର ତଟରେ ପଶ୍ଚିମ ଦିଗରେ
ଶ୍ୟାମା ପ୍ରାଣ ନାମ ଆଶ୍ରମ ଯେ ମୁନି ଋଷିଙ୍କ ଯଜ୍ଞସ୍ଥାନ
ବ୍ୟାସ ବଦରିକା ଶ୍ରମରେ ଆଗମନ କରି ଧ୍ୟାନରେ
ନିଶ୍ଚଳ କରି ପ୍ରାଣମନ ସାମାଧି ଯୋଗେ ହେଲେ ମଗ୍ନ

ଭକତି ସୁନିର୍ମଳ ଚିତ୍ତ କ୍ଷଣକେ ହେଲା ସମାହିତ
ପୁରୁଷୋତ୍ତମ ଈଶ୍ୱରଙ୍କୁ ସମାଶ୍ରିତ ମାୟା ଶକ୍ତିକୁ
ସମ୍ୟକରୂପରେ ଦର୍ଶନ କଲେ ପରାଶର ନନ୍ଦନ
ଏ ଜୀବ ତ୍ରିଗୁଣ ଅତୀତ ହୋଇ ମଧ୍ୟ ମୋହିତ

ନିଜକୁ ସଗୁଣ ଭାବଇ ଏ ଭବ ଯାତନା ଭୋଗଇ
ଭକ୍ତି ଯୋଗବଳେ କେବଳ ଅନର୍ଥ ହୁଅଇ ନିର୍ମୂଳ
ଏହା ହୃଦେ କରି ବିଚାର ହିତ ପାଇଁ ଅଜ୍ଞ ଜୀବର
ସେ ବ୍ୟାସ ଦେବ ମହାଚେତା ଏ ପାରମ ହଂସ ସଂହିତା

ଭଗବତ କଲେ ରଚନା ଦୂର ପାଇଁ ଭବଯାତନା
ଏ ପୁରାଣ କଲେ ଶ୍ରବଣ ଶ୍ରୀକୃଷ୍ଣ ପ୍ରେମ ଭକ୍ତି ଜନ୍ମ
ଜୀବର ଶୋକ ମୋହ ଭୟ ହୃଦରୁ ହୁଅଇ ବିଲୟ
ବ୍ୟାସଦେବ ଏ ଭାଗବତ ବିରଚି ସଂହିତା ସହିତ

ପୁନରାବୃତ୍ତ ସଂଶୋଧନ କରି ନବୃତ୍ତି ପରାୟଣ
ନିଜ ପୁତ୍ର ଶୁକଦେବରେ ସେ ପଢ଼ାଇଲେ ପ୍ରଥମରେ

### ଶୌନକ ଉବାଚ

ସେ ବ୍ରହ୍ମନିଷ୍ଠ ଶୁକଦେବ ଯା ଚିତ୍ତ ପୂର୍ଣ୍ଣ ପ୍ରେମଭାବ
ସେ ସାଧନା ବିମୁଖ ଅଟଇ ଯାହାର ବାହ୍ୟ ଜ୍ଞାନ ନାହିଁ
ସେ ଶୁକ କିମ୍ପା ଭାଗବତ ପଢ଼ିଲେ ସଂହିତା ସହିତ

### ସୂତ ଉବାଚ

କ୍ରୋଧ ଅହଙ୍କାର ନିବୃତ୍ତ ସଦା ଈଶ୍ୱର ସେବାରତ
ସେ ଆତ୍ମାରାମ ମୁନିଗଣ ହୋଇ ମୋହମାୟା ହୀନ
ଈଶ୍ୱରେ ନିଷ୍କାମ ଭକତି ଅନନ୍ୟ ପ୍ରେମ ଆଚରନ୍ତି
ଏମନ୍ତ ଶ୍ରୀହରି ମହିମା କେଅବା କରିବ ବର୍ଣ୍ଣନା

ଶ୍ରୀକୃଷ୍ଣ ଲୀଳା ଆକର୍ଷିତ ଶ୍ରୀ ଶୁକ ଦେବ ବ୍ୟାସସୁତ
ଭାଗବତ ମହା ପୁରାଣ ସ୍ୱେଚ୍ଛାରେ କରି ଅଧ୍ୟୟନ
ବିଷ୍ଣୁଜନ ପ୍ରିୟ ହୋଇଲେ ପ୍ରେମ ଭକ୍ତି ଭାବେ ମଜ୍ଜିଲେ
ହେ ଶୌନକ ମୁଁ ବର୍ତ୍ତମାନ ରାଜର୍ଷି ପରୀକ୍ଷିତ ଜନ୍ମ

ପାଣ୍ଡବଙ୍କ ମହା ପ୍ରସ୍ଥାନ ବର୍ଣ୍ଣନା କରୁଅଛି ଶୁଣ
ଏଥିରେ କୃଷ୍ଣ ଲୀଳାମାନ କରିବି ଗାନ ଉପକ୍ରମ
କୁରୁ ପାଣ୍ଡବ ବୀରଗଣ ସଂଗ୍ରାମେ ଗଲେ ସ୍ୱର୍ଗଧାମ
ଗଦାଘାତେ ଭୀମ ସେନର ଜାନୁ ଭଗ୍ନ ଦୁର୍ଯ୍ୟୋଧନର

ପ୍ରୀତି ପାଇଁ ନିଜ ମିତ୍ରର ନିଦ୍ରିତ ପଞ୍ଚପୁତ୍ରଙ୍କର
ଅଶ୍ୱତ୍ଥମା ଶିର ଛେଦିଲା ଦୁର୍ଯ୍ୟୋଧନଙ୍କୁ ସମର୍ପିଲା
ମାତ୍ର ସେ ତୋଷ ନ ଲଭିଲେ ଏ ଘୃଣ୍ୟ କର୍ମକୁ ନିନ୍ଦିଲେ
ନିନ୍ଦିତ କର୍ମ ସମସ୍ତେ ନିନ୍ଦା ତ କରନ୍ତି ଜଗତେ

ମାତା ଦ୍ରୌପଦୀ ପୁତ୍ରଙ୍କର ମରଣ ଶୁଣି ଶୋକାତୁର
ଲୋତକ ପୂର୍ଣ୍ଣ ନୟନରେ ଅତି ଦୁଃସହ ବେଦନାରେ
ଆକୁଳେ ରୋଦନ ବେଳରେ ଅର୍ଜୁନ ମିଳି ସମ୍ମୁଖରେ
କହିଲେ ସାନ୍ତ୍ୱନା ବଚନ ହେ କଲ୍ୟାଣୀ ସେ ବିପ୍ରାଧମ

ପୁତ୍ରହନ୍ତା ଅଶ୍ୱତ୍ଥମାର ଗାଣ୍ଡିବ ଧନୁର୍ବାଣେ ଶିର
କାଟି ଦେବି ମୁଁ ଉପହାର ହେ ଦେବୀ ଶୋକ ତ୍ୟାଗ କର
ମୃତ ପୁତ୍ର ଦାହ କାଳରେ ଚରଣ ରଖି ତାର ଶିରେ
ତୁମେ କରିବ ଯେବେ ସ୍ନାନ କରିବ ଶୋକାଶ୍ରୁ ମାର୍ଜନ

ଏପରି ମଧୁର ବାକ୍ୟରେ ସାନ୍ତ୍ୱନା ଦେଇ ଦ୍ରୌପଦୀରେ
ବଶ ହୋଇ ମିତ୍ର ପ୍ରେମରେ ଶ୍ରୀକୃଷ୍ଣ ସାରଥି ରୂପରେ
ଯେ ରଥ କରିନ୍ତି ଚାଳନ ସେ ରଥେ କରି ଆରୋହଣ
କବଚ କରି ପରିଧାନ ହସ୍ତେ ଗାଣ୍ଡିବ ଧନୁର୍ବାଣ

ଗୁରୁ ପୁତ୍ର ଅଶ୍ୱତ୍ଥମାର ପଛରେ ଧାଇଲେ ସତ୍ୱର
ବାଳକ ହନ୍ତା ସେ ଦୁରାତ୍ମା ଦ୍ରୋଣ ତନୟ ଅଶ୍ୱତ୍ଥମା
ଦୂରୁ ଅର୍ଜୁନକୁ ରଥରେ ଦେଖି ଆସୁଥିବା ପଛରେ
ନିଜ ଜୀବନ ରକ୍ଷାପାଇଁ ଅତି ବିହ୍ୱଳ ଚିତ୍ତ ହୋଇ

ଶିବ ଭୟରେ ବ୍ରହ୍ମା ସମ ଧାଇଁଲେ ପରି ପ୍ରାଣ ପଣ
ଅଶ୍ୱତ୍ଥମା କଲା ଦର୍ଶନ ଅତ୍ୟନ୍ତ କ୍ଳାନ୍ତ ଅଶ୍ୱଗଣ
ଶରୀର ଶ୍ରମେ ଅବସନ୍ନ ସେ ଏକାକୀ ରକ୍ଷକ ହୀନ
ନିଜ ପ୍ରାଣ ରକ୍ଷା ନିମିତ୍ତ ଉପାୟ କେବଳ ବ୍ରହ୍ମାସ୍ତ୍ର

ମାତ୍ର ବ୍ରହ୍ମାସ୍ତ୍ର ପ୍ରତ୍ୟାବର୍ତ୍ତନ ବିଧି ନଜାଣେ ସେ ଅଧମ
ପ୍ରାଣ ସଙ୍କଟ ଉପସ୍ଥିତ ଦେଖି ହୋଇଣ ସେ ଧ୍ୟାନସ୍ଥ
ଭକ୍ତିରେ କରି ଆବାହନ ବ୍ରହ୍ମାସ୍ତ୍ର କରିଲା କ୍ଷେପଣ
ବ୍ରହ୍ମାସ୍ତ୍ରର ତେଜ ପ୍ରଚଣ୍ଡ କ୍ଷଣକେ ଘୋଟିଲା ବ୍ରହ୍ମାଣ୍ଡ
ପ୍ରାଣ ନାଶ ଜାଣି ଅର୍ଜୁନ ଶ୍ରୀକୃଷ୍ଣେ କଲେ ନିବେଦନ ।

### ଅର୍ଜୁନ ଉବାଚ

ହେ ମହା ବାହୁ ନାରାୟଣ ଭକ୍ତ ରଂଜନ ଆର୍ତ୍ତତ୍ରାଣ
ଅନାଦି ପୁରୁଷ ଈଶ୍ୱର ସର୍ବ ନିୟନ୍ତା ବିଶ୍ୱେଶ୍ୱର
ତ୍ରିତାପ ଦଗ୍ଧ ଜୀବଗଣ ଦୁଃଖ ନିବାରକ ଆପଣ
ପ୍ରକୃତି ତୋଠାରୁ ଜନମ କରଇ ଏ ବିଶ୍ୱ ସର୍ଜନ

ଆତ୍ମ ଶକ୍ତିବଳେ ଆପଣ କରନ୍ତି ମାୟା ନିବାରଣ
ଆନନ୍ଦ ଧାମେ ବିରାଜିତ ସଚ୍ଚିଦାନନ୍ଦ ହେ ଅଚ୍ୟୁତ
ବିଷୟା ମୋହିତ ଜୀବର ସଦା ଆପଣ ଶୁଭଙ୍କର
ବର୍ଣ୍ଣା ଶ୍ରମ ଧର୍ମ ନିରୂପଣ କରିଛ ଧର୍ମାର୍ଥ ବିଧାନ

ପୃଥ୍ୱୀ ଭାରାଭର ହରଣ ପାଇଁ ଅବତରି ଆପଣ
ଭକତ ଆନନ୍ଦ ପ୍ରଦାନ ପାଇଁ କୃଷ୍ଣ ରୂପେ ଜନମ
ଆହେ ଦେବ ଚତୁର୍ଦ୍ଦିଗର ବ୍ୟାପ୍ତ ଏ ତେଜ ଭୟଙ୍କର

### ଶ୍ରୀକୃଷ୍ଣ ଉବାଚ

କହନ୍ତି କୃଷ୍ଣ ଭଗବାନ ହେ ସଖା ଶୁଣ ତା କରଣ
ପ୍ରାଣ ସଙ୍କଟ ଉପସ୍ଥିତ ଜାଣି ସେ ଦ୍ରୋଣଗୁରୁ ସୁତ
କରିଛି ବ୍ରହ୍ମାସ୍ତ୍ର କ୍ଷେପଣ ନଜାଣେ ତା ନିରାକରଣ

ତୁମେ ଅସ୍ତ୍ର ବିଦ୍ୟା ନିପୁଣ ବ୍ରହ୍ମାସ୍ତ୍ର କରି ନିକ୍ଷେପଣ
କର ଅସ୍ତ୍ର ତେଜ ବାରଣ ନହେଲେ ଯିବ ତୁମ ପ୍ରାଣ
ଅନ୍ୟାନ୍ୟ କୌଣସି ଅସ୍ତ୍ରରେ ନିବାରଣ ହୋଇ ନପାରେ

### ସୂତ ଉବାଚ

ପରବଳ ପ୍ରାଣ ହରଣ ପ୍ରବୀଣ ପ୍ରବୀର ଅର୍ଜୁନ
କୃଷ୍ଣ ଉପଦେଶ ଶୁଣିଣ ଜଳରେ କରି ଆଚମନ
ହସ୍ତରେ ବ୍ରହ୍ମାସ୍ତ୍ର ଧରିଣ କରି କୃଷ୍ଣଙ୍କୁ ପ୍ରଦକ୍ଷିଣ
ସତ୍ୱରେ କରିଲେ କ୍ଷେପଣ ଧ୍ୟାଇ ଶ୍ରୀଗୋବିନ୍ଦ ଚରଣ

ଉଭୟଙ୍କ ଏହି ବ୍ରହ୍ମାସ୍ତ୍ର ପରସ୍ପର ହୋଇ ମିଳିତ
ପୃଥିବୀର ଚତୁର୍ଦ୍ଦିଗରେ ପୁଣି ଅନନ୍ତରୀକ୍ଷ ମଧ୍ୟରେ
ଆବୋରୀ ପ୍ରଳୟ କାଳୀନ ଅଗ୍ନିସୂର୍ଯ୍ୟ ତେଜ ସମାନ
ଚାହୁଁ ଚାହୁଁ ବୃଦ୍ଧି ପାଇଲା ତ୍ରିଭୂବନରେ ବ୍ୟାପିଗଲା

ପ୍ରବଳେ ସେ ତେଜ ବଢ଼ିଲା ସାରା ବିଶ୍ୱ ଦଗ୍ଧ କରିଲା
ତେଣୁ ସକଳ ଲୋକ କ୍ଷୟ ଆଶଙ୍କାରେ ସେ ଧନଞ୍ଜୟ
ଶ୍ରୀକୃଷ୍ଣଙ୍କ ଅଭିମତରେ ଉଭୟ ଅସ୍ତ୍ର ସଂହରିଲେ
ତହୁଁ ବୀରବର ଅର୍ଜୁନ କ୍ରୋଧରେ ଆରକ୍ତ ନୟନ

ଅଶ୍ୱତ୍ଥମାକୁ ପଶୁସମ ରଜ୍ଜୁରେ କରିଣ ବନ୍ଧନ
କେଶକୁ ଆକର୍ଷଣ କଲେ ରାଜ ଶିବରକୁ ଆଣିଲେ
ଏବେଳେ କୃଷ୍ଣ ଭଗବାନ କ୍ରୋଧରେ ଅରୁଣ ନୟନ
କହିଲେ ହେ ସଖା ଅର୍ଜୁନ ରାତ୍ରିରେ ଏ ବିପ୍ର ଅଧମ

ବଧିଛି ନିରୀହ ଶିଶୁଙ୍କୁ କ୍ଷମାନାହିଁ କେବେ ଏହାକୁ
ଯାର ନିଧନ ବର୍ତ୍ତମାନ ଅଟେ ନିତାନ୍ତ ପ୍ରୟୋଜନ
ମତ୍ତ ପ୍ରମତ୍ତ ଭୀତ ସୁପ୍ତ ନାରୀ ଶିଶୁ ଶରଣାଗତ
ବିରଥ ଶତ୍ରୁର ନିଧନ ନ କରନ୍ତି ଧାର୍ମିକ ଜନ

ଯେଉଁ ନିର୍ଦ୍ଦୟ ଖଳଜନ ରକ୍ଷାପାଇଁ ନିଜ ଜୀବନ
କରଇ ଅନ୍ୟକୁ ନିଧନ ସେହି ପାପାଚାରୀ ଦୁର୍ଜନ
ରୌରବ ନରକ ଗମଇ ନିଧନ ତା ଶ୍ରେୟ ଅଟଇ
ବିଶେଷେ ମୋର ସମ୍ମୁଖରେ ଦ୍ରୌପଦୀଙ୍କ ନିକଟରେ

ପ୍ରତିଜ୍ଞା କରିଛ ଏପରି ଆହେ ମାନିନୀ କୃଶୋଦରୀ
ପୁତ୍ରଘାତୀ ଅଶ୍ୱତ୍ଥମାର ଆଜି ନିଶ୍ଚୟ ଛେଦଶିର
ତୁମକୁ କରିବି ଅର୍ପଣ ସେ ପ୍ରତିଜ୍ଞା କର ସ୍ମରଣ
ଏତ ଆତତାୟୀ ବର୍ବର ହତ୍ୟାକାରୀ ତୁମ ପୁତ୍ରର

ନିଜ ପ୍ରଭୁ ଦୁର୍ଯ୍ୟୋଧନର ଅପ୍ରିୟ ମଧ୍ୟ କୁଳାଙ୍ଗାର
ତେଣୁ ହେ ପ୍ରବୀର ଅର୍ଜୁନ ଏ ପାପୀକୁ କରି ନିଧନ
ଧର୍ମ ରକ୍ଷା ଛଳେ ଏମନ୍ତ କଲେ ଶ୍ରୀକୃଷ୍ଣ ଉତ୍ତେଜିତ
ତଥାପି ସେ ଅର୍ଜୁନ ବୀର ପୁତ୍ରହନ୍ତା ଅଶ୍ୱତ୍ଥମାର

ଇଚ୍ଛା ନକଲେ ବଧ ପାଇଁ ବସି ରହିଲେ ମୌନ ହୋଇ
କୃଷ୍ଣ ଯାର ସଖା ସାରଥି ସେହି ଅର୍ଜୁନ ମହାରଥୀ
ଶିବିରକୁ ଯାଇ ସତ୍ୱରେ ଶୋକାର୍ତ୍ତା ଦୌପଦୀ ଆଗରେ
ଅଶ୍ୱତ୍ଥମାକୁ ସମର୍ପିଲେ ଚିନ୍ତିତ ଚିତ୍ତରେ ବସିଲେ

ଦେଖିଲେ ଦ୍ରୁପଦ କୁମାରୀ ଗୁରୁପୁତ୍ରକୁ ପଶୁପରି
ରଜ୍ଜୁରେ ହୋଇଛି ବନ୍ଧନ କରି ନିନ୍ଦନୀୟ କରମ
ତଳକୁ କରିଛି ବଦନ ନ ଫୁଟଇ ମୁଖୁ ବଚନ
ତଥାପି ଦୌପଦୀ ଭକ୍ତିରେ ପ୍ରଣାମ କଲେ ସଂଭ୍ରମରେ

ହେ ସ୍ୱାମୀ ଅର୍ଜୁନ ପ୍ରବୀର ଗୁରୁପୁତ୍ର ପୂଜ୍ୟ ଆମର
ଦେଖି ତାଙ୍କ ରଜ୍ଜୁ ବନ୍ଧନ ଅସ୍ଥିର ହୁଏ ମୋର ପ୍ରାଣ
କରନ୍ତୁ ବନ୍ଧନ ମୋଚନ ସର୍ବ ବର୍ଣ୍ଣ ଗୁରୁ ବ୍ରାହ୍ମଣ
ଯେଉଁ ଦ୍ରୋଣ ଗୁରୁ ଦୟାରେ ସର୍ବ ଅସ୍ତ୍ର ଶସ୍ତ୍ର ବିଦ୍ୟାରେ

ସୁପ୍ରୟୋଗ ନିୟନ୍ତ୍ରଣରେ ଆପଣ ପ୍ରବୀଣ ହୋଇଲେ
ଏ କ୍ରୁରକର୍ମା ଅଶ୍ୱତ୍ଥମା ସାକ୍ଷାତ ଗୁରୁଙ୍କର ଆତ୍ମା
ଦେଖି ତାର ରଜ୍ଜୁ ବନ୍ଧନ ବିକଳି ଉଠେ ପ୍ରାଣ ମନ
ଆହେ ପ୍ରାଣ ପତି ଅର୍ଜୁନ ଧର୍ମ ନୀତି କରି ସ୍ମରଣ

କରନ୍ତୁ ବନ୍ଧନ ମୋଚନ ଘେନି ଏ ଦାସୀ ନିବେଦନ
ଗୁରୁ ଦ୍ରୋଣଙ୍କ ଅର୍ଦ୍ଧାଙ୍ଗିନୀ ବୀର ପ୍ରସବିନୀ ଜନନୀ
ଜୀବିତାଛନ୍ତି ବର୍ତ୍ତମାନ ଶୋକେ ନ ତେଜନ୍ତୁ ଜୀବନ
ହେ ମହାଭାଗ ଧର୍ମପ୍ରାଣ ଯେଗୁରୁ କୁଳର ଅର୍ଚ୍ଚନ

ପଦ ବନ୍ଦନ ପ୍ରୟୋଜନ ସେ ଗୁରୁ କୁଳେ ଦୁଃଖ ଦାନ
କର୍ତ୍ତବ୍ୟ ନୁହଁଇ ତୁମର ହେ ଗୁରୁ ପ୍ରିୟ ବୀର ବର
ମୁ ଯଥା ଶୋକାତୁରା ହୋଇ ପୁତ୍ର ମରଣରେ କାନ୍ଦଇ
ତଥା ଅଶ୍ୱତ୍ଥମା ଜନନୀ ସେହି ପତିବ୍ରତା ଗୌତମୀ

ଆତୁରେ ନକରୁ କ୍ରନ୍ଦନ ଏ ସମଦର୍ଶୀ ବୀର ଧର୍ମ
ଯେ ନୃପ ଉଚ୍ଛୃଙ୍ଖଳ ହୋଇ କୁତ୍ସିତ କରମ କରଇ
ଯେ ସଦା ଅନ୍ୟାୟ ନିରତ ବିପ୍ର କୁଳେ ହୁଏ କୁପିତ
ବ୍ରାହ୍ମଣର ଅଭିଶାପରେ ସେ ନୃପ ସପରିବାରରେ
ଶୋକାଗ୍ନିରେ ଭସ୍ମ ହୁଅଇ ବେଦବାଣୀ ମିଥ୍ୟା ନୁହଇ ।

## ସୂତ ଉବାଚ

ସୂତ କହନ୍ତି ମନ୍ଦେହସି ଶୁଣ ଶୌନକ ଆଦିଋଷି
ସେ ରାଜା ଧର୍ମ ଯୁଧିଷ୍ଠିର ପତିବରତୀ ଦ୍ରୌପଦୀର
ଧର୍ମାନୁକୂଳ ଯୁକ୍ତି ଯୁକ୍ତ ନାହିଁ ଯହିଁରେ ପକ୍ଷପାତ
ସରଳ ଦୟାଦ୍ର ବଚନ ଶୁଣି କରିଲେ ସମର୍ଥନ

ନକୁଳ ସହଦେବ ଭୀମ ଅର୍ଜୁନ ଦେବକୀ ନନ୍ଦନ
ସାତ୍ୟକୀ ପୁର ବାସୀ ଜନ ଦ୍ରୌପଦୀଙ୍କର ଏ ବଚନ
ସର୍ବେ କଲେ ଅନୁମୋଦନ ଶିବୀରସ୍ଥିତ ରକ୍ଷୀ ଗଣ

ଭୀମ କହିଲେ କୋପଭରେ ଯେ ଦୁଷ୍ଟ ବିନା କାରଣରେ
ନିଦ୍ରିତ ଶିଶୁଙ୍କୁ ବୃଥାରେ କରିଲା ବିନାଶ ରାତ୍ରିରେ
ତାହାର ନିଧନ ଉଚିତ ଏ ବଚନ ଶାସ୍ତ୍ର ସମ୍ମତ

## ଶ୍ରୀକୃଷ୍ଣ ଉବାଚ

ବୋଲନ୍ତି କୃଷ୍ଣ ଭଗବାନ ଶୁଣି ଭୀମସେନ ବଚନ
ସର୍ବଥା ବ୍ରାହ୍ମଣ ଅବଧ୍ୟ ମାତ୍ର ଯେ ଆତତାୟୀ ବଧ୍ୟ
କଲେବି ନିନ୍ଦିତ କରମ ବଧ ଯୋଗ୍ୟ ନୁହେଁ ବ୍ରାହ୍ମଣ
ଏ ଉଭୟ ଅନୁଶାସନ ଶାସ୍ତ୍ର କରଇ ସମର୍ଥନ

କିନ୍ତୁ ଯେ ବିପ୍ର ଆତତାୟୀ ନିଶ୍ଚୟ ବଧ ଯୋଗ୍ୟ ସେହି
ତୁମେ ଏ ଦୁଇ ଅନୁଶାସନ ବର୍ତ୍ତମାନ କର ପାଳନ
ପ୍ରିୟା ଦୌପଦୀଙ୍କୁ ସାନ୍ତ୍ୱନା ଦେଲାବେଳେ ସେ ମହାମନା
ପ୍ରତିଜ୍ଞା କରିଥିଲ ଯାହା ଏବେ ପାଳନ କର ତାହା
ଭୀମ ଦ୍ରୌପଦୀ ତଥା ମୋର ଯା ପ୍ରିୟ ତାହା ମଧ କର

## ସୂତ ଉବାଚ

କୃଷ୍ଣଙ୍କ ମନୋଭାବ ଜାଣି ତକ୍ଷଣେ ସେ ବୀର ଫାଲଗୁନି
ଖଡ଼ଗରେ ସେ ଆଶ୍ୱତ୍ଥମାର କେଶ ସହିତ ମସ୍ତକର
ମଣି ଚିରି କରେ ବାହାର ହୋଇ ଅତ୍ୟନ୍ତ କୋପଭର
ପାପରେ ବାଳକ ନିଧନ ନିଷ୍ପ୍ରଭ ବ୍ରହ୍ମତେଜ ହୀନ

ରଜ୍ଜୁବଦ୍ଧ ମଣି ବିହୀନ ଅଶ୍ୱତ୍ଥମାକୁ ଅରଜୁନ
କରିଣ ବନ୍ଧନ ମୋଚନ ଶିବିରୁ ତେଜିଲେ ବହନ

ମୁଣ୍ଡନ ସଂପଦ ହରଣ ଭର୍ତ୍ସନା ରାଜ୍ୟ ନିର୍ବାସନ
ଅଧମ ବ୍ରାହ୍ମଣର ପାଇଁ ବଧ ତୁଲ୍ୟ ଦଣ୍ଡ ଅଟଇ

ଏହା ବ୍ୟତିତ ବିପ୍ର ପାଇଁ ଦୈହିକ ଦଣ୍ଡ ଶାସ୍ତ୍ରେ ନାହିଁ
ଏ ଅନ୍ତେ ଦ୍ରୌପଦୀ ସହିତ ପାଣ୍ଡବେ ହୋଇ ଏକତ୍ରିତ
ମୃତ ସନ୍ତାନଙ୍କୁ ଶୋକରେ ଦାହ କରିଲେ ଶ୍ମଶାନରେ
କହଇ ଧନେଶ୍ୱର ଦାଶ ସୁଜନେ ରାମ ନାମ ଘୋଷ
ବୋଲ ଆନନ୍ଦେ ରାମ ରାମ ଦଣ୍ଡିବ ଦେବ କାଳଯମ

**ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ନାରଦ ବ୍ୟାସ ସମ୍ବାଦେ ନାମ ସପ୍ତମୋଽଧ୍ୟାୟ ।**

*******

## ଅଷ୍ଟମ ଅଧ୍ୟାୟ

### ସୂତ ଉବାଚ

ସୂତ କହନ୍ତି ମନ୍ଦେ ହସି ଶୁଣ ଶୌନକ ଆଦି ଋଷି
ପାଣ୍ଡବେ ଶ୍ରୀକୃଷ୍ଣ ସଙ୍ଗରେ ମହିଳାଙ୍କୁ ରଖି ଆଗରେ
ତର୍ପଣ କରିବା ନିମିତ୍ତ ଗଙ୍ଗାକୁ ଗମିଲେ ତ୍ୱରିତ
ଯଥା ବିଧି କରି ତର୍ପଣ ଶୋକରେ ବିହ୍ୱଳିତ ପ୍ରାଣ

ବିଷ୍ଣୁ ପାଦ ପଦ୍ମ ରେଣୁରେ ପବିତ୍ର ଜାହ୍ନବୀ ଜଳରେ
ଶ୍ରୀହରି ଚରଣ ସ୍ମରିଣ କରିଲେ ପୁନର୍ବାର ସ୍ନାନ
ଏ ଅନ୍ତେ କୃଷ୍ଣ ଭଗବାନ ସ୍ୱକୁଳ ଗୁରୁ ମୁନି ଧୌମ୍ୟ
ଗଙ୍ଗା କୂଳରେ ଉପସ୍ଥିତ ଯୁଧିଷ୍ଠି ଆଦି ପଞ୍ଚ ଭ୍ରାତ ,

ପୁତ୍ର ଶୋକାତୁର ଗାନ୍ଧାରୀ କୁନ୍ତୀ ଓ ଦ୍ରୁପଦ କୁମାରୀ
ସମସ୍ତଙ୍କୁ ପାଶେ ବସାଇ ସଧୀରେ କହିଲେ ବୁଝାଇ
ଏଜୀବ ଅଦୃଷ୍ଟ ଅଧୀନ ଲଭଇ ଜନମ ମରଣ
ମୃତ ବା ଜୀବିତଙ୍କ ପାଇଁ ଶୋଚନା ଉଚିତ ନୁହଁଇ

କାନ୍ଦିଲେ ଯେତେ ମଥା ପିଟି ମୃତକି ଆସଇ ଲେଉଟି
ସକଳେ ଶୋକ ତ୍ୟାଗ କର ଅଦୃଷ୍ଟମାନି ଧୈର୍ଯ୍ୟ ଧର
ଦ୍ରୌପଦୀ କେଶ ଆକର୍ଷଣ ଘୃଣ୍ୟ କର୍ମକୁ ସମର୍ଥନ
ଜନିତ ପାପେ ଅଳ୍ପାୟୁଷ ଦୁର୍ଯ୍ୟୋଧନେ କରି ବିନାଶ

କୂଟ ଚକ୍ରାନ୍ତେ ଅପହୃତ ପୈତୃକ ସାମ୍ରାଜ୍ୟ ସମସ୍ତ
ଯୁଧିଷ୍ଠିରେ କରି ଅର୍ପଣ ସେ ଶ୍ରୀକୃଷ୍ଣ ଭଗବାନ
ବିଧିରେ ତ୍ରୟ ଅଶ୍ୱମେଧ ଯଜ୍ଞ କରାଇ ବାସୁଦେବ
ଦେବରାଜ ସମ ନିର୍ମଳ ଯଶ ବିସ୍ତାରି ଭୂମଣ୍ଡଳ

ପାଣ୍ଡବ ମାନଙ୍କୁ ପ୍ରେମରେ କରି ଆଲିଙ୍ଗନ ସ୍ନେହରେ
ବ୍ୟାସ ପ୍ରଭୃତି ମୁନିଗଣ ଯଥା ବିଧି ବିହି ସମ୍ମାନ
ବ୍ରାହ୍ମଣଙ୍କ ଦ୍ୱାରା ପୂଜିତ ସାତ୍ୟକି ଉଦ୍ଧବ ସହିତ
ଦ୍ୱାରକା ଗମନ ଇଛାରେ ରଥ ଆରୋହଣ ବେଳରେ

ଅଭିମନ୍ୟୁ ନାରୀ ଉତ୍ତରା ଶୋକ ଭୟେ ହୋଇ କାତରା
ସତ୍ୱରେ ପ୍ରବେଶ କରିଣ କୃଷ୍ଣଙ୍କୁ କଲା ନିବେଦନ
ରକ୍ଷାକର ସେ କହି କହି ତାଙ୍କ ଆଡକୁ ଧାଇଁ ଧାଇଁ
ଆସୁଥିବା କଲେ ଦର୍ଶନ ସେହି ଶ୍ରୀକୃଷ୍ଣ ଭଗବାନ

### ଉତ୍ତରା ଉବାଚ

କହେ ଉତ୍ତରା ହାତଯୋଡି ଶ୍ରୀକୃଷ୍ଣଙ୍କର ପାଦେ ପଡି
ହେ ମହାଯୋଗୀ ଦେବଦେବ ହେ ସର୍ବେଶ୍ୱର ହେ ମାଧବ
ତୁମ ବିନା ଆହେ ଗୋସାଇଁ ଅଭୟ ଦାତା କେହି ନାହିଁ
ରଖ ବାରେ ରଖ ଶ୍ରୀଧର ହେ ପ୍ରଭୋ ପାଣ୍ଡବ ସୋଦର

ହେ ବିଭୋହେ ବିଶ୍ୱପାଳକ ଦେଖି ଏହି ଲୌହ ଫଳକ
ବାଣ ମୋ ଆଡେ ଆସେ ଧାଇଁ କର ଉପାୟ ରମା ସାଇଁ
ଏ ବାଣ ପଛେ ମତେ ଦହୁ ମୋ ଗର୍ଭ ଶିଶୁ ରକ୍ଷା ପାଉ

### ସୂତ ଉବାଚ

ସୂତ କହନ୍ତି ଧୀରେ ଧୀରେ ଶୌନକାଦି ମୁନି ଆଗରେ
ଭକ୍ତ ବତ୍ସଳ ଭଗବାନ ଶୁଣି ଉତ୍ତରା ନିବେଦନ
ଜାଣିଲେ ସେ ବିପ୍ର ଅଧମ ଅଶ୍ୱତ୍ଥମା ଏ ବ୍ରହ୍ମବାଣ
ନିଶ୍ଚୟ କ୍ଷେପିଣ ଅଛଇ ପୃଥିବୀ ନିଷ୍ପାଣ୍ଡବା ପାଇଁ

ହେ ଶୌନକ ଏ ବେଳରେ ପଞ୍ଚ ପାଣ୍ଡବ କ୍ରୋଧଭରେ
ପାଞ୍ଚୋଟି ପ୍ରଜ୍ୱଳିତ ଶର ନିଜ ଆଡ଼େ ଆସୁଥିବାର
ବିଲୋକି ନିଜ ଅସ୍ତ୍ରମାନ କରିଲେ ହସ୍ତରେ ଧାରଣ
ମହା ବିପଦ ଦରଶନ କରି ଶ୍ରୀକୃଷ୍ଣ ଭଗବାନ

ନିଜ ଅସ୍ତ୍ର ସୁଦର୍ଶନକୁ ଧରି ରଖିଲେ ପାଣ୍ଡବଙ୍କୁ
ସର୍ବ ଭୂତାତ୍ମା ଯୋଗେଶ୍ୱର ମାୟା ପ୍ରଭାବେ ଉତ୍ତରାର
ଗର୍ଭ ମଧ୍ୟେ କରି ପ୍ରବେଶ ରକ୍ଷା ନିମିତ୍ତ କୁରୁବଂଶ
ଗର୍ଭକୁ ରହିଲେ ଆବୋରି ପାଣ୍ଡବ ସଖା ସେ ଶ୍ରୀହରି

ହେ ଶୌନକ ସେ ବ୍ରହ୍ମବାଣ ନପାରେ କେହି ନିବାରଣ
ଯଦ୍ୟପି ଏ ଅଟେ ଅବ୍ୟର୍ଥ ଶ୍ରୀକୃଷ୍ଣ ତେଜେ ହେଲା ବ୍ୟର୍ଥ
ଯେ ବିଚିତ୍ର ମାୟା ଶକ୍ତିରେ ବିଶ୍ୱ ସୃଜେ ପାଳେ ସଂହାରେ
ଯେ କୃଷ୍ଣ ସର୍ବ ଶକ୍ତିମାନ ତା ପକ୍ଷେ ଏହି ବ୍ରହ୍ମବାଣ

ନିବାରଣ ଯେ ଅସମ୍ଭବ ବୋଲି କେବା ହୃଦେ ଭାବିବ
ବ୍ରହ୍ମାସ୍ତ୍ର ତେଜୁ ସୁରକ୍ଷିତ ପୁତ୍ର ପୁତ୍ରବଧୂ ସହିତ
ସେ କୁନ୍ତୀ ଦେବୀ ମହାସତୀ ଶ୍ରୀକୃଷ୍ଣେ ଆରମ୍ଭିଲେ ସ୍ତୁତି
ହେ କୃଷ୍ଣଚନ୍ଦ୍ର ଭଗବାନ ସର୍ବ ନିୟନ୍ତା ସନାତନ

ପ୍ରକୃତି ସ୍ୱାମୀ ପରମାତ୍ମା ସର୍ବ ଜୀବର ଅନ୍ତରାତ୍ମା
ବ୍ୟାପିଛ ବାହ୍ୟ ଅଭ୍ୟନ୍ତର ମାତ୍ର ଅବାହଂମନ ଗୋଚର
ହେ ପ୍ରଭୋ ତବ ଶ୍ରୀଚରଣ କରଇ ଏଦୀନା ବନ୍ଦନ
ଯେପରି ଅରସିକ ଜନ ନଟ ଅଭିନୟ ଦର୍ଶନ

କରି ରସରେ ନ ମଜ୍ଜଇ କେବଳ ସେ ଚାହିଁ ରହଇ
ମାୟା ଆଚ୍ଛନ୍ନ ମନ୍ଦମତି ମୁ ଜଣେ ଅଜ୍ଞାନ ଯୁବତୀ
ମୋର ସେ ଦିବ୍ୟ ଜ୍ଞାନ ନାହିଁ ତତେ ଦେଖିବି ନ ଚିହ୍ନଇ
ପରମ ହଂସ ଧ୍ୟାନ ମଗ୍ନ ନିର୍ମଳ ମନା ରାଗହୀନ

ମୁନିମାନଙ୍କୁ ଭକ୍ତି ଯୋଗ ଶିକ୍ଷାପାଇଁ ହେ ମହାଭାଗ
ଲୀଳା ମାନୁଷ ବିଗ୍ରହରେ ତବ ଅବତାର ଧରାରେ
ମୁଁ ଜଣେ ସାଧାରଣ ନାରୀ ବୁଝିବି ତତେ ବା କିପରି
ହେ କୃଷ୍ଣ ଦେବକୀ ନନ୍ଦନ ହେ ଗୋପାଳ ହେ ଜନାର୍ଦ୍ଦନ

ପ୍ରଭୋ ବାସୁଦେବ ଗୋବିନ୍ଦ ନମୋ ତୋ ଚରଣାର ବିନ୍ଦ
ହେ କୃଷ୍ଣ କମଳ ନୟନ ପଦ୍ମନାଭ ପଦ୍ମ ଚରଣ
ହେ କମଳ ମାଳା ଧାରଣ ତୋ ପାଦେ କରଇ ପ୍ରଣାମ
ସେ କଂସ ଦେବକୀକୁ ଆଣି ବନ୍ଧନ କରି ପାଦ ପାଣି

ନେଇ କାରାଗାରେ ରଖିଲା ଏପରି କିଛି କାଳ ଗଲା
ଯଥା ଦେବକୀର ବନ୍ଧନ ଶୋକ ନିବାରିଲେ ଆପଣ
ହେ ହୃଷୀକେଶ ଦାମୋଦର ସେ ପରି ପୁତ୍ର ସହ ମୋର
ନାନା ବିପଦୁ ବାରମ୍ବାର ହେ ହରି କରିଛ ଉଦ୍ଧାର

ଭୀମ ବିଷ ଲଡୁ ଭକ୍ଷଣ କୁଟେ ଯତୁ ଗୃହେ ଦହନ
ରାକ୍ଷସଙ୍କର ଆକ୍ରମଣ ଦ୍ୟୁତ କ୍ରୀଡା ବନ ଗମନ
ମହା ଯୋଦ୍ଧାଙ୍କ ଆକ୍ରମଣ ଦ୍ରୋଣିର ବ୍ରହ୍ମାସ୍ତ୍ର ପ୍ରେରଣ
କୃପା ବହି ହେ ନାରାୟଣ ରକ୍ଷା କରିଛନ୍ତି ଆପଣ

ଯେ ବପଦ ଯୋଗୁ ଆପଣ ଦେଉଅଛନ୍ତି ଦରଶନ
ସେହି ବପଦ ଆମ ହେଉ ତବ ଦର୍ଶନ ମିଳୁଥାଉ
ହେ ପାଣ୍ଡବ ପ୍ରାଣବନ୍ଧୁ ଦୟାକର ହେ ଜଗବନ୍ଧୁ
ପତିତ ଶରଣ ରକ୍ଷଣ କେବଳ ଅଟନ୍ତି ଆପଣ

ବିଦ୍ୟା ସଂପଦ ଆଭିଜାତ୍ୟ ସୌଭାଗ୍ୟ ଗର୍ବରେ ପ୍ରମତ୍ତ
ବ୍ୟକ୍ତି ମାନଙ୍କୁ ଯେ ତୁମର ପରଶ ନ ହୁଏ ଗୋଚର
ତୁମେ ଅକିଞ୍ଚନ ଭକ୍ତର ଚରଣ ଆଶ୍ରିତ ଜନର
ସର୍ବସ୍ୱ ମାୟାନିବାରକ ହେ ପ୍ରଭୋ କମଳା ନାୟକ

ରାଗ ରହିତ ଆତ୍ମାରାମ ମୁକ୍ତି ଦାତା ଘେନ ପ୍ରଣାମ
ହେ କୃଷ୍ଣ କମଳ ନୟନ ବିଶ୍ୱ ନିୟାମକ ଆପଣ
ହେ ବିଭୂ ଅନାଦି ଅନନ୍ତ କାଳସ୍ୱରୂପ ଭଗବନ୍ତ
ସମେ ସର୍ବତ୍ର ବିଦ୍ୟମାନ ମାୟା ଜଡିତ ଜୀବଗଣ

ଆପଣଙ୍କୁ କରି ନିମିତ୍ତ ଅନ୍ୟୋନ୍ୟ କଳହ ନିରତ
ମାତ୍ର ତୋଠାରେ କଳହର ବୈଷମ୍ୟ ନାହିଁ ଦାମୋଦର
ଆହେ ଶ୍ରୀକୃଷ୍ଣ ଆତ୍ମାରାମ ପ୍ରିୟ ଅପ୍ରିୟ ନାହିଁ ତୁମ
ମାନବ ମୋହ ଅନ୍ଧହୋଇ ତତେ ପକ୍ଷପାତୀ ଭାବଇ

ହେ ଲୀଳା ମାନୁଷ ବିଗ୍ରହ  କେବା ବୁଝେ ତୋ ଅଭିପ୍ରାୟ
ଆହେ ବିଶ୍ୱାତ୍ମା ଭଗବାନ  ଅଜନ୍ମା ହେଲେ ବି ଆପଣ
ପଶୁ ଯୋନିରେ ତୁ ବରାହ  ମାନବେ ରାମ ଦୟାମୟ
ଋଷିରେ ନରନାରାୟଣ  ଜଳଜନ୍ତୁରେ ତୁହିମୀନ

କରିଛ ଜନମ ଗ୍ରହଣ  ଆକର୍ତ୍ତା ହୋଇ କରୁ କର୍ମ
ତୁମକୁ ମଧ୍ୟ ନିଜେ ଭୟ  ଭୟକରେ ହେ ଦୟାମୟ
ବାଲ୍ୟ କାଳରେ ଯେ ବେଳରେ ଦଧି ଭାଣ୍ଡକୁ ଭାଙ୍ଗିଦେଲେ
ସେ ଅପରାଧରେ ତୁମକୁ  ଯଶୋଦା ନେଲେ ବାନ୍ଧିବାକୁ

ସେକାଳେ ଜନନୀ ତାଡନା  ଭୟରେ ଭୀତ ତ୍ରସ୍ତମନା
ତୁମେ ତଳକୁ କରି ମୁହଁ  ବ୍ୟାକୁଳ ହେଲ ଅତିଶୟ
ନେତ୍ରୁ କଜ୍ଜଳ ମିଶା ଲୁହ  ଗଡାଇ ପ୍ରକାଶିଲ କୋହ
ସେହି ଅବସ୍ଥା ଭାବି ମୁହିଁ  ହୃଦୟେ ଆଶ୍ଚର୍ଯ୍ୟ ଜାଗଇ

ଯଥା ମଳୟ ପର୍ବତର  ଯଶ କରିବାକୁ ବିସ୍ତାର
ଜନମ ଚନ୍ଦନ ବୃକ୍ଷର  ଧର୍ମାତ୍ମା ଯୁଧିଷ୍ଠିରଙ୍କର
କିରତୀ ବିସ୍ତାର ନିମିତ୍ତ  ଆପଣ ଯଦୁବଂଶେ ଜାତ
ବିଜ୍ଞଜନଙ୍କ ଏବଚନ  ଅଟଇ ଧ୍ରୁବ ସତ୍ୟଜାଣ

ଦେବକୀ ଦେବୀ ବସୁଦେବ  ତୁମକୁ ପୁତ୍ର ରୂପେ ଲାଭ
ନିମିତ୍ତ ପୂର୍ବ ଜନମରେ  କଠୋରତପ କରିଥିଲେ
ପ୍ରାର୍ଥନା ପୁରଣେ ତାଙ୍କର  ପିତାମାତା ରୂପେ ସ୍ୱୀକାର
ଦୁଷ୍ଟନାଶି ଧର୍ମ ସ୍ଥାପନ  ସାଧିବାକୁ ବିଶ୍ୱ କଲ୍ୟାଣ

ଦେବକୀ ବସୁଦେବ ସୁତ  ସ୍ୱରୂପେ ଗୋପପୁରେ ଜାତ
କହନ୍ତି କେତେ ବିଜ୍ଞଜନ  ସାଂଗରେ ନଉକା ସମାନ
ଭୂରି ଭାରରେ ଅବସନ୍ନା  ଦୂର ପାଇଁ ପୃଥ୍ୱୀ ଯାତନା
ତୁମେ ବ୍ରହ୍ମାଙ୍କ ପ୍ରାର୍ଥନାରେ  ଜନମ ଲଭିଛ ଧରାରେ

ଏହି ସଂସାରୀ ଜୀବଗଣ  ହୋଇ ଅବିଦ୍ୟାର ଅଧୀନ
ଫଳ କାମନା ମତି ଭ୍ରମ  ଆଚରି ନାନା କାମ୍ୟ କର୍ମ
ହୋଇଣ ଅଦୃଷ୍ଟର ବଶ  ଭୋଗନ୍ତି ନାନା ବିଧ କ୍ଳେଶ
ତୋ ପୁଣ୍ୟ ଲୀଳାର କୀର୍ତ୍ତନେ ଶ୍ରବଣ ସ୍ମରଣ ପଠନେ

ସେ କ୍ଳେଶ ନିବାରଣ ପାଇଁ  ଆପଣ ଜନମନ୍ତି ମହୀ
ସୌଭାଗ୍ୟ ବନ୍ତ ଭକ୍ତ ଗଣ  ବାରମ୍ବାର ଲୀଳା କୀର୍ତ୍ତନ
ଶ୍ରବଣେ ପରମ ଆନନ୍ଦ  ସୁଖ ଲଭି ଆହେ ଗୋବିନ୍ଦ
ଜନ୍ମ ମରଣ ନିବାରଣ  ତୋପାଦ କରନ୍ତି ଦର୍ଶନ

ହେ ପ୍ରଭୋ ଆପଣଙ୍କ କୃତ୍ୟ  ସମାପ୍ତ ହୋଇଅଛି ସତ୍ୟ
ବର୍ତ୍ତମାନର ରାଜାମାନେ  ଯେ ଦୁଃଖିତ ମନ୍ଦ ମରଣେ
ତୁମର ଚରଣ କମଳ  ଆଶ୍ରୟ ତାଙ୍କର କେବଳ
ସେମାନେ ଅନୁଗତ ବନ୍ଧୁ  ଆପଣଙ୍କ ହେ ଦୟା ସିନ୍ଧୁ

ତାହାଙ୍କୁ ଛାଡିଯିବା ପାଇଁ  କେବେ ହେ ଉଚିତ ନୁହଁଇ
ହେ ପ୍ରଭୋ ସର୍ବ ଅନ୍ତର୍ଯ୍ୟାମୀ  ସକଳ ଇନ୍ଦ୍ରିୟର ସ୍ୱାମୀ
ତୁମ ବ୍ୟତୀତ ଇନ୍ଦ୍ରିଗଣ  କାର୍ଯ୍ୟ କରିବାକୁ ଅକ୍ଷମ
ଆପଣଙ୍କର ଅଦର୍ଶନେ  ପାଣ୍ଡବେ ଯାଦବ ଜୀବନେ

କି ଅବା ଅଛି ପ୍ରୟୋଜନ  ପ୍ରାଣ ବିହୀନ ପିଣ୍ଡ ସମ
ଧ୍ୱଜାଦି ବଜ୍ରାଙ୍କୁଶ ଚିହ୍ନ  ଚରଣ ତବ ସୁଶୋଭନ
ଚିହ୍ନ ଅଙ୍କିତ ଏ ହସ୍ତିନା  ଭୂମି ଶୋଭିତ ପୁତ ସିନା
ତେଜି ଚାଲିଗଲେ ଆପଣ  ଏ ପୁରୀ ହୋଇବ ଶ୍ରୀହୀନ

ଏହି ରାଜ୍ୟର ଲତା ଗୁଳ୍ମ  ଓଷଧି ଜନ ପନ୍ଦ ବନ
ସରସୀ ଅଦ୍ରି ଶଷ୍ୟ କ୍ଷେତ୍ର  ତବ ଦୃଷ୍ଟିପାତେ ପବିତ୍ର
ବୃଦ୍ଧି ଲଭନ୍ତି ଦିନୁ ଦିନ  ତୁମେ ଗଲେ ହେବ ଶ୍ରୀହୀନ
ହେ କୃଷ୍ଣ ତୁତ ବିଶ୍ୱ ମୂର୍ତ୍ତି  ଜଗଜ୍ଜୀବନ ପ୍ରାଣ ପତି

ଯଦୁ ପାଣ୍ଡବ ମାନଙ୍କରେ  ଯେଉଁ ମମତା ତୋ ହୃଦରେ
ସେହି ବନ୍ଧନ ବର୍ତ୍ତମାନ  ଛେଦନ ନକର ଆପଣ
ଯେ ଯଦୁନାଥ ଯେ ପ୍ରକାର  ଅଖଣ୍ଡ ଧାରା ଜାହ୍ନବୀର
ସାଗରକୁ ହୁଏ ଧାବିତ  ତଥା ସର୍ବଦା ମୋର ଚିତ୍ତ

ନହୋଇ ବିଷୟ ଜଡିତ  ସର୍ବତ୍ର ସଦା ଅବାରିତ
ଆପଣଙ୍କ ପଦ କମଳେ  ହେ ପ୍ରଭୋ ରହୁ ଅବିଚଳେ
ହେ କୃଷ୍ଣ ସାବ୍ୟସାଚୀ ବନ୍ଧୁ  ଯଦୁ ତିଳକ କୃପାସିନ୍ଧୁ
ଗୋବିନ୍ଦ ଅମୀତ ବିକ୍ରମ  ବିଦ୍ରୋହୀ ଦୁଷ୍ଟ ନୃପଗଣ

ବିନାଶି ଗୋ ଦେବ ବ୍ରାହ୍ମଣ ଭୟ ହରିବାକୁ ଆପଣ
କରିଛ ଧରା ବିତରଣ ମହାଯୋଗେଶ ନାରାୟଣ
ହେ ବିଶ୍ୱ ଗୁରୁ ଭଗବାନ ଘେନନ୍ତୁ ଏଦୀନା ପ୍ରଣାମ

### ସୂତ ଉବାଚ

ସୂତ ବୋଲନ୍ତି ହେ ଶୌନକ ଶୁଣ କୃଷ୍ଣଲୀଳା କୌତୁକ
କୁନ୍ତୀ ଦେବୀ ଅତି ଅଧୁର ବଚନରେ ଶ୍ରୀକୃଷ୍ଣଙ୍କର
ଅପାର ମହିମା ବର୍ଣ୍ଣନ କଲେ ଭକ୍ତିରେ ସ୍ତୁତି ଗାନ
ସେହି କୃଷ୍ଣ ମନ୍ଦହାସ୍ୟରେ କୃପା କରିଲେ କୁନ୍ତୀ ଠାରେ

ଏ ଅନ୍ତେ କୃଷ୍ଣ କୁନ୍ତୀଙ୍କର ପ୍ରାର୍ଥନା କରିଣ ସ୍ୱୀକାର
ପ୍ରବେଶି ହସ୍ତିନା ପୁରରେ ଅତି ଆନନ୍ଦିତ ଚିତ୍ତରେ
ସୁଭଦ୍ରା ଆଦି ନାରୀଗଣ ଠାରୁ ସେ ମେଲାଣି ଘେନିଣ
ଦ୍ୱାରକା ଗମନେ ଉଦ୍ୟତ ଦେଖି ଅର୍ଜୁନ ଧର୍ମ ସୁତ

ପ୍ରୀତିରେ କରି ସମ୍ଭାଷଣ ହସ୍ତିନା ପୁରେ କିଛି ଦିନ
ସ୍ନେହରେ ରହିବା ନିମିତ୍ତ ପ୍ରାର୍ଥନା କଲେ ଯୋଡ଼ି ହସ୍ତ
ରାଜା ଯୁଧିଷ୍ଠିର ସ୍ୱଜାତି କୁଟୁମ୍ବେ ନିଧନରେ ଅତି
ଶୋକ ଦୁଃଖେ ହେଲେ ସଂତପ୍ତ ତତ୍ତ୍ୱଜ୍ଞ ପରାଶର ସୂତ

ସେ ବିଚିତ୍ର କର୍ମା ଶ୍ରୀକୃଷ୍ଣ ପ୍ରବୋଧନେ ନ ହେଲେ ତୃପ୍ତ
ହେ ଶୌନକାଦି ମୁନିଗଣ ଏ ଅନ୍ତେ ଯାହା ହେଲା ଶୁଣ
ସେ ଯୁଧିଷ୍ଠି ଧର୍ମ ନନ୍ଦନ ସଂଗ୍ରାମେ ଆତ୍ମୀୟ ନିଧନ
ଚିନ୍ତାରେ ମାୟା ସ୍ନେହଗ୍ରସ୍ତ ଚିତ୍ତରେ ଭାବିଲେ ଏମନ୍ତ

ମୁହିଁ ଦୁରାଚାର ଦୁରନ୍ତ ହୃଦେ କି ମୋହ ଉପସ୍ଥିତ
ଭକ୍ଷ୍ୟ ଯେ ଶ୍ୱାନ ଶୃଗାଳର ସେ ଦେହ ପାଇଁ ମୁଁ ପାମର
କେତେ ଯେ ଅକ୍ଷୌହିଣୀ ସୈନ୍ୟ ବଧ କଲି ମୁଁ ଅକାରଣ
ବାଳକ ବାନ୍ଧବ ବ୍ରାହ୍ମଣ ଭ୍ରାତା ପିତୃବ୍ୟ ଗୁରୁଜନ

ବଧର ହେଲି ମୁଁ କାରଣ ନର୍କୁ ନାହିଁ ମୋ ପରିତ୍ରାଣ
ନ୍ୟାୟ ଯୁଦ୍ଧରେ ଶତ୍ରୁବଧ କଲେ ନ ଘଟଇ ପ୍ରମାଦ
ଏହା ଶାସ୍ତ୍ର ଆପ୍ତ ବଚନ ପ୍ରଜା ବତ୍ସଳ ନୃପଗଣ
କେବଳ କରନ୍ତି ପାଳନ ମୁଁ ଅତି ରାଜ୍ୟ ଲୋଭୀ ହୀନ

ନିହତ ଜ୍ଞାତି ମାନଙ୍କର କୁଳ ରମଣୀ ଗଣଙ୍କର
କଲି ଯେ ଅନିଷ୍ଟ ସାଧନ କଲେ ଗାର୍ହସ୍ଥ୍ୟ ଯଜ୍ଞ କର୍ମ
କେବେ ନହେବ ନିବାରଣ ନାହିଁ ନାହିଁ ମୋ ପରିତ୍ରାଣ
ସୁରାରେ ଅପବିତ୍ର ପାତ୍ର ସୁରାରେ କରିଲେ ଧଉତ

ଯେପରି ନ ହୁଅଇ ପୂତ ତଥା ପ୍ରାଣୀ ହତ୍ୟା ଜନିତ
ମୋର ଏହି ପାପ ସମସ୍ତ କଲେବି ଅଶ୍ୱମେଧ ଶତ
କେବେ ହେଁ ନ ହୋଇବ ଦୂର ନିଶ୍ଚୟ ନର୍କଗତି ମୋର
କହଇ ଦାଶ ଧନେଶ୍ୱର ସୁଜନେ କୃଷ୍ଣ ନାମ ସ୍ମର
ଛିନ୍ନ ହେବ ଭବବନ୍ଧନ ସଫଳ ହେବ ନର ଜନ୍ମ

**ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ କୁନ୍ତୀ ସ୍ତୁତି ତଥା ଯୁଧିଷ୍ଠିର ଅନୁତାପେ ନାମ ଅଷ୍ଟମୋଽଧ୍ୟାୟ ।**

*******

## ନବମ ଅଧ୍ୟାୟ

### ସୂତ ଉବାଚ

କହନ୍ତି ସୂତ ମୁନିବର ଏ ଅନ୍ତେ ରାଜା ଯୁଧିଷ୍ଠିର
ପ୍ରଜାଗଣ ନାଶ ଜନିତ ପାପ ଭୟେ ହୋଇ ଦୁଃଖିତ
ଯେଉଁସ୍ଥାନେ କୁରୁକ୍ଷେତ୍ରରେ ଭୀଷ୍ମଥିଲେ ଶର ଶଯ୍ୟାରେ
ସେ ସ୍ଥାନକୁ କଲେ ଗମନ ବିଚାର ପାଇଁ ଧର୍ମଜ୍ଞାନ

ସେ କାଳେ ସୁବର୍ଣ୍ଣ ମଣ୍ଡିତ ଆରୋହି ଅଶ୍ୱ ଗଜ ରଥ
ଭୀମାର୍ଜୁନାଦି ଭ୍ରାତାଗଣ ଶ୍ରୀ ବ୍ୟାସ ଦେବ ଗୁରୁ ଧୌମ୍ୟ
ସହିତ କୃଷ୍ଣ ଭଗବାନ ସତ୍ୱରେ କରିଲେ ଗମନ
ସେ ବେଳେ ରାଜା ଯୁଧିଷ୍ଠିର ଯକ୍ଷପରି ବୃତ୍ତ କୁବେର

ସଦୃଶ ନୟନା ଭିରାମ ସୁଷମା କରିଲେ ଧାରଣ
ପାଣ୍ଡବେ ଅନୁଚର ସଙ୍ଗେ ଶ୍ରୀକୃଷ୍ଣ ସହ ଅନୁରାଗେ
ସ୍ୱର୍ଗଚ୍ୟୁତ ଦେବ ସମାନ ଭୂମି ଶରଶଯ୍ୟା ଶୟନ
ପିତାମହ ଭୀଷ୍ମେ ଦର୍ଶନ ଭକ୍ତିରେ କରିଲେ ପ୍ରଣାମ

ଭରତ କୁଳ ଅବତଂସ ଭୀଷ୍ମଙ୍କ ଦର୍ଶନ ଲାଳସ
ସକଳ ଦେବର୍ଷି ରାଜର୍ଷି ବ୍ରହ୍ମର୍ଷି ଉପସ୍ଥିତ ଆସି
ନାରୀ ପର୍ବତ ସଶିଷ୍ୟ ଭରଦ୍ୱାଜ ଯେ ବେଦ ବ୍ୟାସ
ଗୃହଦଶ୍ୱ ପରଶୁରାମ ଅତ୍ରି ବଶିଷ୍ଠ ଗଉତମ

କୌଶିକ ଭୃଗୁ ସୁଦର୍ଶନ କଶ୍ୟପ ଆଦି ଆତ୍ମାରାମ
ମୁନିଗଣ ଶିଷ୍ୟ ସହିତ ସେଠାରେ ହେଲେ ଉପସ୍ଥିତ
ସେ ଭୀଷ୍ମ ପରମ ଧାର୍ମିକ ଦେଶ କାଳର ବିଚାରକ
ଆଗତ ଋଷିଙ୍କୁ ଆଦରେ ସମ୍ମାନ ଯଥୋଚିତ କଲେ

ଯେଉଁ କୃଷ୍ଣଙ୍କୁ ହୃଦୟରେ ଯୋଗୀଏ ଚିନ୍ତନ୍ତି ଧ୍ୟାନରେ
ମାୟା ବିଧୃତ କଳେବର ହୃଦସ୍ଥ ପରମ ଈଶ୍ୱର
ଦୟାରେ ସମୀପେ ଆସୀନ ଶ୍ରୀକୃଷ୍ଣଙ୍କୁ କରି ଦର୍ଶନ
ଭୀଷ୍ମଦେବ ହୃଦକମଳରେ ପ୍ରଣାମ କରିଲେ ଧ୍ୟାନରେ

ବିନୟୀ ସ୍ନେହ ପରାୟଣ ପାଣ୍ଡବଙ୍କୁ କରି ଦର୍ଶନ
ସ୍ନେହାଶ୍ରୁପୂର୍ଣ୍ଣ ନୟନରେ ବିଲୋକି ଏପରି କହିଲେ
ତୁମ୍ଭେମାନେ କୃଷ୍ଣ ଆଶ୍ରିତ ଧର୍ମାତ୍ମା ଗୋ ବ୍ରହ୍ମଣ ଭକ୍ତ
ଏହି ସାମାନ୍ୟ ଦୁଃଖପୂର୍ଣ୍ଣ ଜୀବନେ ଯାପନେ ଅକ୍ଷମ

ହୋଇ ବା ଅନ୍ୟାୟ ଯେମନ୍ତ ଦୁଃଖର ବିଷୟ ତେମନ୍ତ
ତୁମର ବାଲ୍ୟ ଅବସ୍ଥାରେ ପଣ୍ଡୁଗମିଲେ ସ୍ୱର୍ଗପୁରେ
ବଧୂକୁନ୍ତୀ ଦୁଃଖ କ୍ଳେଶରେ ତୁମକୁ ପାଳନ କରିଲେ
ଏବେ ମଧ ତୁମ ସଙ୍ଗରେ ଦୁଃଖ ଭୋଗନ୍ତି ନିରନ୍ତରେ

ନଭେ ମେଘମାଳା ଯେମନ୍ତ ବାୟୁବଳେ ହୁଏ ଚାଳିତ
ଏ ଜୀବ ଜଗତ ତେମନ୍ତ କାଳ ବଶ କାଳ ଚାଳିତ
ଯହିଁ ରାଜା ଧର୍ମ ନନ୍ଦନ ଗାଦା କୁଶଳୀ ଭୀମସେନ
ଧନୁର୍ଦ୍ଧର ବୀର ଅର୍ଜୁନ ସଖା ଶ୍ରୀକୃଷ୍ଣ ଭଗବାନ

ସେଠାକୁ ବିପଦ ଆସଇ ଏ ଅତି ଆଶ୍ଚର୍ଯ୍ୟ ଅଟଇ
ଆହେ ନୃପଧର୍ମ ନନ୍ଦନ ପୃଥ୍ୱୀରେ ଅଛ ଯେତେ ଦିନ
ଶ୍ରୀକୃଷ୍ଣଙ୍କର ମନୋରଥ ଜାଣିବାକୁ ହେବ ସମର୍ଥ
ବିବେକୀ ଶାସ୍ତ୍ରଜ୍ଞ ପଣ୍ଡିତ ଜାଣିବାକୁ ହେଲେ ଚେଷ୍ଟିତ

କେବଳ ହୁଅଇ ମୋହିତ ଶ୍ରୀକୃଷ୍ଣଙ୍କ ମାୟା ବିଚିତ୍ର
ହେ ଭରତ କୁଳ ତିଳକ ହେ ପ୍ରଭୁ ପରମ ଧାର୍ମିକ
ସୁଖ ଦୁଃଖ କ୍ଳେଶ ସମସ୍ତ ସର୍ବଦା ଈଶ୍ୱର ଆୟତ
ଏହା ବୁଝି ଶ୍ରୀକୃଷ୍ଣଙ୍କର ଆଦେଶେ ପ୍ରଜାଗଣ ପାଳ

ଏ କୃଷ୍ଣ ସ୍ୱୟଂ ପରଂବ୍ରହ୍ମ ଆଦି ପୁରୁଷ ଆତ୍ମାରାମ
ଯଦୁକୂଳରେ ହୋଇ ଜାତ ମାୟାରେ କରନ୍ତି ମୋହିତ
ରହସ୍ୟ ମୟ ଲୀଳାମାନ କରନ୍ତି ଯେ ନନ୍ଦ ନନ୍ଦନ
ହେ ରାଜା ମନଦେଇ ଶୁଣ କୃଷ୍ଣ ପ୍ରଭାବ ଗୁହ୍ୟତମ

ସ୍ୱୟଂ ଯୋଗେଶ୍ୱର ଶଙ୍କର ଭଗବାନ ଅଂଶାବତାର
ପୁନଶ୍ଚ ମହର୍ଷି କପିଳ ନାରଦ ଜାଣନ୍ତି କେବଳ
ଯାହାଙ୍କୁ ମାତୁଳ ତନୟେ ଭାବି କରୁଛ ଅତିସ୍ନେହ
ସେ ତୁମର ଦୂତ ରୂପେ ଗଲେ ଦୁର୍ଯ୍ୟୋଧନ ସମୀପେ

ଯେ ତୁମ ସାରଥି ରୂପରେ ରଥ ଚଳାଉଥିଲେ ସମରେ
କେତେବେଳେ ବା ମନ୍ତ୍ରୀ ହୋଇ ଗୁପ୍ତ ମନ୍ତ୍ରଣା ଥିଲେ ଦେଇ
ସେତ ଶ୍ରୀକୃଷ୍ଣ ପରମାତ୍ମା ସକଳ ଜୀବଗଣ ଆତ୍ମା
ଜ୍ଞାନୂପୀ ସମ ଦର୍ଶନ ଯାହାଙ୍କ ନାହିଁ ଅଭିମାନ

ସର୍ବଦା ରାଗ ଦ୍ୱେଷ ହୀନ ଗର୍ବ ପର୍ବତ ବଜ୍ରସମ
ଯେ ଉଚ୍ଚ ନିଚ କର୍ମର କରନ୍ତି ଯଥାର୍ଥ ବିଚାର
ଦେଖ ହେ ରାଜା ଯୁଧିଷ୍ଠିର ମୁଁ ଅନନ୍ୟ ଭକ୍ତ ତାଙ୍କର
ତେଣୁ ପ୍ରାଣ ତ୍ୟାଗ ବେଳରେ ଦେଖା ଦେବା ପାଇଁ ଏଠାରେ

ହେଲେ ସାକ୍ଷାତ ଉପସ୍ଥିତ ଶ୍ରୀକୃଷ୍ଣଙ୍କ କୃପା ଏମନ୍ତ
ଯାଠାରେ ଏକାନ୍ତ ଭକ୍ତିରେ ଚିତ୍ତନିବେଶି ନିରନ୍ତରେ
ମୁଖରେ ଯାନାମ କୀର୍ତ୍ତନ ଶରୀର ତେଜି ମୁନିଗଣ
କାମ କୃତ କର୍ମ ବନ୍ଧନ ତକ୍ଷଣେ କରନ୍ତି ଛେଦନ

ସେ ଦେବ ଦେବ କୃଷ୍ଣଙ୍କର ଯା ରୂପସଦା ଧେୟ ମୋର
ସେହି ମନ୍ଦହାସ ଶୋଭନ ପରିଧାନ ପୀତ ବସନ
ଅରୁଣ କମଳ ନୟନ ବନମାଳିକା ବିଭୂଷଣ
ଯୋଗୀ ଭକ୍ତିର ପ୍ରାଣ ଧନ ବଂଶୀ ବଦନ ଅଭିରାମ

ମୋର ପ୍ରାଣ ତ୍ୟାଗ ପର୍ଯ୍ୟନ୍ତ ଏଠାରେ ହୋଇ ଉପସ୍ଥିତ
ହୁଅନ୍ତୁ ମୋ ନେତ୍ର ଗୋଚର ଭବସାଗର କର୍ଣ୍ଣଧାର

## ସୂତ ଉବାଚ

ସୂତ କହନ୍ତି ଆନନ୍ଦରେ ଶୌନକ ମୁନିଙ୍କ ଆଗରେ
ଭୀଷ୍ମଙ୍କର ବାକ୍ୟ ଶୁଣିଣ ଯୁଧିଷ୍ଠିର ଧର୍ମ ନନ୍ଦନ
ଋଷିଗଣଙ୍କ ସମକ୍ଷରେ ଶୟନ ଶରର ଶଯ୍ୟାରେ
ଭୀଷ୍ମଙ୍କୁ ଧର୍ମ ବିଷୟରେ ବିବିଧ ପ୍ରଶ୍ନ ପଚାରିଲେ

ତତ୍ତ୍ୱଜ୍ଞ ଭୀଷ୍ମ ବର୍ଣ୍ଣାଶ୍ରମ ପୁରୁଷ ମାନଙ୍କ ସ୍ୱଧର୍ମ
ରାଗ ବୈରାଗ୍ୟର କାରଣ ପ୍ରବୃତ୍ତି ନିବୃତ୍ତିର ଧର୍ମ
ଦାନ ମୁକତି ରାଜଧର୍ମ ନାରୀର ଧର୍ମ ମୁନିଧର୍ମ
ଭଗବତ ଧର୍ମ ବିଷୟରେ କଲେ ବର୍ଣ୍ଣନା ସଂକ୍ଷେପରେ

ଧର୍ମ ଅର୍ଥ କାମ ମୁକତି ଏଚାରି ପୁରୁଷାର୍ଥ ପ୍ରାପ୍ତି
ସାଧନା ମାର୍ଗ ବିଷୟରେ ଉପାଖ୍ୟାନ ମାନ ବର୍ଣ୍ଣିଲେ
ଭୀଷ୍ମ ଏପରି ନାନାଧର୍ମ କଥା କରୁ କରୁ ବର୍ଣ୍ଣନ
ଯୋଗୀ ଇଚ୍ଛା ମୃତ୍ୟୁ ବାଞ୍ଛିତ ଉତ୍ତରାୟଣ ଉପସ୍ଥିତ

ସହସ୍ରରଥୀ ନେତା ଭୀଷ୍ମ କରି ମନ ବାକ୍ୟ ସଂଯମ
ଶଙ୍ଖ ଚକ୍ର ଗଦା ନଳୀନ ଚତୁର୍ଭୁଜରେ ସଶୋଭନ
ପୀତ ବସନ ପରିଧାନ ନୟନ ଶ୍ରବଣା ଭିରାମ
ଶ୍ରୀକୃଷ୍ଣଙ୍କ ଦିବ୍ୟରୂପରେ ଚାହିଁ ନିର୍ନିମେଷ ନେତ୍ରରେ

ସଂପୂର୍ଣ୍ଣ ଭାବରେ ତହିଁରେ ମାନସ ସମର୍ପଣ କଲେ
କୃଷ୍ଣରେ ଚିତ୍ତ ସମର୍ପଣ କରନ୍ତେ ହେଲେ କୃପାଧନ୍ୟ
ସର୍ବ ଅଶୁଭ ଦୂର ହେଲା ଅସ୍ତ୍ରାଦି ବ୍ୟଥା ପ୍ରଶମିଲା
ସକଳ ଶରୀର ଯନ୍ତ୍ରଣା ବିସ୍ମରି ଭୀଷ୍ମ ମହାମନା

ବିନୟ ଅନନ୍ୟ ଭକ୍ତିରେ ସ୍ତୁତି ଆରମ୍ଭିଲେ କୃଷ୍ଣରେ
ହେ ଯଦୁବଂଶ ଅବତଂସ ଯୋଗୀମୁନି ମାନସ ହଂସ
ହେ ଷଡ ଐଶ୍ୱର୍ଯ୍ୟ ସଂପନ୍ନ ହେ ବିଭୂଅଂଶ ବୃହତ୍ତମ
ସର୍ବ ବ୍ୟାପକ ସନାତନ ଅନ୍ତର୍ଯ୍ୟାମୀ ପୁରୁଷୋତ୍ତମ

ଲଭି ତୋ ଈକ୍ଷଣ ଶକତି ସଂସାର ରଚଇ ପ୍ରକୃତି
ତୁ ଲୀଳା ପାଇଁ ଅବତରୁ ସନ୍ଥ ପାଳି ଦୁଷ୍ଟ ସଂହାରୁ
ଅନ୍ତ କାଳରେ ମୋର ମନ ତୋ ପାଦେ କଲି ସମର୍ପଣ
ହେ ଦୀନବନ୍ଧୁ ଦାମୋଦର ହେ କୃପାସିନ୍ଧୁ କୃପାକର

ହେ ନବ ତମାଳ ଶ୍ୟାମଳ ନୟନ ଅମଳ କମଳ
ପୀତାମ୍ବର ଅଙ୍ଗେ ଶୋଭଇ ସୂର୍ଯ୍ୟ କିରଣେ ଝଲସଇ
ଅଳକା ଆବଳି ସଂଯୁକ୍ତ ନଳିନ ମୁଖ ସୁଶୋଭିତ
ହେ ମନୋହର ମୂରତି ପାର୍ଥ ସାରଥି ଯଦୁପତି

ହେ କୃଷ୍ଣ ତୋ ଚରଣେ ପ୍ରୀତି ହେଉ ମୋ ଅହେତୁକୀ ଭକ୍ତି
ଯୁଦ୍ଧେ ଅଶ୍ୱ ଖୁରା ଉତ୍ଥିତ ଧୂଳିରେ କେଶ ଦୂଷରିତ
ଘର୍ମ ବିନ୍ଦୁ ପରି ଶୋଭିତ ମୁଖ କମଳେ ବିରାଜିତ
ତୀକ୍ଷ୍ଣ ବାଣ କ୍ଷତ ଶରୀର କବଚ ଶୋଭୀ କୃଷ୍ଣେ ମୋର

ବାସ କରୁ ଆତ୍ମା ନିଶ୍ଚଳେ ନିବାତ ପ୍ରଦୀପ ପ୍ରକାରେ
ଆରମ୍ଭେ ଭାରତ ଯୁଦ୍ଧର ପାଣ୍ଡବ କୌରବ ସେନାର
ମଧ୍ୟେରଥ ରଖି ତକ୍ଷଣ କାଳ ଦୃଷ୍ଟିରେ ନିରୀକ୍ଷଣ
ଯେ କୃଷ୍ଣ କୌରବ ସେନାର ହରଣ କଲେ ଆୟୁଷରେ

ସେ ପାର୍ଥ ସଖା କୃଷ୍ଣଙ୍କର ପାଦେ ଅନନ୍ୟ ଭକ୍ତିମୋର
ଭୀଷ୍ମଦ୍ରୋଣାଦି ସେନାନୀଙ୍କୁ ଦେଖି ମୋହାଚ୍ଛନ୍ନ ପାର୍ଥଙ୍କୁ
ଆତ୍ମୀୟ ବଧରୁ ବିରତ ଅଜ୍ଞାନ ବିନାଶ ନିମିତ୍ତ
ଆତ୍ମଜ୍ଞାନ ଉପଦେଶରେ ଯେ ପ୍ରବର୍ତ୍ତାଇଲେ ଯୁଦ୍ଧରେ

ସେ ପରଂବ୍ରହ୍ମ କୃଷ୍ଣଙ୍କର ଚରଣେ ରହୁ ଭକ୍ତିମୋର
ହେ ଭକ୍ତ ବତ୍ସଳ ଶ୍ରୀହରି ନିଜ ପ୍ରତିଜ୍ଞା ପରିହରି
ମୋ ସତ୍ୟ ପ୍ରତିଜ୍ଞା ରକ୍ଷଣ ଚକ୍ର କରିଥିଲା ଧାରଣ
ରଥ ଚକ୍ର ଧରି ହସ୍ତରେ ପୃଥ୍ୱୀ କମ୍ପାଇ ପାଦଭରେ

କାନ୍ଧୁ ଉତ୍ତରୀୟ ଖସାଇ କୋପ ଦୃଷ୍ଟିରେ ଚାହିଁ ଚାହିଁ
ହସ୍ତୀ ବଧେ ସିଂହ ପ୍ରକାରେ ମୋ ପାଖେ ଧାଇଲେ ବେଗରେ
ସେବେଳେ ମୁହିଁ ଆତତାୟୀ କ୍ରୋଧରେ ଜର୍ଜରିତ ହୋଇ
ପେଷି ସୁତୀକ୍ଷ୍ଣ ବାଣ ଗଣ କବଚ କଲି ଛିନ୍ନ ଭିନ୍ନ

ବିକ୍ଷତ ରକ୍ତାକ୍ତ ଶରୀର ମନା ନ ମାନି ଅର୍ଜ୍ଜୁନର
ମତେ ବଧ କରିବା ପାଇଁ ଆସିଲେ ମୋ ପାଖକୁ ଧାଇଁ
ସେ ମୁକ୍ତି ଦାତା ଭଗବାନ କୃଷ୍ଣରେ ରହୁ ରତି ମମ
ସେ କୁରୁକ୍ଷେତ୍ର ସମରରେ ପରସ୍ପର ଅସ୍ତ୍ରାଘାତରେ

ନିହତ ବୀର ଯୋଦ୍ଧାଗଣ ଯାର ମୁଖ କରି ଦର୍ଶନ
ଲଭିଲେ ସାଯୁଜ୍ୟ ମୁକତି ଯେ ସଖା ଅର୍ଜ୍ଜୁନ ସାରଥି
ମହାପ୍ରେମରେ ଗୋପୀଗଣ ଚିତ୍ତ କରିଣ ସମର୍ପଣ
ଯାର ସ୍ୱଭାବ ହେଲେ ପ୍ରାପ୍ତି ସେ କୃଷ୍ଣେ ରହୁ ମୋର ପ୍ରୀତି

ଚାବୁକ ଦକ୍ଷିଣ ହସ୍ତରେ ପ୍ରଗ୍ରହ ଧରିଣ ବାମରେ
କୃଷ୍ଣଙ୍କ ସେ ରମ୍ୟ ମୂର୍ତ୍ତିରେ ରତି ରହୁ ଅନ୍ତ କାଳରେ
ରାସ ନୃତ୍ୟ ହାସ ବିଳାସ ପ୍ରେମାଲିଙ୍ଗନ ପରିହାସ
ସପ୍ରେମ କଟାକ୍ଷ ଦର୍ଶନେ ଖେଳା ଲୀଳା ଅନୁକରଣେ

ଗ୍ରସ୍ତ ମହାପ୍ରେମ ବିକାର ଶ୍ରୀକୃଷ୍ଣେ ରହୁ ମନମୋର
ଧର୍ମ ନନ୍ଦନ ଯେ କାଳର ରାଜସୂୟ ଯଜ୍ଞ କରିଲେ
ନୃପତି ବେଷ୍ଟିତ ସଭାରେ ମୁନିଗଣଙ୍କ ସମ୍ମୁଖରେ
ପ୍ରଥମରେ ପୂଜା ଗ୍ରହଣ କଲେ ଯେ କୃଷ୍ଣ ଭଗବାନ

ସେହି କମନୀୟ ମୂରତି ହେଉନ୍ତୁ ମୋ ନେତ୍ର ଅତିଥି
ତମାଳ ଶ୍ୟାମଳ ଶ୍ରୀଅଙ୍ଗ ପଦ୍ମମୁଖ ମୂର୍ତ୍ତି ତ୍ରିଭଙ୍ଗ
କିଞ୍ଚିତ କୁଞ୍ଚିତ ଅପାଙ୍ଗ ଭକତ ବନ୍ଧୁ ଅନ୍ତରଙ୍ଗ
ଚାହିଁ ଜବାଧର ସୁରଙ୍ଗ ମୋ ଭବ ଲୀଳା ହେଉ ସାଙ୍ଗ

ଦେଖାଇ ମାୟାର କୁହୁକ ଠକ ନାହିଁ ଠକ ନାୟକ
ଯେପରି ସୂର୍ଯ୍ୟ ଆକାଶରେ ଉଦୟ ହୁଅନ୍ତି ଦିନରେ
ତାଙ୍କୁ ଜନେ କରି ଦର୍ଶନ କଥା କହନ୍ତି ଭିନ୍ନ ଭିନ୍ନ
ତଥା କୃଷ୍ଣ ପ୍ରାଣୀ ଅନ୍ତରେ ବିଜେ ଅନ୍ତର୍ଯ୍ୟାମୀ ରୂପରେ

ବାହାରେ ଧରି ରମ୍ୟ ମୂର୍ତ୍ତି ଦୟା ବହି ଦେଖା ଦିଅନ୍ତି
ସେ ପରମାତ୍ମା ସର୍ବାତୀତ କୃଷ୍ଣ ମୋ ପାଶେ ଉପସ୍ଥିତ
ଉଭୟଙ୍କୁ ଏକ ଅଭିନ୍ନ ଭାବରେ କରେ ମୁଁ ପ୍ରଣାମ

## ସୂତ ଉବାଚ

ସୂତ କହନ୍ତି ମନ୍ଦେ ହସି ଶୁଣ ହେ ଶୌନକାଦି ଋଷି
ଯତୀ ଭୀଷ୍ମ ଏହି ପ୍ରକାରେ ଇନ୍ଦ୍ରିୟ ମନ କୃଷ୍ଣଠାରେ
ଭକ୍ତିରେ କରି ସମର୍ପଣ ହୋଇଲେ ବାହ୍ୟଜ୍ଞାନ ଶୂନ୍ୟ
ଭୀଷ୍ମଙ୍କୁ ବ୍ରହ୍ମରେ ମିଳିତ ହେବାର ଦେଖି ଲୀଳା ପ୍ରାପ୍ତ

ସକଳ ମୁନି ଋଷିଗଣ ଦିନାନ୍ତେ ବିହଙ୍ଗମ ସମ
ହୋଇଲେ ନିର୍ବାକ ନିଶ୍ଚଳ ଉଠିଲା ଆନନ୍ଦ କଲ୍ଲୋଳ
ଏବେଳେ ନଭେ ଦେବଗଣ ଦୁନ୍ଦୁଭି କରିଲେ ବାଦନ
ଆକାଶୁ ହେଲା ପୁଷ୍ପ ବର୍ଷା ସର୍ବେ କଲେ ଭୀଷ୍ମ ପ୍ରଶଂସା

ସେ ଧର୍ମରାଜ ଯୁଧିଷ୍ଠିର ଭୀଷ୍ମ ଗମନ୍ତେ ଲୋକାନ୍ତର
ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରି ହେଲେ ଶୋକ ମଗନ
ଭୀଷ୍ମଙ୍କୁ ଦେଖି ଲୀଳା ପ୍ରାପ୍ତ ମୁନି ଏ ହେଲେ ଆନନ୍ଦିତ
ଗୋବିନ୍ଦଙ୍କ ଭକ୍ତି ସାଧନ ଲୀଳା ମାନ କରି କୀର୍ତ୍ତନ

ତାଙ୍କ ଲୀଳା ରୂପମାଧୁରି ହୃଦେସ୍ମରଣ କରି କରି
ଅତି ଆନନ୍ଦ ବିସ୍ମୟରେ ଗମନ କଲେ ଆଶ୍ରମରେ
କୃଷ୍ଣଙ୍କ ସଙ୍ଗେ ଯୁଧିଷ୍ଠିର ଗମିଲେ ହସ୍ତିନା ନଗର
ସ୍ୱ ପିତୃବ୍ୟ ଧୃତରାଷ୍ଟ୍ରଙ୍କୁ ପତି ବରତୀ ଗାନ୍ଧାରୀଙ୍କୁ

କରିଲେ ସାନ୍ତ୍ୱନା ପ୍ରଦାନ ଭକ୍ତିରେ ବନ୍ଦିଲେ ଚରଣ
ଧୃତ ରାଷ୍ଟ୍ରଙ୍କ ନିର୍ଦ୍ଦେଶରେ କୃଷ୍ଣଙ୍କ ଅନୁମୋଦନରେ
ରାଜ୍ୟ ଭାର କରି ଗ୍ରହଣ ଧର୍ମେ ପ୍ରଜା ପାଳନ
କହଇ ଧନେଶ୍ୱର ଦାଶ ସୁଜନେ କୃଷ୍ଣନାମେ ରସ
ଦୁଃଖ ପୂର୍ଣ୍ଣ ଭବ ସାଗର ତାଙ୍କ କୃପାରେ ହେବପାର

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ଯୁଧିଷ୍ଠିର ରାଜ୍ୟ ଲାଭେ ନାମ ନବମୋଽଧ୍ୟାୟ ।

* * * * *

## ଦଶମ ଅଧ୍ୟାୟ

### ଶୌନକ ଉବାଚ

ସେହି ଶୌନକ ମହାଋଷି ସୂତଙ୍କୁ ପୁଛନ୍ତି ପ୍ରଶଂସି
ଧାର୍ମିକ ଗଣ ଅଗ୍ରଗଣ୍ୟ ମହାରାଜ ଧର୍ମ ନନ୍ଦନ
ଧନାପହାରୀ ଶତ୍ରୁଗଣ ସବଂଶେ କରିଣ ନିଧନ
ଚାରି ସହୋଦର ସଙ୍ଗରେ ରାଜ୍ୟ ଭୋଗିଲେ କି ପ୍ରକାରେ

ପ୍ରଜାଙ୍କୁ ପାଳିଲେ କେମନ୍ତେ ଶେଷରେ କି କି କର୍ମ କଲେ
କୁରୁ କୁଳ ବନ ସମ୍ଭୂତ ଜ୍ଞାତି କ୍ରୋଧାଗ୍ନିରେ ଦାହିତ
ପଣ୍ଡୁବଂଶୀ ଅଶ୍ୱତ୍ଥାମାର ବ୍ରହ୍ମାସ୍ତ୍ରରୁ ପରୀକ୍ଷିତର
ପରିତ୍ରାଣର ପୁନର୍ବାର ଅଙ୍କୁରିତ କରି ସତ୍ୱର

ଯୁଧିଷ୍ଠିରଙ୍କୁ ସ୍ୱରାଜ୍ୟରେ ପ୍ରତିଷ୍ଠିତ କରି ଦୟାରେ
ଭୂତଭାବନ ଭଗବାନ ଶ୍ରୀକୃଷ୍ଣ ହେଲେ ପ୍ରୀତମନ
ଭୀଷ୍ମ କୃଷ୍ଣ ଉପଦେଶରେ ଯୁଧିଷ୍ଠିରଙ୍କ ହୃଦୟରେ
ଏ ବିଶ୍ୱ ଈଶ୍ୱର ଅଧୀନ କେବେ ହେଁ ନୁହଇଁ ସ୍ୱାଧୀନ

ଏ ଜ୍ଞାନ ଉଦୟ ହୋଇଲା କର୍ତ୍ତୃତ୍ୱ ଅହଙ୍କାର ଗଲା
ସ୍ୱର୍ଗ ତୁଲ୍ୟ କଲେ ପାଳନ ଦେବରାଜ ଇନ୍ଦ୍ର ସମାନ
ଯଥା କାଳରେ ମେଘମାଳ ପ୍ରଚୁର ବରଷିଲେ ଜଳ
ପୃଥିବୀ ହେଲା ଶସ୍ୟପୂର୍ଣ୍ଣ ଧେନୁ ଏ ହୋଇ ହୃଷ୍ଟମନ

ପ୍ରଚୁର କ୍ଷୀର କଲେ ଦାନ ପ୍ରଜା କାଟିଲେ ସୁଖେ ଦିନ
ରାଜ୍ୟରେ ନଦୀ ସରୋବର ପର୍ବତ କାନନ ସାଗର
ହେଲେ ପ୍ରଜାଙ୍କ ଅନୁକୂଳ ନଥିଲା କାହିଁ କଳିଗୋଳ
ପ୍ରତି ଋତୁରେ ତରୁ ଲତା ଫଳ ପୁଷ୍ପେ ହେଲେ ଶୋଭିତା

ଓଷଧି ଶସ୍ୟାଦି ପଦାର୍ଥ ପ୍ରଚୁର ହେଲେ ଉତ୍ପାଦିତ
ପ୍ରଜାଏ ଆଧି ବ୍ୟାଧିରୋଗ କରୁନଥିଲେ କେବେ ଭୋଗ
ପାଣ୍ଡବ ଶୋକ ନିବାରଣ ସୁଭଦ୍ରା ଆନନ୍ଦ ବର୍ଦ୍ଧନ
ନିମିତ୍ତ ହସ୍ତିନା ପୁରରେ କୃଷ୍ଣ କେତେ ମାସ ରହିଲେ

ଯୁଧିଷ୍ଠିରଙ୍କୁ ଆଲିଙ୍ଗନ କରି ପ୍ରଣାମ ସମ୍ଭାଷଣ
ଶେଷେ ତାହାଙ୍କ ଆଦେଶରେ ଦ୍ୱାରକା ଗମନ ଇଚ୍ଛାରେ
ଆନନ୍ଦେ ରଥ ଆରୋହିଲେ ସଖା ଅରଜୁନ ସଙ୍ଗରେ
ନକୁଳ ସହଦେବ ଭୀମ ଯୁଯୁତ୍ସୁ କୃପାଚାର୍ଯ୍ୟ ଧୌମ୍ୟ

ସୁଭଦ୍ରା ଦ୍ରଉପଦୀ କୁନ୍ତୀ ଗାନ୍ଧାରୀ ଦେବୀ ସତ୍ୟବତୀ
ଉତ୍ତରା ଆଦି ନାରୀଗଣ କୃଷ୍ଣ ବିରହେ ଶୋକ ମଗ୍ନ
ସାଧୁ ସଙ୍ଗରେ ବିଷୟର ମମତା ହୋଇ ଯାଏ ଦୂର
ଜାଣି ବିବେକ ବନ୍ତଜନ କର୍ଣ୍ଣ ମାନସ ରସାୟନ

ଶ୍ରୀକୃଷ୍ଣ ଦିବ୍ୟ ଗୁଣନାମ ସର୍ବଦା କରନ୍ତି କୀର୍ତ୍ତନ
ଯେ ଏହି ଲୀଳା ଶୁଣେ ଥରେ କେବେ ଜୀବନେ ନବିସ୍ମରେ
ପାଣ୍ଡବେ ଶ୍ରୀକୃଷ୍ଣ ସହିତ ଶୟନ ଭୋଜନେ ଏକତ୍ର
ଆଳାପନାରେ ତାଙ୍କଠାରେ ଚିତ୍ତ ନିବେଶି ଏକାନ୍ତରେ

ବିରହ ଦୁଃଖରେ କାତର ହେଲେ ମୂର୍ଚ୍ଛିତ ବାରମ୍ବାର
ସେ ନିର୍ନିମେଷ ନୟନରେ ଚାହିଁ ଚାହିଁ ରାଜ ପଥରେ
ରଥ ପୁଚ୍ଛରେ କେତେ ଦୂର ଯାଇଁ ଫେରିଲେ ନିଜ ପୁର
କୁରୁ ରମଣୀଙ୍କ ନୟନ ହୋଇଲା ଅଶ୍ରୁଜଳ ପୂର୍ଣ୍ଣ

ମାତ୍ର ଅଶୁଭ ଆଶଙ୍କାରେ ବସ୍ତ୍ରାଞ୍ଚଳେ ଅଶ୍ରୁପୋଛିଲେ
ମୃଦଙ୍ଗ ଶଙ୍ଖ ବୀଣା ଭେରୀ ପଣବ ଗୋମୁଖୀ ଧୁନ୍ଦୁରୀ
ଘଣ୍ଟା ଦୁନ୍ଦୁଭି ବାଦ୍ୟ ଧ୍ୱନୀ ପ୍ରକମ୍ପିତ ହେଲା ମେଦିନୀ
ନାରୀଏ ପ୍ରସାଦ ଉପରେ ପ୍ରେମ ଲଜ୍ଜା ସ୍ମିତ ନେତ୍ରରେ

ପୁଷ୍ପ ଅଞ୍ଜଳି ବରଷିଲେ ଶ୍ରୀକୃଷ୍ଣ ଅର୍ଜୁନ ଉପରେ
ରତନ ଦଣ୍ଡ ସୁଶୋଭିତ ମୁକୁତା ମାଳିକା ଖଚିତ
ଶ୍ୱେତ ଛତ୍ର କରି ଧାରଣ ପାଣ୍ଡବେ କରିଲେ ଗମନ
ଉଦ୍ଧବ ସାତ୍ୟକି ଭକ୍ତିରେ ରହି କୃଷ୍ଣ ଦୁଇ ପାଖରେ

କରିଲେ ଚାମର ଚାଳନ ରାଜପଥ ହେଲା ଶୋଭନ
ପଥ ମଧ୍ୟରେ ବିପ୍ରଗଣ କଲେ ଶୁଭାଶିଷ ପ୍ରଦାନ
ଏହି ଶୁଭାଶିଷ ବଚନ ଭଗବାନଙ୍କର ସଗୁଣ
ପୁଣି ନିର୍ଗୁଣ ବ୍ରହ୍ମଙ୍କର ହୋଇଲା ଉଭୟ ପ୍ରକାର

କୁରୁ ନାରୀଏ ସେବେଳରେ ଚିତ୍ତ ସମର୍ପି ଶ୍ରୀକୃଷ୍ଣରେ
ପରସ୍ପର ଅତି ପ୍ରେମରେ କୃଷ୍ଣ ଗୁଣ ଗାନେ ମଜ୍ଜିଲେ
ଅତି ବିସ୍ମୟେ ପରସ୍ପର ମଧ୍ୟରେ କରିଲେ ବିଚାର
ଏ କୃଷ୍ଣ ସାକ୍ଷାତ ଈଶ୍ୱର ରଚନା ପୂର୍ବରୁ ବିଶ୍ୱର

ମହା ପ୍ରଳୟ ସମୟରେ ଏହି ବିଶ୍ୱ ଆତ୍ମାଙ୍କଠାରେ
ଜୀବାତ୍ମା ସତ୍ତ୍ୱ ଆଦିଗୁଣ ହୋଇଲା ଯେ ବେଳେ ବିଲୀନ
ସେକାଳେ ବୈକୁଣ୍ଠ ଧାମରେ ସଚ୍ଚିଦାନନ୍ଦ ସ୍ୱରୂପରେ
ଥିଲେ ଏ କୃଷ୍ଣ ଭଗବାନ ଜୀବମାନଙ୍କ ରୂପନାମ

ପ୍ରକାଶ କରିବା ଇଚ୍ଛାରେ ବେଦାଦି ଶାସ୍ତ୍ର ପ୍ରକାଶିଲେ
ନିଜର ଶକ୍ତି ସ୍ୱରୂପିଣୀ ଯେ ମାୟା ଜୀବ ବିମୋହିନୀ
ପ୍ରକୃତି ଈକ୍ଷଣେ କ୍ଷୋଭିତ କରି ତହିରେ ଅଧିଷ୍ଠିତ
ହୋଇ ଏ ନାନା ରୂପ ନାମ ପ୍ରକାଶ କରିଥିଲେ ପୁନ

ଯୋଗୀଏ ହୋଇ ଜିତେନ୍ଦ୍ରିୟ ପ୍ରାଣ ପବନ କରିଥୟ
ନିର୍ମଳ ଭକ୍ତି ପୁତ ଚିତ୍ତ ଆତ୍ମ ବୁଦ୍ଧିରେ ଉତ୍ସାହିତ
ଭାବେ ଏ ଚରଣ ଦର୍ଶନ କରିବା ହୋଇଥାନ୍ତି କ୍ଷମ
ରହସ୍ୟ ତତ୍ତ୍ୱ ବିଦଗଣ ବିଜ୍ଞାନୀ ସୁ ପଣ୍ଡିତ ଜନ

ଆଗମ ବେଦ ପୁରାଣରେ ଯାନିତ୍ୟ ଲୀଳା ବିଷୟରେ
ବୃତ୍ତାନ୍ତ ସତ୍ କଥା ଗାୟନ କରିଅଛନ୍ତି ପୁନ ପୁନ
ଯେ ଅନାସକ୍ତ ଭାବନାରେ ସୃଜି ପାଳି ପୁଣି ସଂହାରେ
ସେହି ଏ କୃଷ୍ଣ ଲୀଳାମୟ ପୁରାଣ ପୁରୁଷ ଅବ୍ୟୟ

ନୃପତି ଗଣ ଯେ ବେଳରେ ବଶ ହୋଇ ତମ ଗୁଣରେ
କରି ଅଧର୍ମ ଆଚରଣ ବିଳାସେ ଯାପନ୍ତି ଜୀବନ
ସେବେଳେ ବିଶ୍ୱ ହିତ ପାଇଁ ଏ କୃଷ୍ଣ ସତ୍ତ୍ୱଗୁଣ ବହି
ଧରାରେ ହୋଇ ଅବତୀର୍ଣ୍ଣ ଐଶ୍ୱର୍ଯ୍ୟ ପ୍ରତିଜ୍ଞା ପାଳନ

ଜୀବେ ଦୟା ନୀତି ଉପଦେଶ ପ୍ରକାଶନ୍ତି କର୍ମ ବିଶେଷ
ହେ ସଖୀ ପୁରୁଷ ଉତ୍ତମ ଲକ୍ଷ୍ମୀଶ କୃଷ୍ଣ ଭଗବାନ
ଯଦୁ କୁଳରେ ଅବତୀର୍ଣ୍ଣ ହେବାରୁ ଯଦୁକୁଳ ଧନ୍ୟ
ତାଙ୍କର ବିବିଧ ଲୀଳାରେ ମଥୁରା ଧନ୍ୟ ଏ ଧରାରେ

ସୁଯଶେ ମଥୁରା ନଗରୀ ସ୍ୱର୍ଗକୁ ପରାଜୟ କରି
ଧରାମଧ୍ୟେ କୀର୍ତ୍ତି ବର୍ଦ୍ଧନ ଆଶ୍ଚର୍ଯ୍ୟ ନୁହେଁ ଏ ବଚନ
ଦ୍ୱାରକାବାସୀ ପ୍ରଜାଗଣ ଲଭନ୍ତି କୃଷ୍ଣଙ୍କ ଦର୍ଶନ
କୃଷ୍ଣ ମଧ୍ୟସ୍ମିତ ମୁଖରେ ସର୍ବଦା ଦୟାର୍ଦ୍ର ଦୃଷ୍ଟିରେ

ପ୍ରଜାଙ୍କୁ ରାଜ୍ୟ ଗୋପୀଗଣ କୃଷ୍ଣ ଅଧର ସୁଧାପାନ
ପ୍ରଭାତରେ କରି ସ୍ମରଣ ମୂର୍ଚ୍ଛା ଲଭନ୍ତି ପୁନଃ ପୁନଃ
ପୁଣି ଶ୍ରୀକୃଷ୍ଣ ପତ୍ନୀଗଣ ପୂର୍ବ ଜନ୍ମେ ତୀର୍ଥ ଭ୍ରମଣ
ନିଷ୍ଠୟ ହୋମାଦି ବ୍ରତରେ କୃଷ୍ଣେ ପୂଜିଥିଲେ ଭକ୍ତିରେ

ଶିଶୁପାଳାଦି ବଳବନ୍ତ ନୃପତିଙ୍କୁ କରି ପରାସ୍ତ
ସ୍ୱୟଂ ବରରୁ ଜାମ୍ବବତୀ ରୁକ୍ମିଣୀ ସତୀ ନଗ୍ନଜିତୀ
ଆଦି ପଟ୍ଟ ମହିଷୀ ଗଣ ନାରକାସୁରର ନିଧନ
ହରିଲେ ଷୋଳ ସସ୍ର ନାରୀ ତ୍ରିଲୋକ ଧନ୍ୟ ସୁକୁମାରୀ

ସ୍ୱର୍ଗରୁ ଆଣି ପାରିଜାତ କୃଷ୍ଣ ତୋଷନ୍ତି ତାଙ୍କ ଚିତ୍ତ
ଗୃହରୁ କେବେହେଁ ବାହାରି ନଯାନ୍ତି ଶ୍ରୀକୃଷ୍ଣ ମୁରାରି
ପରାଧୀନା ରମଣୀ ଜାତି ଦୁର୍ମତି ଅଶୁଚି ଅସତୀ
ମାତ୍ର କୃଷ୍ଣଙ୍କ ପତ୍ନୀଗଣ ରମଣୀ କୂଳର ଭୂଷଣ

ଏପରି ଆଳାପ ନିରତ କୁରୁ ରମଣୀଙ୍କୁ ସସ୍ମିତ
ସୁଦୃଷ୍ଟିରେ ଅଭିନନ୍ଦନ କରି କୃଷ୍ଣ କଲେ ଗମନ
ପଥ ମଧ୍ୟରେ ଶତ୍ରୁଗଣ କାଳେ କରିବେ ଆକ୍ରମଣ
ଶଙ୍କିତ ଚିତ୍ତ ଯୁଧିଷ୍ଠିର ରକ୍ଷା ନିମିତ୍ତ କୃଷ୍ଣଙ୍କର

ଅତି ସ୍ନେହରେ ତାଙ୍କ ସଙ୍ଗେ ପ୍ରେରିଲେ ସେନା ଚତୁରଙ୍ଗେ
ପ୍ରେମ ଭାବରେ ବହୁ ଦୂର ଅନୁସରି ବିଇହା ତୁର
ପାଣ୍ଡବଙ୍କଠାରୁ ବିଦାୟ ଉଦ୍ଧବ ଅକ୍ରୁରାଦି ସହ
ଦ୍ୱାରକା ପୁରୀକୁ ଗମନ କରିଲେ କୃଷ୍ଣ ଭଗବାନ

ଶୂରସେନ କୁରୁ ଜାଙ୍ଗଳ ବ୍ରହ୍ମା ବର୍ତ୍ତ ମତ୍ସ୍ୟ ପାଞ୍ଚାଳ
ଯାମୁନ ଦେଶ କୁରୁକ୍ଷେତ୍ର ସୁରପ୍ରଦେଶ ସାରସ୍ୱତ
ଅତିକ୍ରମି ଏ ଦେଶମାନ ଆନନ୍ଦେ କୃଷ୍ଣ ଭଗବାନ
ଦ୍ୱାରକାରେ ହେଲେ ପ୍ରବେଶ ସ୍ୱର୍ଗେ ଦେବ ରାଜ ସଦୃଶ

ଯେଦେଶ ମଧ୍ୟରେ ଗମନ    କଲେ ଶ୍ରୀକୃଷ୍ଣ ଭଗବାନ
ସେ ଦେଶ ଅଧିବାସୀ ନରେ    ପୂଜିଲେ ନାନା ଉପଚାରେ
ଦ୍ୱାରକା ପ୍ରବେଶ କାଳରେ    ଦିବାକର ଅସ୍ତ ହୋଇଲେ
କହଇ ଦାଶ ଧନେଶ୍ୱର    ସୁଜନେ କୃଷ୍ଣନାମ ସ୍ମର

**ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ଶ୍ରୀକୃଷ୍ଣ ଦ୍ୱାରକା ଗମନେ ନାମ ଦଶମୋଽଧ୍ୟାୟ ।**

*******

## ଏକାଦଶ ଅଧ୍ୟାୟ

ସମୃଦ୍ଧ ଦ୍ୱାରକା ନଗରେ    ପ୍ରବେଶି କୃଷ୍ଣ ଆନନ୍ଦରେ
ଦ୍ୱାରକା ପୁରବାସୀଙ୍କର    ବିଷାଦ କରିବାକୁ ଦୂର
ଅପୂର୍ବ ଶଙ୍ଖ ପଞ୍ଚଜନ୍ୟ    ବାରମ୍ବାର କଲେ ବାଦନ
ସେହି ଶଙ୍ଖର ମଧ୍ୟ ସ୍ଥଳ    ଧବଳ ଅତ୍ୟନ୍ତ ଉଜ୍ଜ୍ୱଳ

ଅଗ୍ରଭାଗ ରଙ୍ଗ ଅଧର    ସ୍ପର୍ଶେ ରକ୍ତିମ ମନୋହର
କର କମଳେ କୃଷ୍ଣଙ୍କର    ପଦ୍ମବନ ହଂସ ପ୍ରକାର
ସୁଷମା କରିଲା ଧାରଣ    ନାହିଁ ନଥିବ ତ୍ରିଭୁବନ
ସେ ଭବ ଭୟ ନିବାରଣ    ଶଙ୍ଖ ନାଦ କରି ଶ୍ରବଣ

ଦ୍ୱାରକା ବାସୀ ଜନଗଣ    କୃଷ୍ଣେ କରିବାକୁ ଦର୍ଶନ
ପୁରମଧ୍ୟୁ ହେଲେ ବାହାର    ପୂରିଲା ଜନ କୋଳାହଳ
ପୂଜକମାନେ ଭକତିରେ    ଯେତେଜୋମୟ ଦିବାକରରେ
ଯଥା କରନ୍ତି ଦୀପଦାନ    ତଥା ଦ୍ୱାରକା ପ୍ରଜାଗଣ

କୃଷ୍ଣଙ୍କୁ ନାନା ଉପହାରେ    ଅଭ୍ୟର୍ଥନା କଲେ ଆଦରେ
ବାଳକେ ଯଥା ନିଜ ପିତା    ସହ କରନ୍ତି କଥାବାର୍ତ୍ତା
ସେପରି ପ୍ରେମେ ପ୍ରଜାଗଣେ    ଆନନ୍ଦେ ହରଷ ବଦନେ
ଗଦ୍‌ଗଦ୍ ସ୍ୱରେ କୃଷ୍ଣ ସଙ୍ଗେ    କଲେ ଆଳାପ ନାନା ରଙ୍ଗେ

ହେ ନାଥ ତୁ ବ୍ରହ୍ମ ପରମ    ସନକାଦି ବ୍ରହ୍ମା ସନ୍ତାନ
ସହ ଇନ୍ଦ୍ରାଦି ଦେବଗଣ    କରନ୍ତି ତୋ ପାଦ ବନ୍ଦନ
ପରମ କ୍ଷେମ ପରାୟଣ    ଜନର ଆଶ୍ରା ତୋ ଚରଣ
ଯେ କାଳ ଅତିବଳୀୟାର    ପ୍ରଭୁ ବ୍ରହ୍ମାଦି ଦେବଙ୍କର

ସେକାଳ ତୋ ପାଦ ପଦ୍ମରେ    ପ୍ରଭୁତ୍ୱ ବିସ୍ତାରି ନପାରେ
ହେ ବିଶ୍ୱ ପତିତ ପାବନ    କରନ୍ତୁ ମଙ୍ଗଳ ବିଧାନ
ତୁମେ ଆମର ପତି ପିତା    ସୁହୃଦ ପାଳନ କରତା
ସଦ୍‌ଗୁରୁ ପରମ ଦେବତା    ଭ୍ରାତା ବାନ୍ଧବ ଜ୍ଞାତି ମାତା

ତୋର ଚରଣ ଅନୁସରି    କୃତାର୍ଥ ଆମେ ସେବାକରି
ହେ କୃଷ୍ଣ କମଳ ନୟନ    ବନ୍ଧୁ ଦେଖାପାଇଁ ଆପଣ
ଯେବେ ଆମକୁ ତ୍ୟାଗ କରି    ଗମିଲେ ମଥୁରା ନଗରୀ
ସେକାଳେ ଆହେ ଜନାର୍ଦ୍ଦନ    ଅନ୍ଧକାରେ ଅନ୍ଧ ସମାନ

କ୍ଷଣକାଳ ମଧ୍ୟ ଆମରି    ହୋଇଲା କୋଟି ଯୁଗ ପରି
ହେ ନାଥ ଯଦି ବହୁ ଦିନ    ବିଦେଶେ ରହିବେ ଆପଣ
ତୁମର ସର୍ବ ଦୁଃଖହର    ସ୍ମିତ ମଧୁର ମନୋହର
ଅନୁକମ୍ପା ପୂର୍ବ ବଦନ    କରିନପାରି ଦରଶନ

ଆମେମାନେ ବା କିପ୍ରକାର    ବଞ୍ଚିବୁ କରନ୍ତୁ ବିଚାର
ଭକ୍ତ ବତ୍ସଳ ଭଗବାନ    ଦ୍ୱାରକା ବାସୀଙ୍କ ବଚନ
ଶୁଣି ଅନୁଗ୍ରହ ଦୃଷ୍ଟିରେ    ଚାହିଁ ପ୍ରବେଶିଲେ ପୁରରେ
ଏ ପୁରୀ ନୁହଁଇ ସାମାନ୍ୟ    କୃଷ୍ଣ ସମାନ ବଳବାନ

ମଧୁ ଭୋଜ ଅର୍ହକୁକୁର    ଅନ୍ଧକ ବୃଷ୍ଣିକ ଗାନ୍ଧାର
ଦାଶାହ ସେନା ସୁରକ୍ଷିତା    ଭୋଗବତୀ ନାଗ ପାଳିତା
ସମାନ ଫଳ ପୁଷ୍ପପୂର୍ଣ୍ଣା    ଆରାମ ଉପବନ ରମ୍ୟା
ସର୍ବର୍ତ୍ତୁ ବିଭବରେ ଧନ୍ୟା    ଲତାମଣ୍ଡପ ସୁଶୋଭନା

ବହିର୍ଦ୍ୱାର ପୁର ଦ୍ୱାରରେ    ରାଜପଥ ସବୁ ସ୍ଥାନରେ
ଉତ୍ସବ ନିମିତ୍ତ ତୋରଣ    ନିର୍ମିତ ସୁସଜ୍ଜିତ ପୁନ
ଧ୍ୱଜ ପତାକାଦି ଛତ୍ରରେ    ସୂର୍ଯ୍ୟଙ୍କ କିରଣ ନିବାରେ
ରାଜପଥ ଯେ କ୍ଷୁଦ୍ରପଥ    ବିପଣୀ ଅଗଣା ସମସ୍ତ

ସୁପରିଷ୍କୃତ ସୁସଜ୍ଜିତ ସୁବାସ ସଲିଳ ସେଚିତ
ପ୍ରତିଦ୍ୱାରେ ପୁଷ୍ପ ଅକ୍ଷତ ସୁବର୍ଣ୍ଣ କଳସ ସ୍ଥାପିତ
ଇକ୍ଷୁ ଦଧି ଦୀପ ସହିତ ରମ୍ଭା ବୃକ୍ଷରେ ସୁଶୋଭିତ
ଶୁଣି ଶ୍ରୀକୃଷ୍ଣ ଆଗମନ ଶାମ୍ବ ଜାମ୍ବବତୀ ନନ୍ଦନ

ହଳୀ ଚାରୁଦେଷ୍ଣ ପ୍ରଦ୍ୟୁମ୍ନ ବସୁଦେବ ଯେ ଉଗ୍ରସେନ
ଅକ୍ରୁର ପ୍ରଭୃତି ସମସ୍ତେ ଆନନ୍ଦ ଉଲ୍ଲସିତ ଚିତ୍ତେ
ଶଯ୍ୟା ଭୋଜନ ତ୍ୟାଗ କରି ଶ୍ରୀଫଳ ଦୁର୍ବାକ୍ଷତ ଧରି
ଶ୍ରୀକୃଷ୍ଣ ଶୁଭକାମନାରେ ଶ୍ୱେତ ହସ୍ତୀ ରଥ ଆଗରେ

ସଙ୍ଗତେ ଦେବତା ବ୍ରାହ୍ମଣ ବଜାଇ ଶୁଭ ବାଦ୍ୟମାନ
ଆନନ୍ଦେ ରଥ ଆରୋହିଲେ କୃଷ୍ଣଙ୍କ ସୀମପେ ଗମିଲେ
ବାର ବନିତା ଶତ ଶତ ଶ୍ରୀକୃଷ୍ଣ ଦର୍ଶନ ନିମିତ୍ତ
ଆରୋହି ବିବିଧ ଯାନରେ ଅଗ୍ରସର ହେଲେ ସତ୍ୱରେ

ନଟ ଗାୟକ ପୌରାଣିକ ମାଗଧ ଯେ ସ୍ତୁତି ପାଠକ
କରି କୃଷ୍ଣ ଗୁଣ ଗାୟନ ତୋଷିଲେ ସର୍ବଜନ ମନ
କୃଷ୍ଣ ଦ୍ୱାରକା ନଗରରେ ପ୍ରବେଶି ସତ୍ୱରେ ପ୍ରେମରେ
ଅଭିବାଦନ ଆଲିଙ୍ଗନ ପ୍ରଣାମ ସ୍ନେହ ସମ୍ଭାଷଣ

ହାସପ୍ରୀତି ପୂର୍ଣ୍ଣ ଦୃଷ୍ଟିରେ ସମସ୍ତ ଆତ୍ମୀୟଜନରେ
କହି ସୁମଧୁର ବଚନ ତୋଷିଲେ ସମସ୍ତଙ୍କ ମନ
ଚାଣ୍ଡାଳ ଆଦି ନିଚଜନେ ତୋଷି ଅଭିଷ୍ଟ ବର ଦାନେ
ସତ୍ୱିକ ଗୁରୁ ବିପ୍ରଗଣ ଶତାୟୁ ବୟୋବୃଦ୍ଧ ଜନ

ଗୁରୁ ଗୁରୁଜନ ଆଶୀଷ ଘେନି କୃଷ୍ଣ ଗୃହେ ପ୍ରବେଶ
କୃଷ୍ଣ ରାଜପଥ ମଧ୍ୟରେ ଗମନ କରିବା ବେଳରେ
ଦ୍ୱାରକା ପୁର ନାରୀଗଣ କରିବାକୁ କୃଷ୍ଣ ଦର୍ଶନ
ଆରୋହି ଉଚ୍ଚପ୍ରସାଦରେ କୁସୁମ ଅକ୍ଷତ ବର୍ଷିଲେ

ସୁସମା ଲକ୍ଷ୍ମୀର ଆଧାର କୃଷ୍ଣ ଚନ୍ଦ୍ରଙ୍କୁ ବାରମ୍ବାର
ଦେଖିମଧ୍ୟ ତାହାଙ୍କ ନେତ୍ର କଦାପି ନ ହୋଇଲା ତୃପ୍ତ
ଯାବକ୍ଷ ଲକ୍ଷ୍ମୀ ବାସସ୍ଥାନ ଶୋଭା ସୁଧା ଧାର ବଦନ
ଯେ ସଦା ବାହୁ ଯୁଗଳରେ ଦିଏ ଅଭୟ ଲୋକ ପାଳେ

କମଳ ଚରଣ ଯାହାର ଆଶ୍ରୟ ଭକତ ଜନର
ସେ କୃଷ୍ଣଙ୍କୁ କରି ଦର୍ଶନ ତୃପ୍ତ ନ ହେବ କେଉଁଜନ
ଆଦିତ୍ୟ ଚନ୍ଦ୍ରମା ନକ୍ଷତ୍ର ଇନ୍ଦ୍ରଧନୁ ଶଂପା ଏକତ୍ର
ମେଘମାଳାରେ ସମ୍ମିଳିତ ଯଥା ସୁଷମା ପ୍ରକାଶିତ

ସେପରି ଦ୍ୱାରକା ନଗରେ ରାଜପଥେ ଯିବା ବେଳରେ
ଧବଳ ଛତ୍ର ଯେ ଚାମର କୁସୁମ ବର୍ଷା ବାରମ୍ବାର
ପୀତବାସ ବନ ମାଳରେ ଶ୍ରୀକୃଷ୍ଣ ସୁନ୍ଦର ଦିଶିଲେ
ଶ୍ରୀଦାମୋଦର ଏହାପରେ ପ୍ରବେଶି ପିତୃଆଳୟରେ

ଦେବକୀ ଆଦି ମାତର ବନ୍ଦନା କରିଲେ ପୟରେ
ମାତାଏ ତାଙ୍କୁ କୋଳେଧରି ଚୁମ୍ବନ ଆଲିଙ୍ଗନ କରି
ବାତ୍ସଲ୍ୟ ରସେ ମାତାଙ୍କର ସ୍ତନୁ ବହିଲା କ୍ଷୀର ଧାର
ନେତ୍ରୁ ଆନନ୍ଦାଶ୍ରୁ ଝରିଲା କୃଷ୍ଣଙ୍କ ଅଙ୍ଗ ସିକ୍ତ ହେଲା

ଯେଉଁଠାରେ ଶତ ଅଷ୍ଟୋତ୍ତର ଷୋଳ ସହସ୍ର ରମଣୀର
ପ୍ରସାଦ ରାଜି ସୁଶୋଭନ ବିବିଧ ଭୋଗ୍ୟ ବସ୍ତୁ ପୂର୍ଣ୍ଣ
ସେ ଅନୁପମ ଭବନରେ ପ୍ରବେଶି କୃଷ୍ଣ ଆନନ୍ଦରେ
ଦୂର ବିଦେଶରୁ ପତିଙ୍କୁ ଆସୁଥିବା ଦେଖି ଗୃହକୁ

ରୁକ୍ମିଣୀ ଆଦି ପତ୍ନୀଗଣେ ଅତ୍ୟନ୍ତ ଆନନ୍ଦିତ ମନେ
ଲଜ୍ଜାବନତ ବଦନରେ ଆସନୁ ଉଠିଣ ସତ୍ତ୍ୱରେ
ପ୍ରୋଷିତ ଭର୍ତ୍ତୃକା ନିୟମ ବ୍ରତନ କରି ପରିପୂର୍ଣ୍ଣ
ପ୍ରେମରେ ସ୍ୱାମୀ ସମୀପରେ ପ୍ରବେଶ କରିଲେ ସତ୍ୱରେ

**ସୂତ ଉବାଚ**

ଆହେ ଶୌନକ ମୁନିଗଣେ ଏଅନ୍ତେ ଆନରସ ଶୁଣ
ନାରୀଏ ସ୍ୱାମୀ ସମୀପରେ ପୁତ୍ର ଆଲିଙ୍ଗନ ଛଳରେ
ପତିଙ୍କୁ ହିଁ ଆଲିଙ୍ଗନ କରନ୍ତି ବିହ୍ୱଳିତ ମନ
ଗମ୍ଭୀର ଭାବ ହାବ ମୟୀ ପତ୍ନୀଏ ହୃଦେ ପ୍ରେମବହି

ସକଳ ସୁଷମା ନିଧାନ ଶ୍ରୀକୃଷ୍ଣଙ୍କୁ ଦୂରୁ ଦେଖିଣ
ମନରେ ଦୃଷ୍ଟିରେ ତକ୍ଷଣ କରିଲେ ଗାଢ଼ ଆଲିଙ୍ଗନ
ପ୍ରେମଭରେ ତାଙ୍କ ନୟନ ହେବାରୁ ଆନନ୍ଦାଶ୍ରୁ ପୂର୍ଣ୍ଣ
ଧଇର୍ଯ୍ୟ ଧରି ନ ପାରିଲେ ଲଜ୍ଜାରେ ଅଧୋମୁଖ ହେଲେ

ଯଦି ବା କୃଷ୍ଣ ପତ୍ନୀଗଣେ    ନିଜ ସମୀପରେ ନିର୍ଜନେ
ଲଭିଲେ କୃଷ୍ଣଙ୍କ ଦର୍ଶନ    ମାତ୍ର ତାଙ୍କ ପଦ୍ମଚରଣ
ବୋଧ ହେଲା ନିତ୍ୟ ନୂତନ    ଶୁଣହେ ପରୀକ୍ଷ ରାଜନ
କମଳା ସ୍ୱଭାବେ ଚଞ୍ଚଳା    ଯା ପାଦସେବେ ପ୍ରତିବେଳା

କେଉଁ ନାରୀବା ସେ ଚରଣ    ସେବାକୁ କରିବ ବର୍ଜନ
କୃଷ୍ଣ କୁରୁ କ୍ଷେତ୍ର ଯୁଦ୍ଧରେ    ଅସ୍ତ୍ର ନଧରିବି ହସ୍ତରେ
ଅଟଳ ପ୍ରତିଜ୍ଞା କରିଲେ    ସେତ ପୁଣି ଅସ୍ତ୍ର ଧରିଲେ
ଯେଉଁପରି ମହାବାତ୍ୟାରେ    କାଷ୍ଠ କଷ୍ଟ ସଂଘର୍ଷଣରେ

ଦାବାବଳ ଲଭି ଜନମ    ଦହେ କ୍ଷଣକେ ବଂଶବନ
ତଥା ଧରାଭାର ସ୍ୱରୂପ    ବିଧର୍ମୀ ଅତ୍ୟାଚାରୀ ନୃପ
ମଧ୍ୟେ କଳହ ସୂତ୍ରପାତ    କରି କଲେ ତାଙ୍କୁ ନିପାତ
ନିଶ୍ଚଳ ଚିତ୍ତରେ ଗାର୍ହସ୍ଥ୍ୟ    ସୁଖ ଭୋଗେ ହେଲେ ନିରତ

ସେକୃଷ୍ଣ ଏହି ଧରାତଳେ    ଜନମି ଯୋଗ ମାୟାବଳେ
ବହୁ ମୂର୍ତ୍ତି କରି ଧାରଣ    ମୂଢ଼ ପ୍ରାକୃତ ଜନ ସମ
ଷୋଳ ସହସ୍ର ଗାପୀଗଣ    କରିଲେ ସ୍ୱେଚ୍ଛାରେ ରମଣ
ଯେ ନାରୀ ମାନଙ୍କର ମନ    ଗମ୍ଭୀର ଭକ୍ତି ଭାବ ପୂର୍ଣ୍ଣ

ସଲଜ୍ଜହାସ୍ୟ ମୁଖ ଚାହିଁ    କାମ ଫୁଲଧନୁ ତେଜଇ
ସେରମଣୀ ମୁକୁଟ ମଣି    ଶ୍ରୀକୃଷ୍ଣ ପ୍ରେମ ସୁହାଗିନୀ
ବଙ୍କିମ କଟାକ୍ଷ ପାତରେ    ଅକ୍ଷମ ମନ ମୋହିବାରେ
ସେହି ଅପ୍ରାକୃତ ନିର୍ଗୁଣ    କୃଷ୍ଣଙ୍କୁ ଜ୍ଞାନହୀନ ଜନ

ମାୟାରେ ବିମୋହିତ ମତି    ପ୍ରାକୃତ ସଗୁଣ ଭବନ୍ତି
ବୁଦ୍ଧି ହେଲେ ମଧ ଆତ୍ମସ୍ଥ    ନୁହେଁ ସଚ୍ଚିଦାନନ୍ଦ ଯୁକ୍ତ
ତଥା ଶ୍ରୀକୃଷ୍ଣ ପ୍ରକୃତିସ୍ଥ    ନୁହେ ପ୍ରାକୃତ ଗୁଣ ଲିପ୍ତ
ଏହା ହିଁ ଯେ କୃଷ୍ଣଙ୍କର    ଅଟଇ ଐଶ୍ୱର୍ଯ୍ୟର ବଳ

ପ୍ରେମରେ ବିମୋହିତ ମତି    ରମଣୀ ଅତି ପ୍ରିୟବତୀ
ନ ଜାଣି ଶ୍ରୀକୃଷ୍ଣ ମହିମା    କରି ନାନା ବିଧ କଳ୍ପନା
ତାଙ୍କୁ ନିଜର ଅନୁଗତ    ସ୍ତ୍ରୈଣ ବୋଲି ଭାବଇ ନିତ୍ୟ
ଭଣାଇ ଧନେଶ୍ୱର ଦାଶ    ମୁ ତୁମ୍ଭ ଦାସ ଅନୁଦାସ

ଚିତ୍ତେ ଶ୍ରୀକୃଷ୍ଣ ନାମ ସ୍ମର    ତରିବ ଏଭବସାଗର

**ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ନୈମିଷୀୟ ଉପାଖ୍ୟାନେ ଶ୍ରୀକୃଷ୍ଣ ଦ୍ୱାରକା ପ୍ରବେଶ ନାମ ଏକାଦଶୋଽଧ୍ୟାୟ ।**

*******

## ଦ୍ୱାଦଶ ଅଧ୍ୟାୟ

ଶୌନକ ପୁଛିଲେ ଆଦରେ    ସୂତ ମୁନିଙ୍କୁ ଆନନ୍ଦରେ
ଅଶ୍ୱତ୍ଥମାର ବ୍ରହ୍ମାସ୍ତ୍ରରେ    ନିହତ ଉତ୍ତରା ଗର୍ଭରେ
ବାଳକଙ୍କୁ ଶ୍ରୀ ଭଗବାନ    ଜୀବିତ କରାଇଲେ ପୁନ
ସେ ମହାମନା ଭକ୍ତବର    ବାଳକ ପରୀକ୍ଷିତଙ୍କର

ଜନମ କରମ ନିଧନ    ବୃତ୍ତାନ୍ତ କରନ୍ତୁ ବର୍ଣ୍ଣନା
ସୂତ ବୋଲେ ହେ ଶ୍ରଦ୍ଧାବାନ    ସକଳ ଋଷିଗଣ ଶୁଣ
ମହାରାଜ ଧର୍ମ ନନ୍ଦନ    କୃଷ୍ଣ ଚରଣେ ଦେଇମନ
ବିଷୟ ଭୋଗରୁ ବିରତ    ପରମ ସ୍ନେହେ ପୁତ୍ର ବତ

ପ୍ରଜାଙ୍କୁ କରିଲେ ପାଳନ    ଧନ ସଂପଦ ଅକଳନ
ଯଜ୍ଞ ଲବ୍ଧ ସ୍ୱର୍ଗ ଭୂବନ    ପଟ୍ଟ ମହିଷୀ ଭ୍ରାତାଗଣ
ଜମ୍ବୁଦ୍ୱୀପର ଅଧିକାର    ବିଶ୍ୱବ୍ୟାପି ଯଶ ଭାସର
ବିଷୟ ସୁଖ ଭୋଗକଲେ    ମାତ୍ର ସନ୍ତୋଷ ନ ଲଭିଲେ

ଯେପରି କ୍ଷୁଧାର୍ତ୍ତ ବ୍ୟକ୍ତିର    ମାଲ୍ୟ ଚନ୍ଦନ ଉପହାର
ନହୁଏ କେବେ ସୁଖ କର    ସେପରି ଧର୍ମ ସୁତଙ୍କର
ଦୁର୍ଲ୍ଲଭ ଦିବ୍ୟ ଭୋଗମାନ    ନକଲା ପ୍ରୀତି ସଂପାଦନ
ଅଶ୍ୱତ୍ଥମା ଅସ୍ତ୍ରତେଜରେ    ଦଗ୍ଧ ପ୍ରାୟ ମାତୃଗର୍ଭରେ

ସେ ପରୀକ୍ଷିତ ପ୍ରତ୍ୟକ୍ଷରେ    ଦିବ୍ୟ ପୁରୁଷଙ୍କୁ ଦେଖିଲେ
ଅଙ୍ଗୁଷ୍ଠ ମାତ୍ର ପରିମାଣ    ମସ୍ତକେ ମୁକୁଟ ଶୋଭନ
ତେଜସ୍ୱୀ ରମ୍ୟ ମୂର୍ତ୍ତିଶ୍ୟାମ    ପରିଧାନ ପୀତ ବସନ
ବିଦ୍ୟୁତ୍ ମଣ୍ଡିତ ନବଘନ    ସମାନ ନୟନା ଭିରାମ

କର୍ଣ୍ଣରେ ସୁବର୍ଣ୍ଣ କୁଣ୍ଡଳ    ଜାନୁଲମ୍ବୀ ବାହୁ ଯୁଗଳ
ମାତୃ ଗର୍ଭସ୍ଥ ନିଜଭକ୍ତ    ବ୍ରହ୍ମାସ୍ତ୍ର ଆଘାତେ ଅତ୍ୟନ୍ତ
ପୀଡ଼ା ଦେଖି ରକ୍ତ ନୟନ    ଗଦା କରୁଥିଲେ ଘୂର୍ଣ୍ଣନ
ନିହାରକୁ ସୂର୍ଯ୍ୟଯେପରି    ନାଶକରନ୍ତି ସେହିପରି

ସେପୁରୁଷ ନିଜ ଗଦାରେ    ବ୍ରହ୍ମାସ୍ତ୍ର ତେଜେ ନିବାରିଲେ
ଧର୍ମରକ୍ଷକ ଆମେୟାତ୍ମା    ଅନ୍ତର୍ଯ୍ୟାମୀ ସର୍ବଭୂତାତ୍ମା
ପ୍ରଭୁ ଶ୍ରୀକୃଷ୍ଣ ନରହରି    ବ୍ରହ୍ମଅସ୍ତ୍ର ତେଜ ନିବାରି
ପରୀକ୍ଷିତଙ୍କର ସଙ୍ଗରେ    ଦଶମାସ ରହି ଗର୍ଭରେ

ସେଠାରେ ହେଲେ ଅନ୍ତର୍ଦ୍ଧାନ    ଭକତ ବାଞ୍ଛା କଳ୍ପଦ୍ରୁମ
ଅଳଙ୍କୃତ ସର୍ବ ଗୁଣରେ    ଶୁଭଗ୍ରହଲଗ୍ନ ବେଳାରେ
ଦ୍ୱିତୀୟପଣ୍ଡୁଙ୍କ ସମାନ    ପରୀକ୍ଷିତ ହେଲେ ଜନମଦ
ପୌତ୍ର ଜନ୍ମରେ ଆନନ୍ଦିତ    ସେ ମହାରାଜାଧର୍ମ ସୁତ

ଧୌମ୍ୟ କୃପ ଆଦି ବ୍ରାହ୍ମଣ    ସତ୍ୱରେ କରି ନିମନ୍ତ୍ରଣ
ସ୍ୱସ୍ତିବାଚକ ଜାତକର୍ମ    ବିଧିରେ କଲେ ସଂପାଦନ
ବିପ୍ରଙ୍କୁ ମିଷ୍ଟାନ୍ନ ଭୋଜନ    ଧେନୁ ଭୂମି ଗ୍ରାମ ସୁବର୍ଣ୍ଣ
ରତନ ଅଶ୍ୱ ଗଜମାନ    କରିଲେ ଭକ୍ତିରେ ପ୍ରଦାନ

ବ୍ରାହ୍ମଣେ ଅତି ଆନନ୍ଦରେ    ଆଶୀର୍ବାଦ କରି କହିଲେ
ଆହେ ପୁରୁକୁଳ ତିଳକ    ପରମ ଶୁଦ୍ଧ ଏ ବାଳକ
ଦୁର୍ନିବାର କାଳ ଚକ୍ରରେ    ପୁରୁବଂଶ ନାଶ କଲରେ
କରୁଣା କର ଭଗବାନ    ତୁମକୁ କରିଲେ ପ୍ରଦାନ

ହେ ମହାଭାଗ ଯୁଧିଷ୍ଠିର    ଯୋଗ ଜନ୍ମା ଏ ବାଳକର
ନାମ ହୋଇବ ବିଷ୍ଣୁରାତ    ଏ ଶିଶୁ ମହା ଭାଗବତ
ଏବାଳକ ନିଜ ଖ୍ୟାତିରେ    ସୁଗୁଣ ରାଜର୍ଷି ଗଣରେ
ସତେକି ସମାନ ହୋଇବ    ଦୈବ ଅନୁକୂଳ ହୋଇବ

ଭଣିଲେ ବିଜ୍ଞ ବିପ୍ରଗଣ    ଶୁଣନ୍ତୁ ହେ ଧର୍ମ ନନ୍ଦନ
ଏପୌତ୍ର ଇକ୍ଷ୍ୱାକୁ ସମାନ    କରିବ ପ୍ରଜାଙ୍କୁ ପାଳନ
ସତ୍ୟ ପ୍ରତିଜ୍ଞ ରାମପରି    ବ୍ରାହ୍ମଣ କୁଳ ହିତକାରୀ
ଦାନରେ ଶିବ ଉଶିନର    ଭରତ ସମ ଯଶସ୍କର

ଅର୍ଜ୍ଜୁନ କାର୍ତ୍ତବୀର୍ଯ୍ୟସମ    ଧନୁର୍ଦ୍ଧରଙ୍କ ଅଗ୍ରଗଣ୍ୟ
ତେଜେ ଅନଳ ଦିବାକର    ସାଗର ଦୁସ୍ତର ଗମ୍ଭୀର
କ୍ଷମାରେ ପୃଥିବୀ ସମାନ    ସହିଷ୍ଣୁ ପିତାମାତା ସମ
ସିଂହସମ ପରାକ୍ରମରେ    ଅତୁଳ ତିନି ଭୂବନରେ

ସମଦରଶୀ ବ୍ରହ୍ମାପରି    ଦୟାଳୁ ଦୀନ ତାପହାରୀ
ସର୍ବପଳକ ବିଷ୍ଣୁସମ    ସୁଗୁଣେ କୃଷ୍ଣ ଭଗବାନ
ରନ୍ତୀଦେବ ତୁଲ୍ୟ ଉଦାର    ଯଯାତି ସମ ଧର୍ମପର
ଧୈର୍ଯ୍ୟଗୁଣେ ବଳି ସମାନ    କୃଷ୍ଣଭକ୍ତ ପ୍ରହ୍ଲାଦ ସମ

ଅଶ୍ୱମେଧ ଯଜ୍ଞ କରିବ    ବୟୋବୃଦ୍ଧ ଜନେ ସେବିବ
ରାଜର୍ଷି ମଧ୍ୟରେ ଜନକ    ଦୁଷ୍ଟ ଦୁରାଚାର ଶାସକ
ପୃଥିବୀରେ ଧର୍ମ ଥାପିବ    କଳିକୁ ନିଗ୍ରହ କରିବ
କିନ୍ତୁ ବିପ୍ରସୁତ ଶାପରେ    ତକ୍ଷକ ଦଂଶନ ଯୋଗରେ

ନିଜ ମୃତ୍ୟୁ ବାର୍ତ୍ତା ଶୁଣିଣ    ବରଜି ରାଜ ସିଂହାସନ
ଆଶ୍ରିତ ଗୋବିନ୍ଦ ଚରଣ    ତାଙ୍କଚରଣ କରି ଧ୍ୟାନ
ଶ୍ରୀ ଶୁକ ମୁନି ବ୍ୟାସ ସୁତ    ମୁଖରୁ ଶୁଣି ଆତ୍ମ ତତ୍ତ୍ୱ
ଦେହ ତେଜି ଗଙ୍ଗା କୂଳରେ    ଗମିବ ବୈକୁଣ୍ଠ ଧାମରେ

ମୁଁ ଯାହାକୁ ମାତୃ ଗର୍ଭରେ    ଦେଖିଥିଲି ନିଜ ନେତ୍ରରେ
ଏହି କ'ଣ ସେହି ପୁରୁଷ    ଭାବରେ ପୃଥିବୀର ମନୁଷ୍ୟ
ମାନଙ୍କୁ ଦେଖି ହୃଦୟରେ    ଏ ଶିଶୁ ପରୀକ୍ଷା କରୁଥିଲେ
ଏଣୁ ଏ ଶିଶୁ ପରୀକ୍ଷିତ    ନାମରେ ହୋଇବ ବିଖ୍ୟାତ

ଜ୍ୟୋତିର୍ବିଦ ବ୍ରାହ୍ମଣ ଗଣ    ଏପରି ଶୁଣାଇ ବଚନ
ଯଥାବିଧି ପୂଜା ଗ୍ରହଣ    କରି ଗମିଲେ ନିଜ ଧାମ
ଯୁଧିଷ୍ଠିରାଦି ପିତା ମହେ    ପାଳିତ ଅତି ଶ୍ରଦ୍ଧା ସ୍ନେହେ
ସେ ରାଜସୁତ ପରୀକ୍ଷିତ    ଶୁକ୍ଳ ପକ୍ଷର ଚନ୍ଦ୍ରବିତ

ଧୀରେ ବଢ଼ିବାକୁ ଲାଗିଲା    ସକଳ ଚିତ୍ତ ଆକର୍ଷିଲା
ବାଲ୍ୟ କାଳରୁ ପରୀକ୍ଷିତ    ଅତି ଧାର୍ମିକ କୃଷ୍ଣଭକ୍ତ
ସୁମତି ମହା ଭାଗବତ    ସକଳ ଜନସ୍ନେହ ପାତ୍ର
କୁରୁକ୍ଷେତ୍ରେ ଜ୍ଞାତି ନିଧନ    ପାପ କରିବାକୁ ମୋଚନ

ଅଶ୍ୱମେଧ ଯଜ୍ଞ ନିମିତ୍ତ　ଇଚ୍ଛା କରିଲେ ଧର୍ମସୁତ
ମାତ୍ରଧର୍ମାତ୍ମା ଯୁଧିଷ୍ଠିର　ପ୍ରଜାଙ୍କଠାରୁ ରାଜକର
ବ୍ୟତୀତ କୌଣସି ପ୍ରକାର　ଗ୍ରହଣ ନକରନ୍ତେ କର
ଧନ ଅଭାବରେ ଚିନ୍ତିତ　ସର୍ବଦା ହୋଇଲେ ଦୁଃଖିତ

ଅନ୍ତର୍ଯ୍ୟାମୀ ଶ୍ରୀ ଭଗବାନ　କୃଷ୍ଣ ନିର୍ଦ୍ଦେଶ ଭ୍ରାତାଗଣ
ଅତି ଆନନ୍ଦିତ ଚିତ୍ତରେ　ଗମିଲେ ଉତ୍ତର ଦିଗରେ
ବ୍ରାହ୍ମଣ ପରିତ୍ୟକ୍ତ ଧନ　ଯୁଧିଷ୍ଠିରେ କଲେ ପ୍ରଦାନ
ସେ ଧନେ ଧର୍ମ ଯୁଧିଷ୍ଠିର　ଆଣି ଯଜ୍ଞ ସର୍ବ ସମ୍ଭାର

କରି ତ୍ରୟ ଅଶ୍ୱମେଧକୁ　ଅର୍ଚିଲେ ଯଜ୍ଞେଶ ହରିଙ୍କୁ
ମହାରାଜ ଧର୍ମ ସୁତଙ୍କର　ନିମନ୍ତ୍ରଣରେ ଚକ୍ରଧର
ଶ୍ରୀକୃଷ୍ଣ ବେଦଜ୍ଞ ବ୍ରାହ୍ମଣ　ସହିତ ଯଜ୍ଞେ ଯୋଗଦାନ
କରି ବନ୍ଧୁ ପ୍ରୀତି ବର୍ଦ୍ଧନ　ନିମିତ୍ତ ଆଉ କେତେଦିନ

ରହିଲେ ହସ୍ତିନା ନଗରେ　ପ୍ରେମ ପୁଲକିତ ଚିତ୍ତରେ
ଦ୍ରୌପଦୀ କୁନ୍ତୀ ଭୀମସେନ　ପ୍ରଭୃତି ସର୍ବ ବନ୍ଧୁ ଜନ
ଧର୍ମ ସୁତଠାରୁ ବିଦାୟ　ଘେନି ସଙ୍ଗରେ ଧନଞ୍ଜୟ
ଦ୍ୱାରକାକୁ ପ୍ରତ୍ୟାଗମନ　କଲେ ଶ୍ରୀକୃଷ୍ଣ ଭଗବାନ

କହଇ ଦାଶ ଧନେଶ୍ୱର　ଚିତ୍ତେ ଚିନ୍ତି କୃଷ୍ଣ ପୟର
ସୁଜନେ ବୋଲ ରାମ ହରି　ଭବସାଗରୁ ହେବ ପାରି

ଇତି ଶ୍ରୀମଦ୍ ଭାଗମତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ନୈମିଷିୟୋପାଖ୍ୟାନେ ପରୀକ୍ଷିତ ଜନ୍ମାଦି ବର୍ଣ୍ଣନେ ନାମ ଦ୍ୱାଦଶୋଽଧ୍ୟାୟ ।

*******

## ତ୍ରୟୋଦଶ ଅଧ୍ୟାୟ

ସୂତ କହନ୍ତି ମନ୍ଦେ ହସି　ଶୁଣ ଶୌନକ ମହାଋଷି
ତୀର୍ଥ ଯାତ୍ରାବେଳେ ବିଦୁର　ବିଜ୍ଞ ମୈତ୍ରେୟ ମୁନିବର
ମୁଖରୁ ସକଳ ଜୀବର　ଗତି କେବଳ ଗୋବିନ୍ଦର
ଚରଣ ଅର୍ଚ୍ଚନ ଭଜନ　ତୁଟାଏ ସଂସାର ବନ୍ଧନ

ଜାଣି ଆତ୍ମଜ୍ଞାନ ଲଭିଲେ　ହସ୍ତିନା ପୁରକୁ ଫେରିଲେ
ମୈତ୍ରେୟ ମୁନିଙ୍କୁ ବିଦୁର　ପୁଚ୍ଛିଲେ ଯେତେ ସମାଚାର
ତହିଁରୁ କେତେକ ପ୍ରଶ୍ନର　ଉତ୍ତର ଶ୍ରବଣେ ତାଙ୍କର
ଗୋବିନ୍ଦ ଚରଣେ ଅନନ୍ୟ　ଭକତି ହୋଇଲା ଜନମ

ଭ୍ରାତାଙ୍କ ସହ ଯୁଧିଷ୍ଠିର　ଧୃତରାଷ୍ଟ୍ର କୃପଗୁରୁ ବର
ମନ୍ତ୍ରୀ ସଞ୍ଜୟ ଗୁରୁଦ୍ରୋଣ　ଯୁଯୁସୁ ଧୃଷ୍ଟଦ୍ୟୁମ୍ନ ପୁନ
ସୁଭଦ୍ରା ଉତ୍ତରା ଗାନ୍ଧାରୀ　କୁନ୍ତୀ କୃପୀ ପ୍ରଭୃତି ନାରୀ
ଦେଖି ବିଦୁର ଆଗମନ　ଆନନ୍ଦ ଉଲ୍ଲସିତ ମନ

ଜାଣି ଆତ୍ମଜ୍ଞାନ ଲଭିଲେ　ହସ୍ତିନା ପୁରକୁ ଫେରିଲେ
ମୈତ୍ରେୟ ମୁନିଙ୍କୁ ବିଦୁର　ପୁଚ୍ଛିଲେ ଯେତେ ସମାଚାର
ତହିଁରୁ କେତେକ ପ୍ରଶ୍ନର　ଉତ୍ତର ଶ୍ରବଣେ ତାଙ୍କର
ଗୋବିନ୍ଦ ଚରଣେ ଅନନ୍ୟ　ଭକତି ହୋଇଲା ଜନମ

ଭ୍ରାତାଙ୍କ ସହ ଯୁଧିଷ୍ଠିର　ଧୃତରାଷ୍ଟ୍ର କୃପଗୁରୁ ବର
ମନ୍ତ୍ରୀ ସଞ୍ଜୟ ଗୁରୁଦ୍ରୋଣ　ଯୁଯୁସୁ ଧୃଷ୍ଟଦ୍ୟୁମ୍ନ ପୁନ
ସୁଭଦ୍ରା ବିଦୁର ଆଗମନ　କୁନ୍ତୀ କୃପୀ ପ୍ରଭୃତି ନାରୀ
ଦେଖିବିଦୁର ଆଗମନ　ଆନନ୍ଦ ଉଲ୍ଲସିତ ମନ

ତନୟ ତନୟା ସହିତ　ସମ୍ମୁଖେ ହେତେ ଉପସ୍ଥିତ
ମୃତକି ଲଭିଲା ଜୀବନ　ସକଳ ପୁରବାସୀ ଜନ
ଧାର୍ମିକ ମିଦୁରଙ୍କୁ ଦେଖି　ଯୁଧିଷ୍ଠିରାଦି ହେଲେ ସୁଖୀ
ହର୍ଷ ପୁଲକେ ଆଲିଙ୍ଗନ　ଯଥାବଧି ଦେଲେ ସମ୍ମାନ

କରି ସ୍ୱାଗତ ସମ୍ଭାଷଣ ପ୍ରେମାଶ୍ରୁ କରିଲେ ମୋଚନ
ବିଦୁରେ ବାସଇ ଆସନେ ଯୁଧିଷ୍ଠି ଆଦି ଭାଇମାନେ
ସତ୍କାର ସମ୍ମାନ କରିଲେ ନାମ ମିଷ୍ଟାନ ଭୁଞ୍ଜାଇଲେ
ବିଶ୍ରାମ ଶୟନ ଶେଷରେ ପୂର୍ବ କଥାମାନ କହିଲେ

କୁଟେ ଯତୁଗୃହ ଦହନ ଭୀମକୁ ବିଷଲଡୁ ଦାନ
ଏ ଘୋର ବିପଦ କାଳରେ ଆପଣ ବୁଦ୍ଧି କଉଶଳେ
ଆମକୁ ମାତାଙ୍କ ସଙ୍ଗରେ ରକ୍ଷା କରିଥିଲେ ସ୍ନେହରେ
ଆପଣଙ୍କ ପକ୍ଷ ଛାୟାରେ ଆମେ ବଢ଼ିଲୁ ଧୀରେ ଧୀରେ

ଆମ୍ଭମାନଙ୍କୁ ସବୁଦିନେ ଭାବୁଥାନ୍ତିତ ମନେ ମନେ
ତୀର୍ଥ ଯାତ୍ରାବେଳେ ଆପଣ କେଉଁ ବୃତ୍ତି ଅବଲମ୍ବନ
ଜୀବନ କରିଲେ ଧାରଣ କେଉଁ ତୀର୍ଥ କଲେ ଭ୍ରମଣ
ପରମ ଭକତ ଆପଣ ସ୍ୱୟଂ ବିଶୁଦ୍ଧ ତୀର୍ଥ ସମ

ଆପଣଙ୍କ ହୃଦ କମଳେ ଶ୍ରୀ ହରି ବିଜେ ସବୁବେଳେ
ତୁମ ଚରଣ ସ୍ପର୍ଶ ପାଇ ତୀର୍ଥଯେ ପବିତ୍ର ହୁଅଇ
ଆମର ପରମ ବାନ୍ଧବ କୃଷ୍ଣଗତ ପ୍ରାଣ ଯାଦବ
ଦ୍ୱାରକାରେ ସୁଖେ ଛନ୍ତିତ ତୁମେ ତାଙ୍କୁ ଦେଖିଅଛନ୍ତିତ

ଜିଜ୍ଞାସୁ ଯୁଧିଷ୍ଠିରଙ୍କର ଶୁଣି ପ୍ରଶ୍ନସବୁ ବିଦୁର
ଯଦୁବଂଶ ଧ୍ୱଂସ ବ୍ୟତୀତ ବର୍ଣ୍ଣିଲେ ସକଳ ବୃତ୍ତାନ୍ତ
ଅପ୍ରିୟ ଅସହ୍ୟ ବଚନ ନକହନ୍ତି କେବେ ସଜ୍ଜନ
ତେଣୁ ଧ୍ୱଂସ ଯଦୁବଂଶର ଗୋପନ ରଖିଲେ ବିଦୁର

ଦେବ ତୁଲ୍ୟ ହୋଇ ପୂଜିତ ନିଜର ପୂଜ୍ୟ ଜ୍ୟେଷ୍ଠ ଭ୍ରାତା
ଧୃତରାଷ୍ଟ୍ରଙ୍କୁ ଧର୍ମ ତତ୍ତ୍ୱ ଉପଦେଶ ଦେଇ ସମସ୍ତ
ବିଦୁର ହସ୍ତିନା ନଗରେ ରହିଲେ ସୁଖେ ଆନନ୍ଦରେ
ଶାପେ ମାଣ୍ଡବ୍ୟ ଋଷିଙ୍କର ଯମରାଜ ଶତ ବର୍ଷର

ସେ ଶୂଦ୍ର ବିଦୁର ରୂପରେ ଜନମ ହେଲେ ମର୍ତ୍ତ୍ୟପୁରେ
ସୂର୍ଯ୍ୟ ସେ ବେଳେ ଯମଙ୍କର ଗ୍ରହଣ କରି ଅଧିକାର
ପାପୀମାନଙ୍କୁ ଦଣ୍ଡଦାନ କରୁଥିଲେ ଯଥା ବିଧାନ
ଲୋକପାଳ ସମ ସୋଦର ରାଜ୍ୟ ଲଭିଲେ ଯୁଧିଷ୍ଠିର

କୁଳରକ୍ଷକ ପରୀକ୍ଷିତ ପୌତ୍ର ସକଳ ଗୁଣ ଯୁକ୍ତ
ତେଣୁ ସେ ଅତି ଆନନ୍ଦରେ ପ୍ରଜାପାଳି ସୁଖେ ରହିଲେ
ବିଷୟ ସୁଖରେ ଆସକ୍ତ ସର୍ବଦା ଗୃହ କର୍ମେ ରତ
ପାଣ୍ଡବଙ୍କର ଅଲକ୍ଷ୍ୟରେ ଆୟୁଷ ଶେଷ ଧୀରେ ଧୀରେ

ପାଣ୍ଡବଙ୍କର ଆୟୁକ୍ଷୟ ଜାଣି ବିଦୁର ଲଭିକୋହ
ଧୃତରାଷ୍ଟ୍ରେ କହେ ଚେତାଇ ଦେଖ ମହାଭୟ ଆସଇ
ଏଗୃହକୁ ତେଜି ତୁରିତ ଚାଲିଯିବା ତୁମ ଉଚିତ
ଏ ବିଶ୍ୱ ଅଧିନ କାଳରେ ନାହିଁ ତାହାର ପ୍ରତିକାର

ସେ କାଳ ସ୍ୱରୂପ ଭଗବାନ ଅଟନ୍ତି ସର୍ବ ଶକ୍ତିମାନ
ଆମ ସମ୍ମୁଖେ ଉପସ୍ଥିତ ଗୃହ ତ୍ୟାଗ କର ତୁରିତ
ଏହି ପରମ ପ୍ରିୟ ପ୍ରାଣ ସେ କାଳ କରଇ ହରଣ
ଗୃହ ସଂପଦ ଦାରାଧନ ଚିନ୍ତା କରିବା ଅକାରଣ

ବନ୍ଧୁ ପୁତ୍ର ପିତା ସୋଦର ସର୍ବେ ଗଲେଣି ଯମପୁର
ଆପଣ ଜନ୍ମବେଳୁ ଅନ୍ଧ ଏବେ ବଧିର ଅତି ବୃଦ୍ଧ
ଖାଦ୍ୟ ହେଉନାହିଁ ହଜମ ଅଙ୍ଗ କମ୍ପଇ ଘନ ଘନ
ତଥାପି ପର ଆଳୟରେ କିଂପାଇ ଅଛ ଆନନ୍ଦରେ

ବଞ୍ଚିରହିବା ଇଚ୍ଛାଶକ୍ତି ଜୀବର ଅତି ବଳବତୀ
ଭାବିଲେ ଆଶ୍ଚର୍ଯ୍ୟ ଲାଗଇ ତଥାପି ମୋହ ନ ତୁଟଇ
ଯେଉଁ ଭୀମ ଗଦାଘାତରେ ପୁତ୍ରଙ୍କୁ ମାରିଲା ଯୁଦ୍ଧରେ
ସେ ଭୀମ ଦେଉଥିବା ଅନ୍ନ ଆପଣ କରନ୍ତି ଭୋଜନ

ଗୃହ ପାଳିତ ପଶୁସମ ଲଜ୍ଜା ନାହିଁ ତୁମ ବଦନ
ଯେଉଁ ପାଣ୍ଡବଙ୍କୁ ନିଧନ କରିବା ନିମିତ୍ତ ଆପଣ
ଯତୁ ଗୃହରେ ଅଗ୍ନିଦେଲେ ଭୀମକୁ ବିଷ ଲଡୁ ଦେଲେ
ନାରୀକୁ କରିଲେ ଉଲଗ୍ନ ରାଜ୍ୟ ଧନ କଲେ ହରଣ

ଖାଇ ସେ ପାଣ୍ଡବଙ୍କ ଅନ୍ନ ବଞ୍ଚିବା କି ପ୍ରୟୋଜନ
ଆପଣ ଅତି ଦୀନହୀନ ପରି ଧରିଛନ୍ତି ଜୀବନ
ଏ ତୁମ ଜରା ଜୀର୍ଣ୍ଣ ଦେହ ହେଉଛି କ୍ରମେ କ୍ରମେ କ୍ଷୟ
ଆସକ୍ତି ଅହଙ୍କାର ଶୂନ୍ୟ ଯଶ କୀର୍ତ୍ତି ଧର୍ମ ବିହୀନ

ଦେହକୁ ସର୍ବ ଅଲକ୍ଷରେ ଯେ ବ୍ୟକ୍ତି ପରି ତ୍ୟାଗ କରେ
ତାହାକୁ ଅତି ବିଚକ୍ଷଣ ବୋଲି କହନ୍ତି ସର୍ବ ଜନ
ଯେଉଁ ବ୍ୟକ୍ତି ନିଜ ଇଚ୍ଛାରେ କିମ୍ବା ଅନ୍ୟ ଉପଦେଶରେ
ବୈରାଗୀ ହୋଇ ନିଜମନ ଗୋବିନ୍ଦ ପଦେ ସମର୍ପିତ

ମାୟା ସଂସାର ତ୍ୟାଗ କରେ ସେ ଶ୍ରେଷ୍ଠ ମାନବ ମଧ୍ୟରେ
ଆତ୍ମୀୟ ବନ୍ଧୁ ଅଲକ୍ଷରେ ଗମନ୍ତୁ ଉତ୍ତର ଦିଗରେ
ବିଳମ୍ବ କରିଲେ ଆପଣ ଏ ଦେହ ହେବ ଜୀର୍ଣ୍ଣ ଶୀର୍ଣ୍ଣ
ଲୋପ ହୋଇବ ବୁଦ୍ଧି ଜ୍ଞାନ ନିନ୍ଦା କରିବେ ସର୍ବଜନ

ଉପଦେଶରେ ବିଦୁରର ଜନ୍ମାନ୍ଧ ଧୃତରାଷ୍ଟ୍ର ବୀର
ଆତ୍ମୀୟଙ୍କ ଦୃଢ ବନ୍ଧନ ସ୍ନେହ ରଜ୍ଜୁ କର ଛେଦନ
ଭ୍ରାତା ଉପଦିଷ୍ଟ ମାର୍ଗରେ ଗମନ କଲେ ଅଲକ୍ଷ୍ୟରେ
ସୁବଳ ନୃପତି କୁମାରୀ ସତୀ ପତିବ୍ରତା ଗାନ୍ଧାରୀ

ସନ୍ନ୍ୟାସୀ ଆନନ୍ଦ ବର୍ଦ୍ଧନ ଦେବତାଙ୍କର କେଳୀ ସ୍ଥାନ
ହିମାଳୟ ଗିରି ପର୍ଯ୍ୟନ୍ତ ଗମିଲେ ପତିଙ୍କ ସହିତ
ସମର ଅସ୍ତ୍ର ଶସ୍ତ୍ର କ୍ଷତ ବୀର ପକ୍ଷେ ସୁଖ ଯେମନ୍ତ
ତଥା ପଦଯାତ୍ରା କ୍ଲେଶରେ ଗାନ୍ଧାରୀ ବ୍ୟଥିତା ନୋହିଲେ

ସେ ଯୁଧିଷ୍ଠିର ମହାମନା ପ୍ରାତଃ ହୋମ ସନ୍ଧ୍ୟା ବନ୍ଦନା
ବିପ୍ରେ ଗୋ ଭୂମି ସ୍ୱର୍ଣ୍ଣଦାନ ଅନ୍ତେ ପିତୃପଦ ବନ୍ଦନ
ପାଇଁ ଯାଇଁ ପିତୃଗୃହକୁ ବିଦୁର ବା ଧୃତରାଷ୍ଟ୍ରଙ୍କୁ
ତଥା ଜନନୀ ଗାନ୍ଧାରୀଙ୍କୁ ଦେଖି ନ ପାରିଲେ କାହାକୁ

ଯୁଧିଷ୍ଠି ବ୍ୟାକୁଳିତ ହୋଇ ପୁଚ୍ଛିଲେ ସଞ୍ଜୟଙ୍କୁ ଯାଇ
ପରମ ହିତୈଷ୍ୟ ବିଦୁର ଜନ୍ମାନ୍ଧ ପିତୃବ୍ୟ ଆମର
ପୁତ୍ର ଶୋକାତୁରା ଗାନ୍ଧାରୀ ଗମିଲେ କେଣେନ ପଚାରି
ଧୃତରାଷ୍ଟ୍ର ପୁତ୍ର ଶୋକରେ ବିପଦ ଭୟ ଆଶଙ୍କାରେ

ମତେ ମନ୍ଦବୁଦ୍ଧି ବିଚାରି ଦୁଃଖେ ଗଲେ ଘରୁ ବାହାରି
ଭାର୍ଯ୍ୟା ସହିତ ଗଙ୍ଗାନୀରେ କିଅବା ପ୍ରାଣ ବିସର୍ଜିଲେ
ପିତା ପଣ୍ଡୁଙ୍କ ମୃତ୍ୟୁପରେ ଆମକୁ ଶିଶୁ ଅବସ୍ଥାରେ
ଯେମାନେ ପାଳି ପୋଷିଥିଲେ ସେମାନେକେଉଁ ଆଡେଗଲେ

ଧୃତରାଷ୍ଟ୍ରଙ୍କ ବିରହରେ ଶୋକ ସନ୍ତପ୍ତ ହୃଦୟରେ
ସଂଜୟ ଧୃତରାଷ୍ଟ୍ରଙ୍କର ପ୍ରଶ୍ନର ନ ଦେଲେ ଉତ୍ତର
ହସ୍ତରେ ପୋଛି ଅଶ୍ରୁବାରି ମନ ବୁଦ୍ଧିକୁ ସ୍ଥିର କରି
ଧୃତରାଷ୍ଟ୍ରଙ୍କର ଚରଣ ଭକ୍ତିରେ କରିଣ ସ୍ମରଣ

କହିଲେ ହେ ଧର୍ମନନ୍ଦନ ତୁମ ପିତୃବ୍ୟ ଦୁଇଜଣ
ମାତା ଗାନ୍ଧାରୀ ମହାଦେଈ ବିଷୟ ମୁହିଁ ଜାଣେ ନାହିଁ
ହେ ମହାତ୍ମା ଯୁଧିଷ୍ଠିର ମୁଁ ହୀନମତ ଦୁରାଚାର
ସେ ମହାତ୍ମାଙ୍କ ସେବା ବଞ୍ଚିତ ସର୍ବଦା ଦୁଃଖିତ ବ୍ୟଥିତ

ଏବେଳେ ତୁମ୍ବୁରୁ ସହିତ ନାରଦ ହେଲେ ଉପସ୍ଥିତ
ଧର୍ମରାଜ ଭ୍ରାତା ସଙ୍ଗରେ ଉଠି ଆସନରୁ ସତ୍ୱରେ
ବନ୍ଦନା କରି ଶ୍ରୀଚରଣ ପୁଚ୍ଛିଲେ ଆହେ ଭଗବାନ
ଆମ ପିତୃବ୍ୟ ଦୁଇଜଣ ମାତା ଗାନ୍ଧାରୀ ଦେବୀ ପୁଣ

ଆମକୁ ନ ପୁଛି ନ କହି କେଉଁ ଆଡ଼େ ଗଲେ ପଳାଇ
ଯୁଧିଷ୍ଠିରଙ୍କ ପ୍ରଶ୍ନ ଶୁଣି ବୋଲେ ନାରଦ ମହାମୁନି
ଜଗତ ଈଶ୍ୱର ଅଧିନ କର୍ମ କଷଣ ସହେ ଜନ
ଲୋକ ଓ ଲୋକ ପାଳଗଣ କରନ୍ତି ଯାଆଜ୍ଞା ପାଳନ

ଜୀବଙ୍କୁ ସେହି ଭଗବାନ କରନ୍ତି ବିଚ୍ଛେଦ ମିଳନ
ଆହେ ବିଜ୍ଞ ଧର୍ମ ନନ୍ଦନ ବୃଥା ଶୋକେ କି ପ୍ରୟୋଜନ
ଈଶ୍ୱର ଇଚ୍ଛା ବଳବତୀ କେହି ତା ଏଡ଼ି ନପାରନ୍ତି
ଯଥା ଭିନ୍ନ ଭିନ୍ନ ରଜ୍ଜୁରେ ବନ୍ଧନ ହୋଇ ନାସିକରେ

ବଳଦମାନେ ପୁଣି ଥରେ ବନ୍ଧା ହୋଇ ଦୀର୍ଘ ରଜ୍ଜୁରେ
କରନ୍ତି ମାଲିକର କାମ ସେପରି ଜନ ସାଧାରଣ
କ୍ଷତ୍ରିୟ ଶୁଦ୍ର ବିପ୍ର ବୈଶ୍ୟ ଗୃହୀ ବାନପ୍ରସ୍ଥୀ ସନ୍ନ୍ୟାସ
ବ୍ରହ୍ମଚାରୀ ଭାବେ ବିଭିନ୍ନ ନିୟମେ ବନ୍ଧାହୋଇ ପୁନ

ବେଦବିଦ୍ୟା ସ୍ୱରୂପ ଅନ୍ୟ ଦୀର୍ଘ ରଜ୍ଜୁ ହୋଇ ବନ୍ଧନ
ମାନି ଈଶ୍ୱରଙ୍କ ଶାସନ କରନ୍ତି କର୍ମ ସଂପାଦନ
ଯଥା ଖେଳାଳି ସ୍ୱଇଚ୍ଛାରେ ଖେଳନାମାନ ଏକତ୍ରରେ
ରଖେ ଅବା ବିଚ୍ଛିନ୍ନ କରେ ତଥା ଈଶ୍ୱରଙ୍କ ଇଚ୍ଛାରେ

ଜୀବନର ବିଚ୍ଛେଦ ମିଳନ ଘଟଣା ଘଟେ ପ୍ରତିକ୍ଷଣ
ଯଦିବା ଜୀବାତ୍ମା ସ୍ୱରୂପ ମନୁଷ୍ୟକୁ ଭାବୁଛ ନିତ୍ୟ
ଶରୀର ଦୃଷ୍ଟିରୁ ଅନ୍ୟତ୍ୟ ବ୍ରହ୍ମରୂପେ ନିତ୍ୟ ଅନିତ୍ୟ
ଅତୀତ ଯଦି ମନେକର କି ଅବା ଜଡ଼ ଚେତନର

ଦେଖ୍ ସନ୍ନିବେଶ ଏକତ୍ର ସମାହାର ନିତ୍ୟ ଅନିତ୍ୟ
ବୋଲେ ଭାବୁଥାଅ ଚିତ୍ତରେ ତଥାପି କୌଣସି ମତରେ
ଅଜ୍ଞାନ ମମତା ବିମୋହ ବ୍ୟତୀତ ସୌହାର୍ଦ୍ଦ୍ୟ ଓ ସ୍ନେହ
କାହାରି ପାଇଁ ଏ ସଂସାରେ ଶୋକ ନ ଜନ୍ମଇ ହୃଦରେ

ସଂସାର ଈଶ୍ୱର ଅଧୀନ ପିତୃବ୍ୟ ନିରାଶ୍ରୟ ଦୀନ
ପୁଣି ଶୋକାତୁରା ଗାନ୍ଧାରୀ ଆପଣଙ୍କ ବିନା କିପରି
ବଞ୍ଚିବେ ଏ ଅଜ୍ଞାନ ଜାତ ବ୍ୟାକୁଳତା ତେଜ ତୁରିତ
ସର୍ପ ଗ୍ରସ୍ତ ବ୍ୟକ୍ତି ଯେମନ୍ତେ ଅପର ଜଣେ ସର୍ପ ଗ୍ରସ୍ତ

ଜନେ ରକ୍ଷା କରି ନପାରେ ହେ ଧର୍ମସୁତ ସେ ପ୍ରକାରେ
କାଳ କର୍ମ ଗୁଣ ଅଧିନ ଦେହଧାରୀ ବ୍ୟକ୍ତି ତେସନ
ଅନ୍ୟ ଜଣେ ଦେହ ଧାରୀକୁ କ୍ଷମ ନୁହଁଇ ରକ୍ଷିବାକୁ
ଜୀବନର ଜୀବନ ଧାରଣ ନିମିତ୍ତ ପ୍ରଭୁ ଭଗବାନ

ନାନା ଜୀବିକା ସୃଜିଛନ୍ତି ତେଣୁ ପଶୁପକ୍ଷୀ ପ୍ରଭୃତି
ମନୁଷ୍ୟ କରଇ ଭୋଜନ ଗବାଦି ପଶୁଗଣ ତୃଣ
କ୍ଷୁଦ୍ର ଜୀବ ବୃହଜ୍ଜୀବର ଭୋଜ୍ୟ ଅଟଇ ଏସଂସାର
ଭଗବାନ ହିଁ ଏ ଜଗତ ସ୍ୱରପ ଅଟନ୍ତି ସାକ୍ଷାତ

ଭୋକ୍ତା ସ୍ୱରୂପେ ଜୀବସେତ ପୁଣି ଭୋଜ୍ୟରୂପେ ଜଗତ
ସେ ସର୍ବଜୀବ ଅନ୍ତର୍ଯ୍ୟାମୀ ଅଖିଳ ଜଗତର ସ୍ୱାମୀ
ଅଦ୍ୱିତୀୟ ସ୍ୱ ପ୍ରକାଶିତ ବିଶ୍ୱେ ସର୍ବତ୍ର ପରିବ୍ୟାପ୍ତ
ମାୟା ଶକ୍ତିର ପ୍ରଭାବରେ ବିରାଜିତ ନାନା ରୂପରେ

ତାହାଙ୍କୁ ଅନନ୍ୟ ଭକ୍ତିରେ ସଦା ଧ୍ୟାନ କର ଚିତ୍ତରେ
ଦେବ ବିଦ୍ୱେଷୀ ନାଶ ପାଇଁ କୃଷ୍ଣ ରୂପେ ଲୀଳା କରଇ
ହେଲଣି ଦେବ କାର୍ଯ୍ୟ ଶେଷ ଅଛି ଅଛି କାର୍ଯ୍ୟ ବିଶେଷ
ସମୟକୁ ସେ ସେଥିପାଇଁ ପ୍ରତୀକ୍ଷା କରିଛନ୍ତି ରହି

ହିମାଳୟର ଦକ୍ଷିଣକୁ ଋଷିମାନଙ୍କ ଆଶ୍ରମକୁ
ଧୃତରାଷ୍ଟ୍ର ବିଦୁର ଭ୍ରାତ ଭାର୍ଯ୍ୟା ଗାନ୍ଧାରୀଙ୍କ ସହିତ
କରିଅଛନ୍ତି ଯେ ପ୍ରସ୍ଥାନ ସତ୍ୟ ଅଟଇ ମୋ ବଚନ
ଗଙ୍ଗା ନଦୀ ସେହି ସ୍ଥାନରେ ସପ୍ତର୍ଷି ପ୍ରୀତି ଉଦ୍ଦେଶ୍ୟରେ

ସପତ ସ୍ରୋତରେ ବିଭକ୍ତ ଗଙ୍ଗୋତ୍ରି ନାମରେ ବିଦିତ
ସପ୍ତତୀର୍ଥ ଅଟେ ତାନାମ ସେତୀର୍ଥେ ତ୍ରିକାଳରେ ସ୍ନାନ
ସଂପାଦି ଯଥା ବିଧି ହୋମ ଜଳ କେବଳ କରିପାନ
ଅତି ପ୍ରଶାନ୍ତ ହୃଦୟରେ ଧୃତରାଷ୍ଟ୍ର ଅଛନ୍ତି ସୁଖରେ

ପୁତ୍ରର ଶୋକ ତାହାଙ୍କର ହୋଇଛି ବର୍ତ୍ତମାନ ଦୂର
ଯମ ନିୟମ ପ୍ରାଣାୟାମ ସାଧି ଧ୍ୟାଇ ହରି ଚରଣ
ଚିତ୍ତର ତ୍ରିଗୁଣ ବିକାର ମାଳିନ୍ୟ ହୋଇଅଛି ଦୂର
ଅହଙ୍କାରାଦି ସୁକ୍ଷ୍ମଦହ କ୍ଷେତ୍ର ମନରେ କରି ଥୟ

ମନକୁ ଆତ୍ମାରେ ବିଲୀନ ଅଛଇ ମାତ୍ର ପ୍ରାଣ ସ୍ପନ୍ଦନ
ଘଟାକାଶ ମହାକାଶରେ ଲୀନ ପାଇଁ ପରମାତ୍ମାରେ
ଜୀବାତ୍ମାକୁ କରି ବିଲୀନ ବଶକରି ଇନ୍ଦ୍ରିୟ ମନ
ରୂପାଦି ବିଷୟ ଗ୍ରହଣ ତେଜି ମହା ବୃକ୍ଷ ସମାନ

ସେ କରୁଛନ୍ତି ଅବସ୍ଥାନ ହେ ଧର୍ମଜ ବର୍ତ୍ତମାନ
ତେଜ ଅଛନ୍ତି ସର୍ବ କର୍ମ ଆତ୍ମାର ସୁଗତିରେ ବିଘ୍ନ
ନ ଘଟାନ୍ତୁ କେବେ ଆପଣ ମାନି ନାରଦର ବଚନ
ଆଜିଠାରୁ ପଞ୍ଚମ ଦିନ ତେଜିବେ ସ୍ଥୁଳଦେହ ଜାଣ

ସେ ଦେହ ମଧ ସେ ବେଳରେ ହୋଇବ ଭସ୍ମଦାବଗ୍ନିରେ
ଦେହ ପର୍ଣ୍ଣଶାଳା ସହିତ ଦଗ୍ଧଜାଣି ହୋଇ ଦୁଃଖିତ
ପତିପରାୟଣା ଗାନ୍ଧାରୀ ସ୍ୱାମୀଙ୍କ ଚରଣ ସୁମରି
ଅଗ୍ନିରେ କରିବେ ପ୍ରବେଶ ବିଦୁର ବିସ୍ମୟ ହରଷ

ବିଷାଦେ ତୀର୍ଥରେ ଭ୍ରମଣ ନିମିତ୍ତ କରିବେ ଗମନ
ଏପରି କହି ବିଧିସୁତ ତୁମ୍ବୁରୁ ମୁନିଙ୍କ ସହିତ
ସ୍ୱର୍ଲୋକେ କରିଲେ ଗମନ ବିଚାରି ନାରଦ ବଚନ
ସେ ଯୁଧିଷ୍ଠିର ଶାନ୍ତମନା ତ୍ୟାଗକଲେ ଅନୁଶୋଚନା

କହଇ ଦାଶ ଧନେଶ୍ୱର ସୁଜନେ ଗୋବିନ୍ଦ ସୁମର
ଏତୁସ୍ତର ଭଗସାଗର ସେ ଏକ ମାତ୍ର କର୍ଣ୍ଣଧାର ।

**ଇତି ଶ୍ରୀମଦ୍ ଭାଗବତେ ମହାପୁରଣେ ପାରୁଣେପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ନୈମିଷିୟୋ** ଉପାଖ୍ୟାନେ ଧୃତରାଷ୍ଟ୍ର ଗାନ୍ଧାରୀ ମହାପ୍ରୟାଣେ ନାମ ତ୍ରୟୋଦଶୋଽଧ୍ୟାୟ ।

*******

## ଚତୁର୍ଦ୍ଦଶ ଅଧ୍ୟାୟ

### ସୂତ ଉବାଚ

ବୋଲନ୍ତି ସୂତ ଧୀରେ ଧୀରେ ଶୌନକ ମୁନିଙ୍କ ଆଗରେ
ଶ୍ରୀକୃଷ୍ଣ ଲୀଳା ଅଭିପ୍ରାୟ ଜାଣିବା ପାଇଁ ଧନଞ୍ଜୟ
ବନ୍ଧୁଙ୍କ ଦର୍ଶନ ନିମିତ୍ତ ସଖା ଶ୍ରୀକୃଷ୍ଣଙ୍କ ସହିତ
କରିଲେ ଦ୍ୱାରିକା ଗମନ ତହିଁ ରହିଲେ କିଛି ଦିନ

ଦ୍ୱାରକା ପୁର ନଫେରିଲେ ଏଣେ ହସ୍ତିନା ନଗରୀରେ
ଘୋରଭୟଙ୍କର ଲକ୍ଷଣ ଦେଖିଲେ ଧର୍ମଙ୍କ ନନ୍ଦନ
କାଳଗତି ଅତି ବିଚିତ୍ର ଋତୁ ପ୍ରବାହ ବିପରୀତ
ପ୍ରଜା ହୋଇଲେ ଲୋଭଗ୍ରସ୍ତ କ୍ରୋଧ ମିଥ୍ୟାଚାର ଅସତ୍ୟ
ପଥେ କଲେ ଧନ ଅର୍ଜନ କୁଟ କପଟ ଆଚରଣ

କୁଟ କପଟୀ ବନ୍ଧୁଗଣ ଅଶାନ୍ତ ମଳିନ ବଦନ
ପିତା ମାତା ଦୁହିତା ପୁତ୍ର ସକଳେ କଳହ ନିରତ
ଏପରି ଅଶୁଭ ଲକ୍ଷଣ ଲୋଭ ଅହଙ୍କାର ଅଧର୍ମ
ଦେଖି ଅଶୁଭ ଲକ୍ଷଣକୁ ଯୁଧିଷ୍ଠି କହିଲେ ଭୀମକୁ

### ଯୁଧିଷ୍ଠିର ଉବାଚ

ପୁଣ୍ୟ ଶ୍ଳୋକ ଶ୍ରୀ ଭଗବାନ କୃଷ୍ଣଙ୍କ ଅଭିପ୍ରାୟମାନ
ଜାଣିବା ପାଇଁ ଅର୍ଜୁନକୁ ପଠାଇଲି ମୁଁ ଦ୍ୱାରକାକୁ
ବନ୍ଧୁ ଦର୍ଶନ ପାଇଁ ଗଲା ଅତୀତ ସାତମାସ ହେଲା
ତଥାପି ଅର୍ଜୁନ କିପାଇଁ ପ୍ରତ୍ୟାଗମନ କରୁନାହିଁ

କାରଣ ବୁଝି ହେଉନାହିଁ ମନ ମୋ ବ୍ୟାକୁଳ ହୁଅଇ
ଶ୍ରୀକୃଷ୍ଣଙ୍କ ଯୋଗୁ ଆମର ବଢ଼ିଲା ସଂପଦ ଅପାର
ରାଜ୍ୟ ଧନ ପ୍ରାଣ କଳତ୍ର ସକଳ ହୋଇଲା ପ୍ରାପତ
ଆମେ ତାହାଙ୍କ ସହାୟରେ ଶତ୍ରୁ ଜିଣିଲେ ସଂଗ୍ରାମରେ

ତାଙ୍କ ଯୋଗୁ ଯଜ୍ଞାଦି କର୍ମ କରିବାକୁ ହୋଇଲେ କ୍ଷମ
ଶ୍ରୀକୃଷ୍ଣ ନରଲୀଳା ପାଇଁ ଜନମ ଶ୍ରୀ ମୂର୍ତ୍ତିକୁ ବହି
ତାହା ହୋଇବା ଅପ୍ରକଟ ବେଳ ହୋଇଲାକି ନିକଟ
ସତ୍ୟକି ନାରଦ ବଚନ ମୋ ମନ ହୁଅଇ ଉଦ୍‌ବିଗ୍ନ

ଦେହ ଆକାଶ ପୃଥିବୀରେ ଅଶୁଭ ଦିଶେ ସବୁଠାରେ
ଦେଖିଏ ଅମଙ୍ଗଳ ଚିହ୍ନ ବୁଦ୍ଧି ଲୋପମତି ବିଭ୍ରମ
ହେ ଭୀମ ମୋ ବାମ ନୟନ ସ୍ଫୁରୀ ଉଠଇ ଘନ ଘନ
ବାମବାହୁ ଭରୁ ଥରଇ ହୃଦ ବାରମ୍ବାର କଂପଇ

ନିଶ୍ଚେ କିଛି ମହାବିପଦ ନିଶ୍ଚୟ ଉପସ୍ଥିତ ହେବ
ଶୃଗାଳ ସୂର୍ଯ୍ୟଙ୍କୁ ଅନାୟ ଦେଖ ଘୋର ରଡ଼ି ଛଡ଼ାଇ
ତା ମୁହଁରୁ ବାହାର ନିଆଁ ଦେଖି ମୁଁ ହୁଅଇ ଛାନିଆଁ
କୁକୁର ମୋ ଆଡ଼କୁ ଚାହିଁ ଦେଖ ଘୋର ରଡ଼ି ଛାଡ଼ଇ

ଶୁଭ ଗୋମେଷ ପଶୁଗଣ ବାମ ପାର୍ଶ୍ୱେ କରେ ଗମନ
ଅନ୍ୟ ଅଶୁଭ ପଶୁ ଜାତି ଦକ୍ଷିଣ ପାର୍ଶ୍ୱରେ ଗମନ୍ତି
ଦେଖ କାନ୍ଦନ୍ତି ଅଶ୍ୱଗଣ ମୋ ମତି ହୁଅଇ ବିଭ୍ରମ
ପେଚକ କାକ ପାରାବତ ରାବନ୍ତି ଅତ୍ୟନ୍ତ କୁତ୍ସିତ

ହୃଦ କମ୍ପଇ ଘନ ଘନ ଜଗତ ହୋଇବ କି ଶୂନ୍ୟ
ଚାରି ଆଡ଼େ ଧୂଆଁ ଉଠଇ ସାରା ପୃଥିବୀ ଆଚ୍ଛାଦେଇ
ପୃଥିବୀ ପର୍ବତ କମ୍ପଇ ବିନା ମେଘେ ବଜ୍ର ପଡ଼ଇ
ଦେଖି ଆକାଶେ ଗ୍ରହଗଣ କରନ୍ତି ଅନ୍ୟୋନ୍ୟ ସଂଗ୍ରାମ

ରୁଦ୍ରଙ୍କ ଅନୁଚର ଗଣ ପୃଥ୍ୱୀ କରିବେ କି ଦହନ
ନଦ ନଦୀ ସର ସରିତ ଜଳଚର ପ୍ରାଣୀ କ୍ଷୁଭିତ
ଢାଳିଲେ ମଧ୍ୟ ଘୃତଧାର ନ ଜଳି ଲିଭଇ ଅନଳ
ଜାଣିପାରୁନାହିଁ ଏକାଳ ଘଟାଇବ କି ଅମଙ୍ଗଳ

ମାତା ସ୍ତନୁ କ୍ଷିର ନଝରେ ଶିଶୁ କ୍ଷୀର ପାନ ନକରେ
ଗୋଠରେ ଯେ ଧେନୁ ଅଛନ୍ତି କାନ୍ଦିଲା ପରାଅ ଦିଶନ୍ତି
ବୃଷଭ ନୁହେଁ ଆନନ୍ଦିତ ସର୍ବ ପ୍ରାଣୀ ଅତି ଦୁଃଖିତ
ଦେବତା ପ୍ରତିମା କାନ୍ଦଇ ଦୋହଲିଲା ପରି ଦିଶଇ

ନଗର ଉଦ୍ୟାନ ଆଶ୍ରମ ଗ୍ରାମ ନଗର ଅଶୋଭନ
ସକଳ ଦିଶନ୍ତି ବିଷର୍ଣ୍ଣ ମୋ ମନ ହୁଅଇ ଉଦ୍‌ବିଗ୍ନ
କି ଅଶୁଭ ଘଟିବ ଆମର କେବଳ ଜାଣନ୍ତି ଈଶ୍ୱର
ଏମହା ଉତ୍‌ପାତ ଦର୍ଶନ କରି ମୁଁ କରେ ଅନୁମାନ

ସକଳ ସୁଷମା ମଣ୍ଡିତ ବଜ୍ରାଙ୍କୁଶାଦି ସୁଶୋଭିତ
କୃଷ୍ଣଙ୍କ ପଦ ଚିହ୍ନ ଲଭିବା ସଉଭାଗ୍ୟ ମାନ
ଏ ପୃଥ୍ୱୀ ନିଶ୍ଚେ ହରାଇବ ଋଷି ବାକ୍ୟ ମିଥ୍ୟା ନହେବ
ମହାରାଜ ଧର୍ମେ ନନ୍ଦନ ଦେଖି ଏ ଅଶୁଭ ଲକ୍ଷଣ

ଚିନ୍ତାମଗ୍ନ ଥିବା ବେଳରେ ଅର୍ଜୁ ଆସି ପ୍ରବେଶିଲେ
ସେ ଅର୍ଜୁନ ପୂର୍ବ ପ୍ରକାରେ ପ୍ରମାଣ ନକରି ଭକ୍ତିରେ
ଶୋକ ସନ୍ତାପିତ ଚିତ୍ତରେ ପଡ଼ିଗଲେ ପାଦ ତଳରେ
ଦିଶୁଥିଲେ ଅତି ଆତୁର ନେତ୍ରରୁ ବହେ ଅଶ୍ରୁଧାର

କଂପିତ ହୃଦୟ ଶ୍ରୀହୀନ ରୂପ ଚାହିଁ ଧର୍ମ ନନ୍ଦନ
ସୁମରି ନାରଦ ବଚନ ହୋଇଲେ ବ୍ୟଥିତ ପରାଣ
ଅତି ଆଶଙ୍କିତ ଚିତ୍ତରେ ଅନ୍ୟ ଭ୍ରାତାଙ୍କ ସମ୍ମୁଖରେ
ପ୍ରଶ୍ନ କରିଲେ ଅର୍ଜୁନକୁ ଦ୍ୱାରକା କଥା ଶୁଣିବାକୁ

ଦ୍ୱାରକାର ଭୋଜ ଦଶାର୍ହ ମଧୁ ଅନ୍ଧକ ବୃଷ୍ଣି ଅର୍ହ
ସାତ୍ୱତ ପ୍ରଭୃତି ସ୍ୱଜନ ଶୁଭରେ ଛନ୍ତିତ ଅର୍ଜୁନ
ପୂଜ୍ୟ ମାତା ମହ ଆମର ମାତୁଳ ବସୁଦେବ-ବୀର
ଭ୍ରାତାମାନଙ୍କର ସହିତ ସର୍ବେ କୁଶଳେ ଅଛନ୍ତିତ

ବସୁଦେବଙ୍କର ରମଣୀ ଦେବକୀ ଆଦି ସପ୍ତଭଗ୍ନୀ
ନିଜ ସୁତ ବନ୍ଧୁ ସହିତ ସକଳେ ଶୁଭେ ଅଛନ୍ତିତ
ପୁତ୍ର ହରାଇ ଉଗ୍ରସେନ ଜୀବିତ କି କହ ବହନ
ଉଗ୍ରସେନ ଭାଇ ଦେବକ ତନୟ ଅକ୍ରୁର ହୃଦିକ

ସେ ଜୟନ୍ତଗଦ ସାରଣ ପ୍ରଭୃତି କୃଷ୍ଣ ଭ୍ରାତା ଗଣ
ଶତ୍ରୁଜିତ ଆଦି ସକଳ ସୁଖରେ ଯାପନ୍ତିତ-କାଳ
ସାଧୁ ଭକ୍ତ ପରିପାଳନ ଭଗବାନ ଶ୍ରୀବଳରାମ
କହି ତୁ କୁଶଳ ସମ୍ବାଦ ଦୂର କର ମୋ ଚିତ୍ତ ଖେଦ

ଯାଦବ ଗଣ ମହାରଥ ପ୍ରଦ୍ୟୁମ୍ନ ଶୁଭେ ଅଛନ୍ତିତ
ସମରେ ଅତି ଶ୍ରୀଘ୍ରଗତି ଅନିରୁଦ୍ଧତ ଶୁଭେଛନ୍ତି
ଚାରୁଦେଷ୍ଣ ପୁଣି ସୁଷେଣ ଜାମ୍ବ ବତୀରସୁତ ସାମ
କୃଷ୍ଣଙ୍କ ଅନ୍ୟ ପୁତ୍ରଗଣ ରଷଭ ପ୍ରଭୃତି ଅନ୍ୟାନ୍ୟ

ସମସ୍ତ କୁଶଳେଛନ୍ତିତ କହ କହ ପାର୍ଥ ତୁରିତ
ଉଦ୍ଧବ ଆଦି ଶ୍ରୁତଦେବ କୃଷ୍ଣଙ୍କ ଅନୁଚର ସର୍ବ
ନନ୍ଦ ସନନ୍ଦ ଆଦି ଅନ୍ୟ ସକଳ ଯଦୁବୀରଗଣ
ରାମ କୃଷ୍ଣଙ୍କ ଭୁଜ ବଳେ ସର୍ବେ ଅଛନ୍ତିତ କୁଶଳେ

ଆମର ପ୍ରିୟ ବନ୍ଧୁମାନେ ଆମକୁ ପକାନ୍ତିତ ମନେ
ବ୍ରାହ୍ମଣ ପ୍ରିୟ ଧର୍ମଶୀଳ ଭଗବାନ ଭକ୍ତ ବତ୍ସଳ
ଶ୍ରୀକୃଷ୍ଣ ବାନ୍ଧବ ସହିତ ଦ୍ୱାରକାରେ ଶୁଭେଛନ୍ତିତ
ଶ୍ରୀଗୋବିନ୍ଦ ଆଦି ପୁରୁଷ ଜଗନ୍ମଙ୍ଗଳ ପୀତବାସ

ବିଶ୍ୱର ସମୃଦ୍ଧି ନିମିତ୍ତ ଶ୍ରୀ ବଳରାମଙ୍କ ସହିତ
ଯଦୁକୁଳ କ୍ଷୀର ସାଗରେ ବିରାଜୁଛନ୍ତି ଶୁଭରେ
ଯା ବାହୁବଳ ସୁରକ୍ଷିତ ଯାଦବେ ଜଗତ ପୂଜିତ
ବିଷ୍ଣୁ ଅନୁଚର ସମାନ ସୁଖେ କରନ୍ତିତ ବିଶ୍ରାମ

ରମଣୀ କୁଳ ଶିରୋମଣି ସତ୍ୟଭାମା ଆଦି ରମଣୀ
ମହିମା ଷୋଡ଼ଶ ହଜାର ପାଦ ସେବନ୍ତି ନିରନ୍ତର
ଯାହାଙ୍କ ସନ୍ତୋଷ ବିଧାନ ନିମିତ୍ତ କୃଷ୍ଣ ଭଗବାନ
ଦେବ ଗଣ କରି ପରାସ୍ତ ଇନ୍ଦ୍ରାଣୀ ଭୋଗ୍ୟ ପାରିଜାତ

ସ୍ୱର୍ଗରୁ ଆଣିଲେ ଧରାକୁ ଦେଖୁଛକି ସେହି କୃଷ୍ଣଙ୍କୁ
ଯା ବାହୁବଳ ପ୍ରଭାବରେ ଯାଦବ ବୀରେ ନିର୍ଭୟରେ
ଦେବେନ୍ଦ୍ର ସୁଧର୍ମା ସଭାକୁ ବଳେ କଲେ ଅଧିକାରକୁ
ପାଦେ ଦଳିଲେ ବାରମ୍ବାର କୁଶଳ ତ ଶ୍ରୀକୃଷ୍ଣଙ୍କର

ହେ ବୀର ଅର୍ଜୁନ ତୁମର      ନୀରୋଗ ଅଛତ ଶରୀର
କିମ୍ବା ଦିଶୁଛ ତେଜହୀନ      ଦ୍ୱାରକା ପୁରେ ବହୁଦିନ
ରହିବ ହେତୁ ହେ ଅର୍ଜୁନ      କେଅବା କଲା ଅସମ୍ମାନ
କହିଲାକି କଟୁ ବଚନ      ସେପାଇଁ କି ଚିତ୍ତ ବିଷଣ

କାହାକୁ ପ୍ରତିଶ୍ରୁତି ଦେଇ      ନିରାଶ କରିଲୁକି ତୁହି
ଶରଣ ରକ୍ଷକ ତୁମେତ      କୌଣସି ଶରଣ ଆଗତ
ଗୋରୁ ବାଳକ ବୃଦ୍ଧ ରୁଗ୍ଣ      ରମଣୀ କି ଅବା ବ୍ରାହ୍ମଣ
କରିଅଛକି ପ୍ରତ୍ୟାଖ୍ୟାନ      କହ କହ ବତ୍ସ ଅର୍ଜୁନ

କୌଣସି ପତିତା ନାରୀକୁ      କରିଅଛକି ସମ୍ଭୋଗକୁ
ଭୋଗ୍ୟା ନାରୀକୁ ପରିତ୍ୟାଗ      କରିଅଛକି ହେ ଅନଘ
ବାଳ ବୃଦ୍ଧଙ୍କୁ ନ ଭୁଞ୍ଜାଇ      ଭୋଜନ କରୁଛୁକି ତୁହି
ପରମ ବନ୍ଧୁ ପ୍ରିୟ ତମ      କୃଷ୍ଣଙ୍କୁ ହରାଇକି ତୁମ

ହୃଦେ ଶୂନ୍ୟତା ଅନୁଭବ      କରୁଛକି ବୀର ପୁଙ୍ଗବ
ଏହା ଭିନ୍ନ କୌଣସି ଅନ୍ୟ      ନାହିଁ ମନୋବ୍ୟଥା କାରଣ
କହଇ ଦାଶ ଧନେଶ୍ୱର      ଏପରି ପୁଚ୍ଛି ଯୁଧିଷ୍ଠିର
ମଉନ ହୋଇଲେ ତକ୍ଷଣ      ହୃଦେ ଚିନ୍ତି କୃଷ୍ଣ ଚରଣ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ଯୁଧିଷ୍ଠିର ବିତର୍କ ନାମ ଚତୁର୍ଦ୍ଦଶୋଽଧ୍ୟାୟ ।

*******

## ପଞ୍ଚଦଶ ଅଧ୍ୟାୟ

### ସୂତ ଉବାଚ

ସୂତ କହନ୍ତି ମନ୍ଦେ ହସି      ଶୁଣ ଶୌନକ ମହାଋଷି
ନାନଦି ଅଶୁଭ ଲକ୍ଷଣ      ଯୁଧିଷ୍ଠିର କରି ଦର୍ଶନ
ସନ୍ଦେହ ଆକୁଳ ଚିତ୍ତରେ      ଏପରି ଅନେକ ପୁଛିଲେ
ଶ୍ରୀକୃଷ୍ଣ ବିରହେ ଉଦ୍‌ବିଗ୍ନ      ଶୋକରେ ମଳୀନ ବଦନ

ଭଗ୍ନ ହୃଦୟେ କୃଷ୍ଣସଖା      ଅର୍ଜୁନ ଭାବି କୃଷ୍ଣ କଥା
ଯୁଧିଷ୍ଠିରଙ୍କର ପ୍ରଶ୍ନର      ଦେଇ ନପାରିଲେ ଉତ୍ତର
କଷ୍ଟରେ ଶୋକ ସମ୍ବରଣ      କରି ହସ୍ତେ ଅଶ୍ରୁ ମାର୍ଜନ
କୃଷ୍ଣ ସ୍ନେହରେ ବ୍ୟାକୁଳିତ      ଶ୍ରୀକୃଷ୍ଣଙ୍କ ମୈତ୍ରି ବନ୍ଧୁତ୍ୱ

ସାରଥି ଆଦି କର୍ମମାନ      ସ୍ମରଣ କରିଣ ଅର୍ଜୁନ
ସେ ବାଷ୍ପନିରୁଦ୍ଧ କଣ୍ଠରେ      ଶୋକ ଗଦ୍‌ଗଦ ବଚନରେ
ଧର୍ମ ନନ୍ଦନଙ୍କ ସମ୍ମୁଖରେ      କହିଲେ ଅତିଶୋକ ଭରେ
ପରମ ବନ୍ଧୁ ମହାଭାଗ      କୃଷ୍ଣ ଆମକୁ କଲେ ତ୍ୟାଗ

ତ୍ରିଲୋକେ ଦେବତା ଦୁର୍ଲ୍ଲଭହରିନେଲେ ମୋ ଶୌର୍ଯ୍ୟ ବୀର୍ଯ୍ୟ
ପ୍ରାଣ ଚାଲିଗଲେ ଯେମନ୍ତ      ଦେହ ଶବ ହୁଏ ତେମନ୍ତ
ସଖା ଶ୍ରୀକୃଷ୍ଣଙ୍କୁ ହରାଇ      ସଂସାର ମୁଁ ଶୂନ୍ୟ ମଣଇ
ସଖା ଶ୍ରୀକୃଷ୍ଣଙ୍କ ବଳରେ      କୃଷ୍ଣା ସ୍ୱୟମ୍ବର ସଭାରେ

ମୁହିଁ ଏ ଗାଣ୍ଡିବ ଧନୁରେ      ଘୁରୁଥିବା ଯନ୍ତ୍ର ଉପରେ
ମତ୍ସ୍ୟରେ ନେତ୍ର ବିଦ୍ଧକରି      ଲଭିଲି ଦ୍ରୁପଦ କୁମାରୀ
କାମ କାଦାନ୍ଧ ନୃପଗଣ      ଗରିବ କରିଲି ହରଣ
ମୁହିଁ ଶ୍ରୀକୃଷ୍ଣ ସାନ୍ନିଧରେ      ଅନାୟସେ ବୀର ଦର୍ପରେ

ଦେବଗଣ ସହ ଇନ୍ଦ୍ରକୁ      ପରାସ୍ତ କରି ଅନଳକୁ
ପ୍ରଦାନ କରିଲି ଖାଣ୍ଡବ      ତୁଷ୍ଟ ହୋଇ ମୟ ଦାନବ
ଚିତ୍ର କାରୁକର୍ମ ଶୋଭନ      ସଭାଗୃହ ମଲା ପ୍ରଦାନ
ସେହି ସଭାଗୃହ ମଧ୍ୟରେ      ରାଜସୂୟ ଯଜ୍ଞ କାଳରେ

ବିଭିନ୍ନ ଦେଶ ନୃପଗଣ      ନାନା ଉପହାର ପ୍ରଦାନ
କରି ତୋଷିଲେ ତୁମ ମନ      ଅୟୁତ ଗଜ ବଳବାନ
ଭୀମସେନ ବୀର ଅର୍ଜୁନ      କୃଷ୍ଣ ବଳରେ ବଳୀୟାନ
ସେ ରାଜ ସୂୟ ଯଜ୍ଞପାଇଁ      ସର୍ବ ନରପତି ବିଜୟୀ

ଜରା ସନ୍ଧକୁ ବଧ କଲେ      ବିଶ୍ୱେ କର୍ତ୍ତିସ୍ତମ୍ଭ ସ୍ଥାପିଲେ
ମାହେଶ୍ୱର ଯଜ୍ଞ ନିମିତ୍ତ      ଜରାସନ୍ଧରେ ସଂଗୃହିତ
ରାଜାଙ୍କୁ କରି କାରାମୁକ୍ତ      ଶେଷରେ ସେ ନୃପସମସ୍ତ
ନାନା ଉପହାର ସହିତ      ଯଜ୍ଞରେ ହେଲେ ଉପସ୍ଥିତ

କ୍ରନ୍ଦନ ରତା ଦ୍ରୌପଦୀଙ୍କୁ  ବଳେ ଆଣି କୁରୁ ସଭାକୁ
ରାଜସୂୟ ଯଜ୍ଞ କାଳରେ  ପଞ୍ଚଜନ୍ୟଶଙ୍ଖ ଜଳରେ
ଅଭିଷେଚିତ ମନୋରମ  କେଶ ଯେ କଲା ଆକର୍ଷଣ
କୃଷ୍ଣ ସେ ଖଳଙ୍କୁ ସଂହାରି  ବିଧବା କଲେ ତାର ନାରୀ

ଦ୍ୱୈତ ବନକୁ ଆଗମନ  କୃଷ୍ଣ ପାକ ପାତ୍ର ସଂଲଗ୍ନ
ଶାକାନ୍ନ କରନ୍ତେ ଭୋଜନ  ତୃପ୍ତ ହେବାରୁ ତ୍ରିଭୂମନ
ଦୁର୍ଯ୍ୟୋଧନ ପ୍ରରୋଚନାରେ  ଅଭିଶାପ ଦେବା ଇଚ୍ଛାରେ
ଦଶ ସସ୍ର ଶିଷ୍ୟ ସହିତ  ଦୁର୍ବାସା ହେଲେ ଉପସ୍ଥିତ

ମଧ୍ୟାହ୍ନର ସନ୍ଧ୍ୟା ତର୍ପଣ  କରିବା ନିମିତ୍ତ ତକ୍ଷଣ
ନଦୀକୁ କରିଲେ ଗମନ  ଶିଷ୍ୟ ସହିତ ମୁନିଗଣ
ସ୍ନାନ କରିବା ସମୟରେ  ତୃପ୍ତ ହେଲେ ବିନାଭୋଜ୍ୟରେ
ଦୁର୍ବାସା ମୁନିଙ୍କ ଦରୁଣ  ଅଭିଶାପ କଲେ ରକ୍ଷଣ

ପାର୍ବତୀ ସହ ପଞ୍ଚାନନ  କରି ମୋ ବିକ୍ରମ ଦର୍ଶନ
ବିସ୍ମୟ ଚିତ୍ତେ ଆନନ୍ଦରେ  ପଶୁ ପତ୍ର ଅସ୍ତ୍ର ଅର୍ପିଲେ
ଜଗତ ଜନନୀ ଭବାନୀ  ଅକ୍ଷୟ ତୂଣୀ ଦେଲେ ଆଣି
ଅପର ଲୋକପାଳ ଗଣ  ଅର୍ପିଲେ ନିଜ ଅସ୍ତ୍ର ପୁଣ

ମୁଁ ଏହି ପାର୍ଥିବ ଦେହରେ  ଇନ୍ଦ୍ରଙ୍କ ସହିତ ସ୍ୱର୍ଗରେ
ବସିଲି ଏକ ଆସନରେ  କେବଳ ଶ୍ରୀକୃଷ୍ଣ କୃପାରେ
ନିବାତ ମବଚ ଦଇତ  ଗଣଙ୍କ ନିଧନ ନିମିତ୍ତ
ଇନ୍ଦ୍ରଦି ବସବଳ ଦୈବତ  ଗାଣ୍ଡିବ ଧନୁ ସୁଶୋଭିତ

ମୋ ବାହୁ ଯୁଗ ଆଶ୍ରୟରେ  ଯୁଦ୍ଧେ ଜିଣିଲେ ଅକ୍ଲେଶରେ
କେବଳ ଶ୍ରୀକୃଷ୍ଣ କୃପାରେ  ଏହା ମୁଁ କରିଲି ସ୍ୱର୍ଗରେ
ଗୋଧନ ହରଣ ବେଳରେ  ମୁଁ ଏକାକୀ ଏକ ରଥରେ
ଦୋଣଦି ମହାରଥି ପୂର୍ଣ୍ଣ  ଅପାର କୁରୁସେନା ସୈନ୍ୟ

ହେଳାରେ ପରାସ୍ତ କରିଲି  ଗୋଧନ ଫେରାଇ ଆଣିଲି
କୌରବଙ୍କୁ ମୋହନାସ୍ତ୍ରରେ  ମୋହିତ କରି କ୍ଷଣକରେ
ମଣି ମୁକୁଟ ତେଜିୟାନ  ବଳେ ମୁଁ କରିଲି ହରଣ
ଦ୍ରୋଣ ଆଚାର୍ଯ୍ୟ ଭୀଷ୍ମକର୍ଣ୍ଣ  ରଥୀ ନୃପତି ଅଗଣନ

ସେନାପତି ରଥୀ ମଧ୍ୟରେ  ସାରଥି କୃଷ୍ଣଙ୍କ କୃପାରେ
ଅରିବଳ ସେନାପତିର  ଶକ୍ତି ଉତ୍ସାହ ଆୟୁବଳ
ଅସ୍ତ୍ରାଦି କୌଶଳ ହରଣ  କଲି ଏକାକି କରି ରଣ
ବିଷ୍ଣୁ ନୃସିଂହ ରୂପଧରି  ହିରଣ୍ୟ କଶିପୁ ସଂହାରି

ପ୍ରହ୍ଲାଦେ ରଖିଲେ ଯେପରି  ଶ୍ରୀକୃଷ୍ଣ ପ୍ରଭାବେ ସେପରି
ଭୁରିଶ୍ରବା ଭୀଷ୍ମାଦି କର୍ଣ୍ଣ  ସୁଶର୍ମା ଜୟଦ୍ରଥ ଦ୍ରୋଣ
ବୀରମାନଙ୍କ ତୀକ୍ଷ୍ଣ ଶର  ସ୍ପର୍ଶ ନକଲା ମୋ ଶରୀର
ସେ ଅଚିନ୍ତ୍ୟ ଶକ୍ତି ମହିମ  କୃପାରୁ ଦ୍ରୋଣି ବଧଦିନ

ଅଶ୍ୱେ ଜଳ ପିଆଇବାକୁ  ରଥୁ ଓହ୍ଲାଇଲି ଭୂମିକୁ
ସେ ବେଳେ ଶତ୍ରୁ ମୋ ଦେହରେ ଅସ୍ତ୍ର ପ୍ରହାର ନକରିଲେ
ହାୟ ମୁଁ ମୂଢ ବୁଦ୍ଧି ହୀନ  ସେ ଭକ୍ତ ପ୍ରିୟ ଭଗବାନ
କୃଷ୍ଣଙ୍କୁ ସାରଥି ରୂପରେ  ନିଯୋଗ କରିଲି ରଥରେ

ହେ ଭାଇ ମାଧବ କୃଷ୍ଣର  ସୁସ୍ମିତ ମଧୁର ଗମ୍ଭୀର
ହାସ ପରିହାସ ବଚନ  ହେ ସଖେ ହେ କୁରୁ ନନ୍ଦନ
ଅର୍ଜୁନ ମନୋଜ୍ଞ ବଚନ  ଭାବି ବ୍ୟଥିତ ମୋର ପ୍ରାଣ
ଏକତ୍ର ଶୟନ ଭୋଜନ  ଆସନ ଗ୍ରହଣ ଭ୍ରମଣ

ବେଳେ କୃଷ୍ଣ ବ୍ୟବହାରରେ  ଅସମତା ଦେଖି ବ୍ୟଙ୍ଗରେ
ହେ ବନ୍ଧୁ ବଡ଼ ସତ୍ୟବାଦୀ  କହି ମୁଁ ହେଲେ ଅପରାଧୀ
ପ୍ରକୃତ ବାନ୍ଧବ ବନ୍ଧୁର  ଜନକ ଜନନୀ ପୁତ୍ରର
ଯଥା କରେ ଦୋଷ ମାର୍ଜନା  ତଥା ଶ୍ରୀକୃଷ୍ଣ ମହାମନ

ମହାତ୍ମା ପରମ ଉଦର  ସହନ୍ତି ଦୋଷ ତ୍ରୁଟି ମୋର
ହେ ନୃପତି ହେ ଧର୍ମ ନନ୍ଦନ  ପରମ ସଖା ପ୍ରିୟତମ
ହିତୈଷୀ ସୁହୃଦ ଉତ୍ତମ  ଶ୍ରୀକୃଷ୍ଣ ଚନ୍ଦ୍ର ଭଗବାନ
କୃପାରୁ ଆହେ ମୁଁ ବଞ୍ଚିତ  ମୋର ଚିତ୍ତ ଅତି ବ୍ୟଥିତ

ମୁଁ ଆଜି କୃଷ୍ଣ ରମଣଙ୍କୁ  ସଙ୍ଗରେ ଘେନି ଦ୍ୱାରକାକୁ
ଆସିବା ବେଳରେ ମାର୍ଗରେ  ପରାସ୍ତ ମୁଁ ହେଲି ଦସ୍ୟୁରେ
ହେଉଥିଲେ ମୋର ଅଧିନ  ଅଛି ସେ ଧନୁ ଅସ୍ତ୍ରମାନ
ସଖାଙ୍କ ରମଣୀ ମାନଙ୍କ  କ୍ଷମ ନହେଲି ରଖିବାକୁ

ଗାଣ୍ଡିବ ଧନୁ ପଶୁପତି / ଅଛି ସେ ଅଶ୍ୱ ସେହି ରଥ
ଅଛି ମୁଁ ରଥୀ ସେ ଅର୍ଜୁନ / ପୂର୍ବପରି ଅଛି ସମାନ
ଯେ ଗାଣ୍ଡିବ ଧନୁ ଅସ୍ତ୍ରରେ / ଶତ୍ରୁ ସେନାବିନା ଯୁଦ୍ଧରେ
ବାଜିକରର ଖେଳପରି / ମରୁ ଭୂମିରେ ବୀଜ ପରି

ହୋଇଛି ତୁଚ୍ଛ ଫଳହୀନ / ଦଇବଳ ବଳୀୟାନ
ଆପଣ ଦ୍ୱାରକା ପୁରର / ଯେଉଁ ବନ୍ଧୁ ବାନ୍ଧବଙ୍କର
କଥା ପୁଛିଲେ ହୋଇବ୍ୟସ୍ତ / ସେମାନେ ବିପ୍ରଶାପ ଗ୍ରସ୍ତ
ବାରୁଣି ପାନରେ ଉନ୍ମତ୍ତ / ଅପରିଚିତ ଲୋକ ବତ

ପରସ୍ପର ମୁଷ୍ଟି ଘାତରେ / ସକଳେ ଗଲେ ସ୍ୱର୍ଗପୁରେ
ପାଞ୍ଚ ବା ଛଅ ଜଣ ମାତ୍ର / ବଞ୍ଚିଅଛନ୍ତି ସମ୍ଭବତ
ପରସ୍ପରକୁ ଜୀବଗଣ / କରନ୍ତି ପାଳନ ନିଧନ
ଏହା ଶ୍ରୀକୃଷ୍ଣ ଭଗବାନ / ଲୀଳା ବ୍ୟତୀତ ନୁହେ ଆନ

ସେ ସର୍ବ ନିୟନ୍ତା ଇଚ୍ଛାରେ / ସବୁ ଘଟଇ ଏସଂସାରେ
ଯେ ବୃହତ୍ତମ ଜଳଚର / କରଇ କ୍ଷୁଦ୍ରକୁ ଆହାର
ବଳହୀନକୁ ବଳବାନ / ବିନାଶି କରଇ ଭୋଜନ
ଜୀବୀକା ନିଜ ସ୍ୱାର୍ଥ ପାଇଁ / ପ୍ରଣୀ ଅନ୍ୟକୁ ବିନାଶଇ

କୃଷ୍ଣ ଭଗବାନ ସେପରି / ଯଦୁଦ୍ୱାରା ଯଦୁ ସଂହାରି
ଭୂମିଭରା କରି ହରଣ / କରିଲେ ବୈକୁଣ୍ଠ ଗମନ
ସାର୍ଥକ ଦେଶ କାଳାତୀତ / କୃଷ୍ଣ ଉପଦେଶ ସମସ୍ତ
କରିବା ମାତ୍ରକେ ସ୍ମରଣ / ଦୁଃଖ ହୁଅଇ ଉପଶମ

ଏହି ପ୍ରକାର ନିରନ୍ତର / ଦୃଢ ପ୍ରେମରେ କୃଷ୍ଣଙ୍କର
ଧ୍ୱଜାଙ୍କିତ ପଦ୍ମ ଚରଣ / ସଦା କରିବାକୁ ସ୍ମରଣ
ଶୋକ ସନ୍ତପ ହେଲା ଦୂର / ମୋ ଚିତ୍ତ ହୋଇଗଲା ସ୍ଥିର
କୃଷ୍ଣରେ ଜାତ ପ୍ରେମଭକ୍ତି / ମୋ ହୃଦ ଲଭିଲା ପ୍ରଶାନ୍ତି

କାମାଦି ମଳୀନତା ଦୂର / ବୁଦ୍ଧି କୃଷ୍ଣରେ ହେଲା ସ୍ଥିର
କୃଷ୍ଣ ବିଶ୍ୱରୂପ ଦର୍ଶାଇ / ଯେ ଉପଦେଶ ଥିଲେଦେଇ
ସେ ଉପଦେଶର ମହତ୍ତ୍ୱ / ଅନୁଭବିଲେ ବୀର ପାର୍ଥ
ନର ନାରାୟଣ ଦର୍ଶନ / ହଟିଲା ଦୁଃଖ ଦ୍ୱୈତଜ୍ଞାନ

ପାର୍ଥ ହୋଇଲେ ଗୁଣାତୀତ / ଭୁଲିଲେ ଶରୀର ଅସ୍ତିତ୍ୱ
ଶ୍ରୀକୃଷ୍ଣ ସ୍ୱଧାମ ଗମନ / ଯାଦବ କୁଳର ନିଧନ
ଶ୍ରବଣେ ସୁନିଶ୍ଚଳ ଚିତ୍ତ / ସେ ଯୁଧିଷ୍ଠିର ଧର୍ମ ସୁତ
ପରମ ଧାମକୁ ଗମନ / ନିମିତ୍ତ ସ୍ଥିର କଲେ ମନ

କୃଷ୍ଣଙ୍କ ସ୍ୱଧାମକୁ ଯାତ୍ରା / ଯଦୁବଂଶ ଧ୍ୱସ ବାରତା
ଶୁଣି ପରମା ସତୀ କୁନ୍ତୀ / ଦୃଢ ଅନନ୍ୟ ଭକ୍ତିମତୀ
କୃଷ୍ଣଚରଣେ ଦେଇମତି / ପରଲୋକକୁ କଲେ ଗତି
କଣ୍ଟାକୁ କଣ୍ଟାରେ ବାହାର / କରିବାପରେ ଯେ ପ୍ରକାର

ଉଭୟ କଣ୍ଟାକୁ ବର୍ଜନ / କରନ୍ତି ତଥା ଭଗବାନ
ଅବ୍ୟକ୍ତ ଜନ୍ମାଦି ରହିତ / ସେ ସତ୍ୟ ସନାତନ ନିତ୍ୟ
କୃଷ୍ଣଯେ ଯାଦବ ଦେହରେ / ପୃଥିବୀ ଭରା ଉଶ୍ୱାସଲେ
ଶେଷେ ସେହି ଦେହେ ତେଜିଲେଶ୍ରୀଭଗବାନଙ୍କ ଦୃଷ୍ଟିରେ

ପୃଥିବୀ ଭରା ନିବାରଣ / ଦେହେ ତ୍ୟାଗ ଦୁଇ ସମାନ
ନଟ ଯଥା ରଙ୍ଗ ମଞ୍ଚରେ / ନାନା ପ୍ରକାର ରୂପଧରେ
ପୁଣି ସେ ରୂପ ତ୍ୟାଗକରେ / ମାତ୍ର ଥାଏ ନିଜ ରୂପରେ
ତଥା ଶ୍ରୀକୃଷ୍ଣ ଭଗବାନ / ଭୂଭାର ହରଣ କାରଣ

ଯେ ନର ଦେହ ଧରିଥିଲେ / ଶେଷେ ପୁଣି ତାହା ତେଜିଲେ
ଯାଲୀଳା କରିଲେ ଶ୍ରବଣ / ତୁଟଇ ସଂସାର ବନ୍ଧନ
ଲୀଳା ବିଧୃତ କଳବର / ନଟନାଗର ଦାମୋଦର
ଦେହ ତେଜିବା ଦିବସରେ / କଳି ପ୍ରବେଶିଲା ଧରାରେ

ନିଜ ରାଜଧାନୀ ରାଜ୍ୟରେ / ବାସସ୍ଥାନ ନିଜ ଦେହରେ
କଳି କରିବାକୁ ପ୍ରବେଶ / ଲୋଭ ମିଥ୍ୟା ଆଦି ବିବଶ
ନାନା ଅଧର୍ମ ବିଲକ୍ଷଣ / ବିଲୋକି ସେ ଧର୍ମ ନନ୍ଦନ
ସଂସାର ତ୍ୟାଗେ ସ୍ଥିର ମନ / ବିହିଲେ ତଦୁଚିତ କର୍ମ

ନିଜ ସମାନ ଗୁଣବାନ / ବିନୀତ ଧର୍ମ ପରାୟଣ
ପରୀକ୍ଷିତକୁ ହସ୍ତିନାରେ / ବସାଇଲେ ସିଂହାସନରେ
ଶୂରସେନ ଦେଶାଧିପତି / ରୂପେ କୃଷ୍ଣଙ୍କ ଅଣନାତି
ବଜ୍ରକୁ ମଥୁରା ନଗରେ / ସତ୍ୱର ଅଭିଷେକ କଲେ

ଧର୍ମ ନନ୍ଦନ ଏହାପରେ    ପ୍ରାଜାପତ୍ୟ ଯଜ୍ଞ ସାରିଲେ
ଗାର୍ହ ପତ୍ୟାଦି ଅଗ୍ନିଗଣ    ନିଜ ଶରୀରେ କରିଲୀନ
ସନ୍ନ୍ୟାସ ବ୍ରତ ଆଚରିଲେ    ରାଜବେଶଭୂଷା ତେଜିଲେ
ମମତାହଙ୍କାର ବାସନା    ବିମୁକ୍ତ ହୋଇ ମହାମନା

ପଞ୍ଚ ଇନ୍ଦ୍ରିୟକୁ ମନରେ    ମନକୁ ପ୍ରାଣର ମଧ୍ୟରେ
ପ୍ରାଣକୁ ଅପାନ ବାୟୁରେ    ଅପାକୁ ରଖି ମୃତ୍ୟୁରେ
ମରଣକୁ ନିଜଦେହରେ    ଦେହକୁ ସତ୍ତ୍ୱଦି ଗୁଣରେ
ଗୁଣତ୍ରୟକୁ ପ୍ରକୃତିରେ    ପ୍ରକୃତିକୁ ଜୀବ ଆତ୍ମାରେ

ଜୀବାତ୍ମକୁ ପରଂବ୍ରହ୍ମରେ    ତକ୍ଷଣେ ସମର୍ପଣ କଲେ
ଛିନ୍ନ ବସନ ପରିଧାନ    ଆହାର କରିଲେ ବର୍ଜନ
ମୌନ ବ୍ରତ ଅବଲମ୍ବନ    କେଶ ନକରିଣ ବନ୍ଧନ
ଜଡ଼ ମତ୍ତ ପିଶାଚ ସମ    ଦେଖାଗଲେ ଧର୍ମ ନନ୍ଦନ

କାଳପରି କାହା ବଚନ    ନଶୁଣି ବ୍ରହ୍ମେ କରିଧ୍ୟାନ
କାହାକୁ ଅପେକ୍ଷା ନକରି    ପ୍ରାସାଦରୁ ଗଲେ ବାହାରି
ଶ୍ରୀକୃଷ୍ଣ ପଦେ ଥାପିମନ    ପୂର୍ବମହାତ୍ମା ଗମ୍ୟସ୍ଥାନ
ପ୍ରବେଶ ଉତ୍ତର ଦିଗରେ    ଯେ ସ୍ଥାନକୁ ଗଲେ ଥରେ

କେହି କେବେ ଆଉ ନ ଫେରେ    ସେ ଶୁକ୍ଳ ଦିବସ ମାର୍ଗରେ
କଳିକାଳର ଆକ୍ରମଣ    ପ୍ରଜାକୁ କୁପଥେ ଗମନ
ଦେଖି ଭୀମାଦି ଭ୍ରାତାଗଣ    ଯୁଧିଷ୍ଠିଙ୍କ ଅନୁଗମନ
ନିମିତ୍ତ ସ୍ଥିର କରି ମନ    ଧ୍ୟାନକଲେ କୃଷ୍ଣ ଚରଣ

ଶ୍ରୀକୃଷ୍ଣେ ରହିବାରୁ ଭକ୍ତି    ହୋଇଲା ସୁବିଶୁଦ୍ଧ ମତି
ଆତ୍ମାର ମଳିନତା ଗଲା    ପରଂବ୍ରହ୍ମ ନିଷ୍ଠା ବଢ଼ିଲା
କୃଷ୍ଣଙ୍କ ନିତ୍ୟ ବାସସ୍ଥାନ    ପାଣ୍ଡବେ କରିଲେ ଗମନ
କୃଷ୍ଣ ସ୍ମରଣେ ନିରନ୍ତର    କୃଷ୍ଣଗତ ପ୍ରାଣ ବିଦୁର

ପ୍ରଭାସ ତୀର୍ଥେ ନିଜଦେହ    ବିସର୍ଜି ପିତୃଲୋକ ସହ
ନିଜସ୍ଥାନ ଯମ ଭୁବନ    ଗମିଲେ କୃଷ୍ଣେସ୍ଥାପି ମନ
ପତିଙ୍କ ପକ୍ଷପାତ ନୀତି    ଜାଣି ଦ୍ରୌପଦୀ ମହାସତୀ
ବାସୁଦେବ ଶ୍ରୀ ଭଗବାନ    ଶ୍ରୀକୃଷ୍ଣେ ଚିତ୍ତ ସମର୍ପିଣ

ଲଭିଲେ ତାହାଙ୍କ ଚରଣ    ସାର୍ଥକ ହୋଇଲା ଜୀବନ
ଶ୍ରୀକୃଷ୍ଣଙ୍କର ଅତିପ୍ରିୟ    ପାଣ୍ଡବଙ୍କ ମଙ୍ଗଳମୟ
ଏ ପବିତ୍ର ମହାପ୍ରୟାଣ    ଯେକରେ ପଠନ ଶ୍ରବଣ
କୃଷ୍ଣ ପଦେ ଭକ୍ତି ବଢଇ    ସେ ପରମ ସିଦ୍ଧି ଲଭଇ

**ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ନୈମିଷିୟୋ ଉପାଖ୍ୟାନେ ପାଣ୍ଡବ ସ୍ୱର୍ଗାରୋହଣଂ ନାମ ପଞ୍ଚଦଶୋଽଧ୍ୟାୟ ।**

*******

## ଷୋଡ଼ଶ ଅଧ୍ୟାୟ

### ସୂତ ଉବାଚ

କହନ୍ତି ସୂତ ମହାମତି    ଶୁଣ ଶୌନକ ଆଦି ଯତୀ
ଜ୍ୟୋତିଷେ କୋଷ୍ଠିକୁ ବିଚାରି    ଯାହା କହିଥିଲେ ସେପରି
ପରୀକ୍ଷିତଙ୍କ ଜୀବନରେ    ତାହା ଘଟିଲା ପ୍ରତ୍ୟକ୍ଷରେ
ବ୍ରାହ୍ମଣଙ୍କ ଅନୁମିତରେ    ପୃଥିବୀ ଶାସନ କରିଲେ

ବିରାଟ ଦେଶ ରାଜକନ୍ୟା    ସୁଲକ୍ଷଣା ସୁଗୁଣ ଧନ୍ୟା
ଇରାବତୀ ପାଣି ଗ୍ରହଣ    କରିଲେ ପରୀକ୍ଷ ରାଜନ
ତାଙ୍କ ଗର୍ଭରୁ ଚାରିସୁତ    ଜନମେୟ ଆଦି ଜାତ
ଶାରଦ୍ୱତେ ଗୁରୁରୂପରେ    ବରଣ କରି ଗଙ୍ଗାତୀରେ

ବହୁତ ଦକ୍ଷୀଣର ସହ    କରିଲେ ଅଶ୍ୱମେଧ ତ୍ରୟ
ଇନ୍ଦ୍ରଦି ଦେବ ସେ ଯଜ୍ଞରେ    ପ୍ରତ୍ୟକ୍ଷେ ଆବିର୍ଭୂତ ହେଲେ
ଯଜ୍ଞଭାଗ କରି ଗ୍ରହଣ    ଆଶୀର୍ବାଦ କଲେ ବର୍ଷଣ
ଦିନେ ଦିଗ୍‌ବିଜୟ ବେଳରେ    ସେ କଳିଯୁଗ ନିର୍ଭୟରେ

ରାଜବେଶୀ ଶୂଦ୍ର ରୂପରେ    ଗାଭୀ ବୃଷଭକୁ ପାଦରେ
ଆଘାତ କରିବା ଦେଖିଣ    ନିଜବେଳେ କଲେ ଦମନ

### ଶୌନକ ଉବାଚ

ଶୌନକ ପୁଚ୍ଛିଲେ ହେ ସୂତ ଗୋମାତାକୁ ପଦ ଆଘାତ
କରିବା ଅତ୍ୟନ୍ତ ଗର୍ହିତ କିଂପାଇଁ ରାଜା ପରୀକ୍ଷିତ
କଳିକୁ ନ କରି ନିଧନ କେବଳ କରିଲେ ଦମନ
ସେ କଳି ନିଗ୍ରହ ବୃତ୍ତନ୍ତ ଯଦି କୃଷ୍ଣଲୀଳା ଆଶ୍ରିତ

ବର୍ଣ୍ଣନା କର ସେ ବିଷୟ ଅନ୍ୟରେ ବୃଥା ଆୟୁକ୍ଷୟ
ଅଳ୍ପାୟୁଷ ମରଣଶୀଳ ଦୁର୍ବଳ ଏ ଜୀବ ସକଳ
ଇଛନ୍ତି ଭବଚକ୍ରୁ ମୁକ୍ତି ଏ ବିଷୟ ବିଚିତ୍ର ଅତି
ମୃତ୍ୟୁ ଦେବ ଯମରାଜଙ୍କୁ ଆମନ୍ତ୍ରି ଆଣି ଏ ସ୍ଥାନକୁ

ତାହାଙ୍କୁ ପବିତ୍ର ଯଜ୍ଞରେ ପଶୁ ହନନ କରମରେ
କରିଅଛୁ ଆମେ ନିଯୁକ୍ତ ବିଚାରି ଦେଖନ୍ତୁ ହେ ସୂତ
ଏଠାରେ ଥିବାଯାଏ ଯମ କେହି ନ ଲଭିଲେ ମରଣ
ଏଣୁ ଋଷିଗଣ ଯମଙ୍କୁ ଆଣି ଅଛନ୍ତି ଏ ସ୍ଥାନକୁ

ତେଣୁ ମର୍ତ୍ତ୍ୟବାସୀ ଜନେ ହରି ଲୀଳାମୃତ ଶ୍ରବଣ
ଅକ୍ଳେଶେ ମୋକ୍ଷ କର ଲାଭ ମରପୁରେ ଏତ ଦୁର୍ଲ୍ଲଭ
ନକରି ଶ୍ରୀକୃଷ୍ଣ ଭଜନ ଆଳସ୍ୟେ ସ୍ୱାଳ୍ପାୟୁଷ ଜନ
ରଜନୀ କଟାନ୍ତି ନିଦ୍ରାରେ ଦିବସଯାଏ କୁ କର୍ମରେ
ଅଳ୍ପାୟୁ ହୁଅନ୍ତି ବୃଥାରେ ଏହା ନ ଭାବନ୍ତି ମନରେ

### ସୂତ ଉବାଚ

ପରୀକ୍ଷ ହସ୍ତିନା ନଗରେ ବାସ କରୁଥିବା ବେଳରେ
ସେନାସୁରକ୍ଷିତ ରାଜ୍ୟରେ କଳି ପ୍ରବେଶିବା ଶୁଣିଲେ
ଏ ଅପ୍ରିୟ ବାର୍ତ୍ତା ଶ୍ରବଣ ମତ୍ରେ ପରୀକ୍ଷିତ ରାଜନ
ଦୁଷ୍ଟେ କରିବାକୁ ନିଧନ କରି ରାଜବେଶ ଧାରଣ

ନାନା ଅଳଙ୍କାର ମଣ୍ଡିତ ଶ୍ୟାମଳ ବର୍ଣ୍ଣ ଅଶ୍ୱଯୁକ୍ତ
ସିଂହ ଧ୍ୱଜରେ ସୁଶୋଭନ ରଥ କରିଲେ ଆରୋହଣ
ହସ୍ତ୍ୟଶ୍ୱ ପାଦାତିକ ରଥ ଚତୁରଙ୍ଗ ସେନା ବେଷ୍ଟିତ
ଦିଗ୍ ବିଜୟ ଉଦ୍ଦେଶ୍ୟରେ ପୁର ମଧ୍ୟରୁ ବାହାରିଲେ

ଉତ୍ତର କୁରୁକିଂ ପୁରୁଷ କେତୁମାଳ ଅଙ୍ଗ ଭଦ୍ରାଶ୍ୱ
ଭାରତ ଆଦି ଦେଶମାନ ଜିଣି ପୂଜାକରି ଗ୍ରହଣ
ପୂର୍ବଜ ପାଣ୍ଡବ ଗଣର ମହିମା ଯଶ ଶ୍ରୀକୃଷ୍ଣର
ବ୍ରହ୍ମାସ୍ତ୍ରରୁ ଅଶ୍ୱତ୍ଥାମାର ସୁରକ୍ଷା ନିଜ ଜୀବନର

ଯଦୁ ପାଣ୍ଡବ ମାନଙ୍କର ସ୍ନେହ ସୌହାର୍ଦ୍ଦ୍ୟ ବ୍ୟବହାର
କୃଷ୍ଣେ ପରମ ପ୍ରୀତିଭବ ଶୁଣି ଆନନ୍ଦ କରି ଲାଭ
ମହାର୍ଘ ବସନ ଭୂଷଣ କରି ସମସ୍ତଙ୍କୁ ପ୍ରଦାନ
ଯେ ଶ୍ରୀକୃଷ୍ଣ ଚରଣେ ପ୍ରଣାମ କରନ୍ତି ବିଶ୍ୱ ସର୍ବଜନ

ସେ କୃଷ୍ଣ ମହା ଭାଗବତ ହୋଇଲେ ପାଣ୍ଡବଙ୍କ ଦୂତ
ମନ୍ତ୍ରୀ ସାରଥି ସଖା ହୋଇ ସର୍ବଦା ସଙ୍ଗେ ଥିଲେ ରହି
କେବେ ଖଡ୍ଗଧରି ହସ୍ତରେ ଉଜାଗର ରହି ରାତ୍ରରେ
ପୁଣି ସେ ହୋଇଣ ପ୍ରହରୀ ରକ୍ଷା କରୁଥିଲେ ନଗରୀ

ପାଣ୍ଡବଙ୍କର ଅନୁଗତ ଭୃତ୍ୟ ପରି ଥିଲେ ଅଚ୍ୟୁତ
ଏସବୁ ବିଷୟକୁ ଶୁଣି ସେ ପରୀକ୍ଷ କରମଣି
ଶ୍ରୀକୃଷ୍ଣ ପଦ୍ମ ପାଦେ ଭକ୍ତି କରିଲେ ପରୀକ୍ଷ ନୃପତି
ସେ ପରୀକ୍ଷ- ନୃପ କେଶରୀ ପୂର୍ବଜ ପାଣ୍ଡବଙ୍କ ପରି

ପ୍ରଜା ପାଳନ ସମୟରେ ନିଜ ବିଶାଳ ସାମ୍ରାଜ୍ୟରେ
ଏକ ଆକସ୍ମିକ ଘଟଣା ଶୁଣିଲେ ନୃପ ମହାମନା
ମୁଁ ତାହା କରୁଛି ବର୍ଣ୍ଣନ ଶୌନକ ସାବଧାନେ ଶୁଣ
ଦେଖିଲେ ପରୀକ୍ଷା ରାଜନ ବୃଷଭ ରୂପ ଧାରୀ ଧର୍ମ

ତିନୋଟି ଚରଣ ହରାଇ ଏକ ପାଦରେ ଠିଆହୋଇ
ଦୁଃଖରେ ଗାଭୀକୁ ପୁଚ୍ଛଇ ହେ ଜନନୀ ତୁ କିଂପାଇଁ
ସନ୍ତାନ ହରା ମାତାପରି ଦିଶୁଛି ଅତି ହତ ଶିରୀ
ହେ ପୂଜ୍ୟା ଜନନୀ ତୁମର ମଳୀନ ମୁଖ ଦେଖିମୋର

ପ୍ରତେ ହୁଅଇ ତୁମ ମନେ କିଛି ଦୁଃଖ ଅଛି ଗୋପନେ
କୌଣସି ଦୂର ବନ୍ଧୁ କଥା ଭାବିକି ହେଉଛ ଦୁଃଖିତା
ମୁଁ ତିନି ପାଦ ହରାଇଛି ଏକପାଦ ଠିଆ ହୋଇଛି
ଏପାଇଁକି ଦୁଃଖକି ତୁମ କହ ମାତା ଦୁଃଖ କାରଣ

କି ଅବା କିଛି କାଳ ଅନ୍ତେ   ଶୂଦ୍ର ନୃପତି ଗଣ ତତେ
ଭୋଗ କରିବେ ଯଜ୍ଞ ଆଦି   କର୍ମ ନୋହିବ ଯଥାବିଧି
ଦେବେନ୍ଦ୍ର ଆଦି ସର୍ବଦେବ   ଯଜ୍ଞର ଭାଗ ନ ପାଇବେ
ବୃଷ୍ଟି ନ ହେବ ଯଥାକାଳେ   ଲୋକେ ମରିବେଅନାହାରେ

ଏ ଭବିଷ୍ୟ ଚିନ୍ତା କରି   ଦୁଖେ କି ହେଉଅଛ ଘାରି
ନିଜ ନାରୀକୁ ସ୍ୱାମୀ ଗଣ   ନକରି ଭରଣ ପୋଷଣ
ପର ରମଣୀ ପ୍ରେମେ ମାତି   ଆଚରିବେ ନାନା ଦୁର୍ନୀତି
ପିତା ନ ପାଳିବେ ସନ୍ତାନ   ନିର୍ମମେ କରିବେ ପୀଡ଼ନ

ଅଚିରେ ଏ ସଂସାରରେ   ଦୁଷ୍ଟ ବିପ୍ରଙ୍କ ଆଶ୍ରୟରେ
ଦେବୀ ସରସ୍ୱତୀ ରହିବେ   ଲୋକେ ଖଳବଳହୋଇବେ
ଭୂବନ ମଣ୍ଡଳ ନାଶିବେ   ସକଳେ ସ୍ୱେଚ୍ଛାଚାରୀ ହେବେ
ଉତ୍ତମ କୁଳୀନ ବ୍ରାହ୍ମଣ   ଗୁରୁ ଦେବତା ଭକ୍ତିହୀନ

ଶୂଦ୍ର ନୃପତି ସେବାକରି   ବଞ୍ଚିବେ ଆଜ୍ଞା ଅନୁସରି
ଏ ସବୁ ବିଷୟ ଭାବିକି   ଦୁଃଖିତ ହେଉଛ ତୁମେକି
କଳିକାଳ ଦୋଷ ଦୂଷିତ   ନିନ୍ଦିତ କୁକର୍ମ ନିରତ
କ୍ଷତ୍ରିୟେ ପୃଥ୍ୱୀକୁ ଶାସିବେ   ସଦା ଅନ୍ୟାୟ ଆଚରିବେ

ପ୍ରଜା ଧର୍ମ ପଥ ତେଜିବେ   ଶାସ୍ତ୍ରର ବିଧି ନ ମାନିବେ
କରିବେ ଅମେଧ୍ୟ ଭୋଜନ   ଦିବସେ କରିବେ ମୈଥୁନ
ସ୍ନାନ ନକରିବେ ବ୍ରାହ୍ମଣ   ଆମିଷ କରିବେ ଭୋଜନ
ଦୁଷ୍ଟେ କରିଣ ମଦ୍ୟପାନ   ହରିବେ ପର ଦାରା ଧନ

ପ୍ରଭୁ ଶ୍ରୀକୃଷ୍ଣ ଭଗବାନ   ଧରାରେ ହୋଇ ଅବତୀର୍ଣ୍ଣ
ଦୁଷ୍ଟ ନାଶି ସନ୍ଥ ପାଳିଲେ   ତୋର ଭୂରିଭାର ହରିଲେ
ତାଙ୍କ ମଙ୍ଗଳ ଲୀଳାମାନ   କୀର୍ତ୍ତନ ସ୍ମରଣ ଭଜନ
ମୁକ୍ତି ଲାଭଠାରୁ ଅଧିକ   ଅତି ସୁଖ ଶାନ୍ତି ଦାୟକ

କୃଷ୍ଣ ହେବାରୁ ଅନ୍ତର୍ଦ୍ଧାନ   ସେ ଲୀଳା କରି କି ସ୍ମରଣ
ଦୁଃଖ ଲାଗଇକି ତୁମକୁ   କହ କହ ମାତା ଆମକୁ
କହ କହ ମାତା ଧରିତ୍ରୀ   ନିୟତି ସର୍ବ ଶକ୍ତିମତୀ
କଳାକି ସୌଭାଗ୍ୟ ହରଣ   କିଂପାଇଁ ଦୁଃଖିତ ତୋ ମନ

## ଧରଣୀ ଉବାଚ

କହେ ପୃଥିବୀ ଆହେ ଧର୍ମ   ବାରମ୍ବାର ଯାହା ଆପଣ
ବିଭିନ୍ନ ପ୍ରଶ୍ନ କରୁଛନ୍ତି   ଆପଣ ତ ସବୁ ଜାଣନ୍ତି
ସତ୍ୟ ଶଉଚ ବଦାନ୍ୟତା   କ୍ଷମା ସନ୍ତୋଷ ସରଳତା
ତିତିକ୍ଷା ସାମ୍ୟ ଦମଶମ   ଶାସ୍ତ୍ର ବିଚାର ତପଜ୍ଞାନ

ନିବୃତ୍ତି ବୈରାଗ୍ୟ ବୀରତା   ଐଶ୍ୱର୍ଯ୍ୟ ବଳ ସ୍ୱାଧିନତା
ତେଜି ସ୍ୱଧର୍ମ ନିପୁଣତା   ଧୀରତା ଚିତ୍ତ କୋମଳତା
ପ୍ରତିଭା ବିନୟ ଗାମ୍ଭୀର୍ଯ୍ୟ   ସୁଶୀଳ ପବିତ୍ରତା ଧୈର୍ଯ୍ୟ
ଓଜ ଭଗ ଶାନ୍ତି ସ୍ଥିରତା   ଆସ୍ତିକ୍ୟ ନିରହଙ୍କାରତା

ଭକ୍ତି ଆଦି ଉତ୍ତମ ଗୁଣ   ଯାହା ଇଛନ୍ତି ଭକ୍ତଗଣ
ସେ ଗୁଣ ପ୍ରଳୟ ପର୍ଯ୍ୟନ୍ତ   ଯାଠାରେ ନିତ୍ୟ ବିରାଜିତ
ସେ କୃଷ୍ଣ କୃପାରୁ ବଞ୍ଚିତ   ହୋଇ ମୋ ଚିତ୍ତ ବ୍ୟାକୁଳିତ
ଏବେ କଳିର କୁଦୃଷ୍ଟିରେ   ଏହି ଅଖିଳ ସଂସାରରେ

ପ୍ରାଣୀ ଦେବତା ମୁଁ ଆପଣ   ବ୍ରାହ୍ମଣ ଆଦି ଚାରିବର୍ଣ୍ଣ
ପୁଣି ଚାରିଗୋଟି ଆଶ୍ରମ   ଅବସ୍ଥା ଭବି ମୋର ମନ
ହେଉଛି ଅତ୍ୟନ୍ତ ଦୁଃଖିତ   ମୋ ଚିତ୍ତ ହୁଏ ବ୍ୟାକୁଳିତ
ବ୍ରହ୍ମା ପ୍ରଭୃତି ଦେବଗଣ   ଗୋବିନ୍ଦ ଚରଣେ ଶରଣ

ଯେଉଁ ଲକ୍ଷ୍ମୀ କୃପା ନିମିତ୍ତ   ଘୋର ତପସ୍ୟାରେ ନିରତ
ସେ ଲକ୍ଷ୍ମୀ ନିଜ ବାସସ୍ଥାନ   ବରଜି କମଳ କାନନ
ହୃଦୟେ ବହି ପ୍ରେମ ଭକ୍ତି   ଶ୍ରୀକୃଷ୍ଣ ଚରଣ ସେବନ୍ତି
ମୁଁ ସେହି କୃଷ୍ଣ ଭଗବାନ   ଧ୍ୱଜ ଅଙ୍କୁଶାଦି ଶୋଭନ

ଚରଣ ଚିହ୍ନ ସୌଭାଗ୍ୟରେ   ବିଚରୁଥିଲି ତ୍ରିଲୋକରେ
ତେଜିବାରୁ କଳା କହ୍ନାଇ   ଆଜି ସେ ସୌଭାଗ୍ୟ ମୋନାହିଁ
ସେହି ଶ୍ରୀକୃଷ୍ଣ ଭଗବାନ   ହେଲେ ମଧ ସ୍ୱୟଂ ସ୍ୱାଧୀନ
ଗୋପ ପୁରେ ଲଭି ଜନମ   ଶତ ଅକ୍ଷୌହିଣୀ ସୈନ୍ୟ

ଘେନି ଦୁଷ୍ଟ କରି ନିଧନ   କରିଲେ ମୋ ଭରା ହରଣ
ଯେ କୃଷ୍ଣ ତ୍ରିତାପ ଦହନ   ଦଗ୍ଧ ଆପଣଙ୍କୁ ଦେଖିଣ
ନିଜର ପୌରୁଷ ବଳରେ   ସଂପୂର୍ଣ୍ଣ ସୁସ୍ଥ କରିଥିଲେ
ଯେଉଁ କୃଷ୍ଣଙ୍କ ପ୍ରେମ ପୂର୍ଣ୍ଣ   ସ୍ମିତ ସୁମଧୁର ବଚନ

ସତ୍ୟ ଭାମାଦି ନାରୀଗଣ ମାନ ଧୈର୍ଯ୍ୟ କରେ ହରଣ
ସେ କୃଷ୍ଣଙ୍କ ପାଦସ୍ପର୍ଶରେ ମୁଁ ପୁଲକିତ ଶରୀରରେ
ଥିଲି ପରମ ଆନନ୍ଦରେ ସର୍ବଦା ଭାବେ ମୁଁ ମନରେ
ସେହି କୃଷ୍ଣଙ୍କ ତିରୋଧାନ ଦୁଃଖ ସହିବ କେଉଁ ଜନ

ଧର୍ମ ପୃଥିବୀ ଏପ୍ରକାରେ କଥୋପ କଥୋନ ବେଳରେ
ସେ ମହାରାଜ ପରୀକ୍ଷିତ ସେଠାରେ ହେଲେ ଉପସ୍ଥିତ
କହଇ ଦାଶ ଧନେଶ୍ୱର ଧର୍ମ ଧରଣୀ ସମାଚାର
ଯେ ଜନ ଭକ୍ତିରେ ଶୁଣଇ ଅନ୍ତେ ସେ ବୈକୁଣ୍ଠେ ବସଇ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ପୃଥିବୀ ଧର୍ମ ସଂଳପେ ନାମ ଷୋଡ଼ଶୋଽଧ୍ୟାୟ ।

*******

## ସପ୍ତଦଶ ଅଧ୍ୟାୟ

କହନ୍ତି ସୂତ ମୁନିବର ଶୁଣି ଶୌନକ ହୋଇ ସ୍ଥିର
ନୃପ ପରୀକ୍ଷ ଏହାପରେ ପ୍ରବେଶି ସରସ୍ୱତୀତୀରେ
ଏ ଘୃଣ୍ୟ କରୁଣ ଘଟନା ଦର୍ଶନେ ହୋଇଲେ ବିମନା
କପଟ ନୃପତି ବେଶରେ ଶୂଦ୍ର ଯେ ଗାଭୀକୁ ପ୍ରହାର

ଧେନୁ ଅନାଥ ନାରୀପରି କାନ୍ଦଇ ଦଇବ ସୁମରି
ମୃଣାଳ ଧବଳ ବରନ କ୍ଷୀର ଅଙ୍ଗ ମୁଖ ମଳୀନ
ବୃଷଭ ଏକ ଚରଣରେ ଠିଆହୋଇ ଅତି କଷ୍ଟରେ
ଶୂଦ୍ରର ପ୍ରହାର ଭୟରେ ମଳମୂତ୍ର ତେଜେ ଆତୁରେ

ଗାଭୀ ଦୁଗ୍ଧ ବତୀ ଅନାଥ କ୍ଷୀଣ ଅଙ୍ଗ ଅତି କ୍ଷୁଧିତ
ଶୂଦ୍ରର ପଦାଘାତ ପାଇ ମୃତ ବତ୍ସା ପରି କାନ୍ଦଇ
ସୁବର୍ଣ୍ଣ ମଣ୍ଡିତ ରଥରେ ଆରୋହି ପରୀକ୍ଷ କ୍ରୋଧରେ
ଶାଣ ବାଣ ଯୋଖି ଧନୁରେ ଜଳଦ ଗମ୍ଭୀର ସ୍ୱରରେ

ବୋଇଲେ କେ ତୁ ମୋ ରାଜ୍ୟରେ ସବଳ ହୋଇଦୁର୍ବଳରେ
କରୁ କିଂପାଇ ଅତ୍ୟାଚାର ଆରେ ଆରେ ମୂଢ ବର୍ବର
ରାଜ ବେଶ ଭୂଷା ଧରିଛୁ ଶୂଦ୍ର ପରି କର୍ମ କରୁଛୁ
ଅର୍ଜୁନ ସହ ଭଗବାନ କୃଷ୍ଣ ଗମନ୍ତେ ନିଜ ଧାମ

ନିର୍ଭରେ ନିରପରାଧରେ କରୁ ଅତ୍ୟାଚାର ରାଜ୍ୟରେ
ଏ ଘୋର ଅପରାଧୀ ତୁହି ନିଶ୍ଚୟ ଆଜି ବଧିବଇ
ମୃଣାଳ ସମ ଶ୍ୱେତବର୍ଣ୍ଣ ନାହିଁ ତୁମ ତିନି ଚରଣ
ଏକ ପାଦେ କର ଭ୍ରମଣ କେହି ଦେବତା କି ଆପଣ

ଦୁଃଖ ଦେବାପାଇଁ ଆମକୁ ଧରିଛକି ବୃଷ ରୂପକୁ
ପାଣ୍ଡବ ବଂଶୀ ବାହୁବଳେ ସୁରକ୍ଷିତ ଏ ଧରାତଳେ
ତୁମ ବିନା ଅନ୍ୟ କାହାର ନେତ୍ରୁ ନ ବହେ ଅଶ୍ରୁଧାର
ହେ ମାତ ସୁରଭୀ ନନ୍ଦନା କର ନାହିଁ ଅନୁଶୋଚନା

ଏ ଶୂଦ୍ରକୁ ଭୟ କର ନାହିଁ ମୁଁ ପୁତ୍ର ପରୀକ୍ଷ ଅଛଇ
ମୁଁ ଖଳକୁଳ ଦଣ୍ଡ ଦାତା ଜୀବିତ ଥିବାଯାଏ ମାତା
ନ ହେବ ଅମଙ୍ଗଳ ତୁମ ହେ ମାତା ନକର ରୋଦନ
ନିରାପାରାଧ ପ୍ରଜାଗଣ ଯେ ରାଜ୍ୟେ ଭୋଗନ୍ତିକଷଣ

ଯେ ଦେଶେ ଅଯୋଗ୍ୟ ନୃପତିଦୁଷ୍ଟଙ୍କୁ ନ ଦିଅଇ ଶାସ୍ତି
ଆୟୁଷ ଯଶ ପରକାଳ ସୌଭାଗ୍ୟ ନାଶ ସେନୃପର
ଦୀନ ଜନ ଦୁଃଖ ମୋଚନ ଅଟେ ସିନା ରାଜାର ଧର୍ମ
ଏ ପର ପୀଡ଼କ ନିନ୍ଦିତ ବ୍ୟକ୍ତିକୁ କରିବି ନିପାତ

ହେ ବୃଷ ସୁରଭୀ ନନ୍ଦନ ତୁମର ତ ଚାରି ଚରଣ
ପୂର୍ବ ତିନୋଟି ପାଦ ତୁମ କେ ଦୁଷ୍ଟ କରିଛି ଛେଦନ
ଶ୍ରୀକୃଷ୍ଣ ସେବା ପରାୟଣ ସବୁ କାଳେ ପାଣ୍ଡବ ଗଣ
ତାଙ୍କ ରାଜ୍ୟରେ ତୁମପରି ଦୁଃଖୀ ରହିବବା କିପରି

ତୋପରି ନିରୀହ ପ୍ରାଣୀର ଅଙ୍ଗ ଛେଦିଲା ଯେ ପାମର
ପାଣ୍ଡବଙ୍କ କୀର୍ତ୍ତୀ ଚନ୍ଦ୍ରମା ଲେପିଲେ କଳଙ୍କ କାଳିମା
ସେ ବର୍ବରକୁ ଦେଖାଅ ରେ ବୃଷ ଦୁଃଖିତ ନ ହୁଅ
ଦୁର୍ବୃତ୍ତ ଦମନ ନିଧନ ସାଧୁଙ୍କ ମଙ୍ଗଳ ବିଧାନ

କୁପଥଗାମୀ ଧର୍ମହୀନ  ଦୁଷ୍ଟ ଜନତାର ଶାସନ
ସ୍ୱଧର୍ମ ରତ ଧର୍ମ ପ୍ରାଣ  ସନ୍ଥ ରକ୍ଷଣ ରାଜଧର୍ମ
ମୋର ରାଜ୍ୟରେ ଯେଉଁ ଦୁଷ୍ଟ  ନିର୍ଦ୍ଦୋଷେ ହେଉଅଛି କଷ୍ଟ
ସେ ହେଲେ ମଧ୍ୟ ଦେବରାଜ  ନିଷ୍ଟେ ଛେଦିବି ତାର ଭୁଜ

## ଧରଣୀ ଉବାଚ

ଯେଉଁ ପାଣ୍ଡବଙ୍କ ସୁଗୁଣ  ମୁଗ୍ଧ ହୋଇ ଶ୍ରୀ ନାରାୟଣ
ପାର୍ଥର ସାରଥି ହୋଇଲେ  ସଂଗ୍ରାମେ ରଥ ଚଳାଇଲେ
ପୁଣି ତାହାଙ୍କ ଦୂତରୂପେ  ଗଲେ କୁରୁପତି ସମୀପେ
ସେହି ପାଣ୍ଡବ ବଂଶଧର  ତୁମେ ପରୀକ୍ଷ ଦଣ୍ଡଧର

ଆର୍ତ୍ତ ଜନ ଆର୍ତ୍ତ ହରଣ  ଏ ବାକ୍ୟ ତୁମ ସମିଚୀନ
ବିଭିନ୍ନ ମତବାଦୀ ଜନ  କହନ୍ତି ବିବିଧ ବଚନ
ଆତ୍ମା ଆତ୍ମା ଦୁଃଖ କାରଣ  କହେ ଅଦ୍ୱୈତ ବାଦୀଜନ
ଦୈବଜ୍ଞ ଗ୍ରହ ଦେବତାଙ୍କୁ  ମିମାଂସକ ଗଣ କର୍ମକୁ

ସ୍ୱଭାବକୁ ନାସ୍ତିକ ଜନ  କହେ ସୁଖ ଦୁଃଖ କାରଣ
କେ ପ୍ରାଣୀଙ୍କୁ ଦୁଃଖ ଦିଅଇ  ଆମେ ତା ଜାଣି ପାରୁନାହୁଁ
ମନ ବଚନ ଅଗୋଚର  ଶ୍ରୀ ଭଗବାନ ସର୍ବେଶ୍ୱର
ଜୀବକୁ ସୁଖ ଦୁଃଖ ଦିଏ  ଈଶ୍ୱରବାଦୀ ଜନକହେ
ଜୀବର ସୁଖ ଦୁଃଖ ଦାତା  ପ୍ରକୃତ କିଏ ଅଟେ କର୍ତ୍ତା
ତାହା ତୁମେ ନିଜ ବୁଦ୍ଧିର  ବଳରେ ସୁବିଚାର କର

## ସୂତ ଉବାଚ

ବୃଷଭ ସ୍ୱରୂପୀ ଧର୍ମର  ଶୁଣି ବଚନ ଏପ୍ରକାର
ସେ ପରୀକ୍ଷିତ ନୃପଙ୍କର  ହୃଦରୁ ମୋର ହେଲା ଦୂର
ଏ ବୃଷଭ ସ୍ୱୟଂ ଧର୍ମ  ଜାଣି ହୋଇଲେ ସ୍ଥିର ମନ

## ରାଜୋବାଚ

କହନ୍ତି ରାଜା ପରୀକ୍ଷିତ  ହେଧର୍ମଜ୍ଞ ତୁମେ ପ୍ରକୃତ
ସେ ଘାତକକୁ ଜାଣିଅଛ  ମାତ୍ର ପ୍ରକାଶ ନ କରୁଛ
ଏ ହେତୁ ନିଶ୍ଚୟ ଆପଣ  ଅଟନ୍ତି ବୃଷରୂପୀ ଧର୍ମ
ଯେ ଅଧର୍ମ ଆଚରଇ  ଯେ ତାହା ସୂଚଇ ଦିଅଇ

ଉଭୟ ଅଟନ୍ତି ସମାନ  ଏହା ଶାସ୍ତ୍ର ସିଦ୍ଧ ବଚନ
ଯେ ଦୈବୀମାୟା ପ୍ରାଣୀଙ୍କର  ମନ ବଚନ ଅଗୋଚର
ମୋହିତ ସେ ଦୈବୀ ମାୟାରେକେ  ବଧ୍ୟ ଘାତତସଂସାରେ
ସତ୍ୟଯୁଗରେ ମୁନିଗଣ  ତପ ଶୌଚ ସତ୍ୟବଚନ

ଜୀବେ ଦୟା ଚାରୀ ଚରଣ  ନିର୍ଣ୍ଣୟ କରିଥିଲେ ଜାଣ
ଗର୍ବ କୁସଙ୍ଗ ସୁରାପାନ  ଅଧର୍ମରୁ ତିନି ପାଦ ଭଗ୍ନ
ସତ୍ୟ ପ୍ରଭାବେ ବର୍ତ୍ତମାନ  ରହିଛି ଏକଇ ଚରଣ
ଅଧମ ସ୍ୱରୂପୀ ସାକ୍ଷାତ  କଳି ତା ଛେଦନେ ଚେଷ୍ଟିତ

ଏହା ଅଟେ ମିଥ୍ୟା ପ୍ରଭାବ  ହେ ବୃଷ କର ଅନୁଭବ
ଏ ଗୋରୂପୀ ପୃଥିବୀର  କୃଷ୍ଣ ହରିଲେ ପାପଭାର
ବଜ୍ରାଙ୍କୁଶାଦି ସୁଶୋଭନ  ଲଭି ଶ୍ରୀକୃଷ୍ଣ ପଦ ଚିହ୍ନ
ତ୍ରିଭୁବନେ ଏ ବସୁମତୀ  ହୋଇଲା ଶୁଭ ଭାଗ୍ୟବତୀ

ଶୂଦ୍ରେ ଯେ ରାଜବେଶ ଧରି  ଦୁର୍ବଳମାନଙ୍କୁ ସଂହାରି
ବଳେ ଉପଭୋଗ କରିବେ  ବିପ୍ରଙ୍କୁ ସମ୍ମାନ ନ ଦେବେ
ଧରିତ୍ରୀ ଭବିଷ୍ୟ ଚିନ୍ତାରେ  କାନ୍ଦଇ ଅଶ୍ରୁଳ ନେତ୍ରରେ
ସେ ପରୀକ୍ଷ ମହାମନା  ଦେଇ ଧର୍ମ ପୃଥ୍ୱୀ ଶାନ୍ତ୍ୱନା

ଅଧର୍ମ କଳିର ନିଧନ  ପାଇଁ ଖଡ୍ଗ କଲେ ଧାରଣ
ବଧ ଉଦ୍ୟତ ନୃପତିଙ୍କୁ  ଦେଖି କଳି ଲଭି ଭୟକୁ
ରାଜ ବେଶ ଭୂଷା ତେଜିଲା  ପ୍ରାଣଭୟେ ଥରି ଉଠିଲା
ମଥା ପାତି ପାଦେ ପଡ଼ିଲା  କରଯୋଡ଼ି କ୍ଷମା ମାଗିଲା

ଦୀନ ଶରଣାର୍ଥୀ ରକ୍ଷକ  ସେ ପରୀକ୍ଷିତ ପୁଣ୍ୟଶ୍ଳୋକ
ଧର୍ମବୀର ଦୀନ ବତ୍ସଳ  ବିଲୋକି କଳିର ବିକଳ
ଦୟାବହି ବଧ ନ କଲେ  ମନ୍ଦେ ହସି ହସି କହିଲେ

## ରାଜୋବାଚ

ମୁଁ ହିଁ ଅର୍ଜୁନ ବଂଶଧର  ତାଙ୍କ ଯଶରକ୍ଷା ତତ୍‌ପର
ଶରଣ ରକ୍ଷଣ ମୋବାନା  ଆରେ କଳି ଭୟ କରନା
ମାତ୍ର ମୋର ଏହି ରାଜ୍ୟକୁ  ତେଜି ଯାଅ ଅନ୍ୟ ସ୍ଥାନକୁ
ତୁ କପଟ ରାଜ ବେଶରେ  ବାସ କଲେ ମୋର ରାଜ୍ୟରେ

ତୋରସଙ୍ଗରେ ଲୋଭ ମିଥ୍ୟା ଚୌର୍ଯ୍ୟ କଳହ କପଟତା
ଗର୍ବ ଅଲକ୍ଷ୍ମୀ ଦୁର୍ଜନତା ଧର୍ମହୀନତା ନିର୍ମମତା
ଅହଙ୍କାର ଯେ ଉପସ୍ଥିତ ଅଧର୍ମ ବନ୍ଧୁ ଯା ତୁରିତ
ଯାଜ୍ଞିକ ଶୁଦ୍ଧ ବିପ୍ରଗଣ ଯହିଁ କରେ ହରି ଅର୍ଚ୍ଚନ

ଧର୍ମ ସତ୍ୟ ହିଁ ସେ ରାଜ୍ୟରେ ବାସ କରିବେ ନିରନ୍ତରେ
ରେଦୁଷ୍ଟ ଏ ବ୍ରହ୍ମା ବର୍ତ୍ତରେ ନ ରହି କୌଣସି ସ୍ଥାନରେ
ଚରାଚର ବାହ୍ୟ ଅନ୍ତରେ ଶ୍ରୀହରି ବିଜେ ଯେ ରାଜ୍ୟରେ
ଯଜ୍ଞ ପୁରୁଷ ସ୍ୱରୂପରେ ଅର୍ଚ୍ଚିତ ହୁଅନ୍ତି ଯଜ୍ଞରେ

ଯାଜ୍ଞିକଙ୍କୁ ନାନା ପ୍ରକାର ସୁଖ ପ୍ରଦାନରେ ତତ୍ପର
କୌଣସି ସ୍ଥାନେ ସେ ରାଜ୍ୟର ରହି ନପାରେ ଦୁରାଚାର
ନୃପତି ପରୀକ୍ଷିତଙ୍କର ଆଦେଶ ପାଇଁ ଏପ୍ରକାର
ଭୟେ କଳି ହୋଇ କଂପିତ ଯମଙ୍କ ପରି ଖଡ୍ଗହସ୍ତ

ବଧୋଦ୍ୟତ ପରୀକ୍ଷତରେ ନିବେଦିଲା ଅତି କାତରେ
ହେ ସମ୍ରାଟ ତୋ ଆଦେଶରେ କୌଣସି ସ୍ଥାନେ ଏ ପୃଥ୍ୱୀରେ
ରହିଲେ ମଧ୍ୟ ଆପଣଙ୍କୁ ଧନୁର୍ବାଣ ହସ୍ତେ ଦେଖିବାକୁ
ପାଇବି ଏହି ଆଜ୍ଞାକର ଆହେ ପରୀକ୍ଷ ଦଣ୍ଡଧର

ହେ ଧାର୍ମିକ କୁଳ ପ୍ରବର ଆଦେଶ ପାଳି ମୁଁ ତୁମର
ଯହିଁ ରହିବି ନିଶ୍ଚଳରେ ଦିଅନ୍ତୁ ଆଜ୍ଞା ସେ ପ୍ରକାରେ
କଳିର ଏପରି ପ୍ରାର୍ଥନା ଶୁଣି ପରୀକ୍ଷ ମହାମନା
ଦ୍ୟୁତ କ୍ରୀଡ଼ା ଯେ ମଦ୍ୟପାନ ପରଦାର ଅଭିଗମନ

ଜୀବ ବଧ ଏ ଚାରିସ୍ଥାନ ଆଦେଶ କରିଲେ ପ୍ରଦାନ
କଳିର ପ୍ରାର୍ଥନାରେ ପୁଣି ସେ ହିଁ ପରୀକ୍ଷ ନରମଣି
ସ୍ୱର୍ଣ୍ଣରେ ଦେଲେ ବାସସ୍ଥାନ ଏ ହେତୁ ମିଥ୍ୟା ମଦ୍ୟପାନ
ଗର୍ବ ପରନାରୀ ରମଣ ଶତ୍ରୁତା ଏ ପାଞ୍ଚସ୍ଥାନ

କଳିର ହେଲା ଅଧିକାର ପ୍ରାଣୀ ଏ ହେଲେ ଦୁରାଚାର
ଅଧର୍ମର ଜନମ ସ୍ଥାନ ଲାଭ କରି କଳି ତକ୍ଷଣ
ପରୀକ୍ଷିତଙ୍କ ଆଦେଶରେ ରହିଲା ନିର୍ଭୟ ମନରେ
ଉନ୍ନତି କାମୀ ବ୍ୟକ୍ତିଗଣ କୋଷାଧ୍ୟକ୍ଷ ଗୁରୁ ସଜ୍ଜନ

ଧାର୍ମିକ ରାଜନ୍ୟ ଏମାନେ କେବେହେଁ ନ ଯିବେଏସ୍ଥାନେ
ଧର୍ମର ଲୁପ୍ତ ତ୍ରିଚରଣ ତପସ୍ୟା ଶୌଚ ଦୟା ପୁନ
କଲେ ନୃପତି ନିୟୋଜନା ଦେଇ ପୃଥିବୀକୁ ଶାନ୍ତ୍ୱନା
ଯଜ୍ଞାଦି କର୍ମେ ସଂବର୍ଦ୍ଧିତ କରିଣ ହୋଇଲେ ଆଶ୍ୱସ୍ତ

ସଂସାର ତେଜି ଅରଣ୍ୟରେ ବାସ କରିବା ସମୟରେ
ପିତାମହ ଧର୍ମଜ ଦତ୍ତ ସିଂହାସନରେ ଅଧିଷ୍ଠିତ
ସେ ପରୀକ୍ଷିତ ରାଜନ ଏବେ ବି କରନ୍ତି ଶାସନ
ସର୍ବ ଐଶ୍ୱର୍ଯ୍ୟ ବିମଣ୍ଡିତ ସେହିରାଜର୍ଷି ପରୀକ୍ଷିତ

ହସ୍ତିନା ନଗ୍ରେ ବର୍ତ୍ତମାନ କରୁଅଛନ୍ତି ଅବସ୍ଥାନ
ସେ ପରୀକ୍ଷ ମହାପ୍ରାଣ କଲେ ଯେ ଧର୍ମ ସଂସ୍ଥାପନ
ଉତ୍ତରାଧିକାରୀ ନୃପତି ତାହା ଅକ୍ଷୁଣ୍ଣ ରଖିଛନ୍ତି
ଶ୍ରୀ ସୂତ ନୈମିଷାରଣ୍ୟରେ ଶୌନକାଦିଙ୍କୁ ଯେ ବେଳରେ

ଶୁଣାଇଲେ ଶ୍ରୀ ଭାଗବତ ଦେହ ତେଜିଲେ ପରୀକ୍ଷିତ
ହେ ଶୌନକାଦି ଋଷିଗଣ ବୀର ଅଭିମନ୍ୟୁ ନନ୍ଦନ
ପରୀକ୍ଷିତଙ୍କର ରାଜ୍ୟରେ ତୁମେ ଦୀକ୍ଷିତ ଏ ଯଜ୍ଞରେ
କହଇ ଧନେଶ୍ୱର ଦାଶ ପରୀକ୍ଷିତଙ୍କର ନିର୍ଦ୍ଦେଶ
ମାନି କଳିର ପାଞ୍ଚସ୍ଥାନ ସୁଜନେ ନକର ଗମନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ କଳିନିଗ୍ରହୋ ନାମ ସପ୍ତଦଶୋଽଧ୍ୟାୟ ।

# ଅଷ୍ଟାଦଶ ଅଧ୍ୟାୟ

## ସୂତ ଉବାଚ

ସୂତ କହନ୍ତି ଆନନ୍ଦରେ ଶୌନକ ମୁନିଙ୍କ ଆଗରେ
ପରୀକ୍ଷିତ ମାତୃ ଗର୍ଭରେ ଅଶ୍ୱତ୍ଥମା ଅସ୍ତ୍ରତାପରେ
ଦଗ୍ଧ ହେଲେବି ଭଗବାନ କୃପାରେ ନ ହାରିଲେ ପ୍ରାଣ
ଗୋବିନ୍ଦଙ୍କର ଶ୍ରୀଚରଣ ସମର୍ପି କାୟ ମନ ପ୍ରାଣ

ବ୍ରାହ୍ମଣର ଅଭିଶାପରେ ତକ୍ଷକ ନାଗ ଦଂଶନରେ
ପ୍ରାଣ ତେଜି ଯୋଗ ବଳରେ ଜୀବନ ସାର୍ଥକ କରିଲେ
ସକଳ ସଙ୍ଗ ତ୍ୟାଗକରି ଶୁକଙ୍କୁ ଗୁରୁରୂପେ ବରି
ଶିଷ୍ୟତ୍ୱ କରିଲେ ଗ୍ରହଣ ଧ୍ୟାଇ ଶ୍ରୀକୃଷ୍ଣଙ୍କ ଚରଣ

ଗଙ୍ଗତୀରେ ତେଜି ଶରୀର ଲଭିଲେ ବଇକୁଣ୍ଠ ପୁର
ଶ୍ରୀ ଗୋବିନ୍ଦଙ୍କ ଚରଣ ମନ ପ୍ରାଣ କରି ଅର୍ପଣ
ବ୍ରାହ୍ମଣର ଅଭିଶାପରେ ସେ ତକ୍ଷକର ଦଂଶନରେ
ତ୍ୟାଗ କରି ନିଜର ପ୍ରାଣ ସଫଳ କରିଲେ ଜୀବନ

ପୁଣ୍ୟଶ୍ଳୋକ ଗୋବିନ୍ଦଙ୍କର ଲୀଳା ଜୀବନ ଯାହାଙ୍କର
ଯେକରେ ମରଣ କାଳରେ ସ୍ମରଣ ଶ୍ରୀକୃଷ୍ଣ ଚରଣ
ତାହାର ମରଣ କାଳରେ ମୋହ ନ ଜନ୍ମଇ ଚିତ୍ତରେ
ସେହି ଅଭିମନ୍ୟୁ ନନ୍ଦନ ରାଜତ୍ୱ କଲେ ଯେତେଦିନ

କଳି ସେତେଦିନ ପର୍ଯ୍ୟନ୍ତ ପୃଥ୍ୱୀରେ ଥିଲା ଉପସ୍ଥିତ
ମାତ୍ର କୁପ୍ରଭାବ ନିଜର ନପାରି କରି ବିସ୍ତାର
ଯେବେଳେରେ ଯେଉଁଦିନ ଧରାତେଜିଲେ ଭଗବାନ
ସେଦିନ ସେହିମୁହୂର୍ତ୍ତରେ କଳି ପ୍ରବେଶିଲା ଧରାରେ

ଭ୍ରମର ପରି ଗୁଣଗ୍ରାହୀ ସେ ପରୀକ୍ଷ ନରସ୍ୱାଇଁ
କଳିକୁ ନ କରି ନିଧନ ପଞ୍ଚସ୍ଥାନ କଲେ ଅର୍ପଣ
ବହୁ ଦୋଷମଧ୍ୟେ କଳିର ଅଛି ଏକଗୁଣ ତାହାର
ସଙ୍କଳ୍ପ ମାତ୍ରେ ପୁଣ୍ୟକର୍ମ ସୁଫଳ ମିଳଇ ତକ୍ଷଣ

ମାତ୍ର ପାପକର୍ମ କଳ୍ପନା ପାପ ନହୁଏ କର୍ମ ବିନା
ଏ ହେତୁ କଳିକୁ ନିଧନ ନ କଲେ ପରୀକ୍ଷ ରାଜନ
ଯଥା ସହିତ କୃଷ୍ଣଙ୍କର ସମ୍ରାଟ ପରୀକ୍ଷିତଙ୍କର
ଅବିବେକକୁ ସେପ୍ରକାରେ କଳି ଆକ୍ରମେ ଅଲକ୍ଷରେ

ମାତ୍ର ଶ୍ରୀକୃଷ୍ଣ ଭକ୍ତଠାରେ କଳି ପ୍ରଭାବ ନ ବିସ୍ତାର
ଏ ହେତୁ କଳିକୁ ନିଧନ ନ କଲେ ପରୀକ୍ଷ ରାଜନ
ଯଥା ବ୍ୟାଘ୍ର ଅସାବଧାନ ବ୍ୟକ୍ତିକୁ କରେ ଆକ୍ରମଣ
ଅବିବେକକୁ ସେପ୍ରକାରେ କଳି ଆକ୍ରମେ ଅଲକ୍ଷ୍ୟରେ

ମାତ୍ର ଶ୍ରୀକୃଷ୍ଣ ଭକ୍ତଠାରେ କଳି ପ୍ରଭାବ ନ ବିସ୍ତାରେ
ହେ ଶୌନକାଦି ମୁନିଗଣ ପୁଚ୍ଛିଥିଲେ ଯେ ପ୍ରଶ୍ନମାନ
ଲୀଳା ସହିତ କୃଷ୍ଣଙ୍କର ସମ୍ରାଟ ପରୀକ୍ଷିତଙ୍କର
ସେହି ପୁଣ୍ୟ ଚରିତମାନ ସଂକ୍ଷେପେ କଲି ମୁଁ ବର୍ଣ୍ଣନ

ସଦ୍‌ଗତି ଇଚ୍ଛୁଥିବା ଜନ କୃଷ୍ଣ ବିଚିତ୍ର ଲୀଳାମାନ
କୀର୍ତ୍ତନ ଶ୍ରବଣ ଭଜନ ଅଟେ ଅତ୍ୟନ୍ତ ପ୍ରୟୋଜନ

## ଋଷୟ ଉବାଚ

ବୋଇଲେ ସର୍ବ ଋଷିଗଣ ହେ ସୂତ ମୁନି ଆହେ ସୌମ୍ୟ
ତୁମେ ଧରି ଦୀର୍ଘ ଜୀବନ ଜନ୍ମ ମରଣ ନିବାରଣ
ଶ୍ରୀକୃଷ୍ଣ ଗୁଣ ଲୀଳାମାନ ମରପୁରେ କର କୀର୍ତ୍ତନ
କରି ନିତ୍ୟ ଯଜ୍ଞାନୁଷ୍ଠାନ ଧୂମେ ଆମ ଅଙ୍ଗ ବିବର୍ଣ୍ଣ

ଯଜ୍ଞ ସୁଫଳ ଲାଭପାଇଁ ଆମର ବିଶ୍ୱାସ ନୁହଁଇ
ଏବେଳେ ତୁମେ ସୁମଧୁର ବିଶ୍ୱାତ୍ମା ଶ୍ରୀକୃଷ୍ଣଙ୍କର
ଶ୍ରୀପଦ ଯୁଗଳ ନଳୀନ ହେ ସୂତ ହୁଅ ଦୀର୍ଘାୟୁଷ
ଭଗବତ୍ ପ୍ରେମୀ ବିଷ୍ଣୁଭକ୍ତ ସହିତ ସଙ୍ଗ କ୍ଷଣେମାତ୍ର

ସ୍ୱର୍ଗ ଅପବର୍ଗ ତୁଳନା କରିବା ସିନା ବିଡ଼ମ୍ବନା
ତୁଚ୍ଛ ବିଷୟ ସୁଖମାନ ନହେବ ସାଧୁସଙ୍ଗ ସମ
ବିଧାତା ଶିବ ଯାରଗୁଣ ବର୍ଣ୍ଣନେ ନ ହୋଇଲେ କ୍ଷମ
ସେ ନିର୍ଗୁଣ କୃଷ୍ଣଙ୍କର ଲୀଳା ବର୍ଣ୍ଣିବ କେବା ନର

ଏକାନ୍ତ ଭକତି ନିଷ୍ଠାରେ ଶ୍ରୀକୃଷ୍ଣଲୀଳା ଗାନକଲେ
ସୁମଧୁର ଲୀଳା ଶ୍ରବଣେ ତୃପ୍ତି ନ ଆମେ କୀର ମନେ
ହେ ସୂତ ବିଜ୍ଞାନୀ ଆପଣ ଶ୍ରୀକୃଷ୍ଣଙ୍କ ଭକ୍ତି ପ୍ରଧାନ
ଅନନ୍ୟ ଭକ୍ତ ମାନଙ୍କର ଆଶ୍ରୟ ସେ କୃଷ୍ଣଙ୍କର

ବିଶୁଦ୍ଧ ଉଦାର ଚରିତ ଶ୍ରବଣେ ଶ୍ରଦ୍ଧା ଆମ ଚିତ୍ତ
ଆପଣ ତାହା ବିସ୍ତାରରେ କର ବର୍ଣ୍ଣନା ଆଉଥରେ
ମହାତ୍ମା ମହା ଭଗବତ ସେ ମହାରାଜ ପରୀକ୍ଷିତ
ଶ୍ରୀ ଶୁକ ମୁନିଙ୍କ କଥିତ ଯେଜ୍ଞାନ ପ୍ରଭାବେ ଅଚ୍ୟୁତ

ଶ୍ରୀକୃଷ୍ଣ ପଦ ଆଶ୍ରୟରେ    ମୁକତି ସୁଫଳ ଲଭିଲେ
ପୁଣି କର ତାହା ବର୍ଣ୍ଣନା    ହେ ସୂତ ଋଷି ମହାମନ
ଯହିଁ ଚିତ୍ତଶୁଦ୍ଧି ହୁଅଇ    ଭକତି ଭାବନା ବଢଇ
ସେହି କୃଷ୍ଣ ଲୀଳା ମିଶ୍ରିତ    ଭକତ ଶୁକ ପରୀକ୍ଷିତ

ସମ୍ବାଦକୁ ପୁଣି ଆପଣ    ଆମକୁ କରାନ୍ତୁ ଶ୍ରବଣ
କହନ୍ତି ସୂତ ଶୁଦ୍ଧଚେତା    ଶୁଣ ଶୌନକ ବ୍ରହ୍ମବେତ୍ତା
ମୁଁ ଅଧମ ବର୍ଣ୍ଣ ଶଙ୍କର    ସକଳ ବୃଦ୍ଧ ମୁନିଙ୍କର
ଲଭିଣ ପରମ ଆଦର    ଆଜି ସାର୍ଥକ ଜନ୍ମମୋର

ଭଗବତ ଭକ୍ତ ସଙ୍ଗରେ    ମୁହୂର୍ତ୍ତେ ମାତ୍ର ଆଳାପରେ
ମନପୀଡ଼ା ସର୍ବ ଦୁଷ୍କୃତ    ତକ୍ଷଣେ ହୁଏ ଦୂରୀଭୂତ
ସେହି ଅନନ୍ତ ଶକ୍ତିମାନ    କୃଷ୍ଣଙ୍କ ରୂପ ଗୁଣ ନାମ
ଲୀଳା ଖେଳାର ସୀମାନାହିଁ    ସେ ଯାହାକୁ ଦୟା କରଇ

ଦିଅନ୍ତି ଚରଣେ ଆଶ୍ରୟ    ସେ ହୁଏ ସର୍ବ ଗୁଣା ଶ୍ରୟ
ତେଣୁ ତାହାଙ୍କୁ ଭକ୍ତ ଗଣ    କହନ୍ତି ଅନନ୍ତ ମହିମ
ଯେଉଁ ଲକ୍ଷ୍ମୀଙ୍କ କୃପାଲାଭ    ପାଇଁ ବ୍ରହ୍ମାଦି ସର୍ବଦେବ
ପ୍ରାର୍ଥନା କରନ୍ତି ସତତ୍    ସେ ଲକ୍ଷ୍ମୀ ବରଜି ସମସ୍ତ

ଶ୍ରୀକୃଷ୍ଣ କୃପା ଲାଭ ପାଇଁ    ଭକ୍ତିରେ ଚରଣ ନମଇ
ଶ୍ରୀକୃଷ୍ଣ ମହିମା ସମାନ    କିଛିହିଁ ନାହିଁ ତ୍ରିଭୁବ
ଭଗବାନଙ୍କ ଶ୍ରୀଚରଣ    କରିବା ପାଇଁ ପ୍ରକ୍ଷାଳନ
ଧାତା ଯେ ଜଳ ସମର୍ପିଲେ    ତାଙ୍କ ଚରଣ କମଳରେ

ତାହା ନଖକୋଣୁ ବାହାରି    ପବିତ୍ର ଗଙ୍ଗା ନାମ ଧରି
ପତିତ ପାବୀ ହୋଇଲା    ଜଗତ ପବିତ୍ର କରିଲା
ସେହି ଶ୍ରୀକୃଷ୍ଣ ବିନା ଅନ୍ୟ    କିଏ ବା ହେବ ଭଗବାନ
ଅନନ୍ୟ ଭକ୍ତ ସନ୍ଥ ଗଣ    ଶ୍ରୀ ଗୋବିନ୍ଦଙ୍କର ଚରଣ

ଅନୁରାଗେ କରି ଭଜନ    ସଞ୍ଚବତ ଅନେକ ଜନମ
ଗୃହ ଶରୀର ଦାରା ଧନ    ମୋହ ମାୟା କରି ବର୍ଜନ
ଲଭି ପରମ ହଂସପଦ    ଖଣ୍ଡନ୍ତି ସକଳ ବିପଦ
ନିଷ୍ଠାରେ ଶ୍ରୀକୃଷ୍ଣ ଭଜନ    ତାଙ୍କର ହୁଅଇ ସ୍ୱଧର୍ମ

ଶ୍ରୀକୃଷ୍ଣ ଆରାଧନା ବିନା    ନ କରନ୍ତି ଅନ୍ୟ କାମନା
ହେ ବ୍ରହ୍ମଦର୍ଶୀ ଋଷିଗଣ    ସୂର୍ଯ୍ୟ ସମାନ ତେଜିୟାନ
ଯେ ପ୍ରଶ୍ନମାନ ଥିଲେ କରି    ମୁଁ ନିଜ ଶକ୍ତି ଅନୁସରି
ବର୍ଣ୍ଣନା କରେ ବର୍ତ୍ତମାନ    ସକଳେ ସାବଧାନ ଶୁଣ

ଯେ ପକ୍ଷୀ ଉଡ଼େ ଯେତେ ଦୂରସେ ଜାଣେ ସେତିକି ଖବର
ସେପରି ଜ୍ଞାନୀ ଭକ୍ତ ଜନ    କରନ୍ତି କୃଷ୍ଣ ଗୁଣ ଗାନ
ଦିନେ ସେ ରାଜାପରୀକ୍ଷିତ    ମୃଗୟା କରିବା ନିମିତ୍ତ
ଧନୁଶର ଧରି ହସ୍ତରେ    ପ୍ରବେଶିଲେ ଘୋରବନରେ

ମୃଗାଦି ପଶୁ ପଛେଧାଇଁ    ଅତ୍ୟନ୍ତ ଶ୍ରାନ୍ତ କ୍ଲାନ୍ତହୋଇ
ପ୍ରବଳ କ୍ଷୁଧା ତୃଷା ହେଲା    ଜଳ ବିନା କଣ୍ଠ ଶୁଖିଲା
ସେ ଜଳାଶୟ ଅନ୍ୱେଷଣେ    ମିଳିଲେ ଶମୀକ ଆଶ୍ରମେ
ଶମୀକ ମୁଦ୍ରିତ ନୟନେ    ନିଶ୍ଚଳେ ବସିଥିଲେ ଧ୍ୟାନେ

କଟୀ ଶୋଭିତ ମୃଗଚର୍ମ    ନଥିଲା ତାଙ୍କ ବାହ୍ୟଜ୍ଞାନ
ମସ୍ତକଜଟା ଇତସ୍ତତ    ବିକ୍ଷିପ୍ତ ହରିଧ୍ୟାନ ରତ
ନିରୋଧି ଇନ୍ଦ୍ରି ପ୍ରାଣମନ    ଗାଢ ସମାଧି ଯୋଗ ମଗ୍ନ
ଆସନ ବସିବା ନିମିତ୍ତ    ପାଦ୍ୟ ଅର୍ଘ୍ୟୋ ନୋହି ସତ୍କୃତ

ଶୁଭ ସ୍ୱାଗତ ସମ୍ଭାଷଣ    ନ ଶୁଣି ପାଇ ଅପମାନ
ଅତିଶୟ କ୍ରୋଧ ଜନ୍ମିଲା    ହିତାହିତ ଜ୍ଞାନ ହଜିଲା
କ୍ଷୁଧା ପିପାସାରେ ଆତୁର    ବ୍ରାହ୍ମଣ ଭକ୍ତ ନରବର
ଆଶ୍ରମୁ ବାହାରି ଆସିଲେ    ମୃତ ସର୍ପ ଧନୁ ଅଗ୍ରରେ

ଉଠାଇ ମହର୍ଷି ଗଳାରେ    ଲମ୍ବାଇ ନଗ୍ରକୁ ଫେରିଲେ
ଚିତ୍ତେ ଭାବିଲେ ପରୀକ୍ଷିତ    ଏ ମହର୍ଷି କ'ଣ ପ୍ରକୃତ
ନିମଗ୍ନ ଥିଲେ ସମାଧିରେ    କିମ୍ବା ସମାଧି ଛଳନାରେ
ମତେ କି ଅସମ୍ମାନ କଲେ    ମୁଁ ଜାଣି ନ ପାରଇ ଭଲେ

ଶମୀକ ମୁନିଙ୍କର ସୁତ    ବାଳକ ବ୍ରହ୍ମତେଜୋଦୀପ୍ତ
ଶୃଙ୍ଗ ସାଙ୍ଗ ସାଥିମେଳରେ    ଅଦୂରେ ଖେଳୁଥିବାବେଳେ
ଶୁଣି ପିତାଙ୍କ ଅପମାନ    କ୍ରୋଧରେ କହିଲେ ବଚନ
ଐଶ୍ୱର୍ଯ୍ୟ ମତେ ଏ ରାଜନ    କଲା ଏ ଅଧର୍ମ କରମ

ସେହି ରାଜା କାଙ୍କ କୁକୁର ପରି ଦାସ ହୋଇ ପ୍ରଭୁର
କରିଗଲା ଅବମାନନା ନିଷ୍ଠେ ଭାଗ୍ୟତା ବିଡ଼ମ୍ବନା
ପୃଥ୍ୱୀର କ୍ଷତ୍ରିୟ ଭୂପାଳ ବ୍ରହ୍ମାଙ୍କର ଦ୍ୱାରପାଳ
ସେ କେମନ୍ତେ ବିପ୍ର ଗୃହର ବସ୍ତୁ କରିବେ ବ୍ୟବହାର

ଦୁଷ୍ଟ ଶାସକ ଭଗବାନ କୃଷ୍ଣ ଗମନ୍ତେ ନିଜଧାମ
ବ୍ରହ୍ମଣ ମର୍ଯ୍ୟାଦା ଲଘଂନ ଘଟଇ ନାନା ଅଘଟଣ
ସେ ଅଧମକୁ ଆଜି ମୁହିଁ ଉପଯୁକ୍ତ ଶାସ୍ତିଦେଇଁ
ଦେଖ ମୋ ବଳ ପରାକ୍ରମ ହେ ମୋର ଖେଳ ସଙ୍ଗୀଗଣ

ସେ ଶୃଙ୍ଗୀ ଶମୀକ ନନ୍ଦନ କ୍ରୋଧରେ ଆରକ୍ତ ନୟନ
କୌଶିକୀ ନଦୀର ଜଳରେ ଆଚମନ କରି ସତ୍ୱରେ
ଅବ୍ୟର୍ଥ ବଜ୍ରର ସମାନ ଅଭିଶାପ କଲା ପ୍ରଦାନ
ମର୍ଯ୍ୟାଦା ଲଙ୍ଘନ କାରୀକୁ ପିତୃଦ୍ୱେଷୀ କୁଳାଙ୍ଗାରକୁ

ଆଜିଠାରୁ ସପ୍ତମ ଦିନ ତକ୍ଷକରିବ ଦଂଶନ
ସେ ଋଷି ପୁତ୍ର ଏହାପରେ ପ୍ରବେଶ କରି ଆଶ୍ରମରେ
ପିତାଗଳେ ସର୍ପ ଦେଖିଣ ଉଚ୍ଚସ୍ୱରେ କଲା କ୍ରନ୍ଦନ
ଜାତି ଅଙ୍ଗରସ ଗୋତ୍ରରେ ଶମୀକ ପୁତ୍ର କ୍ରନ୍ଦନରେ

ସମାଧି ହେବାରୁ ଭଗନ ଧୀରେ ଧୀରେ ଖୋଲେନୟନ
ଭୁଜଙ୍ଗ ଦେଖିଣ ଗଳାରେ ତାହାକୁ ଫିଙ୍ଗି ଦେଲେ ଦୂରେ
ପୁତ୍ର ଶୃଙ୍ଗକୁ ପଚାରିଲେ କାହିଁକି କାନ୍ଦୁଛୁ ବୋଇଲେ
କେଅବା ଦେଲା ଅପମାନ କହ ତୋ କ୍ରନ୍ଦନ କାରଣ

ଶୁଣି ପିତାଙ୍କର ବଚନ ସେ ଋଷି କୁମାର ତକ୍ଷଣ
ପରୀକ୍ଷିତର ଆଗମନ ତାଙ୍କୁ ଅଭିଶାପ ପ୍ରଦାନ
ସମସ୍ତ ବିଷୟ କହିଲା ପୁଣି ଅତିଦୁଃଖେ କାନ୍ଦିଲା
ପୁତ୍ରର ଅନୁଚିତ କର୍ମ ଜାଣି ଶମୀକ ତପୋଧନ

ଅତ୍ୟନ୍ତ ଦୁଃଖିତ ହୋଇଲେ ପୁତ୍ରକୁ ବୁଝାଇ କହିଲେ
ଯେ ପରୀକ୍ଷିତ ନରପତି ପୁତ୍ରସମ ପ୍ରଜା ପାଳନ
ସେ ତ ବିଷ୍ଣୁ ତୁଲ୍ୟ ସାକ୍ଷାତ ନୁହଁନ୍ତି ଅଭିଶାପ ପାତ୍ର
ସମସ୍ତ ତାଙ୍କ ପ୍ରଭାବରେ ରହନ୍ତି ସୁଖେ ନିର୍ଭୟରେ

ନିର୍ମୂଳ କରି ଦୁଷ୍ଟକୁଳ ସାଧନ୍ତି ଜଗତ ମଙ୍ଗଳ
ରେ ପୁତ୍ର ମହାପାପ କଲୁ କୁଳରେ କଳଙ୍କ ଲିପିଲୁ
କିଂପାଇଁ କଲୁ ନିନ୍ଦ୍ୟ କର୍ମ ତୋ ମତି ହେଲା କି ବିଭ୍ରମ
ଜନ ସାଧାରଣ ସହିତ ତାଙ୍କୁ ତୁଳିବା ଅନୁଚିତ

ମେଘ ଯେପରି ଆକାଶରେ ଉଡେଇଯାଏ ବାୟୁବଳେ
ତଥା ରକ୍ଷକ ଅଭାବରେ ସଂପଦ ହରିବେ ତସ୍କରେ
ଅଳ୍ପଦିନରେ ମେଷପରି ସକଳେ ଯିବେ ଯମ ପୁରୀ
ବଢ଼ିବେ ରାଜ୍ୟ ଚୋରଦଳ ସହୁଠି ପଡ଼ିବ ଚହଳ

ପ୍ରଜାଏ ପ୍ରଜା ବିନାଶିବେ ଅତି କଟୁ କଥା କହିବେ
ହରିବେ ପଶୁ ସ୍ତ୍ରୀ ଗୋଧନ ସାଧୁଙ୍କୁ ନିନ୍ଦିବେ ଦୁର୍ଜନ
ରେପୁତ୍ର ଏମାହା ପାପର ଆମେ ହିଁ ଭୋଗିବା କୁଫଳ
ଶାସ୍ତ୍ର ବିହିତ ବର୍ଣ୍ଣାଶ୍ରମ ଧର୍ମ ଲୋପ ହେବ ବହନ

ସଂପଦ ବିଷୟ ଭୋଗରେ ଜଡ଼ିତ ହେବେ ନାରୀନରେ
କୁକୁର ମର୍କଟ ସମାନ ବର୍ଣ୍ଣଶଙ୍କର ହେବେ ଜନ୍ମ
ସେ ମହାରାଜ ପରୀକ୍ଷିତ ଶ୍ରେଷ୍ଠ ଭକତ ଶୁଦ୍ଧଚିତ୍ତ
ରାଜର୍ଷି ସ୍ୱଧର୍ମ ପାଳକ ଅଶ୍ୱମେଧ କାରୀ ଗୁଣୀକ

କ୍ଷୁଧା ତୃଷା ଶ୍ରମ କଷ୍ଟରେ ଆସିଥିଲେ ଏ ଆଶ୍ରମରେ
ଅଭିଶାପ ନୁହେଁ ଉଚିତ ତୁ ପରା ଅଟୁ ଋଷି ସୁତ
ନିରପରାଧ ପରୀକ୍ଷିତ ଗୋବିନ୍ଦ ଚରଣ ଆଶ୍ରିତ
ରଜାଙ୍କୁ ଦେଇ ଅଭିଶାପ ଏ ବତ୍ସ ଅର୍ଜିଛି ଯେ ପାପ

ଅଳ୍ପ ବୁଦ୍ଧି ଏ ବାଳକର ସର୍ବାନ୍ତର୍ଯ୍ୟାମୀ ହେ ଈଶ୍ୱର
ହେ କୃଷ୍ଣ କରୁଣା ସାଗର ଅପରାଧକୁ କ୍ଷମା କର
ନିନ୍ଦା ଅବଜ୍ଞା ପ୍ରବଞ୍ଚନା ଲାଞ୍ଛନା ତାଡ଼ନା ଭର୍ତ୍ସନା
ସହିନକରେ ପ୍ରତିକାର ସର୍ବ ସମର୍ଥ ଋଷି ବର

ସର୍ବଦା ନିର୍ବିକାର ଚିତ୍ତ ଋଷିଙ୍କ ପ୍ରକୃତି ଏମନ୍ତ
ଏପରି ନିଜ ପୁତ୍ରକୃତ ଅପରାଧରେ ଅନୁତପ୍ତ
ସେ ଶ୍ରମିକ ଋଷିବର ଦୋଷକୁ ପରୀକ୍ଷିତଙ୍କର
ନକଲେ କୌଣସି ଭାବନା ସେ ଶମୀକ ମହାମନା

କୃଷ୍ଣ ଭକତ ସାଧୁଜନ ମଣେ ସୁଖ ଦୁଃଖ ସମାନ
ଏହି ଜୀବଆତ୍ମା ପ୍ରକୃତ ଅଟେ ସୁଖ ଦୁଃଖ ଅତୀତ
କହଇ ଧନେଶ୍ୱର ଦାଶ ନବୁଝି ନଭାବି ଭବିଷ୍ୟ
ସାମାନ୍ୟ କଥାରେ କୁପତ ହୋଇବ ନୁହଇ ଉଚିତ ।

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ପରୀକ୍ଷିତ ବ୍ରହ୍ମଶାପେ ନାମ ଅଷ୍ଟାଦଶୋଽଧ୍ୟାୟ ।

********

## ଏକୋନବିଂଶ ଅଧ୍ୟାୟ

### ସୂତ ଉବାଚ

କହନ୍ତି ମୁନିବର ସୂତ ଏ ଅନ୍ତେ ରାଜା ପରୀକ୍ଷିତ
ନିଜର ନିନ୍ଦିତ କରମ ଚିନ୍ତି ଦୁଃଖେ ହୋଇ ଉଦ୍‌ବିଗ୍ନ
ସେ ବ୍ରହ୍ମତେଜା ଦୋଷହୀନ ଋଷିଙ୍କୁ ମୁଁ ଅନାର୍ଯ୍ୟ ସମ
ପାପ ଅଚରଣ କରିଲି ବ୍ରାହ୍ମତେଜ ମର୍ଯ୍ୟଦା ଲଙ୍ଘିଲି

ମୁନିଙ୍କ ଅବଜ୍ଞା ପାପରେ ମୋର ମହାଦୁଃଖ ଅଛିରେ
ନିଶ୍ଚୟ ଉପସ୍ଥିତ ହେବ କେବେହେଁ ଅନ୍ୟଥା ନୋହିବ
ମୋର କୁକର୍ମ ପ୍ରାୟଶ୍ଚିତ ମହା ଦୁଃଖ ଭୋଗ ନିଶ୍ଚିତ
ତେବେ ଏପରି ପାପ କର୍ମେ ଇଛା ନହେଉ ମୋର ମନେ

ଯେ ଦୁଃଖ ଅଛି ଆସିବାର ସେ ଦୁଃଖ ଆସୁ ପାଶେ ମୋର
କିନ୍ତୁ ମୋ ଦାୟାଦଙ୍କ ପାଇଁ ନଆସୁ ଆହେ ବିଶ୍ୱ ସାଇଁ
ମୋହର ଯେଉଁ ପୁତ୍ର ପୌତ୍ର ନ ହୁଅନ୍ତୁ ଏଦୁଃଖ ଗ୍ରସ୍ତ
ଆଜି ବ୍ରାହ୍ମଣ କୋପେ ମୋର ରାଜ୍ୟ ସେନା ଧନ ଭଣ୍ଡାର

ଭସ୍ମ ହେଉ ଋଷି କୋପରେ ତାହାହେଲେ ଭବିଷ୍ୟତରେ
ତେବେ ଗୋବିପ୍ର ଦେବପ୍ରତି ନ ହେବ କେବେ ପାପାମତି
ପରୀକ୍ଷ ରାଜା ଏ ପ୍ରକାରେ ଚିନ୍ତା କରୁଥିବା ବେଳରେ
ଋଷି ପୁତ୍ର ଅଭିଶାପରେ ଆଜିଠୁ ସପ୍ତମ ଦିନରେ

ତକ୍ଷକ କରିବ ଦଂଶନ ଋଷି ବଚନ ନୁହେଁ ଆନ
ଶମୀକ ଋଷିଙ୍କ ପ୍ରେରିତ ଶିଷ୍ୟଠୁ ଶୁଣିଲେ ଏମନ୍ତ
ଭାବିଲେ ରାଜା ପରୀକ୍ଷିତ ହୋଇମୁଁ ବିଷୟ ଆସକ୍ତ
ମାନବ ଜନ୍ମ ବ୍ୟର୍ଥ କଲି ଦିନେ ଶ୍ରୀହରି ନ ଭଜିଲି

ତକ୍ଷକର ବିଷ ଅନଳ ଦହିବ ବିଷୟ ଜଞ୍ଜାଳ
ତକ୍ଷକ ନାଗର ଦଂଶନ କରିବ ମୋହିତ ସାଧନ
ଇହ ପରଲୋକ ବିଷୟ ଭୋଗ ଅନାସକ୍ତ ହୃଦୟ
ସେ ପରୀକ୍ଷ ମହାମନ ଉପେକ୍ଷି ସକଳ ବସନା

ଶ୍ରୀକୃଷ୍ଣ କମଳ ଚରଣ ସେବାରେ ସ୍ଥିରକରି ମନ
ପବିତ୍ର ଜାହ୍ନବୀ ତୀରରେ ପ୍ରାୟୋ ପବେଶନ କରିଲେ
ତୁଳସୀ ଲକ୍ଷ୍ମୀ ଯାଚରଣ ସେବା କରନ୍ତି ପ୍ରତିକ୍ଷଣ
ସେ କୃଷ୍ଣ ପଦ ସ୍ପର୍ଶ କରି ଅତି ପବିତ୍ର ଯାର ବାରି

ଇନ୍ଦ୍ରାଦି ଲୋକ ପାଳଗଣ ସହିତ ଚଉଦ ଭୁବନ
ପାନ କରି ଯା ପୁତନୀର ପବିତ୍ର ବାହ୍ୟ ଅଭ୍ୟନ୍ତର
ନିକଟେ ଘଟିବ ମରଣ ସ୍ଥିର ନିଶ୍ଚୟ କରିମନ
ସେ ଗଙ୍ଗାତୀରେ ବାସ ପାଇଁ କେଅବା ଇଛା ନ କରଇ

ପାଣ୍ଡବ ବଂଶ ଅବତଂସ ସେ ପରୀକ୍ଷିତ ନରଈଶ
ପ୍ରାୟୋଗ ବେଶନ ନିତ୍ୟାନ୍ତ ଉଚିତ ସ୍ଥିର କରି ଚିତ୍ତ
ନିରୋଧି ଇନ୍ଦ୍ରିୟ ବୃତ୍ତି ବରଜି ବିଷୟ ଆସକ୍ତି
ଏକାନ୍ତ ନିଷ୍ଠା ଭାବନାରେ ସୁରତରଙ୍ଗିଣୀ ତଟରେ

ଶ୍ରୀକୃଷ୍ଣଙ୍କ ପଦ୍ମ ଚରଣ ଧ୍ୟାନ ରେ ରହିଲେ ନିମଗ୍ନ
ଯେଉଁ ମୁନିଗଣ ଚରଣ ସ୍ପର୍ଶେ ପବିତ୍ର ତୀର୍ଥ ସ୍ଥାନ
ସେହି ଗୋବିନ୍ଦ ଭକ୍ତ ସନ୍ଥ ନିଜ ନିଜ ଶିଷ୍ୟ ସହିତ
ପରୀକ୍ଷ ନୃପ ଯେ ସ୍ଥାନରେ ଥିଲେ ପ୍ରାୟୋବେଶନରେ

ସେହି ପବିତ୍ର ଗଙ୍ଗତୀରେ ପ୍ରବେଶ କଲେ ଧିରେ ଧିରେ
ଅତ୍ରି ବଶୀଷ୍ଠ ଶରଦ୍ୱାନ ଅରିଷ୍ଟନେମୀ ଅଷ୍ଟିଷେଣ
ଭୃଗୁ ଅଙ୍ଗିରା ପର୍ଶୁରାମ ବିଶ୍ୱାମିତ୍ର ଉତଥ୍ୟ ଗୌତମ
ଦେବଳ ପିପ୍ପଳାଦ ବ୍ୟାସ ମୈତ୍ରେୟ ଅଗସ୍ତ୍ୟ ଶବାକ୍ଷ

ଇନ୍ଦ୍ର ପ୍ରମଦ ମେଧାତିଥି   ସୁବାହୁ ଗବାକ୍ଷ ଯେ ଅତ୍ରି
ନାରଦ ଦେବ ଋଷି ଗଣ   ମହର୍ଷି ରାଜର୍ଷି ଅରୁଣ
ସେଠାରେ ହେଲେ ଉପସ୍ଥିତ   ତହୁଁ ପରୀକ୍ଷ ନରନାଥ
ଯଥା ବିଧି ପାଦ୍ୟ ଅର୍ଘ୍ୟରେ   ସାଷ୍ଟାଙ୍ଗ ଭୂମିଷ୍ଠ ହୋଇଲେ

ଶିର ଲଗାଇ ଚରଣରେ   ଅର୍ଚ୍ଚନା ବନ୍ଦନା କରିଲେ
ମୁନିଏ ଆସନ ଗ୍ରହଣ   କରନ୍ତେ ପରୀକ୍ଷ ରାଜନ
ସମୀପକୁ ଯାଇ ସତ୍ୱର   ସାଷ୍ଟାଙ୍ଗେ ନମି ବାରମ୍ବାର
କର ଯୋଡ଼ି ଶୁଦ୍ଧ ଚିତ୍ତରେ   ସର୍ବ ବୃତ୍ତାନ୍ତ ଜଣାଇଲେ

ପୁଣି ସେ ବିନୟ ଭକ୍ତିରେ   ଋଷିଙ୍କୁ ଏମନ୍ତ କହିଲେ
ଜୀବ ହିଂସା କର୍ମ ନିରତ   ଏହି ରାଜବଂଶ ଦୂଷିତ
ବ୍ରାହ୍ମଣ ପାଦ ଧୋତି ପାଇଁ   ନିତ୍ୟାନ୍ତ ଅଯୋଗ୍ୟ ଅଟଇ
ମାତ୍ର ଆପଣଙ୍କ ଦୟାରେ   ସର୍ବରାଜ କୁଳ ମଧ୍ୟରେ

ଏହି ପାଣ୍ଡବ ରାଜକୁଳ   ଧରାରେ କୃତର୍ଥ କେବଳ
ସଂସାର ଜଞ୍ଜାଳ ଆସକ୍ତ   କଳି ମୁହିଁ କର୍ମ ନିନ୍ଦିତ
ବ୍ରାହ୍ମଣ ପାଦ ଧୌତି ପାଇଁ   ନିତ୍ୟନ୍ତ ଅଯୋଗ୍ୟ ଅଟଇ
ମାତ୍ର ଆପଣଙ୍କ ଦୟାରେ   ସର୍ବରାଜ କୁଳ ମଧରେ

ଏହି ପାଣ୍ଡବ ରାଜକୁଳ'   ଧରାରେ କୃତାର୍ଥ କେବଳ
ସଂସାର ଜଞ୍ଜାଳ ଆସକ୍ତ   କଳି କୁହିଁ କର୍ମ ନିନ୍ଦିତ
ବ୍ରାହ୍ମଣ ମର୍ଯ୍ୟଦା ଲଙ୍ଘିଲି   ମହା ପାତକ ଅରଜିଲି
ଯେଉଁ ଶ୍ରୀକୃଷ୍ଣ ଚରଣରେ   ଅନନ୍ୟ ପ୍ରେମ ଭକତିରେ

ସଂସାର ଭୟ ହୁଏ ଦୂର   ସେ ଭଗବାନ ସର୍ବେଶ୍ୱର
ମୋ ଚିତ୍ତ ବିଷୟ ଆସକ୍ତ   କଳି ମୁହିଁ କର୍ମ ନିନ୍ଦିତ
ନିଜେ ବ୍ରାହ୍ମଣ ଶାପରୂପେ   ସୁଦୟା କରିଛନ୍ତି ମତେ
ବ୍ରାହ୍ମଣ ଶାପେ ବର୍ତ୍ତମାନ   ଧନ୍ୟ ହୋଇଲା ମୋ ଜୀବନ

ଶ୍ରୀ ବାସୁଦେବଙ୍କ ଦୟରେ   ଚିତ୍ତ ନିବେଶି ଶ୍ରୀପୟରେ
ରାଜର୍ଷି ବ୍ରହ୍ମର୍ଷି ସମସ୍ତ   ବିଶ୍ୱ ପାବିନୀ ଗଙ୍ଗାମାତ
ମତେ ଶରଣାଗତ ଜାଣ   କର ହରି ନାମ କୀର୍ତ୍ତନ
ବ୍ରହ୍ମ ଅଭିଶାପେ ପ୍ରେରିତ   ତକ୍ଷକ ହୋଇ ଉପସ୍ଥିତ

ମୋ ଅଙ୍ଗେ ଦଂଶନ କରିବ   ଗରଳ ବାଧାନ ଲାଗିବ
ଋଷିମାନଙ୍କୁ ନମସ୍କାର   ଏତିକି ପ୍ରାର୍ଥନା ଦୀନର
ଯେକୌଣସି ଯୋନିରେ ଜନ୍ମ   ହେଲେବି କୃଷ୍ଣେ ରହୁପ୍ରେମ
ମିଳୁ କୃଷ୍ଣ ଭକ୍ତ ସଙ୍ଗତି   ସର୍ବଜୀବରେ ରହୁ ମୈତ୍ରି

ଧୀର ଉଦାର ପରୀକ୍ଷିତ   ଚିତ୍ତେ ସ୍ଥିର କରି ଏମନ୍ତ
ସୁପୁତ୍ର ଜନମେଜୟର   ଉପରେ ଦେଇ ରାଜ୍ୟଭାର
ଗଙ୍ଗାର ଉତ୍ତର ତୀରରେ   ପବିତ୍ର କୁଶ ଆସନରେ
ଉତ୍ତର ଅଭିମୁଖୀ ହୋଇ   ବସିଲେ କୃଷ୍ଣ ପଦଧ୍ୟାୟି

ପ୍ରାୟୋଗ ବେଶନ କାଳରେ   ଦେବତା ଗଣ ସ୍ୱର୍ଗପୁରେ
କରିଲେ ଦୁନ୍ଦୁଭି ବାଦନ   ଆନନ୍ଦେ ବର୍ଷିଲେ କୁସୁମ
ଗଙ୍ଗାତୀରେ ଉପସ୍ଥିତ   ଋଷିଗଣ ଦୟାର୍ଦ୍ର ଚିତ୍ତ
ପରୀକ୍ଷିତଙ୍କ ଅନଶନ   ବ୍ରତ କଲେ ଅନୁମୋଦନ

ଶ୍ରୀକୃଷ୍ଣ କୃପା ଲାଭକରି   ମନମୋହନ ରୂପଧାରୀ
ପରୀକ୍ଷିତଙ୍କୁ ଋଷିଗଣ   ପ୍ରଶଂସି କହିଲେ ବଚନ
ପଣ୍ଡୁବଂଶର ରାଜାମାନେ   ଚିତ୍ତରଖି କୃଷ୍ଣ ଚରଣେ
କୋଟି କୋଟି ନୃପ ବନ୍ଦିତ   ସିଂହାସନଙ୍କୁ ତୃଣବତ

ତେଜି ଥିଲେ ନିର୍ବିକାରରେ   ତୁମେ ଜନ୍ମିଛ ସେ ବଂଶରେ
ସ୍ୱରାଜ୍ୟ ତେଜି ଅନଶନ   ନୁହେଁ ଆଶ୍ଚର୍ଯ୍ୟ ହେ ରାଜନ
ଭକତ ଗଣ ଶିରୋମଣି   ଆହେ ପରୀକ୍ଷ ମହାଜ୍ଞାନୀ
ବୈକୁଣ୍ଠ ଗମନ ପର୍ଯ୍ୟନ୍ତ   ଆମେ ରହିବୁ ଉପସ୍ଥିତ

ନିଷ୍କପଟ ଭାବ ଅର୍ଥ ପୂର୍ଣ୍ଣ   ମଧୁର ଅମୃତ ବଚନ
ଶୁଣି ପରୀକ୍ଷ ମହାମନ   କରି ଋଷି ପାଦ ବନ୍ଦନା
ଶ୍ରୀକୃଷ୍ଣ ଲୀଳା ଶ୍ରବଣ   ଇଚ୍ଛାରେ କଲେ ନିବେଦନ
ସତ୍ୟ ଯୁଗର ମୂର୍ତ୍ତିମାନ   ନିଗମ ସ୍ୱରୂପ ଆପଣ

ସଦୟ ହୋଇ ଏଦୀନରେ   ଉପସ୍ଥିତଛନ୍ତି ଏଠାରେ
ଦୀନ ଜନେ ଦୟା ପ୍ରଦାନ   ଅଟଇ ସିନା ସାଧୁ ଧର୍ମ
ଇହ ବା ପରଲୋକେ ଅନ୍ୟ   ନାହିଁ କୌଣସି କର୍ମ ତୁମ
ଏଣୁ ମୁଁ ଅତି ବିଶ୍ୱାସରେ   ପୁଛେ କର୍ତ୍ତବ୍ୟ ବିଷୟରେ

ଦୟାରେ କରି ସୁବିଚାର  ମୃତ୍ୟୁ ପଥ ଯାତ୍ରୀ ଜୀବରେ
ପ୍ରକୃତ କରଣୀୟ ଯାହା  ଏପରି ଆଦେଶନ୍ତୁ ତାହା
ନିତ୍ୟ ଆନନ୍ଦ ପରିପୂର୍ଣ୍ଣ  ତେଜସ୍ୱୀ ପ୍ରଶାନ୍ତ ବଦନ
ସ୍ୱେଚ୍ଛାରେ ପୃଥିବୀ ଭ୍ରମଣ  କରି କରି ବ୍ୟାସ ନନ୍ଦନ

ଶୁକ ପ୍ରବେଶ ଗଙ୍ଗତୀରେ  ତାଙ୍କୁ ପାଗଳ ମନେକରି
ଅବଧୂତ ସ୍ୱରୂପଧାରୀ  ତାଙ୍କୁ ପାଗଳ ମନେକରି
ବାଳକେ ହୋଇ କୁତୁହଳୀ  ଆନନ୍ଦେ ଦେଇ କରତାଳ
ଗୋଡ଼ାଇ ଗୋଡ଼ାଇ ପଛରେ  ପ୍ରବେଶ ହେଲେ ଗଙ୍ଗାତୀରେ

ଆୟାତ ସୁନ୍ଦର ନୟନ  ସୁକୁମାର କର ଚରଣ
କମ୍ବୁଗ୍ରୀବା ନାଭୀ ଗଭୀର  ଜାନୁଲମ୍ବୀ ଭୁଜ ଯୁଗଳ
ନବଯୌବନ ଅଙ୍ଗକାନ୍ତି  ଚିତ୍ତରନବ ଯୁବତୀ
ଉନ୍ନତ ବକ୍ଷ ସୁବିଶାଳ  ଅତି ମନୋହର କପାଳ

କର୍ଣ୍ଣଦ୍ୱୟ ସମ ଲଳିତ  ଅଙ୍ଗ କୁସୁମ ସୁବାସିତ
କୁଞ୍ଚିତ ଭ୍ରୂଲତା ଶୋଭଇ  ବଦନ ଚନ୍ଦ୍ରମା ନିନ୍ଦଇ
ଉତ୍ତୁଙ୍ଗ ନାସିକା ସୁଢଳ  ବିକ୍ଷିପ୍ତ ସୁନୀଳ କୁନ୍ତଳ
ଶ୍ରୀ କୃଷ୍ଣସମ ଶ୍ୟାମକାନ୍ତି  ଗୁପ୍ତ ତେଜା ରମ୍ୟ ମୁରତି

ବୟସ ଷୋଡ଼ଶ ବରଷ  ଦିଗମ୍ବର ଯୁବା ପୁରୁଷ
ଶୁକଙ୍କୁ କରି ଦରଶନ  ସେହି ପରୀକ୍ଷିତ ରାଜନ
ପୂଜ୍ୟ ଦ୍ରବ୍ୟମାନ ଶିରରେ  ବହି ଆଣି ଯଥା ବିଧିରେ
ବିନୟ ଭକ୍ତିରେ ପୂଜିଲେ  ପାଦେ ସାଷ୍ଟାଙ୍ଗ ପ୍ରଣମିଲେ

ବାଳକମାନେ ଆନନ୍ଦରେ  ବାହୁଡ଼ିଲେ ନଜ ଗୃହରେ
ଦେବର୍ଷି ରାଜର୍ଷି ବ୍ରହ୍ମର୍ଷି  ବେଷ୍ଟିତ ସେ ଶୁକମହର୍ଷି
ଗ୍ରହତାରାଗଣ ମଧ୍ୟରେ  ଚନ୍ଦ୍ର ସମାନ ବିରାଜିଲେ
ଶ୍ରୀଶୁକଦେବ ଆସନରେ  ବସନ୍ତେ ପ୍ରଶାନ୍ତ ଚିତ୍ତରେ

ସେ ପରୀକ୍ଷିତ ମହାମତି  କରିଲେ ଭୂମିଷ୍ଠ ପ୍ରଣତି
ପୁନଃ ପୁନଃ ପାଦେ ନମିଲେ  ଭକ୍ତିରେ ମଧୁରେ ପୁଛିଲେ
ବ୍ରହ୍ମଣ୍ୟ ମୁରତି ଆପଣ  ସକଳ ମଙ୍ଗଳ ନିଧନ
କୃପାରେ ଅତିଥି ରୂପରେ  ଆସିଛି ମୋର ସମୀପରେ

ମୁଁ ଜଣେ କ୍ଷତ୍ରିୟ ଅଧମ  ଚଳନ୍ତି ମହାତୀର୍ଥ ସମ
ଆପଣଙ୍କ ପଦବନ୍ଦନେ  ପବିତ୍ର ହେଲି ଆଜି ଦିନେ
ସ୍ମରଣ ମାତ୍ରେ ଯାରନାମ  ଗୃହସ୍ଥୀ ଗାର୍ହସ୍ଥ୍ୟ ଜୀବନ
ସାର୍ଥକ ହୁଅଇ ସଂସାରେ  ସ୍ୱୟଂ ସେ ଆଜି ମୋ ପାଖରେ

ପାଦରେଣୁ ସ୍ପର୍ଶେ ଯାହାର  ପବିତ୍ର ହୁଏ ତିନି ପୁର
ଯାପାଦ କଲେ ପ୍ରକ୍ଷାଳନ  ମିଳଇ ବୈକୁଣ୍ଠ ଭୁବନ
ସେ ପରି ସାଧୁ ସଙ୍ଗତରେ  ଯେ ପ୍ରାଣୀ କ୍ଷଣେ ବାସକରେ
ପରମ ପବିତ୍ରତା ମିଳେ  ଏଥି ସଂଶୟ ନାହିଁ ତିଳେ

ଭଗବାନଙ୍କ ସାନ୍ନିଧ୍ୟରେ  ଅସୁରମାରେ ଏଧରାରେ
ଲଭନ୍ତି ବିନାଶ ଯେପରି  ତବ ସାନ୍ନଧ୍ୟରେ ସେପରି
ମନୁଷ୍ୟ ମାନଙ୍କର ପାପ  କ୍ଷଣକେ ହୋଇ ଯାଏ ଲୋପ
ପାଣ୍ଡବ ପ୍ରିୟ ଭଗବାନ  ଶ୍ରୀକୃଷ୍ଣ ପିଉସୀ ନନ୍ଦନ

ପାଣ୍ଡବ ପ୍ରୀତି ବୃଦ୍ଧିପାଇଁ  ମୋଠାରେ ଅତିଦୟା ବହି
ପଠାଇଛନ୍ତି ଆପଣଙ୍କୁ  ନିଶ୍ଚୟ ମୋର ସମୀପକୁ
ଆପଣ ପୁରୁଷ ମହତ  ଅବ୍ୟକ୍ତ ଗତି ଶୁଦ୍ଧ ଚିତ୍ତ
ମୋପରି ମୃତ୍ୟୁ ପଥଯାତ୍ରୀ  ବ୍ରାହ୍ମଣ ଅଭିଶପ୍ତ ବ୍ୟକ୍ତି

ଶ୍ରୀକୃଷ୍ଣଙ୍କ ବିନା ଦୟାରେ  ଆସିନପାରେ ମୋ ପାଖରେ
ସ୍ୱେଚ୍ଛାରେ ହୋଇ ଉପସ୍ଥିତ  କରିଥାନ୍ତେ କିବା କୃତାର୍ଥ
ସର୍ବାର୍ଥ ସିଦ୍ଧ ଯୋଗୀଗଣ  ପରମ ଗୁରୁହିଁ ଆପଣ
ମରଣ ଶୀଳ ସଂସାରେ  ମୃତ୍ୟପଥ ଯାତ୍ରୀ ପକ୍ଷରେ

ଉଚିତ ଅଟେ କେଉଁ କର୍ମ ପୁଛଇ ଏଦୀନ ଅଧମ
ଯାକଲେ ସ୍ମରର ଭଜନ ଜପ ଧ୍ୟାନ ସଂକୀର୍ତ୍ତନ
କୃଷ୍ଣ ପ୍ରାପ୍ତିରେ ବାଧା ଜନ୍ମ ନ ହୁଏ କହନ୍ତୁ ଆପଣ
ଆପଣ କୌଣସି ଗୃହୀର ଗୃହଦ୍ୱାରେ ଗୋଦୋହନର

ଅଧିକକାଳ ରହିବାର ଦେଖାଯାଏ ନି ଆଜି ମୋର
ନିଶ୍ଚୟ ପରମ ସୌଭାଗ୍ୟ ମିଳିଛି ତୁମର ସାନ୍ନିଧ୍ୟ
କହିଲେ ମୁନିବର ସୂତ ସେ ମହାରଜ ପରୀକ୍ଷିତ
ମଧୁର ବାକ୍ୟେ ସମ୍ବୋଧନ କରି ପଚାରିବାରୁ ପ୍ରଶ୍ନ

ଆନନ୍ଦେ ଶୁକ ମୁନିବର ଆରମ୍ଭିଲେ ପ୍ରଶ୍ନ ଉତ୍ତର
କହଇ ଦାଶ ଧନେଶ୍ୱର ଶୁକ ପରୀକ୍ଷ ସମାଚାର
ମଧୁର ଭାଗବତ ବାଣୀ ଶୁଣି ସଂସାରୁ ତର ପ୍ରାଣୀ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ନାମ ଏକୋନବିଂଶୋଽଧ୍ୟାୟ ।

*******

# ଦ୍ୱିତୀୟ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଶୁକ କହନ୍ତି ଆନନ୍ଦରେ   ହେ ପରୀକ୍ଷିତ ଶୁଣଧୀରେ
ହେ ମହାରାଜ ପ୍ରଶ୍ନ ତୁମ   ଲୋକ ହିତକର ଉତ୍ତମ
ମାନବ ପକ୍ଷେ ଯାହା କିଛି   ଜାଣିବା ସୁମରିବା ଅଛି ।
ଏ ପ୍ରଶ୍ନ ତା ମଧ୍ୟେ ପ୍ରଧାନ   ଅଟେ ସର୍ବଦା ରଖ ଧ୍ୟାନ

ଜିଜ୍ଞାସୁ ମହାତ୍ମାଗଣର   ଏ ପ୍ରଶ୍ନରେ ଅଛି ଆଦର
ହେ ରାଜେନ୍ଦ୍ର ସଦା ଗୃହସ୍ଥ   ଗୃହ କର୍ମରେ ରହି ବ୍ୟସ୍ତ
ବିଷୟ ଭୋଗେ ମଜ୍ଜିରହି   ଆତ୍ମତତ୍ତ୍ୱକୁ ନ ଜାଣଇ
ଜାଣିବା ଶୁଣିବା ନିମିତ୍ତ   ରହିଛି ବିଷୟ ବହୁତ

ରାତିରେ ନିଦ୍ରା ମଇଥୁନ   ଦିବସେ ଧନ ଉପାର୍ଜନ
ନିଜର କୁଟୁମ୍ବ ପୋଷଇ   ଆୟୁ ବୃଥା କ୍ଷୟ କରଇ
ଧନ ସଂପଦ ଦାରା ଦାସ   ଏ ସବୁ ବିଜୁଳି ପ୍ରକାଶ
ନେତ୍ରେ ତାଙ୍କ ମୃତ୍ୟୁ ଦେଖଇ   ପାଗଳ ପରି ନ ବୁଝଇ

ମଜ୍ଜଇ ବିଷୟ ଭୋଗରେ   ନିଜ ମରଣ ନ ସୁମରେ
ଆହେ ଭରତ ବଂଶଧର   ଅଭୟ ଇଛୁଥିବା ନର
ସଦା ସର୍ବାତ୍ମା ସର୍ବେଶ୍ୱର   ଭଗବାନ ଶ୍ରୀ ହରିଙ୍କର
ଲୀଳା ଶ୍ରବଣ ସୁମରଣ   କୀର୍ତ୍ତନ ଧ୍ୟାନ ପ୍ରୟୋଜନ

ନର ଜନ୍ମର ଏକମାତ୍ର   ଅଟଇ ଲାଭ ପରମାର୍ଥ
ଭକ୍ତିରେ ସ୍ୱଧର୍ମ ପାଳନ   ଅଷ୍ଟାଙ୍ଗ ଯୋଗର ସାଧନ
ପୁଣି ସାଙ୍ଖ୍ୟ ଯୋଗନିଷ୍ଠାରେ   ସମ୍ଭବ ହୋଇ ଏ ନ ପାରେ
ବିଧି ନିଷେଧରୁ ଅତୀତ   ସଂସାର ଜଞ୍ଜାଳ ନିବୃତ୍ତ

ହେଲେ ବି ମଧ୍ୟ ଯୋଗୀଗଣ   ଶ୍ରୀ ଗୋବିନ୍ଦ ଲୀଳା ଶ୍ରବଣ
ସ୍ମରଣ କୀର୍ତ୍ତନ କରନ୍ତି   ପରମ ଆନନ୍ଦ ଲଭନ୍ତି
ସୁ ବର୍ତ୍ତମାନ ଯେ ପୁରାଣ   ବିଷୟ କରୁଛି ବର୍ଣ୍ଣନ
ତାହା ପରଂବ୍ରହ୍ମ ସମାନ   ଭାଗବତ ମହାପୁରାଣ

ଦ୍ୱାପର ଯୁଗର ଶେଷରେ   ମୁଁ ବଦରିକା ଆଶ୍ରମରେ
ପିତା ପରାଶର ନନ୍ଦନ   ବ୍ୟାସ ଠାରୁ କଲି ଶ୍ରବଣ
ହେ ମହାରାଜ ପରୀକ୍ଷିତ   ମୁଁ ନିର୍ଗୁଣ ବ୍ରହ୍ମ ନିରତ
ହୋଇ ମଧ ଏ ପୁରାଣର   ଶ୍ରୀକୃଷ୍ଣ ଅମୃତ ଲୀଳାର

ମାଧୁର୍ଯ୍ୟେ ହୋଇ ଆକର୍ଷିତ   ପଠନେ ନିବେଶିଲି ଚିତ୍ତ
ହେ ମହାତ୍ମା ପରୀକ୍ଷିତ   ଶ୍ରୀକୃଷ୍ଣ ପରମ ଭକତ
ଭାଗବତ ମହାପୁରାଣ   ମୋ ଠାରୁ କରନ୍ତୁ ଶ୍ରବଣ
ଶ୍ରଦ୍ଧା ଯା'ର ଏହି ଶାସ୍ତ୍ରରେ   ସେ ଶ୍ରଦ୍ଧାଳୁ ଭକ୍ତ ଚିତ୍ତରେ

ଶ୍ରୀକୃଷ୍ଣ ଚରଣେ ନିଶ୍ଚିତ   ଅନନ୍ୟ ଭକ୍ତି ହୁଏ ଜାତ
ଯେ ଜ୍ଞାନୀ ମୁକତି ଇଛଇ   ଯେ କର୍ମଯୋଗ ଆଚରଇ
ଶ୍ରୀ ହରିଙ୍କ ନାମ କୀର୍ତ୍ତନ   କରେ ଅଭୟ ଫଳଦାନ
ଏ ଶାସ୍ତ୍ରେ ହୋଇଛି ବର୍ଣ୍ଣିତ   ହେ ନୃପ ମହା ଭାଗବତ

ମନୁଷ୍ୟ ବିଷୟ ଭୋଗରେ   ବହୁ ବର୍ଷ କାଟେ ବୃଥାରେ
ଏଥି କିଛି ଲାଭ ନଥାଏ   କେବଳ ଆୟୁ କ୍ଷୟ ହୁଏ
ଆତ୍ମାର ମଙ୍ଗଳ ନିମିତ୍ତ   କଲେ ସାଧନା କ୍ଷଣ ମାତ୍ର
ମାନବ ଜନ୍ମ ହୁଏ ଧନ୍ୟ   ମିଳଇ ଗୋବିନ୍ଦ ଚରଣ

ପୂର୍ବେ ଖଟ୍ୱାଙ୍ଗ ନରମଣି   ଆୟୁ ମୁହୂର୍ତ୍ତ ମାତ୍ର ଜାଣି
ବିଷୟ ସୁଖ ତ୍ୟାଗକଲେ   ମୁହୂର୍ତ୍ତ ମାତ୍ର ସମୟରେ
ଶ୍ରୀ ଗୋବିନ୍ଦଙ୍କ ଅଭୟ   ଚରଣେ ଲଭିଲେ ଆଶ୍ରୟ
ହେ କୁରୁସୁତ ବର୍ତ୍ତମାନ   ଆୟୁଷ ଅଛି ସାତଦିନ

ପାରଲୌକିକ କର୍ମମାନ   ଏ ମଧ୍ୟେ କର ସମ୍ପାଦନ
ହେବ ଆତ୍ମାର ସୁମଙ୍ଗଳ   ନର ଜନ୍ମ ହେବ ସଫଳ
ମରଣ କାଳେ ଭୀତତ୍ରସ୍ତ   କେବେହେଁ ନୋହିବ ଉଚିତ
ଦୈହିକ ବିଷୟ ପିପାସା   ଗୃହ ଦାରା ସୁତ ଲାଳସା

ବୈରାଗ୍ୟ ଖଡ୍ଗରେ ଛେଦନ   ସ୍ଥିର ନିଶ୍ଚଳ କରି ମନ
ଗୃହ ମଧ୍ୟୁ ଯାଇ ବାହାରି   ପବିତ୍ର ତୀର୍ଥେ ସ୍ନାନକରି
ବସି ଚିତ୍ତ କରି ସଂଯତ   ପ୍ରଣବ ଜପିବା ଉଚିତ
ପ୍ରଣବ ଜପି ଅବିରତ   ପ୍ରାଣାୟାମେ ହେଲେଅଭ୍ୟସ୍ତ

ପ୍ରଣବେ ମନ ବଶୀଭୂତ ହେବ ପ୍ରାଣବାୟୁ ସହିତ
ବୁଦ୍ଧି ସାହାଯ୍ୟରେ ମନକୁ ମନ ଦ୍ୱାରା ଇନ୍ଦ୍ରି ଗଣକୁ
କରାଇ ବିଷୟ ନିବୃତ୍ତ କର୍ମ ବାସନାରେ ବିକ୍ଷିପ୍ତ
ମନ ବୁଦ୍ଧି ଏକ ସଙ୍ଗରେ ଭଗବାନଙ୍କ ସ୍ୱରୂପରେ

କରିବା ସର୍ବଦା ଧାରଣା ହୋଇଣ ତଦ୍‌ଗତ ମନା
ଏ ଅନ୍ତେ ଧ୍ୟାନ ପରାୟଣ ଈଶ୍ୱରଙ୍କ କର ଚରଣ
ପ୍ରତି ଅବୟବ ଚିନ୍ତିବ ପୂର୍ଣ୍ଣ ମୂର୍ତ୍ତିକୁ ଧ୍ୟାୟୁଥିବ
ଏଥିରେ ଧାରଣା ଓ ଧ୍ୟାନ ଉଭୟ ହୋଇବ ସାଧନ

ଆଶ୍ରୟ ବିଶେଷରେ ମନ ସ୍ଥିରତା ଧାରଣା ତା ନାମ
ଅବୟବେ ଦୃତ ଚିନ୍ତନ କରିବା ଅଟଇଟି ଧ୍ୟାନ
ଚିତ୍ତକୁ ବିଷୟ ନିବୃତ୍ତ କରି ହୋଇବ ସମାଧିସ୍ଥ
ବିଷୟ ନଚିନ୍ତିବ ଅନ୍ୟ ଏପରି ଯେଉଁଠାରେ ମନ

ତେଜି ବାହ୍ୟଚିନ୍ତା ସମ୍ପୂର୍ଣ୍ଣ ପ୍ରଶାନ୍ତି ଲଭେ ତାର ନାମ
ତାହା ପରମ ବିଷ୍ଣୁ ଧ୍ୟାନ ହେ ନୃପ ସାବଧାନେ ଶୁଣ
ମନ ଚଞ୍ଚଳ ତମୋ ଗୁଣେ ବିମୂଢ଼ ହୁଏ ରଜୋଗୁଣେ
ଧାରଣ ଦ୍ୱାରା ଯୋଗୀଗଣ ନିରୋଧ କରିଥାନ୍ତି ମନ

ଧାରଣା ହିଁ ତମୋ ରଜର ମାଳିନ୍ୟ କରିଥାଏ ଦୂର
ଧାରଣା ବଳେ ସ୍ଥିର ମନ ପରମ ଆନନ୍ଦ ନିଧାନ
ହରିଙ୍କର ଶ୍ରୀ ମୂର୍ତ୍ତିର ଦର୍ଶନ ମିଳିଲେ ସତ୍ତ୍ୱର
ଭକ୍ତି ଯୋଗ ସିଦ୍ଧ ହୁଅଇ ଭକ୍ତିରେ କୃଷ୍ଣବଶ ହୋଇ

ପୁଚ୍ଛିଲେ ନୃପ ପରୀକ୍ଷିତ ଧାରଣା ସ୍ୱରୂପ କେମନ୍ତ
ଧାରଣା ଯୋଗେ କି ପ୍ରକାର ମନ ମାଳିନ୍ୟ ହୁଏ ଦୂର
ଦୟା ବହି ତାହା ଆପଣ ମୋ ଆଗେ କରନ୍ତୁ ବର୍ଣ୍ଣନ
କହିଲେ ଶୁକ ମହାମୁନି ଶୁଣ ପରୀକ୍ଷ ନରମଣି

ବସିବ ସୁଖ ଆସନରେ ଶ୍ୱାସ ସ୍ଥିର ପ୍ରାଣାୟାମରେ
ଇନ୍ଦ୍ରିୟଙ୍କୁ କରି ସଂଯମ ସଙ୍ଗ ରହିତ ସ୍ଥିର ମନ
ଈଶ୍ୱରଙ୍କ ସ୍ଥୂଳ ରୂପରେ ସ୍ଥାପିବ ମନ ପ୍ରଥମରେ
ସ୍ଥୂଳ ବସ୍ତୁରୁ ସ୍ଥୂଳତର ବିରାଟ ମୂର୍ତ୍ତି ଈଶ୍ୱରର

ଭବିଷ୍ୟ ବର୍ତ୍ତମାନ ଭୂତ ବସ୍ତୁ ମଧ୍ୟେ ଯେ ପ୍ରକାଶିତ
ତାହା ଈଶ୍ୱରଙ୍କର ଦେହ ମନେ ରଖ ହେ ନରରାୟ
ବିରାଟ ଦେହ ପରିମାଣ ପଞ୍ଚାଶତ କୋଟି ଯୋଜନ
ଏ ଅଟେ ବ୍ରହ୍ମାଣ୍ଡ ସ୍ୱରୂପ ତାହା ଯେ କ୍ଷିତି ମହତତ୍ତ୍ୱ

ଆକାଶ କ୍ଷିତି ତେଜ ଜଳ ବାତମହତ ଅହଙ୍କାର ତତ୍ତ୍ୱ
ସପ୍ତା ବରଣ ଆବରଇ ଧାରଣା ବସ୍ତୁ ଏ ନୁହଁଇ
ନିୟନ୍ତା ସକଳ ଜୀବର ସର୍ବାନ୍ତର୍ଯ୍ୟାମୀ ସର୍ବେଶ୍ୱର
ସେ ଭଗବାନ ହିଁ କେବଳ ଅଟଇ ଧାରଣାର ସ୍ଥଳ

ବିରାଟ୍ ପୁରୁଷ ପାଦମୂଳ ଅଟଇ ଯେ ପୁର ପାତାଳ
ଅଗ୍ର ପୃଷ୍ଠ ଭାଗ ପାଦର ରସାତଳ ଗୁଳ୍ଫ ପାତାଳ
ଦୁଇ ଘଜନ ତଳାତଳ କହିଥାନ୍ତି ଭକ୍ତ ସକଳ
ବିଶ୍ୱ ମୂର୍ତ୍ତି ବିରାଟ୍ ବିତଳ ଜାନୁ ଯୁଗଳ ଯେ ସୁତଳ

ଉରୁ ଯେ ଅତଳ ବିତଳ ଯଘନନ ଅଟେ ମହୀତଳ
ଭୂବ ଲୋକନାଭି ଅଟଇ ଆହେ ପରୀକ୍ଷ ବରସାଇଁ
ଜ୍ୟୋତି ମଣ୍ଡଳ ସୁରପୁର ତାଙ୍କ ବିଶାଳ ବକ୍ଷ ସ୍ଥଳ
ମହର୍ଲୋକ ଗ୍ରୀବା ତାଙ୍କର ଜନ ଲୋକ ମୁଖ ମଣ୍ଡଳ

ଲଲାଟ ଅଟେ ତପଲୋକ ସେ ସହସ୍ରା ଶୀର୍ଷା ପୁରୁଷଙ୍କ
ମସ୍ତକ ଅଟେ ସତ୍ୟଲୋକ ହେ ପାଣ୍ଡବ କୁଳ ତିଳକ
ଇନ୍ଦ୍ରାଦି ଦେବତା ସକଳ ବାହୁ ବିରାଟ ପୁରୁଷର
ଦିଗମାନ କର୍ଣ୍ଣ ଜିବର ଶବଦ କର୍ଣ୍ଣ ଅଟେ ତାର

ନାସିକା ଅଶ୍ୱିନୀ କୁମାର ଗନ୍ଧ ଘ୍ରାଣଶକ୍ତି ତାଙ୍କର
ପ୍ରଦୀପ୍ତ ଅନଳ ତାଙ୍କର ଅଟଇ ବଦନ ମଣ୍ଡଳ
ନେତ୍ର ଇନ୍ଦ୍ରିୟ ଦିବାକର ଆକାଶ ଗୋଲକ ଚକ୍ଷୁର
ବ୍ରହ୍ମପଦ ଭ୍ରୁକୁଟୀ ତାର ଚକ୍ଷୁ ଲୋମ ରାତ୍ରି ବାସର

ଜଳ ତାଙ୍କର ତାଲୁ ସିନା ରସ ଯେ ଅଟଇ ରସନା
ନିଗମ ଗଣ ଅଟେ ଶିର ଦଶନ ପନ୍ତି ଦଣ୍ଡଧର
କଟାକ୍ଷ ସମସ୍ତ ଜଗତ ପୁତ୍ରାଦି ସ୍ନେହ ଅଟେ ଦନ୍ତ
ଜଗତ ଉନ୍ମାଦ କାରିଣୀ ମାୟା ଶକତି ହାସ୍ୟ ଜାଣି

ବିଷୟ ଲାଳସା ଅଧର ଲଜ୍ଜା ଉପରୋଷ୍ଠ ତାଙ୍କର
ଧର୍ମ ଦେବତା ସ୍ତନଯୁଗ ଅଧର୍ମ ମାର୍ଗ ପୃଷ୍ଠ ଭାଗ
ପ୍ରଜାପତି ଯେ ତାଙ୍କ ଶିଶ୍ନ ଅଣ୍ଡକୋଷ ମିତ୍ରା ବରୁଣ
ଉଦର ସାଗର ସପତ ଅସ୍ଥିରୂପ ଅଟେ ପର୍ବତ

ନାଡି ଅଟଇ ନଦୀଗଣ ବୃକ୍ଷ ସମୂହ ତାଙ୍କ ଲୋମ
ନିଶ୍ୱାସ ଅଟଇ ପବନ ଗତି ଅଟଇ କାଳ ଜାଣ
ସନ୍ଧ୍ୟାକାଳ ତାଙ୍କ ବସନ ହୃଦୟ ପ୍ରକୃତି ପ୍ରଧାନ
କ୍ରୀଡା ପ୍ରାନ୍ତର ଏ ସଂସାର କେଶ ସମୂହ ମେଘମାଳ

ସକଳ ବିକାର ଭଣ୍ଡାର ମନ ଅଟଇ ନିଶାକର
ବିରାଟ ପୁରୁଷର ଚିତ୍ତ ଅଟଇ ଜାଣ ମହତତ୍ତ୍ୱ
ରୁଦ୍ର ଦେବତା ଅହଂକାର ସେହି ବିରାଟ ପୁରୁଷର
ଘୋଟକ ଅଶ୍ୱତରୀ ହସ୍ତୀ ଓଟ ପ୍ରଭୃତି ନଖପନ୍ତି

କଟି ମୃଗାଦି ପଶୁଗଣ କହନ୍ତି ତତ୍ତ୍ୱବିଦ ଜନ
ଶିଳ୍ପ କୌଶଳ ପକ୍ଷୀଜାତି ସ୍ୱାୟମ୍ଭୁ ମନୁ ତାଙ୍କ ମତି
ମାନବ ଅଟେ ବାସସ୍ଥାନ ଗନ୍ଧର୍ବ ଅପ୍‌ସରା ଚାରଣ
ବିଦ୍ୟାଧରାଦି କଣ୍ଠସ୍ୱର ସ୍ମୃତି ଶକ୍ତି ପ୍ରହ୍ଲାଦ ତାର

ବ୍ରହ୍ମଣ ଅଟଇ ବଦନ ବାହୁ ଅଟନ୍ତି କ୍ଷତ୍ରିଗଣ
ବୈଶ୍ୟ ଉରୁ ଶୁଦ୍ର ଚରଣ ନାନା ପ୍ରକାର ରୂପନାମ
ବସ୍ତୁ ଇନ୍ଦ୍ରାଦି ଦେବ ନିତ୍ୟ ତାଙ୍କ ଶରୀର ପରିବୃତ୍ତ
ଘୃତ ଆହୁତି ଯେ ସାଧନ ଏହା ତାଙ୍କର ଅଟେ କର୍ମ

ଏପରି ସ୍ଥୁଳ ଶରୀରରେ ଭକ୍ତମାନେ ନିଜ ବୁଦ୍ଧିରେ
ନିଜ ଚିତ୍ତ ସ୍ଥିର କରନ୍ତି ଧାରଣା ଯୋଗ ଆଚରନ୍ତି
ବିଶ୍ୱ ମଧରେ ଏହା ଭିନ୍ନ କୌଣସି ବସ୍ତୁ ନାହିଁ ଅନ୍ୟ
ଜୀବ ସ୍ୱପ୍ନକାଳେ ଯେପରି ବହୁଦେହ କଳ୍ପନା କରି

ଇନ୍ଦ୍ରିୟ ଦ୍ୱାରରେ ଦେହ ସେହି ଦର୍ଶନାଦି ଅନୁଭବଇ
ସେପରି ବିରାଟ ମୂରତି ଈଶ୍ୱର ସର୍ବ ବୃଦ୍ଧିବୃତ୍ତି
ସାହାଯ୍ୟେ ବିଷୟ ସମସ୍ତ ଅନୁଭବନ୍ତି ସେ ସର୍ବତ୍ର
ସେତ ଅନ୍ତରାତ୍ମା ରୂପରେ ବସନ୍ତି ପ୍ରାଣୀ ହୃଦୟରେ

ସେ ଆତ୍ମା ଆନନ୍ଦ ନିଧାନ ବିରାଟ ପୁଂସେ ଭକ୍ତିଗଣ
ଚିତ୍ତ ମଧ୍ୟେ ଦୃଢ଼ ଧାରଣା କରି କରନ୍ତି ଉପାସନା
ବିଷୟ ବାସନା ଆସକ୍ତ ନହୁଏ କେବେ ଭକ୍ତଚିତ୍ତ
ଏହି ସଂସାରେ ପୁନ ପୁନ ନ ଲଭେ ଜନମ ମରଣ

**ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ପାରମହଂସ୍ୟାଂ ସହିଂତାୟାଂ ବୈୟାସିକ୍ୟାଂ ମହାପୁରୁଷ ସଂସ୍ଥାନ ବର୍ଣ୍ଣନେ ଦ୍ୱିତୀୟ ସ୍କନ୍ଧେ ପ୍ରଥମୋଽଧ୍ୟାୟ ।**

*******

## ଦ୍ୱିତୀୟ ଅଧ୍ୟାୟ

ଆନନ୍ଦେ ଶୁକ ଯେ କହନ୍ତି ଶୁଣ ପରୀକ୍ଷ ନରପତି
ବିଧାତା ପ୍ରଳୟ କାଳରେ ଧାରଣା ଯୋଗ ପ୍ରଭାବରେ
ପରେଶ ବିରାଟ ପୁରୁଷ ଭଗବାନଙ୍କୁ କଲେ ତୋଷ
ତାହାଙ୍କର ଅନୁଗ୍ରହରେ ବିସ୍ମୃତ ମହା ପ୍ରଳୟରେ

ସ୍ମୃତି ଶକତି ପୁନର୍ବାର ଲଭି ବୁଦ୍ଧିକୁ କରି ସ୍ଥିର
ଅମୋଘ ଦୃଷ୍ଟି ଲାଭ କଲେ ପୂର୍ବ ପରି ସୃଷ୍ଟି ରଚିଲେ
ବେଦୁ ସ୍ୱର୍ଗାଦି ଲାଭ ଫଳ ଶୁଣି ତହିଁରେ ହୋଇ ଭୋଳ
ଆସକ୍ତ କାମନାରେ ହୋଇ ଲୋକ କାମ୍ୟ କର୍ମ କରଇ

ମାତ୍ର ତା ସ୍ୱପନ ସଦୃଶ ନାହିଁ ତହିଁରେ ସୁଖ ଲେଶ
ତେଣୁ ସାଧକ ଶୁଦ୍ଧ ଚିତ୍ତ କାମ୍ୟ କର୍ମେ ନୁହେଁ ପ୍ରବୃତ୍ତ
ସୁବୁଦ୍ଧି ଭକ୍ତ ଚିତ୍ତ ସ୍ଥିରେ ସୁଦୃଢ଼ ସାଧନା ପଥରେ
ସର୍ବଦା ଅଗ୍ରସର ହେବ ବିଘ୍ନେ ବିଚଳିତ ନ ହେବ

ନିଜର ଜୀବନ ଧାରଣ ପାଇଁ ଯେତିକି ପ୍ରୟୋଜନ
ସେତିକି ସଂଗ୍ରହ କରିବ ବୃଥା ପରିଗ୍ରହ ତେଜିବ
ବିନା ଯତ୍ନ ପରିଶ୍ରମରେ ଯାହା ମିଳଇ ଏ ସଂସାରେ
ପୃଥିବୀ ପରି ଶଯ୍ୟା ଅନ୍ୟ କି ଅବା ଅଛି ପ୍ରୟୋଜନ

ନିଜ ଦୁଇବାହୁ ଅଛଇ
ତକିଆ ଆବଶ୍ୟକ ନାହିଁ
ହସ୍ତର ଅଞ୍ଜଳି ଅଛି ତ
କି ଲୋଟା ଭୁଞ୍ଜିବାକୁ ପାତ୍ର
ବଳକଳ ଥାଇଁ ବସନ
ନାହିଁ ନାହିଁତ ପ୍ରୟୋଜନ
ଯେ ଶୁଦ୍ଧଚିତ୍ତ ହରି ଭକ୍ତ
ଭାବଇ ସର୍ବଦା ଏମନ୍ତ

ପିନ୍ଧିବା ପାଇଁ ଚିରାକନା
ରାସ୍ତାରେ କି ଅବା ମିଳେନା
ଜଳପାନ ପାଇଁ ସମସ୍ତ
ଶୁଷ୍କ କି ସରସୀ ସରିତ
ଆହାର ପାଇଁ ବୃକ୍ଷଗଣ
ନ କରିବେ କି ଫଳଦାନ
ରହିବା ନିମିତ୍ତ ଭକ୍ତର
ଅଛିତ ପର୍ବତ ଗହ୍ୱର

ଗୋବିନ୍ଦ ପଦାଶ୍ରିତ ଭକ୍ତ
ଗ୍ରାସ ଆଚ୍ଛାଦନ ନିମିତ୍ତ
ଗର୍ବିତ ବିବେକ ବିହୀନ
ଧନୀ ସେବା କି ପ୍ରୟୋଜନ
ବୁଝି ଶ୍ରୀକୃଷ୍ଣଙ୍କ ମହିମା
ବରଜି ବିଷୟ ବାସନା
ସର୍ବଦା ତାଙ୍କ ଶ୍ରୀଚରଣ
ସେବିବା ଅଟେ ପ୍ରୟୋଜନ

ସେ ସକଳ ଜୀବ ହୃଦରେ
ଅନ୍ତର ଆତ୍ମା ସ୍ୱରୂପରେ
ବିଜୟ କରିଛନ୍ତି ରହି
ଡାକିବା ଦରକାର ନାହିଁ ।
ସେ ପରମ ବଂଧୁ ଜୀବର
ତାଙ୍କର ନାହିଁ ପରାପର
ତେଣୁ ସୁଦୃଢ଼ ସଂକଳ୍ପରେ
ତାଙ୍କ ଭଜନ ଆନନ୍ଦରେ

ମଜ୍ଜି ରହିଲେ ଅନୁକ୍ଷଣ
ସଂସାର କ୍ଲେଶର କାରଣ
ଅବିଦ୍ୟା ଅପସରି ଯିବ
ଅନ୍ତେ ବୈକୁଣ୍ଠ ପ୍ରାପ୍ତ ହେବ ।
ଭବ ବୈତରଣିଈ ପତିତ
ନିଜ ନିଜ କର୍ମ ଜନିତ
କ୍ଲେଶ ଭୋଗନ୍ତି ଜୀବଗଣ
ଏହା ଦେଖି କେ ବୁଦ୍ଧିମାନ

ହେବାକୁ ଏ କ୍ଲେଶୁ ଉଦ୍ଧାର
ଶ୍ରୀକୃଷ୍ଣ ଭଗବାନଙ୍କର
ଚରଣ ବନ୍ଦନ ଅର୍ଚ୍ଚନ
ନ କରିବ ଧ୍ୟାନ ସେବନ
ହୃଦ କମଳେ ବିରାଜିତ
ଅନ୍ତର୍ଯ୍ୟାମୀ ଅଙ୍ଗୁଷ୍ଠ ମାତ୍ର
ପୁରୁଷଠାରେ ଥାପି ଚିତ୍ତ
କେତେ ସାଧକ ଭାଗ୍ୟବନ୍ତ

ସର୍ବଦା କରନ୍ତି ସ୍ମରଣ
ସଫଳ ତାଙ୍କର ଜୀବନ
ଶଙ୍ଖ ଚକ୍ର ଗଦା ନଳୀନ
ତାଙ୍କ ଚତୁର୍ଭୁଜ ଶୋଭନ
ପ୍ରଶାନ୍ତ ପ୍ରସନ୍ନ ବଦନ
ଆୟତ କମଳ ନୟନ
କଦମ୍ବ କେଶର ସମାନ
ପୀତ ବସନ ପରିଧାନ

ରତ୍ନ ଖଚିତ ସ୍ୱର୍ଣ୍ଣମୟ
ରତନ ମୁକୁଟ ବଳୟ
ମକର କୁଣ୍ଡଳ ମଣ୍ଡନ
କର୍ଣ୍ଣ ହରାଇ ଭକ୍ତମନ
ସେ ଅନ୍ତର୍ଯ୍ୟାମୀ ପୁରୁଷର
ଶ୍ରୀ ଚରଣ ପଦ୍ମ ଯୁଗଳ
ହୃଦୟରେ କରି ସ୍ଥାପନ
ଭକ୍ତ କରଇ ନିତ୍ୟ ଧ୍ୟାନ

ଲକ୍ଷ୍ମୀ ଦେବୀ ବାମ ବକ୍ଷରେ
କୌସ୍ତୁଭ ଶୋଭଇ ଗଳାରେ
ସର୍ବଦା ଅମ୍ଳାନ ଉଜ୍ଜ୍ୱଳ
ଅଜାନୁ ଲମ୍ବି ବନମାଳ
ମହାର୍ଘ ଚନ୍ଦ୍ରହାର କାଟି
ଦେଖି ନେତ୍ର ଯାଏ ଅଟକି
ନୂପୁର ରାଜେ ଚରଣରେ
ରତ୍ନ ମୁଦ୍ରିକା ଅଙ୍ଗୁଳିରେ

ରତ୍ନ କଙ୍କଣ ମଣିବନ୍ଧେ
ଭକ୍ତି ରସିକ ଚିତ୍ତ ଛନ୍ଦେ
ସୁନୀଳ କୁଞ୍ଚିତ କୁନ୍ତଳ
ଶିର ଶିଖଣ୍ଡ ସମୁଜ୍ଜ୍ୱଳ
ହାସ୍ୟ ସୁଧାପୂର୍ଣ୍ଣ ବଦନ
ଭକ୍ତ ଚିତ୍ତକରେ ହରଣ
ସେ ଅନ୍ତର୍ଯ୍ୟାମୀ ପୁରୁଷର
ହୃଦୟ ପ୍ରଶାନ୍ତ ଉଦାର

ମାଧୁର୍ଯ୍ୟ ପୂର୍ଣ୍ଣ ଦ୍ରୁହସିତ
ଦୃଷ୍ଟିରେ ସଦା ଉଲ୍ଲସିତ
କଟାକ୍ଷ ପାତେ ଭକ୍ତ ପ୍ରତି
ଅପାର କରୁଣା କରନ୍ତି
ଚିନ୍ତା କରିଲେ କ୍ଷଣେମାତ୍ର
ହୃଦେ ହୁଅନ୍ତି ଆବିର୍ଭୂତ
ସ୍ଥିର ଚିତ୍ତେ କଲେ ଚିନ୍ତନ
ମିଳଇ ତାହାଙ୍କ ଦର୍ଶନ

ପାଦୁ ଆରମ୍ଭି ପ୍ରଥମରେ
କୃଷ୍ଣଙ୍କ ସମସ୍ତ ଅଙ୍ଗରେ
ପ୍ରତ୍ୟଙ୍ଗରେ କରିବ ଧ୍ୟାନ
ଯେ ଅଙ୍ଗେ ସ୍ଥିର ହେବ ମନ
ସେ ଅଙ୍ଗବିନା ଅନ୍ୟାଙ୍ଗରେ
ଧାରଣା ଅଭ୍ୟାସିବ ଧୀରେ
ସେ ସର୍ବଦ୍ରଷ୍ଟା ସର୍ବେଶ୍ୱର
କୃଷ୍ଣ ହିଁ ସଂସାରରେ ସାର

ତାଙ୍କ ଚରଣେ ଯେ ପର୍ଯ୍ୟନ୍ତ
ପ୍ରେମ ନ ଯେ ହୋଇଛି ଜାତ
ପ୍ରୟୋଜନୀୟ କ୍ରିୟାମାନ
ଯତ୍ନେ କରିବ ଅନୁଷ୍ଠାନ
ପରେ କୃଷ୍ଣଙ୍କ ସ୍ଥୂଳତମ
ବିରାଟ ସ୍ୱରୂପ ସ୍ମରଣ
ଏପରି ସିଦ୍ଧ ହେବ ଯେବେ
ସାଧକ ଏ ଶରୀର ତେବେ

କୌଣସି ପବିତ୍ର କ୍ଷେତ୍ରରେ
କି ଅବା ଜାହ୍ନବୀ ତୀରରେ
ଉତ୍ତରାୟଣ ପୂଣ୍ୟକାଳ
ପ୍ରତୀକ୍ଷା ନକରି ସୁସ୍ଥିର
ସୁଖାସନେ ଉପବେଶନ
ମନଦ୍ୱାର ଇନ୍ଦ୍ରିୟ ପ୍ରାଣ
ସଂଯମ କରି ଏକ ଚିତ୍ତ
ହେବ ଶ୍ରୀକୃଷ୍ଣ ଧ୍ୟାନ ରତ

ନିର୍ମଳ ବୁଦ୍ଧି ବଳେ ମନ
ଧୀରେ ଧୀରେ କରି ସଂଯମ
ବୁଦ୍ଧି ନିବେଶି ଜୀବାତ୍ମାରେ
ଜୀବାତ୍ମାକୁ ଶ୍ରୀକୃଷ୍ଣଠାରେ
ନିଯୋଜି ପ୍ରଶାନ୍ତି ଲଭିବ
ସାଧନାକୁ ତ୍ୟାଗ କରିବ
ଏପରି ସାଧନା ଉପରେ
କାଳ କର୍ତ୍ତୃତ୍ୱ ନ ବିସ୍ତାରେ

ତମ ରାଜସ ସତ୍ତ୍ୱଗୁଣ
ପ୍ରକୃତି ମହତତ୍ତ୍ୱ ପୁଣ
ଅହଙ୍କାର ସର୍ବ ଦେବତା
ସାଧନ ଉପରେ ପ୍ରଭୁତ ।
ବିସ୍ତାର କରି ନ ପାରନ୍ତି
ବୁଝନ୍ତୁ ପରୀକ୍ଷ ନୃପତି
ଦେହ ଇନ୍ଦ୍ରିୟ ପ୍ରାଣ ମନ
ଆତ୍ମା ନୁହନ୍ତିଟି ଏ ମାନ

ନେତି ନେତି ଏ ବିଚାରରେ
ଆତ୍ମା ଭିନ୍ନ ଅନ୍ୟ ବସ୍ତୁରେ
ଭକ୍ତ ଆତ୍ମଭାବ ତେଜଇ
ଦେହକୁ ଆତ୍ମା ନ ଭାବଇ
ନିଜକୁ ସ୍ୱୟଂ ଭଗବାନ
କେବେ ନ ଭାବେ ଭକ୍ତଗଣ
କୃଷ୍ଣ ଭିନ୍ନ ଅନ୍ୟ ବସ୍ତୁର
ମମତା ନଥାଏ ତାଙ୍କର

ପ୍ରତିକ୍ଷଣ ନିଜ ହୃଦରେ
ଈଶ୍ୱର ପଦ ଯୁଗଳରେ
ଦୃଢ଼ ଆସ୍ଥାକରି ପୋଷଣ
ପ୍ରେମରେ କରି ଆଲିଙ୍ଗନ
ଲଭନ୍ତି ଯେ ଦିବ୍ୟ ଆନନ୍ଦ
ତା ଶ୍ରେଷ୍ଠ ବଇଷ୍ଣବ ପଦ
ଏ ପଦ ଉପାଧି ବର୍ଜିତ
କେବଳ ଅନୁଭବେ ଭକ୍ତ

ସ୍ଥିର ଚିତ୍ତେ ପରମାତ୍ମାରେ
ମୁନି ନିଜ ଅନୁଭବରେ
ବିଷୟ ସ୍ପୃହା କରି ତ୍ୟାଗ
ଯଦି ଇଚ୍ଛଇ ଦେହ ତ୍ୟାଗ
ମୂଳା ଧାରକୁ ପାଦମୂଳେ
ନିରୋଧି ପ୍ରାଣବାୟୁ ଧୀରେ
ନାଭି ଆଦି ଷଡ ଚକ୍ରରେ
ଊର୍ଦ୍ଧ୍ୱେ ତୋଳିବ ଚିତ୍ତ ସ୍ଥିରେ

ନାଭିସ୍ଥିତ ପ୍ରାଣ ବାୟୁକୁ
ନେବ ଅନାହତ ଚକ୍ରକୁ
ଉଦାନ ସହିତ ପ୍ରାଣକୁ
ତୋଳିବ ବିଶୁଦ୍ଧ ଚକ୍ରକୁ
ତାପରେ ସୁସ୍ଥିର ଚିତ୍ତରେ
ଅନ୍ୱେଷଣ କରି ବୁଦ୍ଧିରେ
ପ୍ରାଣକୁ ସୂତାଳୁ ମୂଳରେ
ନେବାକୁ ହେବ ଧୀରେ ଧୀରେ

ପ୍ରାଣବାୟୁର ମାର୍ଗ ସପ୍ତ
ନିରୋଧ କରିବ ସମସ୍ତ
ତାଳୁ ମୂଳୁ ପ୍ରାଣ ବାୟୁକୁ
ଭ୍ରୂମଧ୍ୟସ୍ଥ ଆଜ୍ଞା ଚକ୍ରକୁ
ସେଠାରେ କରିବ ସ୍ଥାପନ
ବିଷୟ ପ୍ରତି ଆକର୍ଷଣ
ଯଦି ନଥାଏ ହୃଦୟରେ
ତେବେ ଏହି ଆଜ୍ଞା ଚକ୍ରରେ

ମୁହୂର୍ତ୍ତାର୍ଦ୍ଧ ପ୍ରାଣ ବାୟୁକୁ
ରଖି ନେବ ବ୍ରହ୍ମ ରନ୍ଧ୍ରକୁ
ବ୍ରହ୍ମରନ୍ଧ୍ର ଭେଦି ତାପରେ
ପ୍ରାଣ ପ୍ରୟାଣ ସମୟରେ
ଦେହ ସହ ଇନ୍ଦ୍ରିୟ ଗଣ
ସାଧକ ବରଜି ତକ୍ଷଣ
ଆକାଶଚାରୀ ସିଦ୍ଧଙ୍କର
ସଙ୍ଗରେ କରିବ ବିହାର

ତ୍ରିଗୁଣମୟ ବ୍ରହ୍ମାଙ୍କର
କୌଣସି ସ୍ଥାନରେ ବିହାର
ଅଣିମା ଆଦି ସିଦ୍ଧିମାନ
କିମ୍ୱା ବ୍ରହ୍ମଲୋକ ଗମନ
ଇଚ୍ଛୁଥିବା ସାଧକ ଗଣ
ଇନ୍ଦ୍ରିୟ ସହ ମନପ୍ରାଣ
ସ୍ଥୂଳଦେହୁ ଯାନ୍ତି ବାହାରି
ବାୟୁ ସ୍ୱରୂପ ରୂପଧରି

ଯୋଗ ସଂସିଦ୍ଧ ଯୋଗୀ ଜନ
ବାୟବୀୟ ଦେହ ଧାରଣ
ତ୍ରିଲୋକ ବାହ୍ୟ ଆଭ୍ୟନ୍ତରେ
ମର୍ତ୍ତ୍ୟ ସ୍ୱର୍ଗ ବା ପାତାଳରେ
ମହ ଜନ ତପ ଲୋକରେ
ଭ୍ରମଣ କରନ୍ତି ସ୍ୱେଚ୍ଛାରେ
ଭଗବାନ ଉପାସନାରେ
ତପ ଯୋଗ ଜ୍ଞାନ ବଳରେ

ସେମାନେ ଏ ଗତି ଲଭନ୍ତି
ସକାମ ଜନେ ଯାନ ଯାନ୍ତି
ଯୋଗସିଦ୍ଧ ସାଧକ ଗଣ
ସମୟରେ ମହା ପ୍ରୟାଣ
ବ୍ରହ୍ମଲୋକର ଯେଉଁ ପଥ
ମେରୁ ଦଣ୍ଡର ମଧ୍ୟେ ପ୍ରୟାଣ
ସେ ଜ୍ୟୋତିର୍ମୟୀ ସୁଷୁମ୍ନାର
ମଧ୍ୟ ଦେଇ ସୂକ୍ଷ୍ମ ଶରୀର

ବରଜି ଆକାଶ ମାର୍ଗରେ
ପ୍ରବେଶଇ ଦେବ ଲୋକରେ
ତହିଁ ସର୍ବପାପ ତାଙ୍କର
ଆସକ୍ତି ହୋଇଯାଏ ଦୂର
ତାପରେ ସେସ୍ଥାନ ତେଜନ୍ତି
ଊର୍ଦ୍ଧ୍ୱ ଭୁବନକୁ ଯାଆନ୍ତି
ସେଠାରେ ଥିବା ଭଗବାନ
ନାରାୟଣଙ୍କ ଅଧିଷ୍ଠାନ

ଶୁଶୁମ୍ନାର ଚକ୍ରେ ମିଳନ୍ତି
ଯେ ଚକ୍ରେ ଆଦିତ୍ୟାଦି ଛନ୍ତି
ସିଦ୍ଧ ଯୋଗିଏ ଏହାପରେ
ପୂତ ସୂକ୍ଷ୍ମ ଲିଙ୍ଗ ଦେହରେ
ଆଶ୍ରୟ ସୂର୍ଯ୍ୟାଦି ଗ୍ରହର
ଲଘିଂଣ ଚକ୍ର ଶିଶୁମାର
ଏକାକୀ ସେ ମହଲୋକରେ
ପ୍ରବେଶ କରନ୍ତି ସତ୍ତ୍ୱରେ

ସକଳ ଦେବ ପୂଜନୀୟ
କଳ୍ପ ଜୀବୀ ଋଷି ସମୂହ
ସେ ସ୍ଥାନେ ମହା ଆନନ୍ଦରେ
ବାସ କରନ୍ତି ନିରନ୍ତର
ଏଥି ଅନ୍ତେ କଳ୍ପ ଶେଷରେ
ଶଙ୍କର୍ଷଣଙ୍କ ମୁଖାଗ୍ନିରେ
ଦଗ୍‌ଧ ହୁଅଇ ତ୍ରିଲୋକ
ସେବେଳେ ମଧ ମହଲୋକ

ଅଧିକ ହୁଅନ୍ତେ ଉତ୍ତପ୍ତ  ତାହାପରେ ଯୋଗୀ ସମସ୍ତ
ବ୍ରହ୍ମଲୋକ କରେ ଗମନ  ଏ ବ୍ରହ୍ମଲୋକ ଶ୍ରେଷ୍ଠ ସ୍ଥାନ
ବ୍ରହ୍ମା ଆୟୁଷ ପରିମାଣ  ଦୁଇ ପରାର୍ଦ୍ଧ ମାତ୍ର ଜାଣ
ଯୋଗେଶ୍ୱର ମାନେ ଏଠାରେ  ବାସ କରନ୍ତି ବିମାନରେ

ଏଠାରେ କୌଣସି ପ୍ରକାର  ଶୋକ ମୋହ ଜରାମୃତ୍ୟୁର
ଭୟ ଉଦ୍‌ବେଗ ଦୁଃଖନାହିଁ  ଆଧି ବ୍ୟାଧି ଯେ ନ ବାଧଇ
ଏ ସ୍ଥାନ ସ୍ଥିତି ଯୋଗୀଗଣ  ସଂସାର ଜନ ସାଧାରଣ
ଈଶ୍ୱର ଉପାସନା ବିନା  ଭୋଗୁଥିବା ଦୁଃଖ ଯାତନା

ଦେଖିଣ ଦିବ୍ୟ ନୟନରେ  କରୁଣା ପୂର୍ଣ୍ଣ ହୃଦୟରେ
ଦୁଃଖ କରନ୍ତି ଅନୁଭବ  ଏହାତ ସାଧୁଙ୍କ ସ୍ୱଭାବ
ବ୍ରହ୍ମଲୋକସ୍ଥ ସିଦ୍ଧଗଣ  ଜ୍ୟୋତିର୍ମୟ ମୂର୍ତ୍ତି ଧରିଣ
କ୍ରମେ କ୍ରମେ କ୍ଷିତି ପବନ  ସଲିଳ ତେଜ ଆବରଣ

ଭେଦ କରିଣ ଆକାଶରେ  ପ୍ରବେଶ କରନ୍ତି ସ୍ୱେଚ୍ଛାରେ
ଗନ୍ଧକୁ ଘ୍ରାଣ ଇନ୍ଦ୍ରିୟରେ  ରସକୁ ରସାନା ଯୋଗରେ
ରୂପକୁ ନେତ୍ର ଯୁଗଳରେ  ସ୍ପର୍ଶକୁ ତ୍ୱଚା ସାହାଯ୍ୟରେ
ଶ୍ରବଣେନ୍ଦ୍ରିୟରେ ଶବ୍ଦକୁ  ବାକ୍ୟ ଇନ୍ଦ୍ରିୟେ ବଚନକୁ

ହସ୍ତରେ ପଦାର୍ଥ ଗ୍ରହଣ  ଚରଣ ଦ୍ୱୟରେ ଗମନ
କ୍ରମେ କରନ୍ତି ଅନୁକ୍ରମ  ଏହା ସିଦ୍ଧ ଶାସ୍ତ୍ର ପ୍ରମାଣ
ପଞ୍ଚ ଭୂତାତ୍ମ ସ୍ଥୁଳ ସୂକ୍ଷ୍ମ  ଆବରଣକୁ ଅତିକ୍ରମ
ପ୍ରବେଶନ୍ତି ଅହଙ୍କାରରେ  ଇନ୍ଦ୍ରିୟ ରାଜସାହଂକାରେ

ସାତ୍ତ୍ୱିକାହଙ୍କାରେ ମନକୁ  ତାମସରେ ସୁକ୍ଷ୍ମ ଭୂତଙ୍କୁ
ବିଲୟ କରି ତାହାପରେ  ମନ ଅହଂକାର ସଙ୍ଗରେ
ବିଲୟ ସ୍ୱରୂପ ଗତିରେ  ପ୍ରବେଶନ୍ତି ମହତତ୍ତ୍ୱରେ
ସିଦ୍ଧ ଯୋଗୀଏ ଏହିପରି  ପ୍ରକୃତି ମଧ୍ୟ ଭେଦକରି

ନିଜ ସର୍ବୋପାଧି ବିହୀନ  ସ୍ୱରୂପକୁ କରି ଧାରଣ
ପରମ ଆନନ୍ଦ ପ୍ରଶାନ୍ତ  ଆଦି ପୁରୁଷଙ୍କୁ ପ୍ରାପତ
ଭାଗବତୀ ଗତି ଲଭନ୍ତି  ସଂସାରେ ଆଉ ନ ଫେରନ୍ତି
ବେଦ କଥିତ ଦ୍ୱିପ୍ରକାର  ନିତ୍ୟ ସନାତନ ମାର୍ଗର

ସଦ୍ୟମୁକ୍ତି ଓ କ୍ରମମୁକ୍ତି  ସେମାନେ ପ୍ରାପତ ହୁଅନ୍ତି
ଆହେ ପରୀକ୍ଷିତ ରାଜନ  ମୁଁ ସମସ୍ତ କଲି ବର୍ଣ୍ଣନ
ପୂର୍ବେ ବିଷ୍ଣୁଙ୍କୁ ଏହି ପ୍ରଶ୍ନ  ପୁଚ୍ଛିଥିଲେ ଚତୁର୍ବଦନ
ଶ୍ରୀ ବାସୁଦେବ ଏ ପ୍ରକାରେ  ଉତ୍ତର ତାଙ୍କୁ ଦେଇଥିଲେ

ଯହିଁରେ ଗୋବିନ୍ଦ ଚରଣ  ଯୁଗଳେ ଭକ୍ତି ହୁଏ ଜନ୍ମ
ତା ବିନା ଏହି ସଂସାରରେ  ସଂସାର ଜୀବଙ୍କ ପକ୍ଷରେ
ସର୍ବ ସୁଖମୟ ପରମ  ନାହିଁ କୌଣସି ପଥ ଅନ୍ୟ
ସେ ପିତାମହ ନିର୍ବିକାର  ସ୍ଥିର ଚିତ୍ତରେ ତିନିଥର

ସର୍ବ ବେଦ କରି ବିଚାର  ଯେ ମାର୍ଗେ ଶ୍ରୀ ବିଷ୍ଣୁଙ୍କର
ଚରଣେ ଜନ୍ମେ ପ୍ରେମ ଭକ୍ତି  ସେ ପରମ ଯୋଗ ଉକ୍ତି
କେବଳ ପରମ ସାଧନ  ମାର୍ଗ ବୋଲି କଲେ ପ୍ରମାଣ
ସର୍ବାନ୍ତର୍ଯ୍ୟାମୀ ଭଗବାନ  ପ୍ରାଣୀ ହୃଦୟେ ବିଦ୍ୟମାନ

ଏ ଜୀବାତ୍ମା ଦ୍ରଷ୍ଟା ରୂପରେ  ନିଜର ବୁଦ୍ଧି ପ୍ରଭାବରେ
ଅନୁଭବେ ଯେ ଦୃଶ୍ୟମାନ  ତହିଁରେ ବିଜେ ଭଗବାନ
ତେଣୁ ସେ ସକଳ ଦେଖନ୍ତି  ସେହି ମଧ୍ୟ ଦୃଶ୍ୟ ଅଟନ୍ତି
ହେ ପରୀକ୍ଷିତ ନରପତି  ଜଗତେ ଯେ ପ୍ରାଣୀ ଅଛନ୍ତି

ସବୁବେଳେ ସବୁସ୍ଥାନରେ  ପୁଣି ସର୍ବାନ୍ତ କରଣରେ
ଶ୍ରୀହରିଙ୍କ ଲୀଳା ଶ୍ରବଣ  ସ୍ମରଣ ସେବା ପ୍ରୟୋଜନ
ତାହାର ବିଷୟା ମଳୀନ  ଚିତ୍ତ ନିର୍ମଳ ହୁଏ ଜାଣ
ସେ ଲଭେ ଗୋବିନ୍ଦ ଚରଣ  ନିତ୍ୟ ଆନନ୍ଦ ସୁଧା ଧାମ

**ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ପାରମହଂସ୍ୟାଂ ସହିଂତାୟାଂ ବୈୟାସିକ୍ୟାଂ ଦ୍ୱିତୀୟ ସ୍କନ୍ଧେ ପୁରୁଷ ସଂସ୍ଥାନ ଦ୍ୱିତୀୟ ଅଧ୍ୟାୟ ବର୍ଣ୍ଣନେ ନାମ ୨ୟ ଅଧ୍ୟାୟ ।**

*******

# ତୃତୀୟ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମହାମୁନି    ଶୁଣ ପରୀକ୍ଷ ନରମଣି
ତୁମେ ଯା କହିଥିଲ ପ୍ରଶ୍ନ    ମରଣକାଳେ ବୁଦ୍ଧିମାନ
କର୍ତ୍ତବ୍ୟ କ'ଣ ମାନବର    ପ୍ରଦାନ କଲି ତା' ଉତ୍ତର
ଯେ ବ୍ରହ୍ମତେଜକୁ ଇଚ୍ଛଇ    ସେ ବ୍ୟକ୍ତି ବ୍ରହ୍ମାଙ୍କୁ ପୂଜଇ

ଯେ ଇନ୍ଦ୍ରିୟ ଶକ୍ତି ଇଚ୍ଛଇ    ସେ ଇନ୍ଦ୍ରଙ୍କୁ ଆରାଧଇ
ଯାହାର ସନ୍ତାନ କାମନା    ସେ କରେ ଦକ୍ଷାଦି ଅର୍ଚ୍ଚନା
ଲକ୍ଷ୍ମୀକାମୀ ବ୍ୟକ୍ତି ଦୁର୍ଗାଙ୍କୁ    ତେଜଲାଭ ପାଇଁ ଅଗ୍ନିଙ୍କୁ
ଧନ ଇଚ୍ଛାରେ ବସୁଗଣ    ପ୍ରଭାବ କାମୀ ଯେ ଇଶାନ

ଅନ୍ନାଦି କାମୀ ଅଦିତୀଙ୍କୁ    ସ୍ୱର୍ଗ ଇଚ୍ଛାରେ ଆଦିତ୍ୟଙ୍କୁ
ଯେ ରାଜ୍ୟଲାଭକୁ ଇଚ୍ଛଇ    ସେ ବିଶ୍ୱଦେବଙ୍କୁ ପୂଜଇ
ଦେଶ ସ୍ୱାଧୀନତା ନିମିତ୍ତ    ସାଧ୍ୟଗଣ ପୂଜା ଉଚିତ୍
ଦୀର୍ଘାୟୁ ଚାହେଁ ଯେଉଁ ନର    ସେ ପୂଜେ ଅଶ୍ୱିନୀ କୁମାର

ଦେହ ପୁଷ୍ଟିପାଇଁ ପୃଥୁଙ୍କୁ    ପ୍ରତିଷ୍ଠା ପାଇଁ ଦୌ ଭୂମିକୁ
ଯାହାର ସୌନ୍ଦର୍ଯ୍ୟ କାମନା    ସେ କରେ ଗନ୍ଧର୍ବ ଅର୍ଚ୍ଚନା
ସ୍ତ୍ରୀ କାମେ ଅପସରା ଗଣ    ପୂଜିବା ଅଟେ ପ୍ରୟୋଜନ
ସର୍ବ ଆଧିପତ୍ୟ ଇଚ୍ଛାରେ    ବ୍ରହ୍ମାଙ୍କୁ ନାନା ଉପଚାରେ

ଶାସ୍ତ୍ରଜ୍ଞାନ ପାଇଁ ଶଙ୍କର    ଯଶ ଇଚ୍ଛାରେ ଦାମୋଦର
ଧନ ସଂଚୟରେ ବରୁଣ    ପୂଜିବା ନିତ୍ୟ ପ୍ରୟୋଜନ
ସକଳ ବାଧା ନିବାରଣ    ପାଇଁ ଯକ୍ଷଗଣ ପୂଜନ
ଜଳ ନିମିତ୍ତ ମରୁଦ୍‌ଗଣ    ରାଜ୍ୟ ଲାଭରେ ମନୁଗଣ

ଶତ୍ରୁ ମାରଣେ ରାକ୍ଷସଙ୍କୁ    ଭୋଗ କାମନାରେ ଚନ୍ଦ୍ରଙ୍କୁ
ନିଷ୍କାମ ସାକାମ ଯେ ବ୍ୟକ୍ତି    ଯେମାନେ ବା ମୁକ୍ତି ଇଚ୍ଛନ୍ତି
ସେ ସିନା ଉଦାର ବୁଦ୍ଧିରେ    ଅନନ୍ୟ ଦୃଢ଼ ଭକତିରେ
ଶ୍ରୀ ଗୋବିନ୍ଦଙ୍କ ଶ୍ରୀଚରଣ    ପୂଜନ ଅଟେ ପ୍ରୟୋଜନ

ଯାହାର ବୈରାଗ୍ୟ କାମନା    ସେ କରେ ଶ୍ରୀ ବିଷ୍ଣୁ ଅର୍ଚ୍ଚନା
ଭଗବତ୍ ଭକ୍ତ ସଂଗ ମେଳେ    ଇନ୍ଦ୍ରାଦି ଦେବ ପୂଜାକାଳେ
ଶ୍ରୀକୃଷ୍ଣ କମଳ ଚରଣେ    ଯଦି ଅଚଳା ଭକ୍ତି ଜନ୍ମେ
ତାହା ପରମ ପୁରୁଷାର୍ଥ    ନର ଜନ୍ମ ହୁଏ କୃତାର୍ଥ

ଗୋବିନ୍ଦ ଲୀଳା କୀର୍ତ୍ତନରେ    ଶ୍ରବଣ ଭଜନ ଗାନରେ
ଜାତ ହୋଇଲେ ଦିବ୍ୟଜ୍ଞାନ    ଏଭବ ସାଗର ତ୍ରୈଗୁଣ୍ୟ
ବିଷୟ ତରଙ୍ଗ ଭୀଷଣ    ପ୍ରଶାନ୍ତ ହୁଅଇ ତକ୍ଷଣ
ଲାଭ ହୁଏ ଆତ୍ମ ପ୍ରସାଦ    ଜନ୍ମଇ ସଂସାର ବୈରାଗ୍ୟ

ଭାବ ଭକ୍ତି ବୃଦ୍ଧି ଘଟଇ    ମୁକ୍ତି ପଥ ଆପେ ଖୋଲଇ
ଥରେ ପ୍ରେମ ଭକ୍ତି ସୁଖରେ    ମଜ୍ଜିଲେ କିଏ ବା ସଂସାରେ
ଶ୍ରୀହରିଙ୍କ ଲୀଳା ରସରେ    ଆସକ୍ତ ନ ହେବ ଅଚିରେ
ସାଧୁ ସଂଗରେ ଏହି ଲାଭ    ବୋଲନ୍ତି ମୁନି ଶୁକଦେବ

## ଶୌନକ ଉବାଚ

ଭରତ ବଂଶୀ ପରୀକ୍ଷିତ    ଶୁକଦେବ ମୁଖ ନିଃସୃତ
ହରି ଲୀଳା କରି ଶ୍ରବଣ    କରିଥିଲେ ଯେଉଁ ପ୍ରଶ୍ନମାନ
ହେ ସୂତ ମୁନି ଦୟାକରି    ତା ସବୁ କହନ୍ତୁ ବିସ୍ତାରି
ଭକ୍ତ ସଭାରେ ଆଲୋଚିତ    ଲୌକିକ କଥା ବି ସମସ୍ତ

ଶ୍ରୀହରି ଲୀଳା ପରିପୂର୍ଣ୍ଣ    ହେ ଶୁକ କରନ୍ତୁ ବର୍ଣ୍ଣନ
ଯେଉଁ ପରମ ଭାଗବତ    ପାଣ୍ଡୁ ବଂଶଜ ପରୀକ୍ଷିତ
ବାଲ୍ୟେ କଣ୍ଢେଇ ଖେଳବେଳେ    କଣ୍ଢେଇ ଖେଳ ଛଳନାରେ
କୃଷ୍ଣଙ୍କ ବାଲ୍ୟ ଲୀଳା ମାନ    ପୂଜା କରନ୍ତି ଅନୁଷ୍ଠାନ

ସେ ଶୁକ ଦେବ ବ୍ୟାସ ସୁତ    ଶ୍ରୀକୃଷ୍ଣ ପରମ ଭକତ
ଏପରି ସଜ୍ଜନ ମେଳରେ    ଶ୍ରୀକୃଷ୍ଣ ଲୀଳା ସମ୍ବନ୍ଧରେ
କରିବେ ବର୍ଣ୍ଣନ ନିଶ୍ଚୟ    ଏ ବିଷୟେ ନାହିଁ ସନ୍ଦେହ
ସୂର୍ଯ୍ୟ ଉଦେ ଅସ୍ତ ହୁଅନ୍ତି    ଜୀବଙ୍କ ଆୟୁଷ ହରନ୍ତି

ଯେ ବ୍ୟକ୍ତି ସାଧୁ ସଙ୍ଗେ ରହି    କ୍ଷଣେ ମାତ୍ର କାଳ କାଟଇ
ସେହି ମୁହୂର୍ତ୍ତ ମାତ୍ର କାଳ    ହୁଅଇ କେବଳ ସଫଳ
ଲତା ଉଦ୍ଭିଦ ତରୁଗଣ    ଧରି ଅଛନ୍ତି ତ ଜୀବନ
କମାର ଶାଳ ଭାତି ପୁଣ    ଛାଡୁ ନାହିଁ କିବା ପବନ

ବାୟସ କାକ ଶୁକ ଶ୍ୱାନ କରେ ତ ଭୋଜନ ମୈଥୁନ
ତେଣୁ କେବଳ ଖାଇପିଇ ମୈଥୁନ କର୍ମେ ମଜ୍ଜିରହି
ବଂଚିବାରେ କି ପ୍ରୟୋଜନ ବୃଥା ଏ ମାନବ ଜୀବନ
ଯେହୁ ନ ସ୍ମରେ ହରି ନାମ ସେ ଶ୍ୱାନ ଶୃଗାଳ ସମାନ

ଯେ ନ ଶୁଣଇ କୃଷ୍ଣ ନାମ ତା କର୍ଣ୍ଣ ଭୂମି ଗର୍ତ୍ତ ସମ
ନ କରଇ ଲୀଳା କୀର୍ତ୍ତନ ତା ଜିହ୍ୱା ଭେକ ଜିହ୍ୱା ସମ
ଯେ ଶ୍ରୀକୃଷ୍ଣ ଚରଣରେ ଥରେନ ନମଇ ଭକ୍ତି ରେ
ତା ଶିର ଗିରି ଶୃଙ୍ଗ ପରି କି ଲାଭ ନର ଦେହ ଧରି

ନବୀନ ନିରଦ ଶ୍ୟାମଳ ଗଳା ଲମ୍ବିତ ବନମାଳ
କୃଷ୍ଣ ମୂର୍ତ୍ତି ଦର୍ଶନ ବିନା ନୟନ କେକୀ ପୁଚ୍ଛ ସିନା
ଯେବା ନଗମେ ତୀର୍ଥ ସ୍ଥାନ ତା ପଦ ବୃକ୍ଷ ମୂଳ ସମ
ଯେ ବିଷ୍ଣୁ ଭକ୍ତ ପଦ ଧୂଳି ଅଙ୍ଗରେ ନ ହୁଅଇ ବୋଳି

ସେ ଜନ ଅଟେ ଜୀବନ୍ମୃତ ବୃଥା ଅଟେ ତାହାର ଜୀବିତ
ଯେ ମୂଢ଼ ଶ୍ରୀବିଷ୍ଣୁଚରଣ ତୁଳସୀର ଗନ୍ଧ ଆଘ୍ରାଣ
ନକରେ ସେ ଶବ ସମାନ ତାର ନାସିକା ଅକାରଣ
ବାର ବାର ଶ୍ରୀହରି ନାମ ନକଲେ ଶ୍ରବଣ କୀର୍ତ୍ତନ

ଅଂଗ ପୁଲକିତ ନୁହଁଇ ନେତ୍ରୁ ପ୍ରେମାଶ୍ରୁ ନ ବହଇ
ସେ କାଠ ପିତୁଳା ସମାନ ତା ହୃଦ କୁଳିଶୁଁ କଠିନ
ସେ ଭାଗବତ ଶିରୋମଣି ଆତ୍ମ ତତ୍ତ୍ୱଜ୍ଞ ଶୁକମୁନି
ଭକ୍ତ ପରୀକ୍ଷକୁ ଶ୍ରଦ୍ଧାରେ ଯାହା ଯାହା ସବୁ କହିଲେ
ହେ ସୂତ କରନ୍ତୁ ବର୍ଣ୍ଣନ ପୁଣି ଶୁଣିବା ଶ୍ରଦ୍ଧା ଆମ

**ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ଯାଚତ ହଂସା ସହିଂତାୟାଂ ବୈୟାସିକ୍ୟାଂ ମହାପୁରୁଷ ସଂସ୍ଥାନ ବର୍ଣ୍ଣନେ ଦ୍ୱିତୀୟ ସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ନାମ ତୃତୀୟ ଅଧ୍ୟାୟ ।**

*******

# ଚତୁର୍ଥ ଅଧ୍ୟାୟ

## ସୂତ ଉବାଚ

ଉତ୍ତରା ସୁତ ପରୀକ୍ଷିତ ଶ୍ରବଣ କରି ଆତ୍ମତତ୍ତ୍ୱ
ଶ୍ରୀକୃଷ୍ଣ ପାଦେ ପ୍ରାଣମନ କରି ସମ୍ପୂର୍ଣ୍ଣ ସମର୍ପଣ
ଚିତ୍ତେ ନ ରଖି ବିକଳ୍ପନା ଶରୀର ତନୟ ଅଙ୍ଗନା
ଗୃହ ହସ୍ତ୍ୟଶ୍ୱ ଅଗଣନ ରାଜ୍ୟ ସଂପଦ ପ୍ରଜାଗଣ

ପ୍ରାକୃତିକ ଦୃଢ଼ ଆସକ୍ତି ପରି ଆଗ କଲେ ଝଟିତି
ଆହେ ଋଷି ଗଣ ଆପଣ ପୁଚ୍ଛୁ ଅଛନ୍ତି ଯେଉଁ ପ୍ରଶ୍ନ
ପୂର୍ବେ ପରୀକ୍ଷିତ ରାଜନ ଶ୍ରୀକୃଷ୍ଣ ଦିବ୍ୟ ଲୀଳା ମାନ
କରିବା ନିମିତ୍ତ ଶ୍ରବଣ ଶୁକଙ୍କୁ କରିଥିଲେ ପ୍ରଶ୍ନ

ତାହା ମୁଁ କହୁଛି ବିସ୍ତାର ଶୁଣ ଶୈନକ ତପଚାରୀ
ସେ ପରୀକ୍ଷିତ ନରମଣି ନିଜ ଆସନ୍ନ ମୃତ୍ୟୁ ଜାଣି
ତ୍ରିବର୍ଗ ବୈଷୟିକ କର୍ମ ସକଳ କରିଣ ବର୍ଜନ
କୃଷ୍ଣଠାରେ ପରମ ପ୍ରେମ ଭାବ ରଖି ଏ ପ୍ରଶ୍ନମାନ

ଶୁକଙ୍କୁ ପୁଚ୍ଛିଥିଲେ ଜାଣ ଯା ମନ ବଚନ ଅଗମ୍ୟ
କହିଲେ ରାଜା ପରୀକ୍ଷିତ ହେ ଶୁକ ଆପଣ ନିଷ୍ପାପ
ସର୍ବଜ୍ଞ ସର୍ବେଶ କୃଷ୍ଣର ଲୀଳା ବିଷୟରେ ତୁମର
ସମୀଚିନ କଥା ଅଶେଷ ଅଜ୍ଞାନ ତମ କଲା ନାଶ

ଯେ ଦୃଶ୍ୟମାନ ଜଗତର ରହସ୍ୟ ନଜାଣେ ପ୍ରକାର
ପରମ ପରୁଷ ଶ୍ରୀହରି ସ୍ୱମାୟା ଶକ୍ତିରେ କିପରି
ଏ ଦୃଶ୍ୟମାନ ଜଗତର ରହସ୍ୟ ଜାତେ କି ପ୍ରକାରେ
ଏହି ଜଗତ ସୃଷ୍ଟି ସ୍ଥିତି ମହା ପ୍ରଳୟ ସେ କରନ୍ତି

ପୁଣି ସେ ସର୍ବାକ୍ତି ମାନ ଯେ ଅଚିନ୍ତ୍ୟ ଶକ୍ତ ଧରିଣ
ଅହଂକାର ଓ ମହତତ୍ତ୍ୱ ରୂପେ ହୁଅନ୍ତି ପରିଣତ
ଦେବ ମାନବାଦି ରୂପରେ ଖେଳନ୍ତି ଏହି ସଂସାରେ
ତାହା କରିବାକୁ ଶ୍ରବଣ ଇଚ୍ଛା ହେଉଛି ମୋର ମନ

ସେ ଯେ ଅଦ୍‌ଭୂତ ଲୀଳାରେ ବିହାର କରନ୍ତି ସଂସାରେ
ସେ କୃଷ୍ଣ ଭଗବାନଙ୍କର ଲୀଳାକୁ ତତ୍ତ୍ୱଜ୍ଞ ବ୍ୟକ୍ତିର
ଜାଣିବା ବୁଝିବା ଗହନ ଏହା ନିଶ୍ଚିତ ମତି ମମ
ସେ ଏକ ଅଦ୍ୱିତୀୟ ହରି ସୃଷ୍ଟିରେ ଲୀଳା ଇଛାକରି

ତ୍ରିଗୁଣ ସହିତ ପ୍ରକୃତି ପୁରୁଷ ସ୍ୱରୂପ ଧରନ୍ତି
ହେ ବ୍ରହ୍ମଜ୍ଞ ମୁନିବର କରି ସର୍ବ ବେଦ ବିଚାର
ମୋର ସନ୍ଦେହ ନିବାରଣ କରନ୍ତୁ ସମସ୍ତ ବର୍ଣ୍ଣନ
ଧୀରେ କହନ୍ତି ସୁତ ମୁନି ସେ ପରୀକ୍ଷିତ ନୃପ ମଣି

ଶ୍ରୀହରିଙ୍କ ଗୁଣ ବର୍ଣ୍ଣନା ନିମିତ୍ତ କରନ୍ତେ ପ୍ରାର୍ଥନା
ସେ ଶୁକଦେବ ମହାମତି କୃଷ୍ଣ ଚରଣେ ସ୍ଥାପି ମତି
ଶ୍ରୀଗୁରୁଙ୍କୁ କରି ପ୍ରଣାମ ଆରମ୍ଭ କଲେ ପ୍ରବଚନ

## ଶ୍ରୀ ଶୁକ ଉବାଚ

ସେ ଶୁକ ଦେବ ମହାମୁନି ଶ୍ରୀକୃଷ୍ଣଙ୍କ ପାଦେ ପ୍ରଣମି
କହିଲେ ସେ ପୁରୁଷୋତ୍ତମ ଶ୍ରୀକୃଷ୍ଣ ଅନନ୍ତ ମହିମ
ଲୀଳା କରିବାର ଇଛାରେ ଗୁଣ ତ୍ରୟର ଆଶ୍ରୟରେ
ବ୍ରହ୍ମା ବିଷ୍ଣୁ ଶିବ ରୂପରେ ଅବତୀର୍ଣ୍ଣ ହୋଇ ସଂସାର

କରେ ସୃଷ୍ଟି ସ୍ଥିତି ପାଳନ ସେ ଅନ୍ତର୍ଯ୍ୟାମି ନାରାୟଣ
ସେ ଶ୍ରୀକୃଷ୍ଣ ଭଗବାନ ସାଧୁଜନ କ୍ଳେଶ ହରଣ
ମଙ୍ଗଳ ସାତ୍ତ୍ୱିକ ମୂର୍ତ୍ତିରେ ବିଭିନ୍ନ ଦେବତା ରୂପରେ
ଭକ୍ତେ କର୍ମ ଫଳ ଦିଅନ୍ତି ପାପୀ ଦୁଃଖ ତାପ ହରନ୍ତି

ତତ୍ତ୍ୱଜ୍ଞ ପରମ ହଂସଙ୍କୁ ବିତରନ୍ତି ଆତ୍ମ ତତ୍ତ୍ୱକୁ
ସେ ଗୋବିନ୍ଦଙ୍କୁ ବାରମ୍ବାର କରୁଅଛି ମୁଁ ନମସ୍କାର
ସେ କୃଷ୍ଣ ସ୍ୱୟଂ ନାରାୟଣ ଭକ୍ତଙ୍କୁ କରନ୍ତି ପାଳନ
ମାତ୍ର ଅଜ୍ଞାନ ନ ଜାଣଇ ପ୍ରିୟ ଅପ୍ରିୟ ତାର ନାହିଁ

ତହୁଁ ଅଧିକ ବା ସମାନ ନାହିଁ ନାହିଁ ଏ ତ୍ରିଭୁବନ
ଅଚିନ୍ତ୍ୟ ଐଶ୍ୱର୍ଯ୍ୟ ସଙ୍ଗରେ ରମନ୍ତି ସ୍ୱରୂପ ବ୍ରହ୍ମରେ
ସେ ଈଶ୍ୱରଙ୍କୁ ପୁନଃ ପୁନଃ କରୁଅଛି ମୁହିଁ ପ୍ରଣାମ
ଯାହାର ରୂପ ନାମ ଗୁଣ ଲୀଳାର ଶ୍ରବଣ କୀର୍ତ୍ତନ

ସ୍ମରଣ ଶ୍ରୀମୂର୍ତ୍ତି ଦର୍ଶନ ଚରଣ ବନ୍ଦନ ଅର୍ଚ୍ଚନ
ସର୍ବ ଜୀବ ଦୁଃଖ ହରଇ ଜଗତ ପବିତ୍ର କରଇ
ସେ ଯଶୋଧନ ଗୋବିନ୍ଦର ଚରଣେ ମୋର ନମସ୍କାର
ବିବେକବନ୍ତ ସନ୍ଥଜନ ଯା ପଦ୍ମଚରଣ ଭଜନ

ବିବେକବନ୍ତ ସନ୍ଥଜନ ଯା ପଦ୍ମଚରଣ ଭଜନ
ଇହପର ଭୋଗ ବାସନା ବରଜି ହୁଏ ଶୁଦ୍ଧମନା
ବ୍ରହ୍ମ ସ୍ୱରୂପ ଅକ୍ଳେଶରେ ଲାଭ କରନ୍ତି ଏ ସଂସାରେ
ସେ ଶୁଭ ଶ୍ରବଣ କୃଷ୍ଣର ଚରଣେ ମୋର ନମସ୍କାର

ତପୀ ଜପୀ ଜ୍ଞାନୀ ଯାଜ୍ଞିକ ଯୋଗୀ ଆତ୍ମବିଦ ସାଧକ
ତପ ପ୍ରକୃତି ଫଳମାନ ଯା ପଦେ କରି ସମର୍ପଣ
ଆତ୍ମ ଶ୍ରେୟ ଲାଭ କରନ୍ତି ସେ ସୁମଙ୍ଗଳ କିରତି
ସେ ଶ୍ରୀକୃଷ୍ଣ ଚରଣେ ମୁହିଁ କୋଟି କୋଟି ବାର ନମଇ

କିରାତ ପୁଳିନ୍ଦ ଯବନ ଆନ୍ଧ୍ର ପୁଲିଙ୍ଗ କଙ୍କଝୁଣ
ନିଚ ଅନ୍ୟାନ୍ୟ ପାପୀଜନ ପଦାଶ୍ରିତ ଭକ୍ତ ଶରଣ
ବିନା ପବିତ୍ର ନ ହୁଅନ୍ତି ସେ କୃଷ୍ଣ ଚରଣେ ପ୍ରଣତି
ଯାହାଙ୍କୁ ଜ୍ଞାନ ଯୋଗୀ ଗଣ ଆତ୍ମ ସ୍ୱରୂପେ କରେ ଧ୍ୟାନ

ସାଧକ ଇନ୍ଦ୍ରାଦି ରୂପରେ ଉପାସକ ଧର୍ମ ରୂପରେ
ତପସ୍ୱୀଗଣ ତପୋ ମୂର୍ତ୍ତି ରୂପେ ଆରାଧନା କରନ୍ତି
ବ୍ରହ୍ମା ଶିବାଦି ଭକ୍ତ ଗଣେ ଯାହାଙ୍କ ଶ୍ରୀ ମୂର୍ତ୍ତି ଦର୍ଶନେ
ହୁଅନ୍ତି ଆଶ୍ଚର୍ଯ୍ୟ ଚକିତ ସେହି ଭଗବାନ ଅନନ୍ତ

ମୋ ପ୍ରତି ହୋଇଣ ସଦୟ କରନ୍ତୁ ବାରେ ଅନୁଗ୍ରହ
ସର୍ବ ସମ୍ପଦ ସ୍ୱରୂପିଣୀ ଲକ୍ଷ୍ମୀ ଦେବୀ ଯାର ଗୃହିଣୀ
ଯେ ଯଜ୍ଞେଶ ଫଳ ପ୍ରଦାତା ଅନନ୍ତ ବିଶ୍ୱ ରକ୍ଷା କର୍ତ୍ତା
ଯେ ସର୍ବଜନ ଅନ୍ତର୍ଯ୍ୟାମୀ ଅନନ୍ତ ବିଶ୍ୱ ରକ୍ଷାକର୍ତ୍ତା

ଯେ ସର୍ବଜନ ଅନ୍ତର୍ଯ୍ୟାମୀ ଅଖିଳ ବିଶ୍ୱର ଯେ ସ୍ୱାମୀ
ଯେ ଯଦୁକୁଳେ ଜନ୍ମହେଲେ ଭକତ ମାନଙ୍କୁ ରଖିଲେ
ସାଧୁ ପାଳକ ଭଗବାନ ମୋ ଠାରେ ହୁଅନ୍ତୁ ପ୍ରସନ୍ନ
ଯାର ଚରଣ ଯୁଗଳରେ ଧ୍ୟାନରୂପରେ ସମାଧିରେ

ହୋଇ ଶୁଦ୍ଧ ଅନ୍ତଃକରଣ ବିବେକବନ୍ତ ମୁନିଗଣ
କରେ ଆତ୍ମ ତତ୍ତ୍ୱ ଦର୍ଶନ ଯେ ସଗୁଣ ପୁଣି ନିର୍ଗୁଣ
ସେହି ମୁକୁନ୍ଦ ଜନାର୍ଦ୍ଦନ ମୋ ପ୍ରତି ହୁଅନ୍ତୁ ପ୍ରସନ୍ନ
ଯେ ଏହି ସୃଷ୍ଟି ପ୍ରାରମ୍ଭରେ ପିତାମହ ବ୍ରହ୍ମା ହୃଦୟରେ

ପୂର୍ବ କଳ୍ପର ସ୍ମୃତିମାନ କରିଣ ଥିଲେ ଜାଗରଣ
ଯାହାଙ୍କର ପ୍ରେରଣା ଲଭି ବେଦାଙ୍ଗରୂପା ବାକ୍ୟଦେବୀ
ବ୍ରହ୍ମା ମୁଖରୁ ଆବିର୍ଭୂତା ସେ ସକଳ ଜ୍ଞାନ ପ୍ରଦାତା
ଶ୍ରୀଗୋବିନ୍ଦ ବିଶ୍ୱଭାବନ ମୋ ପ୍ରତି ହୁଅନ୍ତୁ ପ୍ରସନ୍ନ

ଯେ ଏ ଭୌତିକ ଶରୀରରେ ବସେ ଅନ୍ତର୍ଯ୍ୟାମୀ ରୂପରେ
ଶରୀର ପୁରରେ ରହନ୍ତି ପୁରୁଷ ନାମକୁ ବହନ୍ତି
ଯେ ମହାଭୂତ ଚକ୍ଷୁକର୍ଣ୍ଣ ଆଦି ଏଗାର ଇନ୍ଦ୍ରିଗଣ
ଷୋଡଶ ଗୁଣ ପ୍ରକାଶକ ନିୟନ୍ତା ରକ୍ଷକ ପାଳକ

ଶୁଭ ପ୍ରଦାତା ନାରାୟଣ ମୋର ଏ କ୍ଷୁଦ୍ର ପ୍ରବଚନ
ଶ୍ରୋତାଙ୍କର ହୃଦୟଗ୍ରାହୀ କରନ୍ତୁ ବାରେ ଦୟାବହି
ଶ୍ରୀ ବାସୁଦେବ ଅବତାର ବ୍ୟାସ ଦେବଙ୍କୁ ନମସ୍କାର
ଯାହା ମୁଖରୁ ଭକ୍ତ ଗଣ ଜ୍ଞାନ ଅମୃତ କରି ପାନ

ଅସୀମ ତୃପତି ଲଭନ୍ତି ତାଙ୍କ ଚରଣେ ମୋ ପ୍ରଣତି
ବିଧାତାଙ୍କୁ ଶ୍ରୀଜଗଦୀଶ ଦେଉଥିଲେ ଯେ ଉପଦେଶ
ନାରଦ ମୁନିଙ୍କ ଆଗରେ ବ୍ରହ୍ମା ତାଙ୍କୁ ଏହା କହିଲେ
ଏଣୁକ ପରୀକ୍ଷ ସମ୍ବାଦ ବିଷୟା ବିଷର ଅଗଦ
ସୁଜନେ ଶ୍ରବଣ କୀର୍ତ୍ତନ କର ଆନନ୍ଦେ ପ୍ରତିକ୍ଷଣ

ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ପାରମହଂସ୍ୟାଂ ସହିଂତାୟାଂ ବୈୟାସିକ୍ୟାଂ ଦ୍ୱିତୀୟ ସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟ ।

*******

## ପଞ୍ଚମ ଅଧ୍ୟାୟ

### ନାରଦ ଉବାଚ

ବ୍ରହ୍ମାଙ୍କୁ ପୁଚ୍ଛିଲେ ନାରଦ ହେ ପ୍ରଭୋ ମହାଦେବ ଦେବ
ତବ ଚରଣେ ନମସ୍କାର ଆପଣ ସ୍ରଷ୍ଟା ଜଗତର
କରିଲେ କିପରି ସାଧନ ହୁଅଇ ଆତ୍ମତତ୍ତ୍ୱଜ୍ଞାନ
ହେ ପିତା ଦିଅ ଉପଦେଶ ହେ ଭୂତ ଭାବନ ଲୋକେଶ

ଯେ ଏହି ବିଶ୍ୱ ପ୍ରକାଶଇ ଯାକୁ ଆଶ୍ରୟ କରି ରହି
ଯା ଠାରୁ ହୁଏ ଆବିର୍ଭୂତ ଯହିଁରେ ହୁଏ ତିରୋହିତ
ଯାହାର ଅଟଇ ଅଧୀନ ସେ ବିଶ୍ୱ ସ୍ୱରୂପ କଅଣ
ସେ ସବୁ କରନ୍ତୁ ବର୍ଣ୍ଣନ ହେ ପିତ ଚତୁର ଆନନ

ଭୂତ ଭବିଷ୍ୟ ବର୍ତ୍ତମାନ ନିୟନ୍ତା କେବଳ ଆପଣ
କର ଆମଳକ ପ୍ରକାରେ ଆପଣ ବିଜ୍ଞାନ ବଳରେ
ବିଶ୍ୱକୁ ସ୍ପଷ୍ଟ ଅନୁଭବ କରି ଅଛନ୍ତି ଆହେ ଦେବ
କାହାର ଆଶ୍ରୟ ଅଧୀନ କରୁ ଅଛନ୍ତି ଅବସ୍ଥାନ

ଆପଣଙ୍କ ସ୍ୱରୂପ କଅଣ କିଏ ବା କଲା ଜ୍ଞାନ ଦାନ
ଆପଣ ଏହି ଜଗତର ସ୍ୱତଂତ୍ର ପରମ ଈଶ୍ୱର
ମାୟା ଶକତି ଆଶ୍ରୟରେ ପଞ୍ଚ ମହାଭୂତ ଯୋଗରେ
ଏ ବିଶ୍ୱ କରିଛ ସର୍ଜନ ଏ ମୋର ସ୍ପଷ୍ଟ ଅନୁମାନ

ବିଶ୍ୱ ପାଳକ ଯେ ଆପଣ ପଞ୍ଚ ଭୂତ ତବ ଅଧୀନ
ଊର୍ଣ୍ଣନାଭ ନିଜ ଶକ୍ତିରେ ନିଜ ଦେହରୁ ସ୍ୱଇଛାରେ
ଯଥା ତନ୍ତୁ ଜାଲ ବିସ୍ତାରେ ସେହି ପରି ମାୟା ଶକ୍ତିରେ
ଆହେ ପିତାମହ ଭୂତେଶ ବ୍ରହ୍ମାଣ୍ଡ ତୋ ଦେହୁ ପ୍ରକାଶ

ଉତ୍ତମ ମଧ୍ୟମ ଅଧମ ସେ ସବୁ ମନୁଷ୍ୟାଦି ନାମ
ଦ୍ୱିପଦ ଆଦି ସ୍ୱରୂପରେ ଶୁକ୍ଳ କୃଷ୍ଣ ଆଦି ଗୁଣରେ
ଯାହା ବା କିଛି ସ୍ଥୂଳ ସୂକ୍ଷ୍ମ ସକଳ ତୋ ମାୟା ଭିଆଣ
ତଥାପି ଆହେ ଶ୍ରୀ ଲୋକପତି କିପାଇଁ ତପ ଆଚରନ୍ତି

ବଡ ସଂଶୟ ମୋ ମନରେ    ନିଶ୍ଚେ ଆପଣଙ୍କ ଉର୍ଦ୍ଧ୍ୱରେ
ଅନ୍ୟ କେ ନିୟନ୍ତା ଅଛନ୍ତି    ହେ ମହେଶ୍ୱର ବିଶ୍ୱପତି
ହେ ସର୍ବଜ୍ଞ ସର୍ବେଶ୍ୱର    ଯେପରି ଦୟାରୁ ତୁମର
ବୁଝି ପାରିବି ଏହି ତତ୍ତ୍ୱ    ବର୍ଣ୍ଣନା କରନ୍ତୁ ସମସ୍ତ

### ବ୍ରହ୍ମା ଉବାଚ

ବ୍ରହ୍ମା କହିଲେ ଆହେ ସୌମ୍ୟ    ସନ୍ଦେହ କରି ବର୍ତ୍ତମାନ
ପୁଚ୍ଛିଲୁ ମତେ ଯେଉଁ ପ୍ରଶ୍ନ    ତାହା ଅଟଇ ସମୀଚିନ
ଶ୍ରୀ ଭଗବାନଙ୍କ ମହାତ୍ମ୍ୟ    କରିବା ନିମିତ୍ତ ବର୍ଣ୍ଣନ
ହୃଦେ ମୋ ପ୍ରବୃତ୍ତି ଜନ୍ମାଇ    ମହୋପକାର କଲୁ ତୁହି

ମୁଁ କେବେ ନୁହଁଇ ଈଶ୍ୱର    ଅଯଥା ପ୍ରଶଂସା ତୋହର
ମୁଁ ଯେ ଈଶ୍ୱର ଅଟେ ସତ୍ୟ    ମାତ୍ର ଯେ ଅନନ୍ତ ଅଚ୍ୟୁତ
ଶକ୍ତିରେ ମୋହର ଏ ପ୍ରଭୁତ୍ୱ    ତାହା ତୋହର ଅବିଦିତ
ଏକ ମାତ୍ର ସେ ଭଗବାନ    ବିଶ୍ୱର ପ୍ରକାଶକ ଜାଣ

ସୂର୍ଯ୍ୟ ନକ୍ଷତ୍ର ତାରାଗଣ    ଅଗ୍ନି ଚନ୍ଦ୍ରମା ପ୍ରହମାନ
ତାଙ୍କରି ଯୋଗୁ ପ୍ରକାଶିତ    କରନ୍ତି ବିଶ୍ୱ ଆଲୋକିତ
ତାଙ୍କ ପ୍ରକାଶେ ପ୍ରକାଶିତ    ମୁହିଁ ସୃଜଇ ଏ ଜଗତ
ତାଙ୍କରି ଦୁର୍ଜୟ ମାୟାରେ    ମୁଁ ଖ୍ୟାତ ବିରଞ୍ଚି ନାମରେ

ସେ ବାସୁଦେବ ଜନାର୍ଦ୍ଦନ    ଶ୍ରୀ ପଦେ ମୋ କୋଟି ପ୍ରଣାମ
ଏ ମାୟା କୂଟକୁ କେବଳ    ଜାଣନ୍ତି ସେହି ଆଦିମୂଳ
ଏ ଯୋଗୁ ମାୟା ଲଜ୍ଜା ପାଇ    ତାଙ୍କ ସମ୍ମୁଖେ ରହେ ନାହିଁ
ମାୟା ମୋହରେ ମୂଢ଼ ମନା    କରେ ନର ବୃଥା ଗରିମା

ଆହେ ନାରଦ କାଳ ଦ୍ରବ୍ୟ    ସ୍ୱଭାବେ ପାତ୍ର ବସ୍ତୁ ସର୍ବ
ବାସୁଦେବରୁ ନୁହେଁ ଭିନ୍ନ    ଏହା ଧ୍ରୁବ ସତ୍ୟ ପ୍ରମାଣ
ଶ୍ରୀ ନାରାୟଣ ଠାରୁ ଜାତ    ହୋଇଛନ୍ତି ବେଦ ସମସ୍ତ
ସର୍ବ ଦେବତା ନାରାୟଣ    ଅଙ୍ଗୁ ହୋଇଛନ୍ତି ଉତ୍ପନ୍ନ

ସ୍ୱର୍ଗାଦି ଚତୁର୍ଦ୍ଦଶପୁର    ଆନନ୍ଦାଂଶ ହିଁ ତାହାଙ୍କର
ଯାଗ ଯଜ୍ଞାଦି ନାନା କର୍ମ    ତାଙ୍କୁ ଲଭିବାର ସାଧନ
ଯମାଦି ଯୋଗ ସାଧନାରେ    ଏକ ଚିତ୍ତରେ ତପ କଲେ
ପ୍ରକାଶ ପାଏ ଦିବ୍ୟ ଜ୍ଞାନ    ଜ୍ଞାନରୁ ମିଳଇ ନିର୍ବାଣ

ଏସବୁ ଗୋବିନ୍ଦ ଅଧୀନ    କହନ୍ତି ଚତୁର ଆନନ
ସର୍ବ ସାକ୍ଷୀ ସେ ସର୍ବେଶ୍ୱର    ସର୍ବଭୂତାତ୍ମା ନିର୍ବିକାର
ବିଷ୍ଣୁଙ୍କ ଠାରୁ ଜନ୍ମି ମୁହିଁ    ଏ ବିଶ୍ୱ ସର୍ଜନା କରଇ
ସେହି ବିଭୁ ଶ୍ରୀ ନରହରି    ସ୍ୱ ମାୟା ଶକ୍ତି ଆଶ୍ରା କରି

ସୃଷ୍ଟି ସ୍ଥିତି ଲୟ ନିମିତ୍ତ    ରାଜସ ତାମସ ଯେ ସତ୍ତ୍ୱ
ତ୍ରିଗୁଣ କରନ୍ତ ଗ୍ରହଣ    ମାତ୍ର ସେ ସ୍ୱଭାବ ନିର୍ଗୁଣ
ଏ ଜୀବ ସ୍ୱଭାବରେ ମୁକ୍ତ    ହେବାରୁ ଈଶ୍ୱର ବିମୁଖ
କ୍ଷିତ୍ୟାଦି ମହାପଞ୍ଚଭୂତ    ଅଧିଷ୍ଠାତା ଦେବ ସମସ୍ତ

ଇନ୍ଦ୍ରିୟ ଯେ ଇନ୍ଦ୍ରିୟ ଗଣ    ଆଶ୍ରୟ ସତ୍ତ୍ୱାଦି ତ୍ରିଗୁଣ
ଜୀବକୁ ତ୍ରିତାପ ଅଗ୍ନିରେ    ଦଗ୍ଧକରନ୍ତି ଏ ସଂସାରେ
ଭଗବାନ ଏ ଗୁଣମୟ    ଶରୀର କଲେ ବି ଆଶ୍ରୟ
ନୁହନ୍ତି ଗୁଣର ଅଧୀନ    ଗୁଣ ହେ ବସ୍ତୁ ଦେଇମନ

ଜୀବ ତ୍ରିଗୁଣ ବଶ ହୋଇ    ଆଧ୍ୟାତ୍ମ ଜ୍ଞାନକୁ ହରାଇ
ସୀମିତ ଇନ୍ଦ୍ରିୟ ଶକ୍ତିରେ    ଗୋବିନ୍ଦଙ୍କୁ ନଜାଣି ପାରେ
ମୋର ସହିତ ଜୀବଗଣ    ସେ ଏକା କରନ୍ତି ଶାସନ
ପ୍ରଳୟ ସମୟର କାଳ    ଅଦୃଷ୍ଟ ସହିତ ସକଳ

ଶ୍ରୀହରି ଅଂଗେ ହୁଏ ଲୀନ    ଏହାତ ବିଚିତ୍ର ବିଧାନ
ଏକରୁ ହେବାକୁ ବହୁତ    ଯେବେବେଳେ ଇଚ୍ଛା ହୁଏ ଜାତ
ସେ ବେଳେ ଜଗତ ସର୍ଜନ    ପ୍ରକ୍ରିୟା ହୁଏ ଉପକ୍ରମ
କେବେ ସୃଷ୍ଟି ସତ୍ତା ଜନ୍ମଇ    ତାହା ନ ପାରେ କେହି କହି

ଈଶ୍ୱରଙ୍କ କାଳ ଶକତି    କ୍ଷୋଭିତ କରଇ ପ୍ରକୃତି
ମାୟାଧର ନିଜ ମାୟାରେ    ପ୍ରକୃତିକୁ ଜାଗ୍ରତ କରେ
ପ୍ରକୃତି ଅନ୍ୟ ରୂପ ଧରେ    ଜୀବର କର୍ମ ସମୂହରେ
ସୃଷ୍ଟିର ଯେ ଉପାଦାନରେ    ମହତ ପ୍ରଭୃତି ତତ୍ତ୍ୱରେ

ପରିଣତ ହୁଏ ପ୍ରକୃତି    ଏ ପ୍ରକ୍ରିୟା ବିଚିତ୍ର ଅତି
ମହତ୍ତ୍ୱେ ସତ୍ତ୍ୱ ରଜୋଗୁଣ    ଅଧିକ ଅଳ୍ପ ତମୋଗୁଣ
ମହତ ହୋଇଣ ବିକୃତ    ଅହଂତତ୍ତ୍ୱକୁ କରେ ଜାତ
ତମ ଅଧିକ ଅହଂକାର    ଭୂତେନ୍ଦ୍ରିୟ ଦେବଗଣର

ଜୀବ ରହଇ ଏ ତତ୍ତ୍ୱରେ
ଏହି ଯେ ଅହଂକାର ତତ୍ତ୍ୱ
ଦ୍ରବ୍ୟ କ୍ରିୟା ଜ୍ଞାନ ଶକ୍ତିରେ
ସଙ୍ଗେ ସ୍ୱଭାବ କାଳ କର୍ମ
ଏହା ଅଜ୍ଞେୟ ବ୍ରହ୍ମାଦିରେ
ସତ୍ତ୍ୱାଦି ତ୍ରିଗୁଣେ ବିଭକ୍ତ
ପରିଣତ ହୁଏ ସ୍ୱେଚ୍ଛାରେ
ସକଳ ଜଗତି ସମ୍ପୂର୍ଣ୍ଣ

ପ୍ରଳୟେ ବିଷ୍ଣୁ ଗର୍ଭେ ଲୀନ
ଦ୍ରବ୍ୟ ଶକ୍ତିମୟ ତାମସ
ଶବ୍ଦ ଏହାର ସୂକ୍ଷ୍ମ ଧର୍ମ
ଶବ୍ଦରୁ ଦ୍ରଷ୍ଟା ଦୃଶ୍ୟ ହୋଇ
ସୃଷ୍ଟି ଲୟ ତା ଖେଳ ଜାଣ
ଅହଂକାରୁ ଜାତ ଆକାଶ
କର୍ଣ୍ଣେନ୍ଦ୍ରିୟ କରେ ଗ୍ରହଣ
ବସ୍ତୁର ଜ୍ଞାନ ଉପୁଜଇ

ଆକାଶରୁ ବାୟୁ ଜନମ
କାର୍ଯ୍ୟେ କାରଣ ଗୁଣ ଥାଏ
ବାୟୁ ସାହାର୍ଯ୍ୟେ ଜୀବଗଣ
ବାୟୁ ଦ୍ୱାରା ଇନ୍ଦ୍ରିୟ ମନ
ସ୍ପର୍ଶ ଅଟେ ତାର ଧର୍ମ
ତେଣୁ ଶବ୍ଦ ବାୟୁରେ ରହେ
ପ୍ରାଣକୁ କରନ୍ତି ଧାରଣ
ଶରୀରର ଶକ୍ତି ଜନମ

ଏହିପରି କାଳ କର୍ମର
ଇଚ୍ଛାରେ ବାୟୁ ତେଜ ଜନ୍ମ
ତହିଁ ଥାଏ ଶବ୍ଦ ସ୍ପର୍ଶ ଗୁଣ
ରସ ତନ୍ମାତ୍ରା ତାର ଗୁଣ
ସ୍ୱଭାବ ବଶେ ଈଶ୍ୱରର
ରୂପ ତେଜର ଅଟେ ଧର୍ମ
ତେଣୁ ସଲିଳ ଲଭେ ଜନ୍ମ
ତହିଁ ପୂର୍ବ କାରଣ ଗୁଣ

ରୂପ ଶବ୍ଦ ସ୍ପର୍ଶ ରହଇ
ରୂପ ଶବ୍ଦ ସ୍ପର୍ଶ ରହଇ
ଗନ୍ଧ କ୍ଷିତିର ଅଟେ ଧର୍ମ
ଶବଦ ସ୍ପର୍ଶ ରୂପ ରସ
ତହିଁ ପୂର୍ବ କାରଣ ଗୁଣ
ଜଳରୁ ପୃଥିବୀ ଜନ୍ମଇ
ପରୀକ୍ଷ ସାବଧାନେ ଶୁଣ
କ୍ଷିତିଲେ କରିଥାନ୍ତି ବାସ

ସାତ୍ତ୍ୱିକ ଅହଂକାରୁ ମନ
ଅଧିଷ୍ଠାତା ଦେବତା ଗଣ
ଅଶ୍ୱିନୀ କୁମାର ଅନଳ
ଜନମ ପ୍ରଜାପତିଙ୍କର
ପ୍ରଭୃତି ଦଶେନ୍ଦ୍ରିୟ ଜାଣ
ଦିଗ ବାତ ସୂର୍ଯ୍ୟ ବରୁଣ
ଉପେନ୍ଦ୍ର ମିତ୍ର ପୁରନ୍ଦର
ଇଚ୍ଛାଶକ୍ତିରେ ଈଶ୍ୱରର

ରାଜସ ଅହଂକାରୁ ଜ୍ଞାନ
କ୍ରିୟା ଶକତି ଯୁକ୍ତ ପ୍ରାଣ
ଚକ୍ଷୁ ନାସିକା ଜିହ୍ୱା କର୍ଣ୍ଣ
ପାଣି ପାଦ ସ୍ନାୟୁ ବଚନ
ଶକ୍ତିମାନ ବୁଦ୍ଧି ଜନମ
ଈଶ୍ୱର ଇଚ୍ଛାରେ ଜନମ
ଚର୍ମ ପଞ୍ଚ ଜ୍ଞାନେନ୍ଦ୍ରି ଜନ୍ମ
ଉପସ୍ଥ କର୍ମେନ୍ଦ୍ରିୟ ଜନ୍ମ

ଭୂତ ଇନ୍ଦ୍ରିୟ ମନ ଗୁଣ
ଅକ୍ଷମ ଦେହ ଗଠନରେ
ପରସ୍ପର ସଂଯୁକ୍ତ ହୋଇ
ବ୍ରହ୍ମାଣ୍ଡ ଦେହ ସମଷ୍ଟିରେ
କରି ପୃଥକ ଅବସ୍ଥାନ
ହେବାରୁ ଈଶ୍ୱର ଇଚ୍ଛାରେ
ଗୌଣ ଯେ ମୁଖ୍ୟ ଭାବବହି
ଜୀବ ଶରୀରକୁ ବ୍ୟଷ୍ଟିରେ

କରି ଅଛନ୍ତି ଯେ ନିର୍ମାଣ
କାଳ କର୍ମ ସ୍ୱଭାବ ସୃଷ୍ଟ
ଜଡ ବ୍ରହ୍ମାଣ୍ଡ ପ୍ରଥମରେ
ବହୁ ସହସ୍ର ବର୍ଷପରେ
ଈଶ୍ୱର ମହିମା ଅସୀମ
ବ୍ୟଷ୍ଟି ସମଷ୍ଟି ଦେହ ବିଶିଷ୍ଟ
ରହଇ କାରଣାର୍ଣ୍ଣବରେ
ବିଷ୍ଣୁ ଅନ୍ତର୍ଯ୍ୟାମୀ ରୂପରେ

ପ୍ରବେଶି ସର୍ବ ଅଚେତନ
ଏ ଅନ୍ତେ ସର୍ବେଶ୍ୱର ହରି
ପୁରୁଷ ପୂରୁଷକୁ ଧରି
ସସ୍ତରୁ ସସ୍ତରୁ ଚରଣ
ଦେହେ ସଂଚରନ୍ତି ଚୈତନ୍ୟ
ଏହି ବ୍ରହ୍ମାଣ୍ଡ ଭେଦ କରି
ତହିଁରୁ ଆସନ୍ତି ବାହାରି
ସହସ୍ର ବାହୁ ଚକ୍ଷୁକର୍ଣ୍ଣ

ସହସ୍ର ମସ୍ତକ ବଦନ
ଏ ଅନ୍ତର୍ଯ୍ୟାମୀ ପୁସ ଠାରେ
ଭୂ ଭୁବ ସ୍ୱ ମହଜନ
କରନ୍ତି ସଦା ଅବସ୍ଥାନ
ଧରନ୍ତି ପ୍ରଭୁ ଭଗବାନ
ଜଙ୍ଘୁ ଉର୍ଦ୍ଧ୍ୱ ଅବୟବରେ
ତପ ସତ୍ୟ ଏ ଲୋକମାନ
ସେତ ଅନନ୍ତ ଶକ୍ତିମାନ

ଜଙ୍ଘୁ ଅଧଃ ଅବୟବରେ
ଅତଳ ବତଳ ସୁତଳ
ରସାତଳ ପ୍ରଭୃତି ସପ୍ତ
ମୁଖୁ ବ୍ରାହ୍ମଣ ବୈଶ୍ୟ ଉରୁ
ସେ ଅଦ୍ୱିତୀୟ ପୁରୁଷରେ
ତଳାତଳ ଯେ ମହୀତଳ
ଲୋକ କଳ୍ପଇ ଜ୍ଞାନ ବନ୍ତ
ବାହୁ କ୍ଷତ୍ରି ଶୂଦ୍ର ପାଦରୁ

ଚରଣରୁ କଟୀ ପର୍ଯ୍ୟନ୍ତ
ଭୂଲୋକ ହୋଇଛି କଳ୍ପିତ
ଭୂଲୋକ ନାଭିର ମଧ୍ୟରେ
ମହର୍ଲୋକ ବକ୍ଷ ଦେଶରେ
ପାତାଳାଦି ଲୋକ ସପତ
ଜ୍ଞାନୀ ଏ ଜାଣନ୍ତି ଏ ତତ୍ତ୍ୱ
ଆଲୋକ ରହେ ହୃଦୟରେ
ଜନ ଲୋକ ରହେ ହୃଦୟରେ

କଟି ପ୍ରଦେଶରେ ଅତଳ
ଜାନୁରେ ରହଇ ସୁତଳ
ଜଙ୍ଘ ଦ୍ୱୟରେ ତଳାତଳ
ରସାତଳ ପାଦ ଅଗ୍ରରେ
ଉରୁ ଯୁଗଳରେ ବିତଳ
ଏପରି ଭକ୍ତ ବାସସ୍ଥଳ
ଗୁଳ୍ଫ ଯୁଗଳେ ମହାତଳ
ପାତାଳ ଚରଣ ତଳରେ

ଏହି ପୁରୁଷ ଲୋକମୟ ଅନାଦି ଅବ୍ୟକ୍ତ ଅବ୍ୟୟ
କେତେ ବିଜ୍ଞାନୀଙ୍କ ମତରେ ଭୂଲୋକ ପୁରୁଷ ପାଦରେ
ନାଭି ପ୍ରଦେଶେ ଭୁବଲୋକ ମସ୍ତକେ ରହଇ ସ୍ୱଲୋକ
ବିଜ୍ଞାନୀ ଗଣ ଏ କହଇ କେବା ଜାଣିବ ନର ଦେହୀ

ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ପାରମ ହଂସ୍ୟା ସହିଂତାୟାଂ ବୈୟାସିକ୍ୟାଂ ମହାପୁରୁଷ ସଂସ୍ଥାନ ବର୍ଣ୍ଣନେ ଦ୍ୱିତୀୟ ସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ନାମ ପଞ୍ଚମ ଅଧ୍ୟାୟ ।

*******

## ଷଷ୍ଠ ଅଧ୍ୟାୟ

**ଷଷ୍ଠେ ବିରାଟ୍ ବିଭୂତିଣ୍ଟ ପ୍ରୋକ୍ତାଧ୍ୟାମ୍ଭାଦି ଭେଦତଃ**
**ଦୃଢୀ କୃତଂଚ ପୂର୍ବୋକ୍ତଂ ସର୍ବ ପୁରୁଷ ସ୍ୱକୃତଃ**

ବ୍ରହ୍ମା କହିଲେ ହେ ନାରଦ ଏବେ ଶୁଣ ଦିବ୍ୟ ସମ୍ବାଦ
ସେହି ବିରାଟ ପୁରୁଷର ମୁଖ ସକଳ ଜୀବଙ୍କର
ବାକ୍ୟ ଅଧୀଶ୍ୱର ଅନଳ ତଥା ବଚନ ଇନ୍ଦ୍ରିୟର
ଉତ୍ପତ୍ତିର ସ୍ଥାନ ଅଟଇ ରେ ବର ଘେନ ମନ ଦେଇ

ରସ ରକ୍ତାଦି ଧାତୁ ସପ୍ତ ଗାୟତ୍ରୀ ଆଦି ଛନ୍ଦ ସପ୍ତ
ହବ୍ୟ କବ୍ୟା ମୃତ ନାମକ ଦେହ ପିତୃ ମନୁଷ୍ୟ ଲୋକ
ମଧୁରାଦି ଷଡ ରସର ରସ ଅଧିପ ବରୁଣର
ତାଙ୍କ ରସନାରୁ ଉତପତ୍ତି ଜ୍ଞାନୀ ଏ ତତ୍ତ୍ୱ ଜାଣନ୍ତି

ସେହି ବିରାଟ ପୁରୁଷର ନାସା ରନ୍ଧ୍ର ସର୍ବ ଜୀବର
ପ୍ରାଣ ପ୍ରାଣର ଦେବଗଣ ବାୟୁ ମହାବାୟୁ ଜନମ
ଆଘ୍ରାଣୁ ସକଳ ଔଷଧ ଘ୍ରାଣର ଅଧିଷ୍ଠାତା ଦେବ
ଅଶ୍ୱିନୀ କୁମାର ଜନ୍ମିଲେ ନାନା ପ୍ରକାର ଗନ୍ଧ ତୁଲେ

ନୟନୁ ସକଳ ବସ୍ତୁର ରୂପ ରୂପାଶ୍ରୟ ତେଜର
ଚକ୍ଷୁ ଗୋଲକରୁ ତାଙ୍କର ଜାତ ସୂର୍ଯ୍ୟ ସୂର୍ଯ୍ୟ ମଣ୍ଡଳ
କର୍ଣ୍ଣ ଦ୍ୱୟରୁ ଦିଶ ଗଣ ଶ୍ରବଣ ଇନ୍ଦ୍ରିୟ ବଗନ
ଆକାଶରୁ ଶବଦ ଗୁଣ ହେ ବତ୍ସ ହୋଇଛ ଜନମ

ତାଙ୍କ ଦେହ ସର୍ବବସ୍ତୁର ସାରାଂଶ ସୌନ୍ଦର୍ଯ୍ୟ ଆଧାର
ସେ ବିରାଟ ପରୁଷର ଚର୍ମ ସ୍ପର୍ଶ ବାୟୁ ଯଜ୍ଞ କରମ
ଲୋମ ମଧୁ ଯଜ୍ଞୀୟ ଦ୍ରୁମ ଶ୍ମଶ୍ରୁ ନଖ ଲୌହ ପ୍ରାଣ
ଭୂର୍ଭୁବ ସ୍ୱ ତିନି ଲୋକ ସର୍ବ ଶୁଭପ୍ରଦ ରକ୍ଷକ

କେଶୁ ଜାତ ମେଘ ବିଦ୍ୟୁତ ବାହୁ ଲୋକପାଳ ସମସ୍ତ
ତାଙ୍କ ପାଦ ନ୍ୟାସୁ ଜନମ ସକଳ କାମ୍ୟ ବସ୍ତୁମାନ
ତାହାର ପ୍ରାପ୍ତି ସଂରକ୍ଷଣ ସ୍ଥାନ ତାଙ୍କର ଶ୍ରୀଚରଣ
ଲିଙ୍ଗରୁ ଜାତ ରେତ ଜଳ ଜଗତ୍ ପାଳକ ମେଘମାଳ

ବିଶ୍ୱର ସ୍ରଷ୍ଟା ପ୍ରଜାଜଳ ତହିଁରୁ ହେଲେ ଉତ୍ପତି
ତାଙ୍କ ପାଦ ନ୍ୟାସୁ ଜନମ ସକଳ କାମ୍ୟ ବସ୍ତମାନ
ଭୂର୍ଭୁବ ସ୍ୱତିନି ଲୋକ ସର୍ବ ଶୁଭ ପ୍ରଦ ବୃକ୍ଷ
ଜନକେନ୍ଦ୍ରିୟ ଯାହାଙ୍କର ସନ୍ତାନାର୍ଥୀ ଜୀବଗଣର

ମୈଥୁନ ଜାତ ଆନନ୍ଦର ଅଟଇ ଜନମ ଆଧାର
ଗୁହ୍ୟରୁ ଯମ ଦେବ ଜନ୍ମ ମଳ ତ୍ୟାଗର କ୍ରିୟା ପୁନ
ଗୁହ୍ୟ ଦେଶୁ ହିଂସା ମରଣ ନରକ ଅଲକ୍ଷ୍ମୀ ଜନମ
ପୃଷ୍ଠ ଦେଶରୁ ପରାଭବ ଅଜ୍ଞାନ ଅଧର୍ମ ସମ୍ଭବ

ନାଡିରୁ ନଦ ନଦୀଗଣ ଅସ୍ଥିରୁ ପର୍ବତ ଜନମ
ଅନ୍ନାଦି ରସର ଆଧାର ଉଦରୁ ଜନମ ସାଗର
ସେ ଉଦର ସର୍ବ ପ୍ରାଣୀର ସ୍ଥାନ ଅଟଇ ମରଣର
ହୃଦରୁ ଜୀବ ଜନ୍ତୁଙ୍କର ଜନ୍ମ ହେଲା ଲିଙ୍ଗ ଶରୀର

ତାଙ୍କ ଚିତ୍ତରୁ ଧର୍ମ ଦେବ ମୁଁ ତୁମେ ରୁଦ୍ର ଋଷି ସର୍ବ
ସନକାଦି କୁମାର ଗଣ ପ୍ରାଣୀ ଗଣର ଚିତ୍ତ ଜନ୍ମ
ଅପ୍ସରା ରାକ୍ଷସ ଉରଗ ସରୀସୃପ ପିଶଚ ନାଗ
ପିତର ସିଦ୍ଧି ଯେ ଚାରଣ ବିଦ୍ୟାଧର ବତୀ ଦ୍ରୁମ

ଜଳ ସ୍ଥଳଚର ଖେଚର ଗ୍ରହ ନକ୍ଷତ୍ର ଜଳଧର
ବିଦ୍ୟୁତ ତାରକା ମଣ୍ଡଳ ପୁଣ ଜ୍ୟେଷ୍ଠ ଭ୍ରାତା ତୁମର
ମରୀଚି ସନକାଦି ଗଣ ବିଶ୍ୱର ଜୀବ ଜନ୍ତୁଗଣ
ଭୂତ ଭବିଷ୍ୟ ବର୍ତ୍ତମାନ ସଂସାର ସର୍ବ ବସ୍ତୁମାନ

ସେ ପୁରୁଷ ଠାରୁ ଅଭିନ୍ନ ସେତ ବ୍ରହ୍ମାଣ୍ଡ ରୂପ ଜାଣ
ସେ ସମସ୍ତଙ୍କ ଉର୍ଦ୍ଧ୍ୱରେ ଦଶାଙ୍ଗୁଳ ପରିମାଣରେ
ସ୍ଥାନକୁ ବ୍ୟାପି ଅବସ୍ଥିତ ଜାଣନ୍ତି କେବଳ ପଣ୍ଡିତ
ଯଥା ସୂର୍ଯ୍ୟ ସ୍ୱୟଂ ପ୍ରକାଶ କରନ୍ତି ଜଗତ ପ୍ରକାଶ

ତଥା ଅନ୍ତର୍ଯ୍ୟାମୀ ରୂପରେ ବ୍ରହ୍ମାଣ୍ଡ ବିରାଟ ଦେହରେ
ଜୀବର ବାହ୍ୟ ଆଭ୍ୟନ୍ତର ଚେତନା କରନ୍ତି ସଂଚାର
ସେ କର୍ମ ଫଳରୁ ଅତୀତ ଅକ୍ଷୟ, ଅବ୍ୟୟ, ଅବ୍ୟକ୍ତ
ପରମ ଆନନ୍ଦ ଭୋଗନ୍ତି ପ୍ରତିଜ୍ଞାତ୍ମକ ଯେ ଅଟନ୍ତି

ପ୍ରପଞ୍ଚ ଧର୍ମ ନାହିଁ ଯାର ତାଙ୍କର ମହିମା ଅପାର
ସେ ଅଦ୍ୱୟ ଏକ କେବଳ ଜଗତ ଆଶ୍ରୟର ସ୍ଥଳ
ତାଙ୍କ ଏକ ଚତୁର୍ଥାଂଶରେ ଭୁ ଭୂର୍ବ ଲୋକ ପ୍ରଭୃତିରେ
ଜୀବେ କରନ୍ତି ଅବସ୍ଥାନ କେ ଅବା କରିବ ବର୍ଣ୍ଣନ

ସେ ମହର୍ଲୋକର ଉର୍ଦ୍ଧ୍ୱରେ ଜନ ତପ ସତ୍ୟ ଲୋକରେ
କ୍ରମରେ ଅମୃତ ଅଭୟ ପୁଣି ମୁକ୍ତି ସୁଖ ଅକ୍ଷୟ
ସେହି ପୁରୁଷ ରଖିଛନ୍ତି ଜ୍ଞାନ ଯୋଗୀ ଏହା ଜାଣନ୍ତି
ସନ୍ୟାସୀ ବ୍ରହ୍ମଚାରୀ ଯତୀ ଉତ୍ତମ ଭାଗ୍ୟବନ୍ତ ବ୍ୟକ୍ତି

ବହିସ୍ଥିତ ଲୋକତ୍ରୟର ଚରଣ ତ୍ରୟ ବିଭୂତିର୍ରେ
ପରମ ଆନନ୍ଦ ଭୋଗନ୍ତି ମାତ୍ର ବିଷୟା ସକ୍ତମତି
ତିନି ଲୋକର ମଧ୍ୟ ସ୍ଥିତ ଏକ ପାଦ ବିଭୂତି ପାତ୍ର
ଭୋଗରେ ସମର୍ଥ ହୁଅନ୍ତି ଭବେ ଜନ୍ମ ମୃତ୍ୟୁ ଲଭନ୍ତି

ଅଜ୍ଞାନରେ ବିଷୟ ଭୋଗ ଜ୍ଞାନେ ମିଳଇ ମୁକ୍ତି ମାର୍ଗ
ସର୍ବବ୍ୟାପୀ ପରମେଶ୍ୱର ଅତୀତ ଅଟନ୍ତି ଏହାର
ସ୍ୱୟଂ ଶ୍ରୀମାନ ନାରାୟଣ ଭକ୍ତି ମୁକ୍ତି ଆଶ୍ରୟ ସ୍ଥାନ
ବ୍ରହ୍ମାଣ୍ଡ ରୂପ ଇନ୍ଦ୍ରିଗଣ ତ୍ରିଗୁଣ ବ୍ରହ୍ମାଣ୍ଡରୁ ଜନ୍ମ

ଯଥା ସୂର୍ଯ୍ୟ ସ୍ୱ ମଣ୍ଡଳରେ ରହି କିରଣ ସମୂହରେ
ଜଗତ ଆଲୋକିତ କରେ ତଥା ବିଷ୍ଣୁ ନିଜ ଧାମରେ
ବିରାଟ ବ୍ରହ୍ମାଣ୍ଡ ଦେହର ଚୈତନ୍ୟ କରନ୍ତୁ ସଂଚାର
ସେତ ସର୍ବଜ୍ଞ ସର୍ବେଶ୍ୱର ସକଳ ଶକ୍ତିର ଆଧାର

ଯେବେକେ ଗର୍ଭୋଦକ ଶାୟୀ ନାଭିପଦ୍ମରେ ଥିଲି ମୁହିଁ
କେବଳ ତାଙ୍କ ଅଂଗ ଭିନ୍ନ ନଥିଲା ଯଜ୍ଞ ବସ୍ତୁ ଅନ୍ୟ
ଅବୟବରୁ ସେ ପୁରୁଷର ଯଜ୍ଞର ସକଳ ସମ୍ଭାର
ଯଜ୍ଞ ଭୂମି ବସନ୍ତାଦି କାଳ ଯୂପ କୁଶ ମୃତ୍ତିକା ଜଳ

ଯଜ୍ଞୀୟ ପଶୁ ଯଜ୍ଞ ପାତ୍ର ମଧୁର ରସ ବ୍ରୀହି ଘୃତ
ଚରୁ ଯଦୁ ସାମ ଋତୁ ହୋତ୍ର ମନ୍ତ୍ର ଦକ୍ଷିଣା ପୁଣ୍ୟ ବ୍ରତ
ସୋମାଦି ଦେବତା ଗଣର ପ୍ରକୃତ ଉଦ୍ଦେଶ୍ୟ ସକଳ
କଳ୍ପ ସଂକଳ୍ପ ଚିନ୍ତାଗତି ପ୍ରାୟଶ୍ଚିତ ସମର୍ପଣ ମତି

ଅଙ୍ଗ ପ୍ରତ୍ୟଙ୍ଗୁ ହରିଙ୍କର ସଂଗ୍ରହ ଯଜ୍ଞୀୟ ସମ୍ଭାର
ଯଜ୍ଞ ପୁରୁଷ ହରିଙ୍କର ଅବୟକୁ ଯଜ୍ଞ ସମ୍ଭାର
ସମସ୍ତ ସଂଗ୍ରହ କରିଲି ସେ ଦ୍ରବ୍ୟେ ହରିଙ୍କୁ ଅର୍ଚ୍ଚିଲେ
ମରୀଚୋଦି ତୋ ନଅଭାଇ ସଦା ଏକାଗ୍ର ଚିତ୍ତହୋଇ

ଇନ୍ଦ୍ରାଦି ଯଜ୍ଞୀୟ ଦୈବତ ରୂପରେ ହୋଇ ଆବିର୍ଭୂତ
ନିଜ ଅବ୍ୟକ୍ତ ଶରୀରରେ ପରମ ପୁରୁଷେ ପୂଜିଲେ
ନାନାବିଧ ଯାଗ ଯଜ୍ଞରେ ଯଜ୍ଞ ପୁରୁଷଙ୍କୁ ପୂଜିଲେ
ସେ ଭଗବାନ ଗୁଣାତୀତ ସୃଷ୍ଟି ସ୍ଥିତି ଲୟ ନିମିତ୍ତ

ତ୍ରିଗୁଣ କରନ୍ତି ସ୍ୱୀକାର ତା ଠାରେ ସ୍ଥିତି ଏ ବିଶ୍ୱର
ତା ଆଦେଶେ ମୁଁ ସୃଜଇ ରୁଦ୍ର ଏ ବିଶ୍ୱ ସଂହାରଇ
ବିଷ୍ଣୁ ରୂପେ ସେ ଭଗବାନ ଏ ବିଶ୍ୱ କରନ୍ତି ପାଳନ
ସକଳ ବିଶ୍ୱର କାରଣ ତା ଠାରୁ ବିଶ୍ୱ ନୁହେଁ ଭିନ୍ନ

ମୁଁ ଅନନ୍ୟ ଭକ୍ତି ଭାବରେ ହରି ଚରଣେ ଧ୍ୟାନ କରେ
ଧ୍ୟାନ ପ୍ରଭାବେ ମୋ ବଚନ ମିଥ୍ୟା ନୁହଇଁ କଦାଚନ
ବୃଥା ଭାବନା କରେ ନାହିଁ ଅସତ୍ୟ ପଥେ ନଗମଇ
ସକଳ ବେଦ ପ୍ରଥମରେ ମୋ ମୁଖରୁ ଜନ୍ମ ଲଭିଲେ

ସର୍ବଦା ପ୍ରଜାପତି ଗଣ ମୋ ପାଦ କରନ୍ତି ବନ୍ଦନ
ସିଦ୍ଧି ଲଭିଛି ତପୋବଳେ ଶ୍ରେଷ୍ଠ ହେଲେ ବି ସଂସାରରେ
ତାହାଙ୍କ ଠାରୁ ଜନ୍ମ ହୋଇ ମାତ୍ର ତାଙ୍କୁ ମୁଁ ନ ଜାଣଇ
ଆକାଶ ଯେପରି ନିଜର ଅନ୍ତ ନ ଲଭେ ସେ ପ୍ରକାର

ହରି ମଧ୍ୟ ନିଜେ ନିଜର — ଅନ୍ତ ନ ପାଆନ୍ତି ମାୟାର
ଶରଣା ଗତିର ରକ୍ଷକ — ଭବ ବନ୍ଧନ ବିମୋଚକ
ସର୍ବ ଅଶୁଭ ବିନାଶକ — ସର୍ବ ମଙ୍ଗଳ ବିଧାୟକ
ସେ ଶ୍ରୀହରିଙ୍କ ଚରଣରେ — ମୁଁ ସଦା ନମସ୍କାର କରେ

ତୁ ମୁଁ ସ୍ୱୟଂ ମହେଶ୍ୱର — ଋଷିଗଣ ମଧ୍ୟ ବିଷ୍ଣୁର
ପାର୍ଷଦ ବୈକୁଣ୍ଠାଦି ଧାମ — ଲୀଳା ତତ୍ତ୍ୱଜ୍ଞାନ ଅକ୍ଷମ
ଅନ୍ୟ ଜୀବର ଶକ୍ତି କାହିଁ — ତା ଲୀଳା ବୁଝିବାର ପାଇଁ
ସକଳେ ମୋହିତ ମାୟାରେ — ନିଜର ବୁଦ୍ଧି ଅନୁସାରେ

ଏ ବିଶ୍ୱର ସ୍ୱରୂପ ତତ୍ତ୍ୱ — ନିର୍ଦ୍ଧାରଣରେ ସଦା ବ୍ୟସ୍ତ
ଯା ଅବତାର ଲୀଳାମାନ — କେବଳ କରେ ମୁଁ କୀର୍ତ୍ତନ
ମାତ୍ର ତା ତତ୍ତ୍ୱ ନ ଜାଣଇ — ସେ ହରି ପାଦେ ପ୍ରଣମଇ
ସେ ଆଦି ପୁରୁଷ ଅନନ୍ତ — ଅଜନ୍ମା ଅବ୍ୟୟ ଅବ୍ୟକ୍ତ

ସେ ସ୍ୱୟଂ ପ୍ରତି କଳ୍ପରେ — ନିଜଦ୍ୱାରା ହିଁ ନିଜଠାରେ
ନିଜକୁ ସୃଜଇ ପାଳଇ — ନିଜ ଇଚ୍ଛାରେ ସଂହାର
ଯାହାର ଦେହନ୍ଦ୍ରିୟ ଚିତ୍ତ — ଗୋବିନ୍ଦ ପଦେ ସମର୍ପିତ
ସେମାନେ ଅବିଦ୍ୟା ରହିତ — ସଦା ଏକାଗ୍ର ଭାବେ ସ୍ଥିତି

ସେ ଅନ୍ତର୍ଯ୍ୟାମୀ ସତ୍ୟ ରୂପ — ସର୍ବ ବ୍ୟାପକ ପୂର୍ଣ୍ଣ ରୂପ
ଅଦ୍ୱିତୀୟ ଅନନ୍ତ ନିତ୍ୟ — ଜ୍ଞାନ ବଳରେ ତାଙ୍କ ତତ୍ତ୍ୱ
ଜାଣିବାକୁ ହୁଏ ସମର୍ଥ — କରଇ ଜୀବନ କୃତାର୍ଥ
ମାତ୍ର କୁତର୍କୀ ଭକ୍ତି ହୀନ — ଜାଣିବାକୁ ନ ହୁଏ କ୍ଷମ

ଯାହାଙ୍କ ପ୍ରେରଣା ବଳରେ — ପ୍ରକୃତି ବିଶ୍ୱ ସୃଷ୍ଟିକରେ
ସେହି ସହସ୍ର ପଦ ଶିର — ପୁରୁଷ ସ୍ୱୟଂ କୃଷ୍ଣଙ୍କର
ଅଟଇ ପ୍ରଥମା ବତାର — ହେ ବତ୍ସ ସଂଶୟ ନକର
କାଳ ସ୍ୱଭାବ କାର୍ଯ୍ୟ ସ୍ଥିତି — କାରଣ ସ୍ୱରୂପା ପ୍ରକୃତି

ମହତ ପଞ୍ଚ ମହାଭୂତ — ଅହଂକାର ଗୁଣ ସମସ୍ତ
ଚରାଚର ବିରାଟ ପୁରୁଷ — ହିରଣ୍ୟଗର୍ଭ ସେ ଲୋକେଶ
ଚନ୍ଦ୍ରଶେଖର ଜନାର୍ଦ୍ଦନ — ଦକ୍ଷାଦି ପ୍ରଜାପତି ଗଣ
ଋଷି ସ୍ୱର୍ଗର ଅଧିପତି — ଭୂ ର୍ଭୂବ ପାତାଳାଧିପତି

ଗନ୍ଧର୍ବ ରାକ୍ଷସ ଚାରଣ — ବିଦ୍ୟାଧର ନାଗ ଯକ୍ଷଗଣ
ଋଷି ପିତର ଦାନବ — ପିଶାଚ ଦୈତ୍ୟ ସର୍ବ
କୁଷ୍ମାଣ୍ଡ ଭୂତ ଜଳଚର — ଖେଚର ନର ବନଚର
ଐଶ୍ୱର୍ଯ୍ୟ ବୀର୍ଯ୍ୟ ଯଶକ୍ଷମା — ବଳ ଲଜ୍ଜାଧନ ସୁଷମା

ବୁଦ୍ଧି ବିବେକ ବୀର୍ଯ୍ୟ ବଳ — ବସ୍ତୁ ସାକାର ନିରାକାର
ସର୍ବ ଅନନ୍ତ ଅବତାରର — ଅବତାରୀ ଶ୍ରୀକୃଷ୍ଣଙ୍କର
ଯେଉଁ ମଧୁର ଲୀଳାମାନ — ଭାଗ୍ୟବନ୍ତ ଭକତଗଣ
କରନ୍ତି ଶ୍ରବଣ କୀର୍ତ୍ତନ — ବର୍ତ୍ତମାନ ସେ ମନୋରମ

ଲୀଳା ମୁଁ କରୁଛି ବର୍ଣ୍ଣନ — ହେ ନାରଦ ଦେଇ ମନ କର୍ଣ୍ଣ
ଅମୃତ ରସ କରପାନ — ସାର୍ଥକ ହୋଇବ ଜୀବନ

ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ପାରମହଂସ୍ୟାଂ ସହିଂତାୟାଂ ବୈୟାସିକ୍ୟାଂ ମହାପୁରୁଷ ସଂସ୍ଥାନ ବର୍ଣ୍ଣନେ ଦ୍ୱିତୀୟ ସ୍କନ୍ଧେ ବ୍ରହ୍ମା ନାରଦ ସମ୍ବାଦେ ନାମ ଷଷ୍ଠୋଽଧ୍ୟାୟ ।

*******

## ସପ୍ତମ ଅଧ୍ୟାୟ

### ବ୍ରହ୍ମା ଉବାଚ

କହନ୍ତି କମଳ ଆସନ — ନାରଦ ମନ ଦେଇ ଶୁଣ
ମହା ପ୍ରଳୟରେ ଶ୍ରୀହରି — ଯଜ୍ଞ ବରାହ ମୂର୍ତ୍ତି ଧରି
ଦେବେନ୍ଦ୍ର ଯେପରି ବଜ୍ରରେ — ପର୍ବତ ବିଦାରିଲେ ହେଳେ
ତଥା ହିଣ୍ୟାକୁ ଦନ୍ତରେ — ଅନାୟାସରେ ବିଦାରିଲେ

ଜଳୁ ପୃଥିବୀ ଉଦ୍ଧାରିଲେ — ନାନା ଅଦ୍‌ଭୂତ କର୍ମ କଲେ
ରୁଚିକ ପ୍ରଜାପତିଙ୍କର — ପତ୍ନୀ ଆକୃତି ଦେବୀଙ୍କର
ଗର୍ଭରୁ ସୁଯଜ୍ଞ ରୂପରେ — ଅବତାର ଗ୍ରହଣ କଲେ
ଦାମୋଦର ଅବତାରରେ — ଦକ୍ଷିଣା ନାମ ପତ୍ନୀ ଠାରେ

ସୁଯଶା ନାମ ଦେବଗଣ କରିଲେ ପୁଣି ଉତପନ୍ନ
ତ୍ରିଲୋକର ଆର୍ତ୍ତ ହରିଲେ ଜଗତେ ସୁଯଶ ସ୍ଥାପିଲେ
ସ୍ୱୟମ୍ଭୁବ ମନୁ ଏ ପାଇଁ ଶ୍ରୀହରି ନାମ ଥିଲେ ଦେଇ
କର୍ଦ୍ଦମ ପ୍ରଜାପତିକର ଗୃହିଣୀ ଦେବ ହୂତିଙ୍କର

ଗର୍ଭେ ନବ ଭଗ୍ନୀ ସଙ୍ଗରେ ଜନ୍ମିଲେ କପିଳ ନାମରେ
ମାତାଙ୍କୁ ଆତ୍ମଜ୍ଞାନ ଦେଲେ ଗୁଣ ସଂଗୁ ମନ ହରିଲେ
ଯାଫଳେ ମାତା ଦେବହୂତି ଲଭିଲେ ପରମ ସୁଗତି
ପୁତ୍ରାର୍ଥୀ ଅତ୍ରି ଋଷିଙ୍କର ମନ ଜାଣି ଶ୍ରୀ ଦାମୋଦର

ନିଜକୁ ପୁତ୍ର ରୂପେ ଦେଲେ ଦତ୍ତାତ୍ରେୟ ନାମ ବହିଲେ
ଯା ପାଦ ପଦ୍ମ ରଜ କ'ଣ ପୁତ ଯଦୁ ହେହୟ ଗଣ
ଇହ ଲୋକ ପର ଲୋକରେ ଭକ୍ତି ମୁକ୍ତି ସିଦ୍ଧି ପାଇଲେ
ସୃଷ୍ଟିର ଆରମ୍ଭରେ ମୁହିଁ ବିବିଧ ଲୋକ ସୃଷ୍ଟି ପାଇଁ

ଘୋର ତପସା ଆଚରିଲି ସଦା ଶ୍ରୀହରିଙ୍କୁ ଧ୍ୟାୟିଲି
ମୋ ତପେ ତୁଷ୍ଟ ଭାବଗ୍ରାହୀ ଚତୁଃ ସନକ ମୂର୍ତ୍ତି ହୋଇ
ଅବତୀର୍ଣ୍ଣ ହେଲେ ଧରାରେ ପୂର୍ବକଳ୍ପ ଅବସାନରେ
ବିସ୍ମୃତ ଅଧ୍ୟାତ୍ମ ତତ୍ତ୍ୱକୁ ଉପଦେଶ ଦେଲେ ଋଷିଙ୍କୁ

ତେଣୁ ଋଷିମାନେ ହୃଦରେ ଏ ତତ୍ତ୍ୱ ସାକ୍ଷାତ୍ କାର କଲେ
ତ୍ରିଲୋକ ରୂପ ଗୁଣ ଧନ୍ୟା ଧର୍ମଙ୍କ ପତ୍ନୀ ଦକ୍ଷକନ୍ୟା
ମୂର୍ତ୍ତି ଗର୍ଭୁ ନର ନାରାୟଣ ଋଷି ରୂପରେ ହେଲେ ଜନ୍ମ
ସାକ୍ଷାତେ କାମ ସେନାପତି ଅପ୍‌ସରା ଉର୍ବସୀ ପ୍ରଭୃତି

ଆସି ତପୋଭଙ୍ଗ ଇଚ୍ଛାରେ ସେ ଋଷି ଦୁହିଁଙ୍କ ଅଙ୍ଗରେ
ନିଜ ସମାନ ସଂଖ୍ୟାତୀତ ଅପ୍‌ସରା ଦେଖି ଆଚମ୍ବିତ
ତପୋ ଭଙ୍ଗେ ହୋଇ ଅକ୍ଷମ ଫେରିଲେ ସେ ସ୍ୱର୍ଗ ଭୁବନ
ଶିବ ପ୍ରଭୃତି ଦେବଗଣ ରୋଷ ନେତ୍ରେ କାମ ଦହନ

ଯେମାନେ କ୍ରୋଧ ନ ତେନ୍ତି କ୍ରୋଧାନଳେ ଦଗ୍ଧ ହୁଅନ୍ତି
ସେ କ୍ରୋଧ ଶ୍ରୀବିଷ୍ଣୁ ହୃଦୟରେ ଭୟରେ ପ୍ରକାଶ ନକରେ
କେବେ ହେ ପ୍ରଭୁ ଭଗବାନ ନୁହନ୍ତି କାମ କ୍ରୋଧାଧୀନ
ପିତା ଉତ୍ତାନୁପାଦଙ୍କର ଅଗ୍ରେ ବିମାତା ସୁରୁଚିର

ବାକ୍ୟ ବାଣରେ ହୋଇ ବିଦ୍ଧ ବାଳକ ହୋଇ ମଧ ଧ୍ରୁବ
ଘୋର ତପସ୍ୟା କରିବାକୁ ଗମିଲା ନିର୍ଜନ ବନକୁ
ସ୍ତବରେ ତୋଷ ଭଗବାନ କଲେ ଧ୍ରୁବ ଲୋକ ପ୍ରଦାନ
ଅଧ ଉର୍ଦ୍ଧ୍ୱସ୍ଥ ଋଷିଗଣ ଯା ଯଶ କରନ୍ତି କୀର୍ତ୍ତନ

ବେଣୁ ନାମରେ ରାଜାଥିଲେ କୁ ସଙ୍ଗେ କୁପଥେ ଗମିଲେ
ବ୍ରାହ୍ମଣ ଅଭିଶାପ ପାଇ ଐଶ୍ୱର୍ଯ୍ୟ ପୌରୁଷ ହରାଇ
ନରକେ କରିଲେ ଗମନ ଏମନ୍ତ ଗଲା କିଛି ଦିନ
ବେଣୁ ପୁତ୍ର ପୃଥୁ ନାମରେ ଶ୍ରୀହରି ଅବତାର ହେଲେ

ପିତାଙ୍କୁ ନର୍କୁ ଉଦ୍ଧାରିଲେ ପୁତ୍ର ନାମ ସାର୍ଥକ କଲେ
ଏ ଅନ୍ତେ ସେ ପୃଥୁ ରାଜନ ଗୋ ରୂପୀ ପୃଥିବୀରୁ ଧନ
ଧନ୍ୟାଦି କରିଲେ ଦୋହନ ସୁଖେ ପାଳିଲେ ପ୍ରଜାଗଣ
ଅଗ୍ନିଧ୍ର ପୁତ୍ର ନାଭିଙ୍କର ଧର୍ମପତ୍ନୀ ସୁଦେବୀଙ୍କର

ଗର୍ଭରେ ପ୍ରଭୁ ଭଗବାନ ଋଷଭ ନାମେ ହେଲେ ଜନ୍ମ
ମୁକ୍ତ ସଙ୍ଗ ସମଦର୍ଶନ ନିରୋଧି ଇନ୍ଦ୍ରି ପ୍ରାଣମନ
ସମାଧି ଯୋଗେ ହେଲେ ମଗ୍ନ ଲାଭ କରିଲେ ଦିବ୍ୟଜ୍ଞାନ
ଏହାଙ୍କୁ ସର୍ବ ଋଷି ବୃନ୍ଦ କହେ ପରମ ହଂସ ପଦ

ଦେବାତ୍ମା ଯଜ୍ଞ ବେଦିମୟ ଯଜ୍ଞେଶ ହରି ଦୟାମୟ
ପୁଣି ହୟ ଗ୍ରୀବ ନାମରେ ମୋ ଯଜ୍ଞେ ଆବିର୍ଭୂତ ହେଲେ
ମହା ପ୍ରଳୟେ ଭଗବାନ ମତ୍ସ୍ୟ ରୂପରେ ହେଲେ ଜନ୍ମ
ସତ୍ୟବ୍ରତ ମନୁ ପ୍ରଥମ ସେ ରୂପେ କରିଲେ ଦର୍ଶନ

ବେଦମାନେ ମହାଭୟରେ ମୋ ମୁଖରୁ ସ୍ଖଳିତ ହେଲେ
ସେ ମୀନ ରୂପୀ ନାରାୟଣ ବେଦକୁ କରିଲେ ଧାରଣ
ପ୍ରଳୟ ପୟୋଧି ଜଳରେ ସ୍ୱେଚ୍ଛାରେ ବିଚରଣ କଲେ
ଅମୃତ ପାଇବା ଇଚ୍ଛାରେ ଦେବାସୁର ଅବ୍ଧି ମନ୍ଥିଲେ

ଶ୍ରୀହରି କୂର୍ମ ସ୍ୱରୂପରେ ପୃଷ୍ଠରେ ମନ୍ଦର ଧରିଲେ
କଣ୍ଡୁ ଯେ କୂର୍ମ ପୃଷ୍ଠେ ଥିଲା ଘର୍ଷଣେ ସୁଖ ଉପୁଜିଲା
ଶ୍ରୀହରି ସାଗର ମଧ୍ୟରେ ଆନନ୍ଦେ ଗାଢ଼ ନିଦ୍ରାଗଲେ
ଦେବ ଭୟହାରି ଶ୍ରୀହରି ନୃସିଂହ ରୂପେ ଆବତରି

ହିରଣ୍ୟ କଶିପୁ ଭୀଷଣ ଭୂଭଙ୍ଗୀରେ ଦନ୍ତ ବର୍ଷଣ
କରି କରାଳ ବଦନରେ ଗଦା ହସ୍ତେ ଅତି ବେଗରେ
କ୍ରୋଧେ କରନ୍ତେ ଆକ୍ରମଣ ପ୍ରଭୁ ନୃସିଂହ ଭଗବାନ
ଦୈତ୍ୟକୁ ନିଜର ଉରୁରେ ପକାଇ ନଖେ ବିଦାରିଲେ

କୁମ୍ଭୀର ସରୋବରେ ଥାଇ ଗଜକୁ ଆକ୍ରମିଲା ଯାଇ
ଯୂଥପତି ଗଣ କାତିରେ ପଦ୍ମ ପୁଷ୍ପଧରି ଶୁଣ୍ଢରେ
ହେ ପ୍ରଭୁ ସର୍ବଲୋକ ଈଶ ସର୍ବାଶ୍ରୟ ଆଦି ପୁରୁଷ
ହେ ଶ୍ରୁତି ଶୁଭ ଆର୍ତ୍ତତ୍ରାଣ ରଖ ରଖହେ ନାରାୟଣ

ଡାକନ୍ତେ ଦେବ ଭଗବାନ ଶୁଣି ତା କାତର ଆହ୍ୱାନ
ହରି ନାମକ ଅବତାର ଗ୍ରହଣ କରି ଚକ୍ରଧର
ଆରୋହି ଗରୁଡ ପୃଷ୍ଠରେ ସତ୍ୱରେ ପ୍ରବେଶି ସେଠାରେ
ଚକ୍ରେ କୁମ୍ଭୀର ବିନାଶିଲେ ଗଜ ରାଜକୁ ରକ୍ଷାକଲେ

ହରି ବା ମନ ଅବତାରେ ଅଦିତି ଗର୍ଭରୁ ଜନ୍ମିଲେ
ଦ୍ୱାଦଶ ଆଦିତ୍ୟ ମଧ୍ୟରେ କନିଷ୍ଠ ହୋଇ ବୟସରେ
ବରିଷ୍ଠ ଥିଲେ ସେ ଗୁଣରେ ତ୍ରିଭୁବନ ପାଦ ନ୍ୟାସରେ
କ୍ଷଣକ ମଧ୍ୟେ ଆକ୍ରମିଲେ ନିଜର ଅସୀମ ଶକ୍ତିରେ

ଭଗବାନ ବିଶ୍ୱ ପାଳକ ଧାର୍ମିକ ଜନ ସହାୟକ
ତେଣୁ ସେ ବାମନ ରୂପରେ ପ୍ରବେଶି ବଳୀ ଯଜ୍ଞ ସ୍ଥଳେ
ତ୍ରି ପାଦ ଭୂମି ଦାନ ଛଳେ ତା ରାଜ୍ୟ ଗ୍ରହଣ କରିଲେ
ବଳୀ ଶ୍ରୀ ଭଗବାନଙ୍କର ଚରଣ ପ୍ରକ୍ଷାଳନ ଜଳ

ମସ୍ତକେ କରିଲା ଧାରଣ ଚରଣେ ଆତ୍ମ ସମର୍ପଣ
ଇନ୍ଦ୍ରପଦ ବା ରାଜ୍ୟଧନ କରିଲା ଅତି ତୁଚ୍ଛ ଜ୍ଞାନ
ଶୁକ୍ର ଗୁରୁଙ୍କ ବାରବାର ବାରଣ ନ ମାନି ନିଜର
ପ୍ରତିଶ୍ରୁତିରୁ ସେ କିଞ୍ଚିତ ହୋଇନଥିଲା ବିଚଳିତ

ଆହେ ନାରଦ ଏବେ ଶୁଣ ଭକ୍ତିରେ ତୁଷ୍ଟ ଭଗବାନ
ହଂସ ଅବତାର ହୋଇଲେ ମୋର ସମ୍ମୁଖେ ପ୍ରବେଶିଲେ
ଭକ୍ତି ଆତ୍ମତତ୍ତ୍ୱ ସଂଗରେ ଭଗବତ୍ ବିଜ୍ଞାନ କହିଲେ
ଭଗବାନ ପଦ୍ମ ଚରଣ ଶରଣାଗତ ବ୍ୟକ୍ତିଗଣ

ଏହି ଜ୍ଞାନକୁ ସହଜରେ ଲାଭକରି ଥାନ୍ତି ସଂସାରେ
ସ୍ୱ ର୍ମହ ଜନ ଉର୍ଦ୍ଧ୍ୱରେ ରହିଥିବା ସତ୍ୟ ଲୋକରେ
ତା ମଧୁର ଲୀଳା କୀର୍ତ୍ତନ ବ୍ୟାପିଲା ଚଉଦ ଭୁବନ
ଧନ୍ୱନ୍ତରୀ ରୂପେ ଜନମ ହୋଇଲେ ପ୍ରଭୁ ଭଗବାନ

ଯା ନାମ ସ୍ମରଣ ମାତ୍ରକେ ରୋଗମୁକ୍ତ ହୁଅନ୍ତି ଲୋକତକ
ଆୟୁର୍ବେଦ ବିଦ୍ୟା ପ୍ରଚାର ଦେବକୁ କରିଲେ ଅମର
ଦୈତ୍ୟ କବଳୁ ଯଜ୍ଞ ଭାଗ ଦେବଙ୍କୁ ଦେଲେ ମହାଭାଗ
କ୍ଷତ୍ରିୟ ମାନେ ଯେ ବଳରେ ବ୍ରାହ୍ମଣ ଦ୍ରୋହ ଆଚରିଲେ

ଲଂଘି ଶାସ୍ତ୍ର ବିଧି ବିଧାନ ନରକେ କରିଲେ ଗମନ
ପରଶୁରାମ ଅବତାର ହୋଇଲେ ପ୍ରଭୁ ଦାମୋଦର
ଧରି ସୁତୀକ୍ଷ୍ଣ କୁଠାରକୁ ପୃଥ୍ୱୀ କଣ୍ଟକ କ୍ଷତ୍ରିୟଙ୍କୁ
ଏକ ବିଂଶ ଥର ନିଧନ ଧର୍ମକୁ କଲେ ସଂସ୍ଥାପନ

ମାୟାଧର ଶ୍ରୀ ନରହରି ଆମ୍ଭ ଉପରେ ଦୟାକରି
ଭାଇ ଭରତାଦି ସହିତ ସାଧିବା ପାଇଁ ଲୋକହିତ
ସ୍ୱୟଂ ରାମଚନ୍ଦ୍ର ରୂପରେ ପ୍ରଖ୍ୟାତ ଇକ୍ଷ୍ୱାକୁ ବଂଶରେ
ଅବତୀର୍ଣ୍ଣ ହୋଇ ଧରାରେ - ପୂଜ୍ୟ ପିତାଙ୍କ ଆଦେଶରେ

ପତ୍ନୀ ଭ୍ରାତାଙ୍କୁ ସଂଗେ ଘେନି ଗମନ କଲେ ଅରଣ୍ୟାନି
ଲଙ୍କାଧିପତି ଦଶାନନ ଛଳେ ସୀତା କଲା ହରଣ
ବୈଦେହୀ ବିରହ ରୋଷରେ ଲଙ୍କାପୁର ଧ୍ୱଂସ ଇଚ୍ଛାରେ
ଶିବତୁଲୀ ରକ୍ତ ନେତ୍ରରେ ପ୍ରବେଶନ୍ତେ ଅବ୍ଧିତୀରରେ

ମୀନାଦି ଜଳଚର ଗଣ କୋପ ଦୃଷ୍ଟି ମାତ୍ରେ ଦହନ
ସାଗର ଭୟରେ କଂପିଲା ଲଙ୍କା ଯିବାକୁ ପଥ ଦେଲା
ଲଙ୍କାଧିପତି ରାବଣ ଯେବେବେଳେ କରଇ ସଂଗ୍ରାମ
ତାର କଠିନ ବକ୍ଷେ ବାଜି ଐରାବତର ଦନ୍ତ ଭାଜି

ଖଣ୍ଡ ଖଣ୍ଡ ହୋଇ ପତିତ ଦିଗ କରଇ ଧବଳିତ
ଯେ ରାବଣ ଗର୍ବେ ଉନ୍ମତ୍ତ ନିଜର ସେନାନୀ ସହିତ
ଶତ୍ରୁ ପକ୍ଷ ସେନା ମଧ୍ୟରେ ନିର୍ଭୟେ ବିଚରଣ କରେ
ଶ୍ରୀରାମ ଧନୁ ଟଙ୍କାରିଲେ ସେ ନାରୀ ଚୋରକୁ ବଧିଲେ

ଦୈତ୍ୟ ପୀଡିତା ଧରଣୀର ହରଣ କରିବାକୁ ଭାର
କୃଷ୍ଣ ରୂପରେ ଭଗବାନ କଳାବତାର ବଳରାମ
ସହିତ ହୋଇଲେ ଜନମ ଶୁକ ମୁରତି ବଳରାମ
ଶ୍ରୀକୃଷ୍ଣ ହେବେ ମେଘବର୍ଣ୍ଣ ଦୁହିଁଙ୍କ ମହିମା ଅସୀମ

ଅଦଭୁତ ଲୀଳା କରିବେ ବଳ ବିକ୍ରମ ପ୍ରକାଶିବେ
ଶ୍ରୀକୃଷ୍ଣ ସାକ୍ଷାତେ ଈଶ୍ୱର ତାଙ୍କ ଲୀଳା ଶକ୍ତି ଅପାର
ସେ ଶୈଶବ ଅବସ୍ଥାରେ ପୁତନା ରାକ୍ଷସୀ ବଧିଲେ
ମାତ୍ର ତ୍ରିମାସ ବୟସରେ ଶକଟାସୁରକୁ ମାରିଲେ

ସେ ଅଣ୍ଠେଇ ବା ସମୟରେ ନିଜର ଜାନୁର ମଧ୍ୟରେ
ଯାମଳାର୍ଜ୍ଜୁନକୁ ଭାଙ୍ଗିଲେ ଅପୂର୍ବ ବଳ ପ୍ରକାଶିଲେ
ଯମୁନା ବିଷ ଜଳ ପାନ ବ୍ରଜେ ବାଳକ ବତ୍ସାଗଣ
ମୂର୍ଚ୍ଛିତ ହେଲେ ଯେବେଳରେ କୃପା ଅମୃତ କଟାକ୍ଷରେ

ଶ୍ରୀକୃଷ୍ଣ ଜୀବଦାନ କଲେ ନିଜର ଐଶୀ ଶକ୍ତି ବଳେ
କାଳୀନ୍ଦି ହ୍ରଦ ବିଷଜଳ ବିଶୋଧନ ପାଇଁ ଶ୍ରୀଧର
କାଳୀୟ ନାଗକୁ ଦଳିଲେ ଯମୁନା ଜଳେ ବିହରିଲେ
କାଳୀୟ ଦଳନ ରାତ୍ରିରେ ଗ୍ରୀଷ୍ମ ଶୁଷ୍କ ବନ ମଧ୍ୟରେ

ଦାବାଗ୍ନି ପ୍ରଖର ଜଳିଲା ବ୍ରଜ ପୁରକୁ ଆକ୍ରମିଲା
ବ୍ରଜବାସୀ ଥିଲେ ନିଦ୍ରିତ କୃଷ୍ଣ ବଳରାମ ସହିତ
ବ୍ରଜ ପୁରକୁ ରକ୍ଷା କଲେ ଅନ୍ୟ ଦିନେ ମୁଂଜା ବଟୀରେ
ଦାବାଗ୍ନି ଜଳିଲା ପ୍ରଖରେ କୃଷ୍ଣ ନିଜ ମାୟା ଶକ୍ତିରେ

ଗୋପାଳ ବାଳକଙ୍କ ନେତ୍ର ନିଜ ହସ୍ତେ କରି ମୁଦ୍ରିତ
ଶ୍ରୀବଳରାମ ଦାମୋଦର ବ୍ରଜ ବାଳେ କଲେ ଉଦ୍ଧାର
ମହିମା ଅଚିନ୍ତ୍ୟ ଅବ୍ୟକ୍ତ ତାଙ୍କ ଦିବ୍ୟଲୀଳା ଅନନ୍ତ
ଦିନେକ ଯଶୋଦା କ୍ରୋଧରେ କୃଷ୍ଣଙ୍କୁ ବାନ୍ଧିବା ଆଶାରେ

ଯେତେଯେତେ ରଜ୍ଜୁ ଆଣିବ କୃଷ୍ଣଙ୍କୁ ନିଅଣ୍ଟ ହୋଇବ
ହାଇ ମାରିବା ଛଳନାରେ ବିସ୍ତାରିତ ମୁଖ ମଧ୍ୟରେ
ମାତାଙ୍କୁ ଚଉଦ ଭୁବନ ଦେଖାଇଲେ କୃଷ୍ଣ ମୋହନ
ଜାଣି କୃଷ୍ଣର ଐଶୀ ଶକ୍ତି ଭୟେ ଥରିବେ ଯଶୋମତୀ

ନନ୍ଦଙ୍କୁ କୃଷ୍ଣ ଗୋପୀନାଥ ବରୁଣ ପାଶୁ କରି ମୁକ୍ତ
ତନୟ ମୟ ଦାନବର ଖଳ ମୁଷ୍ଟିକ ବ୍ୟୋମାସୁର
ଗୋପ ବାଳକଙ୍କୁ ହରିବ ପର୍ବତ ଗୁହାରେ ରଖିବ
ଶ୍ରୀକୃଷ୍ଣ ତାଙ୍କୁ ଉଦ୍ଧାରିବେ ନିଜର ଶକତି ପ୍ରଭାବେ

କୌଣସି ଭଜନ ସାଧନ ନକରି ଗୋପ ବାସୀ ଗଣ
କେବଳ ଦିବା ପରିଶ୍ରମ ରାତିରେ କରନ୍ତି ଶୟନ
କିନ୍ତୁ ଶ୍ରୀକୃଷ୍ଣ କରୁଣାରେ ବସିବେ ବୈକୁଣ୍ଠ ଧାମରେ
ନନ୍ଦ ଆଦି ଗୋପ ସରବେ ଇନ୍ଦ୍ରପାଇଁ ଯଜ୍ଞ କରିବେ

କୃଷ୍ଣ ଉପଦେଶେ ନିବୃତ୍ତ ହେବାରୁ ଦେବେନ୍ଦ୍ର କୁପିତ
ଧ୍ୱଂସ ନିମିତ୍ତ ବୃନ୍ଦାବନ ଜଳ ବିର୍ଷିବ ସାତଦିନ
ସପ୍ତ ବରଷ ବୟସରେ ଗୋବର୍ଦ୍ଧନକୁ ଅକ୍ଳେଶରେ
ଛତ୍ର ସମାନ ସାତଦିନ ଅନାୟାସେ କରି ଧାରଣ

ଗୋପ ଗୋପୀକା ପଶୁଗଣ ରଖିଲେ ପ୍ରଭୁ ନାରାୟଣ
ଶାରଦ ପୂର୍ଣ୍ଣିମା ରାତ୍ରିରେ ନିର୍ମଳ ଚନ୍ଦ୍ରମା ଜ୍ୟୋସ୍ନାରେ
କରିବା ପାଇଁ ରସକେଳି ଇଚ୍ଛା କରିବେ ବନମାଳୀ
ବୃନ୍ଦାରଣ୍ୟରେ ବିହରିବେ ସୁ ସ୍ୱରେ ମୁରଲୀ ବାଇବେ

ବଂଶୀ ନାଦ କଳ ମୂର୍ଚ୍ଛନା ଶୁଣି ସକଳ ଗୋପାଙ୍ଗନା
ଅନଙ୍ଗ ବାଣେ ବିଦ୍ଧ ହୋଇ ଶ୍ରୀକୃଷ୍ଣ ପାଶେ ଯିବେ ଧାଇଁ
ଯେବେ କୁବେର ଅନୁଚର ଶଙ୍ଖଚୂଡ ମାୟା ବିସ୍ତାର
ଗୋପୀକୁ କରିବ ପୁରଣ କୃଷ୍ଣ ତାର ଶିର ଛେଦିଣ

ଗୋପୀଙ୍କୁ କରିବେ ଉଦ୍ଧାର ସେତ ଅନନ୍ତ ଶକ୍ତି ଧର
ଶ୍ରୀକୃଷ୍ଣ ପ୍ରଳମ୍ବ ଶମ୍ବର କେଶୀ ଅରିଷ୍ଟି ନେମିବୀର
ଚାଣୁରାଦି ମଲ୍ଲ ଦ୍ୱିବିନ୍ଦ କାଳ ଯବନ ଜରାସନ୍ଧ
ଦନ୍ତବକ୍ର ଯେ ଶିଶୁପାଳ କୁବୟା ପୀଡ, ବଳକଳ

ରୁକ୍ମି ବିଦୁରଥ ଦର୍ଦ୍ଦୁର ଶାଲ୍ୱ ଆଦି କଂସ ଅସୁର
ଶାଲ୍ୱ ଆଦି ବହୁ ବର୍ବର ରାକ୍ଷସ କରିବେ ସଂହାର
କାମ୍ୟୋଦକ ମତ୍ସ୍ୟ କୈକେୟ କୁରୁ ପାଞ୍ଚାଳ ଯେ ସୃଞ୍ଜୟ
ଆଦି ବିଜୟୀ ବୀରଗଣ ବଳ-ଦେବ ଭୀମ ଅର୍ଜ୍ଜୁନ

ସ୍ୱରୂପେ କରିବେ ନିଧନ
ଦେବେ ବୈକୁଣ୍ଠ ପୁରେ ସ୍ଥାନ
କାଳକ୍ରମେ ପ୍ରତି କଳ୍ପରେ
ବୁଦ୍ଧି ହରାଇ ଧୀରେ ଧୀରେ
ମାନବ ସ୍ୱଳ୍ପାୟୁ ହୋଇବେ
ଦେବ ବଚନ ନ ବୁଝିବେ
ପରାଶରଙ୍କ ଔରସରେ
ସତୀବତୀ ଦେବୀ ଗର୍ଭରେ

ଭଗବାନ ବ୍ୟାସ ରୂପରେ
ଅବତୀର୍ଣ୍ଣ ହେବେ ଧରାରେ
ବେଦକୁ ବିଭିନ୍ନ ଶାଖାରେ
ବିଭାଗ କରିବେ ସ୍ୱେଚ୍ଛାରେ
ନିଷ୍ଠା ରଖି ବେଦ ମାର୍ଗରେ
ବେଦାନ୍ତ ସାଧନା ବଳରେ
ମୟ ଦାନବ ବିରଚିତ
ମାୟାପୁରେ ରହି ସତତ

ତାହା ସାହାଯ୍ୟେ ଦୈତ୍ୟଗଣ
ତ୍ରିଭୁବନେ କରି ଭ୍ରମଣ
ବିଶ୍ୱର ଘଟାଇବେ କ୍ଷତି
ତେଣୁ ବାସୁଦେବ ଶ୍ରୀପତି
ରମ୍ୟ ମୂର୍ତ୍ତିକରି ଧାରଣ
ବୁଦ୍ଧ ରୂପରେ ଅବତୀର୍ଣ୍ଣ
ଉପଧର୍ମ ନାନା ପ୍ରକାର
ପୃଥ୍ୱୀରେ କରିବେ ପ୍ରଚାର

ବ୍ରାହ୍ମଣ ଆଦି ଚାରିବର୍ଣ୍ଣ
ତେଜିବେ ଶ୍ରୀହରି ଅର୍ଚ୍ଚନ
ବିଧି ନିଷେଧ ନମାନିବେ
କୁ ପଥେ ଗମନ କରିବେ
କେବଳ ଶୁଦ୍ର ମ୍ଳେଚ୍ଛ ଗଣ
ଧରାକୁ କରିବେ ଶାସନ
ସ୍ୱାହା ସ୍ୱାଧାଦି ମନ୍ତ୍ରମାନ
କେବେ ନ କରି ଉଚ୍ଚରଣ

କଳ୍କି ରୂପରେ ଭଗବାନ
ପାପୀଙ୍କୁ କରିବେ ଶାସନ
ସୃଷ୍ଟି ପାଇଁ ତପସ୍ୱୀଗଣ
ସୁ ପ୍ରଜାପତି ଋଷିଗଣ
ପାଳନ ପାଇଁ ନାରାୟଣ
ଦେବ ନୃପତି ମୁନିଗଣ
ସଂହାର ପାଇଁ ରୁଦ୍ର ଦେବ
କ୍ରୋଧ ସର୍ପାଦି ଜନ୍ତୁ ସର୍ବ

ଅସୁର ରାକ୍ଷସ ଅଧର୍ମ
ନାନାଦି ଅମଂଗଳ କର୍ମ
ଏସବୁ ଖଳ ଶକ୍ତି ଧର
ମାୟା ବିଭୂତି ହରିଙ୍କର
ଯେବେଳେ ପ୍ରଭୁ ବିଶ୍ୱପତି
ଧରିଲେ ତ୍ରିବିକ୍ରମ ମୂର୍ତ୍ତି
ମୂଳ ପ୍ରକୃତିର ସହିତ
ସତ୍ୟ ଆଦି ଲୋକ ସମସ୍ତ

ବିଶ୍ୱର ସର୍ବ ବସ୍ତୁମାନ
ପାଦନ୍ୟାସେ କଲେ ଧାରଣ
ଯେ କୌଣସି ବିଜ୍ଞାନୀ ବ୍ୟକ୍ତି
ତାଙ୍କର ଅକଳନ ଶକ୍ତି
ପୃଥ୍ୱୀ ଧୂଳି କଣା ସମାନ
ନ କରି ପାରିବ ଗଣନ
ତୋର ଅଗ୍ରଜ ଋଷି ବୃନ୍ଦ
ହେ ନାରଦ ମୁଁ ଋଷି ସିଦ୍ଧ

ଏ ମାୟାଧର ପୁରୁଷର
ନ ପାଉ ଅନ୍ତ ମହିମାର
ମାୟାଧର ମାୟା ଅନନ୍ତ
ଖୋଜି ନ ପାନ୍ତି ସିଦ୍ଧ ସନ୍ଥ
ଅନନ୍ତ ସହସ୍ର ମୁଖରେ
ଅକ୍ଷମ ଗୁଣ କୀର୍ତ୍ତନରେ
ଅନ୍ୟାନ୍ୟ ସ୍ୱଳ୍ପ ଶକ୍ତି ଜୀବ
କିପରି ବା ଜାଣି ପାରିବ

ହରି ଯା ଠାରେ ଦୟାକରେ
ସେ ନିଷ୍କପଟ ହୃଦୟରେ
କୃଷ୍ଣ ଚରଣେ ଆଶ୍ରାକରି
ଏ ମାୟା ଅଚ୍ଛି ହୁଏ ପାରି
ଏପରି ବ୍ୟକ୍ତି କେବେହେଁ
ଶ୍ୱାନ ଶୃଗାଳ ଭୋଜ୍ୟ ଦେହେ
ମମତା ଶ୍ରଦ୍ଧା ନରଖଇ
ତାହାକୁ ଯମନ ଦଣ୍ଡଇ

ମୁଁ ମଧ୍ୟ ନିଜେ ଶ୍ରୀହରିର
ନ ଲଙ୍ଘିଛ ମାୟା ସାଗର
ମାତ୍ର ତାହାଙ୍କର କୃପାରେ
ମାୟା ବୈଭବ ଜାଣିପାରେ
ହେ ନାରଦ ତୁ ପୁତ୍ର ମୋହର
ଋଷି ପ୍ରହ୍ଲାଦ ଗୁହ୍ରହର
ସ୍ୱୟମ୍ଭୁବ ମନୁଙ୍କର ପତ୍ନୀ
ଶତରୂପା ପତି ବରତୀ

ତାଙ୍କର ପୁତ୍ର ପ୍ରିୟବ୍ରତ
ଉତ୍ତାନ ପାଦ ନାମେ ଖ୍ୟାତ
ପ୍ରାଚୀନ ବର୍ହି ଦେବହୂତି
ରିଭୁ ଅଙ୍ଗ ଧ୍ରୁବ ଯଜାତି
ଇକ୍ଷ୍ୱାକୁ ଐଳ ରଘୁଗାଧି
ମୁଚୁକୁନ୍ଦ ବିଦେହ ଆଦି
ମାନ୍ଧାତା ସଗର ନହୁଷ
ଗୟ ଅଳର୍କ ଅମ୍ବରୀଷ

ରନ୍ତିଦେବ ଭୀଷ୍ମ ଗତ ଧନୁ
ବଳି ଅମର୍ତ୍ତ୍ୟ ରୟ ଅନୁ
ଉଦ୍ଧବ ପାର୍ଥ ଭୂରିଷେଣ
ପରାଶର ଯେ ଅଟିଷେଣ
ଶିବି ଦେବାଳ ପିପ୍ପଳାଦି
ସାରସ୍ୱତ ମନୁ ଶ୍ରୁତ ଦେବ
ଦିଲ୍ଲୀପ ଉପନ୍ଦ୍ର ଯାଦବ
ଦୟା ସାଗର ବାସୁଦେବ

ଶ୍ରୀ ଭଗବାନଙ୍କ କୃପାରେ
ଅଖିଳ ବ୍ରହ୍ମାଣ୍ଡ ମଧ୍ୟରେ
ମାୟା ବିଭୂତି ଜାଣିଛନ୍ତି
ମାୟା ସାଗରୁ ତରିଛନ୍ତି
ନାରୀ ଶବର ଶୂଦ୍ର ହୁଣ
ଅନର୍ଥକାରୀ ବ୍ୟକ୍ତିଗଣ
ପଶୁ ପକ୍ଷୀ ଯୋନୀ ଜନମ
କରିଣ ନିନ୍ଦିତ କରମ

ଭକତ ସାଧୁ ସନ୍ଥ ମେଳେ
ମାୟାରୁ ତରି ଯାନ୍ତି ହେଳେ
ଯଦିବା ଭାଗ୍ୟବାନ କେହି
ସଦା ସାଧୁ ସଙ୍ଗେ ରହଇ
ହରି ଲୀଳା ଗୁଣ ଶୁଣଇ
ସେ ମଧ୍ୟ ମାୟାକୁ ତରଇ
ଏଥିରେ ନାହିଁତ ସଂଶୟ
ହରିତ କରୁଣା ଆଳୟ

ସେ ଯେ ପରମ ତତ୍ତ୍ୱ ବ୍ରହ୍ମ    ବୋଲି କହନ୍ତି ଜ୍ଞାନୀ ଗଣ
ତାହାହିଁ ଶ୍ରୀପୁରୁଷୋତ୍ତମ    ସ୍ୱୟଂ ପ୍ରକାଶିତ ନିର୍ଗୁଣ
ଏ ଆନନ୍ଦ ସ୍ୱରୂପ ନିତ୍ୟ    ଭୟ ଶୋକ କ୍ଷୋଭ ରହିତ
କେବଳ ଅଟେ ଜ୍ଞାନ ଗମ୍ୟ    ବିଷୟ ସମ୍ବନ୍ଧ ବିହୀନ

ଅତୀତ କାର୍ଯ୍ୟ କାରଣର    ସ୍ୱରୂପ ସକଳ ଆତ୍ମାର
ଯଜ୍ଞାଦି କାମ୍ୟ କରମରେ    ନ ମିଳେ ବିଧି ବିଧାନରେ
ମାୟା ବ୍ରହ୍ମରୁ ଲଜ୍ଜା ପାଇ    ସର୍ବଦା ଦୂରରେ ରହଇ
ଯେପରି କୂପ ଖନନରେ    ଖଣତି ଯନ୍ତ୍ର ଦରକାରେ

ନଥାଏ ଅନ୍ୟେ ପ୍ରୟୋଜନ    ତଥା ଅନନ୍ୟ ଭକ୍ତଗଣ
ଭଗବାନଙ୍କ ଚରଣରେ    ଚିତ୍ତ ନିବେଶି ଏକଗ୍ରରେ
ଲଭନ୍ତି ଏ ଅଭେଦ୍ୟ ଜ୍ଞାନ    ସାଧନେ କିବା ପ୍ରୟୋଜନ
ଯେ ମହା ଭୂତରେ ଶରୀର    ଗଠିତ ହୋଇଛି ଜୀବର

ସେହି ମହାଭୂତ ସମସ୍ତ    ପରସ୍ପର ହେଲେ ବିଯୁକ୍ତ
ମରଣ ହୁଅଇ ଦେହର    ସ୍ୱଭାବେ ଜଡ ଏ ବିଶ୍ୱର
ମାତ୍ର ଏ ଜୀବାତ୍ମା ପୁରୁଷ    କେବେ ହେଁ ନୁହଇ ବିନାଶ
ଜୀବାତ୍ମା ଦେହେ ପ୍ରକାଶଇ    ଜନ୍ମ ମରଣ ତାର ନାହିଁ

ଭଗବାନ ଏ ଜୀବାତ୍ମାର    ଫଳ ଦାତା ସର୍ବ କର୍ମର
ଜୀବ ଦେହେ ସଦା ରହନ୍ତି    ଭକ୍ତି ଭାବନା ସଂଚାରନ୍ତି
କାର୍ଯ୍ୟ କାରଣାତ୍ମ ଜଗତ    ଭାବନାରୁ ସେ ଅତୀତ
ମାତ୍ର ଜଗତରୁ ଅଭିନ୍ନ    ସେ ନିଅ ସତ୍ୟ ସନାତନ

ସକଳ କାରଣ କାରଣ    ସେ ସର୍ବବ୍ୟାପୀ ନାରାୟଣ
ସର୍ବାତ୍ମା ବିଶ୍ୱର ଆଧାର    ତାଙ୍କର ନାହିଁ ପରାପର
ତୁ ଚିନ୍ତା କରି ସେ ପ୍ରକାର    ହରି ଲୀଳାକର ପ୍ରଚାର
ଯଥା ଏ ମାନବ ହୃଦରେ    ଭକ୍ତି ଜନ୍ମିବ ହରିଠାରେ

କେବଳ ତତ୍ତ୍ୱ ବର୍ଣ୍ଣନାରେ    ବାଧା ଘଟେ ଲୀଳା ରସରେ
ଐଶୀ ବିଭୂତି ସମ୍ବନ୍ଧରେ    ଯାହା କହିଲି ସଂକ୍ଷେପରେ
ଭାଗବତ ଅଟେ ଯା ନାମ    ସ୍ୱୟଂ ପ୍ରଭୁ ଶ୍ରୀ ନାରାୟଣ
ମତେ କହିଲେ ପ୍ରଥମରେ    ପ୍ରଚାର କର ତୁ ବିସ୍ତାରେ

ଯେ ହରି ଲୀଳା ରସମାନ    କରଇ ଶ୍ରଦ୍ଧାରେ ଶ୍ରବଣ
ଯେବା କରେ ଅନୁମୋଦନ    କୀର୍ତ୍ତନ ଭଜନ ଗାୟନ
ସେ ମାୟା ମୋହିତ ନୁହଇ    ଅନ୍ତେ ପରମ ଗତିପାଇ
ଏବ୍ରହ୍ମା ନାରଦ ସମ୍ବାଦ    ବିଷୟ ବିଷର ଏ ଗଦ

ଅମୃତ ଭାଗବତ ବାଣୀ    ସଂସାର ସାଗର ତରଣୀ
ସୁଜନେ ବୋଲହରି ନାମ    ଜାଣିବ ନାହିଁ କାଳ ଯମ

ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ପାରମହଂସ୍ୟାଂ ସହିଂତାୟାଂ ବୈୟାସିକ୍ୟାଂ ମହାପୁରୁଣ ସଂସ୍ଥାନ ବର୍ଣ୍ଣନେ ଦ୍ୱିତୀୟ ସ୍କନ୍ଧେ ବ୍ରହ୍ମା ନାରଦ ସମ୍ବାଦେ ନାମ ସପ୍ତମୋଽଧ୍ୟାୟ ।

*******

## ଅଷ୍ଟମ ଅଧ୍ୟାୟ

### ରାଜୋବାଚ

ପୁଚ୍ଛନ୍ତି ରାଜା ପରୀକ୍ଷିତ    ଆହେ ବ୍ରହ୍ମଣ୍ୟ ବ୍ୟାସ ସୁତ
ଆହେ ତତ୍ତ୍ୱଜ୍ଞ ଶିରୋମଣି    ସେହି ନାରଦ ମହାମୁନି
ପିତା ଆଦେଶ ଅନୁସାରେ    ଯେଉଁ ମାନଙ୍କ ସମ୍ମୁଖରେ
ଶ୍ରୀ ଗୋବିନ୍ଦ ଲୀଳାମାନ    ଯେ ଭାବେ କରିଲେ କୀର୍ତ୍ତନ

ସେ ଅଦ୍‌ଭୂତ ବୀର୍ଯ୍ୟବାନ    ଶ୍ରୀ ହରିଙ୍କର ତ୍ରିଭୁବନ
ମଙ୍ଗଳ ଲୀଳାରସ ମୁହିଁ    ଶୁଣିବାକୁ ଇଛା କରଇ
ଯଥା ଦେହ ଗୃହ ସପତ୍ତି    ମୋର ନରହିବ ଆସକ୍ତି
ସର୍ବାତ୍ମା ଶ୍ରୀହରି ଚରଣ    ଚିତ୍ତ କରିବି ସମର୍ପଣ

ସେ ଦିବ୍ୟ ଲୀଳା କଥାମାନ    ଆପଣ କରନ୍ତୁ ବର୍ଣ୍ଣନ
ସେ ଗୋବିନ୍ଦର ରସକଥା    ହରଇ ଭବ ଭୟ ବ୍ୟଥା
ଯେ ତାହା ପଢ଼ଇ ଶୁଣଇ    ହରି ତା ହୃଦରେ ବସଇ
ଶରତ କାଳରେ ଜଳର    ଯଥା ମାଳିନ୍ୟ ହୁଏ ଦୂର

ସେ ପରି ହରି ଲୀଳା ମାନ ଯେ ଭକ୍ତ କରଇ ଶ୍ରବଣ
ତାହା ଶ୍ରବଣ ପଥ ଦେଇ ହୃଦୟେ ପ୍ରବେଶ କରଇ
କାମନା ଦୁର୍ବାସନା ମଳ ଶୋଧନ କରଇ ତତ୍ତ୍ୱର
ଯେ ଜନ ପ୍ରବାସୁ ଫେରଇ ଯେମନ୍ତ ଗୃହ ନ ତେଜଇ

ଏ ରସ ଲୀଳା କର୍ଣ୍ଣ ଦ୍ୱାରେ ପ୍ରବେଶ କରେ ଯା ହୃଦରେ
ଅପୂର୍ବ ଆନନ୍ଦ ଲଭଇ ସକଳ କ୍ଲେଶୁ ମୁକ୍ତ ହୋଇ
କେବେ ଗୋବିନ୍ଦ ଶ୍ରୀଚରଣ ତ୍ୟାଗେ ସେ ନ ବଳାଏ ମନ
ଆତ୍ମା ପଞ୍ଚଭୂତ ଅତୀତ ଶରୀର ସମ୍ବନ୍ଧ ରହିତ

ମାତ୍ର ପଞ୍ଚ ଭୂତେ ଗଠିତ ଏ ଜଡ ଶରୀର ସହିତ
ଯେଉଁ ସମ୍ପର୍କ ଜୀବାତ୍ମାର କୌଣସି କାରଣ ତାହାର
ଅଛ କି ଅବା କିଛି ନାହିଁ ତାହା ବର୍ଣ୍ଣନ୍ତୁ ତପୀ ସାଇଁ
ଯଥା ସାଧାରଣ ଜୀବର ଅଛି ସଂଖ୍ୟା ଅବୟର

ସେପରି ଯେଉଁ ପୁରୁଷର ନାଭି ପ୍ରଦେଶୁ ଚରାଚର
ବିଶ୍ୱାଧାର ପ୍ରଦ୍ମ ଜନମ ତାଙ୍କର ଅବୟବ ମାନ
ରହି ଅଛି ବୋଲି ଆପଣ ପୂର୍ବେ କରିଥିଲେ ବର୍ଣ୍ଣନ
ତେଣୁ ଏ ଲୌକିକ ପୁରୁଷ ଆଲୌକିକ ମହାପୁରୁଷ

ମଧ୍ୟେଅଛି ଯେ ଭେଦମାନ ଆପଣ କରନ୍ତୁ ବର୍ଣ୍ଣନ
ନାଭି ପଦ୍ମ ବ୍ରହ୍ମା ଚିହ୍ନିଲେ ବିଷ୍ଣୁଙ୍କ ସ୍ୱରୂପ ଦେଖିଲେ
ତାହାଙ୍କ କୃପା ପ୍ରଭାବରେ ଏ ଦୃଶ୍ୟ ଜଗତ ସୃଜିଲେ
ସେ ବିଶ୍ୱ ସୃଷ୍ଟିଲୟ କର୍ତ୍ତା ବ୍ରହ୍ମାଙ୍କ ଆରାଧ ଦେବତା

ଅନ୍ତର୍ଯ୍ୟାମୀ ମାୟା ନିୟନ୍ତା ଜୀବ ଗଣର ଦୁଃଖ ହର୍ତ୍ତା
ମାୟାତୀତ ସେ ଭଗବାନ କେଉଁଠି ତାଙ୍କର ବାସସ୍ଥାନ
ସେହି ବିରାଟ ପୁରୁଷର ଅଙ୍ଗରୁ ଭୂର୍ଭୁବ ଲୋକର
ଲୋକପାଳ ମାନେ ଜନମ ଏତ ଈଶ୍ୱରଙ୍କ ବିଧାନ

ସକଳ ଲୋକ ଲୋକପାଳ ସେ ବିରାଟ ପୁରୁଷର
ଅଙ୍ଗ ପ୍ରତ୍ୟେଙ୍ଗ ଯେ ଅଟନ୍ତି ଏହା ଆପଣ କହିଛନ୍ତି
କଳ୍ପ ବିକଳ୍ପ ପରିମାଣ ଭୂତ ଭବିଷ୍ୟ ବର୍ତ୍ତମାନ
କିପରି ହୁଏ ଅନୁମିତ ସବୁ ଜାଣନ୍ତି ଆପଣ ତ

ଦେବ ମାନବ ଦାନବର ପରିମାଣ କେତେ ଆୟୁର
ଅନୁକମ୍ପା କରି ଆପଣ କହନ୍ତୁ ସର୍ବ ବିସ୍ତାରିଣ
ପରମାଣ୍ୱାଦି ସୂକ୍ଷ୍ମକାଳ ସମ୍ୱତ୍ସରାଦି ସ୍ଥୂଳ କାଳ
କିପରି ଜଣା ଯାଏ ଗତି କର୍ମ ପ୍ରଭାବରୁ କେମିତି

ଜୀବ ଲଭଇ କେଉଁ ଗତି କହନ୍ତୁ ଆହେ ବିଶ୍ୱପତି
ଏ ଜୀବ ପୁଣି ଅହଂକାରେ ଶ୍ରେଷ୍ଠତା ଇଛଇ ସଂସାରେ
କେଉଁ କର୍ମ ଅନୁଷ୍ଠାନରେ ଜୀବ ଉତ୍କର୍ଷ ଲାଭବରେ
ପୃଥିବୀ ପାତାଳ ନକ୍ଷତ୍ର ଦିଗ ନଭ ଆଦ୍ରି ସରିତ

ଦ୍ୱୀପ ସମୂହ ସାଗରରେ ସେ ସ୍ଥାନବାସୀ ପ୍ରାଣୀଙ୍କର
ଉତ୍ପତ୍ତି ସ୍ଥିତି ବିବରଣ ଆହେ ଶୁକ କରନ୍ତୁ ବର୍ଣ୍ଣନ
ବ୍ରହ୍ମାଣ୍ଡ ବାହ୍ୟ ଆଭ୍ୟନ୍ତର ପରିମାଣ ବର୍ଣ୍ଣାଶ୍ରମର
ଧର୍ମର ସ୍ୱରୂପ ପ୍ରକୃତ ତଥା ଭକ୍ତଗଣ ଚରିତ

ବିଭିନ୍ନ ସ୍ୱରୂପ ମାନ ସକଳ ଯୁଗର ଧରମ
ହରିଙ୍କର ଗୁଣାବତାର ଆଶ୍ଚର୍ଯ୍ୟ ଲୀଳା ତାହାଙ୍କର
ମାନବ ସାଧାରଣ ଧର୍ମ ବର୍ଣ୍ଣାଶ୍ରମ ବିଶେଷ ଧର୍ମ
ଅନୁସାରେ ବର୍ଣ୍ଣ ଆଶ୍ରମ ବ୍ୟବହାରୋପ ଯୋଗୀଧର୍ମ

ରାଜର୍ଷି ମାନଙ୍କର ଧର୍ମ ବିପନ୍ନ ମାନବର ଧର୍ମ
ସଂଖ୍ୟା ପ୍ରକୃତ୍ୟାଦି ତତ୍ତ୍ୱର ପୁଣି ଲକ୍ଷଣ ତାହାଙ୍କର
ଈଶ୍ୱର ଆରାଧନା ବିଧି ଆଧାତ୍ମିକ ଯୋଗର ସିଦ୍ଧି
ସିଦ୍ଧ ସାଧକଙ୍କର ଗତି ଆଣିମାଦି ଐଶ୍ୱର୍ଯ୍ୟ ପ୍ରାପ୍ତି

ଯୋଗୀଙ୍କ କାରଣ ଶରୀର ବିଲୁପ୍ତ ହୁଏ କି ପ୍ରକାର
ଦ୍ୱିପ ବେଦର ଇତିହାସ ପୁରାଣାଦି ଧର୍ମ କୀଦୃଶ
ସୃଷ୍ଟି ସ୍ଥିତି ଲୟ ଜୀବର ଘଟଇ ବା କେଉଁ ପ୍ରକାର
ଇଷ୍ଟ ପୂର୍ତ୍ତାଦି ଶୌତ୍ର କର୍ମ ଅନ୍ୟାନ୍ୟ କାମ୍ୟ କର୍ମମାନ

ତ୍ରିବର୍ଗ ସାଧନ ବିଧାନ ହେ ଶୁକ କରନ୍ତୁ ବର୍ଣ୍ଣନ
ପ୍ରଳୟେ ଈଶ୍ୱରଙ୍କ ଠାରେ ଏ ଜୀବ ଲୀନ କି ପ୍ରକାରେ
ପୁଣି କେମନ୍ତେ ଲଭେ ଜନ୍ମ ଏ ଜୀବର ମୁକ୍ତି ବନ୍ଧନ
ତାର ସ୍ୱରୂପ ସ୍ଥିତି କ'ଣ କିମ୍ପାଇ କରେ କାମ୍ୟ କର୍ମ

ଈଶ୍ୱର ମାୟା ଆଶ୍ରୟରେ   କିପରି ଖେଳଇ ସଂସାରେ
ପ୍ରଳୟେ ମାୟା ତ୍ୟାଗ କରି   ଉଦାସୀନ ରହେ କିପରି
ମତେ ପଦାଶ୍ରିତ ବିଚାରି   ଯା ସବୁ ଥିଲି ସପଚାରି
ଯଥାର୍ଥ କରନ୍ତୁ ବର୍ଣ୍ଣନ   କୃତାର୍ଥ ହେଉ ମୋ ଜୀବନ

ଗୁରୁ ପରମ୍ପରା କ୍ରମରେ   ଆପଣଙ୍କ ମତାନୁସାରେ
ଅନ୍ୟାନ୍ୟ ମୁନି ଋଷିଗଣ   ତତ୍ତ୍ୱ କରିଛନ୍ତି ଦର୍ଶନ
ହରି ଚରଣେ ରଖି ମନ   ଦିବ୍ୟ ଲୀଳା କରନ୍ତି ଗାନ
ତାହାଙ୍କର ମୁଖ ନିସୃତ   ପିଇ ମୁଁ ହରି କଥା ମୃତ

ମୁଁ ମଧ ଅନଶନେ ରହି   କଷ୍ଟ ଯେ ନ ଅନୁଭବଇ
ସେ ତତ୍ତ୍ୱଜ୍ଞ ରାଜର୍ଷି ସଭାରେ   ପବିତ୍ର ଭାଗୀରଥୀ ତୀରେ
ଭଗବାନଙ୍କ ଲୀଳା ମାନ   କରିବା ନିମିତ୍ତ ବର୍ଣ୍ଣନ
ପରୀକ୍ଷିତ ଅନୁରୋଧରେ   ଶ୍ରୀ ଶୁକମୁନି ଆନନ୍ଦରେ

ଶ୍ରୀ ହରି ପୂର୍ବ କଳପରେ   ବ୍ରହ୍ମାଙ୍କୁ ଯାହା କହିଥିଲେ
ଭଗବତ ଲୀଳା ପ୍ରଧାନ   ଭାଗବତ ମହାପୁରାଣ
ବର୍ଣ୍ଣନା କଲେ ଉପକ୍ରମ   ହରି ଚରଣେ କରି ଧ୍ୟାନ
ପଣ୍ଡୁ କୁଳ ଶିରୋ ଭୂଷଣ   ପୁଛିଥିଲେ ଯେ ପ୍ରଶ୍ନମାନ

ଶ୍ରୀଶୁକ ସ ବୁ ବିଷୟରେ   ଉତ୍ତର ଆରମ୍ଭ କରିଲେ
ସମ୍ବାଦ ଶୁକ ପରୀକ୍ଷିତ   ଶ୍ରୀହରି ଲୀଳା କଥା ମୃତ
ଆନନ୍ଦ ଚିତ୍ତେ କର ପାନ   ଭକ୍ତିପ୍ରବର ସୁଜ୍ଞଜନ

ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ପାରମହଂସ୍ୟା ସହିଂତାୟାଂ ବୈୟାସିକ୍ୟାଂ ମହାପୁରୁଣ ସଂସ୍ଥାନ ବର୍ଣ୍ଣନେ ଦ୍ୱିତୀୟ ସ୍କନ୍ଧେ ବ୍ରହ୍ମା ନାରଦ ସମ୍ବାଦେ ନାମ ଅଷ୍ଟମୋଽଧ୍ୟାୟ ।

*******

# ନବମ ଅଧ୍ୟାୟ

ଶୁକ କହନ୍ତି ଅନୁରାଗେ   ପରୀକ୍ଷ ନୃପତିଙ୍କ ଆଗେ
ନିଦ୍ରା ବ୍ୟତୀତ କେବେ କେହି   ସ୍ୱପ୍ନ ଦର୍ଶନ ନ କରଇ
ଜୀବ ଚିନ୍ମୟ ମାୟାତୀତ   ଶ୍ରୀ ହରିଙ୍କର ମାୟା ବ୍ୟତୀତ
ଦେହ ଗୃହାଦି ଅହଙ୍କାର   କେବେ ହେଁ ନ ହୁଏ ତାହାର

ଭଗବାନଙ୍କ ମାୟା ଶକ୍ତି   ବହୁରୂପା ବିଚିତ୍ର ଅତି
ଏ ଦେହ ମାୟାରେ ଗଠିତ   ଜୀବ ତହିଁ ହୋଇ ଆସକ୍ତ
ବହୁ ରୂପେ ହୁଏ ପ୍ରତିତ   ମାତ୍ର ସେ ଅଦ୍ୱିତୀୟ ନିତ୍ୟ
ଜୀବ ଏ ମାୟା ଦେହେ ରହି   ମୁହିଁ ମୋର ବୋଲି ଭାବଇ

ଏ ଜୀବ ମାୟା କାଳାତୀତ   ତାହାର ମହିମା ଅନନ୍ତ
ବୁଝି ହରିରେ କଲେ ଭକ୍ତି   ଲଭଇ ମାୟା ଜାଲୁ ମୁକ୍ତି
ବ୍ରହ୍ମାଙ୍କ ଅକପଟ ଭକ୍ତି   ଭାବରେ ହୋଇ ତୁଷ୍ଟ ମତି
ସଚ୍ଚିଦାନନ୍ଦ ନାରାୟଣ   ଦର୍ଶାଇଥିଲେ ନିଜ ଧାମ

ଜୀବର ତତ୍ତ୍ୱ ଜ୍ଞାନ ଲାଭ   ଉପାୟ କହିଲେ ମାଧବ
ସେ ବିଶ୍ୱଗୁରୁ ଜ୍ଞାନ ଦାତା   ଜୀବ ଜଗତ କର୍ତ୍ତା ତ୍ରାତା
ବିଶ୍ୱ ଆଧାର ହରିଙ୍କର   ନାଭି କମଳେ ରହି ସ୍ଥିର
ଜଗତ ସୃଜିବେ କିପରି   ହୃଦରେ ଆଲୋଚନା କରି

ଉପାୟ ସୃଷ୍ଟି ରଚନାର   କରି ନ ପାରିଲେ ଯେ ସ୍ଥିର
ବ୍ରହ୍ମା ଦିନେ ଜଳ ମଧ୍ୟରେ   ଏପରି ଭାବିବା ବେଳରେ
ନିଜ ସମୀପରେ ଷୋଡଶ   ସ୍ପର୍ଶ ବର୍ଣ୍ଣର ଏକ ବଂଶ
ତପ ଶବଦ ଦୁଇଥର   ହେଲା ତାଙ୍କ କର୍ଣ୍ଣ ଗୋଚର

ତପ ହିଁ ନିଷ୍କାମ ଭକ୍ତର   ଏକମାତ୍ର ଅଟେ ସମ୍ବଳ
ବ୍ରହ୍ମା ସେହି ଦୁଇ ଅକ୍ଷର   ଶୁଣିବା ପରେ ସେ ଶବ୍ଦର
ବକ୍ତାଙ୍କୁ ଦେଖିବା ଇଚ୍ଛାରେ   ଚାରି ଦିଗକୁ ସେ ଚାହିଁଲେ
ମାତ୍ର ସାଗର ଜଳ ଭିନ୍ନ   କିଛି ହିଁ ନ ଦେଖିଲେ ଅନ୍ୟ

ତହୁଁ ବିଚାରିଲେ ହୃଦରେ  କେ ଜଣେ ତାଙ୍କୁ ଅଦୃଶ୍ୟରେ
ତପସ୍ୟା କରିବାର ପାଇଁ  ପ୍ରେରଣା ଯେ ଦେଉ ଅଛଇ
ତେଣୁ ବିଧାତା ତପସାରେ  ସୁଦୃଢ଼ ସଙ୍କଳ୍ପ କରିଲେ
ଅଜିତେନ୍ଦ୍ରିୟ ସଂଯତ ଚିତ୍ତ  ଅବ୍ୟର୍ଥ ଜ୍ଞାନୀ ତପୀ ଶ୍ରେଷ୍ଠ

ସ୍ଥିର ଚିତ୍ତରେ ସମାଧିରେ  ଦିବ୍ୟ ସମ ବର୍ଷ କଷ୍ଟରେ
ମଗ୍ନ ହେଲେ ଘୋର ତପରେ  ମନ ଅର୍ପିଲେ ହରିଠାରେ
ତପେ ସନ୍ତୁଷ୍ଟ ଭଗବାନ  ଦର୍ଶାଇଲେ ବୈକୁଣ୍ଠ ଧାମ
ଏ ଧାମ ଅଖିଳ ଜଗତ  ଊର୍ଦ୍ଧ୍ୱରେ ସଦା ଅବସ୍ଥିତ

ଏ କ୍ଳେଶ ମୋହ ଭୟନାହିଁ  ସର୍ବ ଲୋକ ଶ୍ରେଷ୍ଠ ବୋଲାଇ
ଆତ୍ମ ତତ୍ତ୍ୱଜ୍ଞ ପୁଣ୍ୟବାନ  ଯୋଗୀଙ୍କ ଏହା ବାସସ୍ଥାନ
ରଜ ମିଶ୍ରିତ ତମୋଗୁଣ  ରଜ ତାମସ ସତ୍ତ୍ୱଗୁଣ
ପରିଲ୍ଲକ୍ଷିତ ହୁଏ ନାହିଁ  ଶୁଦ୍ଧ ସତ୍ତ୍ୱେ ଗଠିତ ଏହି

ମାୟା କିମ୍ବା ଅନ୍ୟ ବିଗୁଣ  କଥା କହିବା ଅକାରଣ
ସୁରା ସୁର ବନ୍ଦ୍ୟ ହରିର  ପାର୍ଷଦେ କରନ୍ତି ବିହାର
ଏହି ଠାରେ ପାର୍ଷଦ ଗଣ  ଉଜ୍ଜ୍ୱଳ ସୁଶ୍ୟାମଳ ବର୍ଣ୍ଣ
ପଦ୍ମାକ୍ଷ ପୀତାମ୍ବର ଧର  ଚତୁର୍ଭୁଜ କାନ୍ତ ଶରୀର

ମଣି ପଦକ ବିଭୂଷିତ  ନିର୍ମଳ ପ୍ରଭା ମଣ୍ଡିତ
କା ଅଙ୍ଗେ ପ୍ରବାଳ ସମାନ  କେବା ମଣି ମୃଣାଳ ବର୍ଣ୍ଣ
ଉଜ୍ଜ୍ୱଳ କିରୀଟ କୁଣ୍ଡଳ  ସକଳେ ରତ୍ନ ମାଳା ଧର
ଯେପରି ଆକାଶ ବିଦ୍ୟୁତ୍  ମେଘମାଳାରେ ସୁଶୋଭିତ

ସେପରି ବଇକୁଣ୍ଠ ଧାମ  ପାର୍ଷଦ ମାନଙ୍କ ବିମାନ
ସୁରନାରୀ ରତ୍ନ ଚଟାରେ  ଅପୂର୍ବ ସୁଷମା ବିସ୍ତାରେ
ଏହି ପ୍ରକାର ଶୋଭା କାହିଁ  ଅନ୍ୟ ଲୋକର ନ ଦିଶଇ
ବୈକୁଣ୍ଠରେ ଭ୍ରମର ଗଣ  କରି ସୁମଧୁର ଗୁଂଜନ

ବୈକୁଣ୍ଠ ପତି ପ୍ରିୟତମା  ଲକ୍ଷ୍ମୀଙ୍କର ଗୁଣ ମହିମା
କରିଣ ସର୍ବଦା କୀର୍ତ୍ତନ  ତୋଷନ୍ତି ପାର୍ଷଦଙ୍କ ମନ
ସ୍ୱୟଂ ଲକ୍ଷ୍ମୀ ଶ୍ରୀହରିଙ୍କର  ଗୁଣକୁ ଗାଇ ନିରନ୍ତର
ବିମାନ କରି ଆରୋହଣ  ସେବନ୍ତି ଶ୍ରୀହରି ଚରଣ

ଜଗତ ସ୍ୱାମୀ ଯଜ୍ଞପତି  ଭକ୍ତ ବତ୍ସଳ ଲକ୍ଷ୍ମୀ ପତି
ହରିଙ୍କୁ କରି ଦରଶନ  ବିଧାତା ହେଲେ ତୁଷ୍ଟମନ
ସୁନନ୍ଦ ପ୍ରବଳ ଅର୍ହଣ  ନନ୍ଦ ଆଦି ପାର୍ଷଦଗଣ
ନିଯୁକ୍ତ ହରିଙ୍କ ସେବାରେ  ହରି ମଧ ସେବକଠାରେ

କରୁଣା କରିବା ନିମିତ୍ତ  ସତତ ଥାଆନ୍ତି ଜାଗ୍ରତ
ହରିଙ୍କ କମଳ ବଦନ  ପ୍ରସନ୍ନ ହାସ୍ୟ ପରିପୂର୍ଣ୍ଣ
ଅରୁଣ ନୟନ ଶୋଭାର  ନାହିଁ ତ୍ରିଲୋକେ ପଟାନ୍ତର
ଚତୁର୍ଭୁଜ ପୀତ ବସନ  ଶିରରେ କିରୀଟ ଶୋଭନ

ମକର କୁଣ୍ଡଳ ଗଳାରେ  ତାଙ୍କ ବକ୍ଷ ବାମ ଭାଗରେ
ଶୁଦ୍ଧ ସୁବର୍ଣ୍ଣ ରେଖାପରି  ଶୋଭନ୍ତି ସାଗର କୁମାରୀ
ଦିବ୍ୟ ସିଂହାସନ ଅସୀନ  ଅତି ଭାସ୍କର ତେଜୀୟାନ
ପୁରୁଷ ଅହଙ୍କାର ତତ୍ତ୍ୱ  ମୂଳ ପ୍ରକୃତ ମହତତ୍ତ୍ୱ

ଏକାଦଶେନ୍ଦ୍ରି ମହାଭୂତ  ପଞ୍ଚବିଂଶ ଶକ୍ତି ତନ୍ମାତ୍ର
ବରଜି ନିଜ ନିଜ ଶକ୍ତି  ଭଗବାନଙ୍କୁ ବେଢ଼ିଥାନ୍ତି
ଯୋଗୀ ଯେ ଅଣିମାଦି ଶକ୍ତି  ଯୋଗ ପ୍ରଭାବରେ ଲଭନ୍ତି
ସେ ଶକ୍ତି ସମୂହ ସତତ  ଐଶ୍ୱର୍ଯ୍ୟାଦି ଶକ୍ତି ସହିତ

ଶ୍ରୀହରିଠାରେ ବିରାଜିତ  ସର୍ବ ଲୋକାଶ୍ରୟ ହରିତ
ଥାଇବି ସକଳ ଶକତି  ସେ ନିଜ ସ୍ୱରୂପେ ରମନ୍ତି
ଏଣୁ ସେ ଈଶ୍ୱର ନାମରେ  ବିଖ୍ୟାତ ଜଗତ ମଧରେ
ଲଭି ତାହାଙ୍କର ଦର୍ଶନ  ବ୍ରହ୍ମା ଦିବ୍ୟ ପ୍ରେମରେ ମଗ୍ନ

ଅଙ୍ଗ ପୁଲକିତ ହୋଇଲା  ନେତ୍ରରୁ ପ୍ରେମାଶ୍ରୁ ବହିଲା
ଶ୍ରୀହରିଙ୍କ ଯେଉଁ ଚରଣ  ପରମହଂସ ଯୋଗୀଧନ
ବ୍ରହ୍ମା ଆନନ୍ଦ ହୃଦୟରେ  ପ୍ରେମରେ ସେ ପାଦ ବନ୍ଦିଲେ
ପ୍ରଜାଙ୍କର ସୃଷ୍ଟି ନିମିତ୍ତ  ଶରଣ୍ୟ ପ୍ରେମେ ବ୍ୟାକୁଳିତ

ସୃଷ୍ଟି କାର୍ଯ୍ୟରେ ନିୟୋଜିତ  ବ୍ରହ୍ମାଙ୍କୁ ଦେଖି ଉପସ୍ଥିତ
ବୈକୁଣ୍ଠ ପତି ପ୍ରୀତ ହେଲେ  ମନ୍ଦେ ମନ୍ଦେ ହସି କହିଲେ

## ଶ୍ରୀ ଭଗବାନ ଉବାଚ

ତୋଷେ କହିଲେ ଭଗବାନ ଶୁଣହେ ଚତୁର ଆନନ
ଜଗତ ସର୍ଜନା ଇଛାରେ ତୁମର ଦୀର୍ଘ ତପସ୍ୟାରେ
ତୋଷେ ହୋଇଛି ମୋର ମନ ପୂର୍ଣ୍ଣ ହେଉ ତୋ ମନସ୍କାମ
କପଟୀ କୁଟ ଯୋଗୀଗଣ ନ ଲଭନ୍ତି ମୋର ଦର୍ଶନ

ହେ ଧାତା ଶୁଭ ହେଉତୋର ଇଛାନୁସାରେ ମାଗ ବର
ଯେ ଲଭଇ ଦର୍ଶନ ମୋର ସାଧନା ସିଦ୍ଧି ହୁଏ ତାର
ତୁମେ ମୋ କୃପା ଫଳେ ଜାଣ କଲ ବୈକୁଣ୍ଠ ଦରଶନ
ତୁମକୁ ବୈକୁଣ୍ଠ ଦର୍ଶନ କରାଇବା ଯେ ଇଛାମମ

ତୁମେ କରି ଘୋର ତପକୁ ଦେଖିଲ ବୈକୁଣ୍ଠ ପୁରକୁ
ଏହା ନଭାବ କେବେ ମନ ତୁମକୁ ମୁଁ ତପଶ୍ଚରଣ
ପ୍ରକୃତି କରିଥିଲି ଦାନ ତୁ ତପ କରିଲୁ ସାଧନ
ତପସ୍ୟା ହୃଦୟ ମୋହର ମୁଁ ନିଜେ ଆତ୍ମା ତପସ୍ୟାର

ତୁମେ ବିଶ୍ୱ ସୃଷ୍ଟି କାର୍ଯ୍ୟରେ ବିମୋହିତ ହେଲ ଯେ ବେଳେ
ମୁଁ ନିଜେ ତପ ତପ ବୋଲି ତୁମକୁ ପ୍ରତ୍ୟାଦେଶ ଦେଲି
ମୁଁ ନିଜେ ତପସ୍ୟା ବଳରେ ସୃଜି ପାଳି ବିଲୟ କରେ
ଏ ତପସ୍ୟା ଘୋର ଦୁସ୍ତର ଶକ୍ତି ଅଟଇ ଜାଣ ମୋର

## ବ୍ରହ୍ମା ଉବାଚ

ବ୍ରହ୍ମା ବୋଇଲେ ଭଗବାନ ସର୍ବ ଅନ୍ତର୍ଯ୍ୟାମୀ ଆପଣ
ନିୟନ୍ତା ସକଳ ବିଶ୍ୱର ଆପଣ ସର୍ବ ଶକ୍ତି ଧର
ସର୍ବ ମନୋଭାବ ଜାଣନ୍ତି ସବୁଠାରେ ବ୍ୟାପି ଅଛନ୍ତି
ହେ ନାଥ ମୁଁ ପ୍ରାର୍ଥନା କରେ ତୋର ସ୍ଥୁଳ ସୁକ୍ଷ୍ମ ଦେହରେ

ସଦା ମୋ ରହିଥାଉ ଜ୍ଞାନ ଏ ପ୍ରାର୍ଥନା କର ପୂରଣ
ଊର୍ଣ୍ଣ ନାଭ ଯେଉଁ ପ୍ରକାରେ ନିଜ ଠାରୁ ଜାତ ସୁତ୍ରରେ
ଜାଲ ବିସ୍ତାରି କରି ଖେଳେ ଆପଣ ଯୋଗ ମାୟା ବଳେ
ନାନା ରୂପରେ ବିହରନ୍ତି ସୃଷ୍ଟି ସ୍ଥିତି ଲୟ କରନ୍ତି

ସେ ଲୀଳା ଅଟଇ ବିଚିତ୍ର ହେ ମାଧବ ସେ ଲୀଳା ତତ୍ତ୍ୱ
ମୁଁ ଜାଣି ପାରିବି ଯେପରି ମତେ ଜ୍ଞାନ ଦିଅ ସେପରି
ଆପଣଙ୍କ ଅନୁଗ୍ରହରେ ପୁଣି ଆପଣଙ୍କ ଅଜ୍ଞାନରେ
ସଦା ନିରଳସ ଭାବରେ ରହିବି ଏ ସୃଷ୍ଟି କାର୍ଯ୍ୟରେ

ଜାତ ନ ହେଉ ଅଭିମାନ ଏ ସୃଷ୍ଟି କର୍ମେ ନୋହୁ ବିଘ୍ନ
ଆପଣ ପ୍ରିୟ ସଖା ପରି ହସ୍ତେ ମୋ ଶିର ସ୍ପର୍ଶ କରି
କରିଲେ ମୋର ପ୍ରାଣ କୃତାର୍ଥ ଯେତେକ ସମୟ ପର୍ଯ୍ୟନ୍ତ
ରହିଥିବି ସୃଷ୍ଟି କାର୍ଯ୍ୟରେ ଆପଣ ଆଜ୍ଞା ଅନୁସାରେ

ଉତ୍ତମ ଆଦି ଜୀବଗଣ ଯହିଁ କରୁଥିବି ସର୍ଜନ
ମୋର କର୍ତ୍ତୁତ୍ୱ ଅଭିମାନ ହୃଦୟେ ନ ହେଉ ଜନମ

## ଶ୍ରୀ ଭଗବାନ ଉବାଚ

ବିଜ୍ଞାନ ପ୍ରେମ ଭକ୍ତି ପୂର୍ଣ୍ଣ ସାଧନା ଶ୍ରେଷ୍ଠ ଗୁହ୍ୟଜ୍ଞାନ
ମୋର ଏ ଉପଦେଶ ମାନ ହେ ବ୍ରହ୍ମାକର ତୁ ଗ୍ରହଣ
ମୋର ସ୍ୱରୂପ ଗୁଣ କର୍ମ ତୋର ହୃଦୟେ ହେଉ ଜନ୍ମ
ମୋ ଅଯାଚିତ କୃପା ବର ଘେନ ହେ ବ୍ରାହ୍ମଣ୍ୟ ପ୍ରବର

ସ୍ଥୁଳ ସୁକ୍ଷ୍ମାଦି ଭୂତିଗଣ ତଥା ସେମାନଙ୍କ କାରଣ
ମୋ ଠାରେ ହୋଇଥିଲା ଲୀନ ଅପ୍ରକାଶ ଥିଲେ ସେମାନ
ସୃଷ୍ଟି ପ୍ରାରମ୍ଭରେ ମୁଁ ଅଛି ମୋ ବିନା ଆଉ ନାହିଁ କିଛି
ମୁଁ ସିନା ଏ ଦୃଶ୍ୟ ଜଗତ ଲୟେ ରହେ ମୁଁ ଏକମାତ୍ର

ବ୍ରହ୍ମ କେବଳ ଅଟେ ସତ୍ୟ ମିଥ୍ୟା ଅଟଇ ଏ ଜଗତ
ସେ ସତ୍ୟ ବ୍ରହ୍ମଙ୍କ ବ୍ୟତୀତ ଯା ସବୁ ହୁଅଇ ପ୍ରତୀତ
ବ୍ରହ୍ମେ ଯା ପ୍ରତୀତ ନୁହଁଇ ଜାଣ ତାହା ମାୟା ଅଟଇ
ଯେପରି ଦୁଇ ଗୋଟି ଚନ୍ଦ୍ର ନଥିଲେ ମଧ୍ୟ ପ୍ରତିବିମ୍ବ

ଯୋଗରୁ ଦୁଇଗୋଟି ଚନ୍ଦ୍ର ପ୍ରତୀତ ହୁଅଇ ସମ୍ଭବ
ଯେପରି ଅନ୍ଧାରୁଆ ଗୃହେ ଯେ କୌଣସି ପଦାର୍ଥ ଥାଏ
ଅଛି ବୋଲି ଜଣା ନଯାଏ ଅଛି ନାହିଁ ଭ୍ରମ ଜନ୍ମାଏ
ମାୟା ଶକ୍ତିର କାର୍ଯ୍ୟମାନ ଅଟଇ ସେହିପରି ଜାଣ

ଆକାଶ ଆଦି ମହାଭୂତ ସର୍ବଜୀବ ଦେହ ଗଠିତ
ତାହା ଜୀବ ଦେହେ ରହଇ ବାହାରେ ମଧ୍ୟ ରହିଥାଇ
ସେପରି ମୁଁ ଜୀବ ଦେହରେ ପୁଣି ରହେ ଏ ଜଗତରେ
କାର୍ଯ୍ୟରୁ କାରଣର ଜ୍ଞାନ ଅନ୍ୱୟ ଅଟେ ଯାର ନାମ

କାର୍ଯ୍ୟ ନାଶେ କାରଣ ରହି ବ୍ୟତିରେକ ଏହାକୁ କହି
ଜଗତ କାର୍ଯ୍ୟ ମୁଁ କାରଣ ଦୃଶ୍ୟ ଜଗତୁ ମତେ ଜାଣ
ଜଗତ ବିନାଶ ଲଭଇ ମୁଁ ସର୍ବଦା ରହିଥାଇ
ଏକଇ ସତ୍ୟ ଅଟେ ମୁହିଁ ମୋ ବିନୁ ଅନ୍ୟ କିଛି ନାହିଁ

ହେ ବ୍ରହ୍ମା ତୁହି ସମାଧିରେ ଚିତ୍ତ ସମର୍ପି ମୋ ପୟରେ
ମୋର ଚରଣ ଆଶ୍ରାକର ସଦା ଭକ୍ତି ଯୋଗ ଅଚର
କଳ୍ପ ବିକଳ୍ପରେ ତୁମର ବିଭ୍ରମ ନ ହେବ ବୁଦ୍ଧିର
ମୁଁ କର୍ତ୍ତା ବୋଲି ଅଭିମାନ ତେଜିକ ସୃଷ୍ଟି ସର୍ଜନ

ଶ୍ରୀ ଶୁକ ଉବାଚ

ଶୁକ କହିଲେ ସେ ଶ୍ରୀହରି ଉପଦେଶ ଦେଇ ଏପରି
ଚାହୁଁ ଚାହୁଁ ସେ ବ୍ରହ୍ମାଙ୍କର ଦୃଷ୍ଟିପଥୁ ହେଲେ ଅନ୍ତର
ଭକ୍ତର ନୟନାଭିରାମ ହରି ହୁଅନ୍ତେ ଅନ୍ତର୍ଦ୍ଧାନ
ବ୍ରହ୍ମା ତାହାଙ୍କ ଉଦ୍ଦେଶ୍ୟରେ କୃତାଞ୍ଜଳି ହୋଇ ଭକ୍ତରେ

ପ୍ରଣାମ କଲେ ଚରଣରେ ପୂର୍ବ କଳ୍ପର ଅନୁସାରେ
ଧର୍ମ ରକ୍ଷକ ପ୍ରଜାପତି ଜୀବ ଜଗତ ଶୁଭଚିନ୍ତି
ଶୁଦ୍ଧ ଚିତ୍ତେ ଏକ ସଙ୍ଗରେ ଯମ ନିୟମ ଆଚରିଲେ
ପୁତ୍ର ମଧ୍ୟରେ ପ୍ରିୟତମ ବିନୟୀ ପିତୃ ଅଜ୍ଞାଧୀନ

ସୁଶୀଳ ସର୍ବ ଗୁଣାଧାର ପିତୃପଦ ସେବା ତତ୍ପର
ମହାମୁନି ନାମେ ବିଖ୍ୟାତ ନାରଦ ମହା ଭାଗବତ
ସକଳ ବିଶ୍ୱର ଆଧାର ମାୟାଧର ଶ୍ରୀହରଙ୍କର
ପଚାରିଥିଲେ ଏହି ପ୍ରଶ୍ନ ଆହେ ପରୀକ୍ଷିତ ରାଜନ

ଭଗବାନ ସୃଷ୍ଟି ପ୍ରାରମ୍ଭରେ ଅତି ସନ୍ତୋଷ ମାନସରେ
ଦଶଟି ଲକ୍ଷଣ ସହିତ ଯେଉଁ ଶ୍ରୀମଦ ଭାଗବତ
ନାମକ ଏ ମହାପୁରାଣ ବ୍ରହ୍ମାଙ୍କୁ କହିଥିଲେ ଜାଣ
ବିଧାତା ସୁପ୍ରସନ୍ନ ହୋଇ ନାରଦଙ୍କୁ ତା ଥିଲେ କହି

ବ୍ରହ୍ମାଙ୍କ ଠାରୁ ଏହା ଶୁଣି ସେହି ନାରଦ ମହାମୁନି
ସରସ୍ୱତୀ ନଦୀ କୂଳରେ ନିରାକାର ବ୍ରହ୍ମଧ୍ୟାନରେ
ନିମଗ୍ନ ଅତି ତେଜୀୟାନ ଶ୍ରୀ ପରାଶରଙ୍କ ନନ୍ଦନ
ବ୍ୟାସଙ୍କୁ କହିଥିଲେ ପୁନ ମହାଭାଗବତ ପୁରାଣ

ବିରାଟ ପୁରୁଷ ଭଗବାନ ଗର୍ଭରୁ ବିଶ୍ୱର ଜନମ
ତୁମେ କରିଛ ଯେଉଁ ପ୍ରଶ୍ନ ମୁଁ ଭାଗବତ ବ୍ୟାଖ୍ୟାନ
ଛଳରେ ତୁମ ସବୁ ପ୍ରଶ୍ନ ଉତ୍ତର କରିବି ପ୍ରଦାନ
ସୁଜନେ ମୋର କଥା ମାନ ସଦାକର ହରି ସ୍ମରଣ

କହଇ ଦାଶ ଧନେଶ୍ୱର ମିଥ୍ୟା ଅଟଇ ଏ ସଂସାର
ଶ୍ରୀହରି ଏକ ମାତ୍ର ସତ୍ୟ ତାହାଙ୍କ ନାମ ସ୍ମର ନିତ୍ୟ

ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ପାରମହଂସ୍ୟାଂ ସହିଂତାୟାଂ ବୈୟାସିକ୍ୟାଂ ମହାପୁରୁଷ ସଂସ୍ଥାନ ବର୍ଣ୍ଣନେ ଦ୍ୱିତୀୟ ସ୍କନ୍ଧେ ଶ୍ରୀହରି ବ୍ରହ୍ମା ସମ୍ବାଦେ ନାମ ନବମୋଽଧ୍ୟାୟ ।

********

## ଦଶମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ମହାପୁରାଣ ଭାଗବତ ବିଷ୍ଣୁଙ୍କ ସ୍ୱରୂପ ସାକ୍ଷାତ
ସ୍ଥାନ ଉତ୍ପତି ମନ୍ୱନ୍ତର ସର୍ଗ ଈଶାନୁ ଚରିତ ବିସର୍ଗ
ନିରୋଧ ମୁକତି ପୋଷଣ ଆଶ୍ରୟ ଏ ଦଶ ଲକ୍ଷଣ
ଆଶ୍ରୟ ତତ୍ତ୍ୱର ବିଜ୍ଞାନ ନିମିତ୍ତ ପୂର୍ବ ସୂରୀଗଣ

କୌଣସି ସ୍ଥାନେ ମୁଖ୍ୟ ଭାବେ କେଉଁ ସ୍ଥାନେ ବା ଗୌଣଭାବେ
ସର୍ଗାଦି ନବ ତତ୍ତ୍ୱ ମାନ କରି ଅଛନ୍ତି ଯେ ବର୍ଣ୍ଣନ
ଯେ ବେଳେ ପ୍ରଭୁ ବିଶ୍ୱପତି ଜଗତ ସର୍ଜନା ଇଛନ୍ତି
ଗୁଣ କ୍ଷୋଭ ଯୋଗୁ ପ୍ରକୃତି ପଞ୍ଚଭୂତ ମାତ୍ରା ପ୍ରଭୃତି

ମହତ୍ତ୍ୱ ସର୍ଗ ବୋଲି କହି ଶୁଣ ପରୀକ୍ଷ ମନ ଦେଇ
ଭଗବାନଙ୍କ କୃପା ବରେ ବିଧାତା ବ୍ରହ୍ମାଣ୍ଡ ସୃଜିଲେ
ବିସର୍ଗ ଅଟେ ଯାର ନାମ ହେ ରାଜା ସାବଧାନେ ଶୁଣ
ସୃଷ୍ଟ ପଦାର୍ଥର ପାଳନ ସ୍ଥାନ ଅଟଇ ଯାର ନାମ

ଭକ୍ତ ଅନୁଗ୍ରହ ପୋଷଣ କର୍ମ ବାସନା ଭକ୍ତି ଜାଣ
ମନ୍ୱନ୍ତରାଧିପତିଙ୍କର ଧର୍ମ ଅଟଇ ମନ୍ୱନ୍ତର
ଭଗବାନଙ୍କ ଅବତାର ଇତିହାସ ଭକ୍ତଗଣର
ଈଶାନୁ କଥା ଯେ ଅଟଇ ଶୁକ ପରୀକ୍ଷିତେ କହଇ

ମହାପ୍ରଳୟ ସମୟରେ ଭଗବାନଙ୍କର ଗର୍ଭରେ
ଜୀବ ଉପାଧି ଜୀବଗଣ ମାୟା ସହିତ ହୁଏ ଲୀନ
ନିରୋଧ ଅଟେ ଏ ଯାର ନାମ କେ ଅବା କରିବ ବର୍ଣ୍ଣନ
ସୃଷ୍ଟି ସ୍ଥିତି ବିଲୟ କର୍ତ୍ତା ଜୀବଗଣ ଭାଗ୍ୟ ବିଧାତା

ଏକମାତ୍ର ସେ ଦୟାମୟ ଶ୍ରୀହରି ଜଗତ ଆଶ୍ରୟ
ନେତ୍ରାଦି ଇନ୍ଦ୍ରିୟରେ ରହି ସମସ୍ତ ଦେଖେଇ ଶୁଣଇ
ସେ ଜୀବ ଆଧ୍ୟାତ୍ମ୍ୟ ଅଟଇ ସେତ ଈଶ୍ୱରାଂଶ ବୋଲାଇ
ନେତ୍ରାଦି ଇନ୍ଦ୍ରି ଅଧିଷ୍ଠାତା ସୂର୍ଯ୍ୟ ବରୁଣାଦି ଦେବତା

ଅଧି ଦଇବ ବୋଲି ଜାଣ ଆହେ ପରୀକ୍ଷିତ ରାଜନ
ଏ ତିନି ପୁରୁଷ ବ୍ୟତୀତ ପଞ୍ଚଭୂତରେ ବିନିର୍ମିତ
ଜୀବର ଉପାଧି ସ୍ୱରୂପ ଏ ସ୍ଥୂଳ ଦେହ ଅଧିଭୂତ
ପୁରୁଷ ଏ ତିନି ପ୍ରକାର ସାପେକ୍ଷ ଅଟେ ପରସ୍ପର

ଏକ ଅଭାବରେ ଅନ୍ୟର ଅସ୍ତିତ୍ୱ ନ ହୁଏ ଗୋଚର
ଏ ତିନିର ସାକ୍ଷୀ ସେ ଯିଏ ସର୍ବଦା ନିରପେକ୍ଷ ରହେ
ପରମ ଆତ୍ମା ଏକ ସେହି ଆଶ୍ରୟ ତତ୍ତ୍ୱ ଯେ ଅଟଇ
ଯେବେ ସେ ନିଜ ଦେହେ ଲୀନ ସୂକ୍ଷ୍ମ ଯେ ବ୍ରହ୍ମାଣ୍ଡକୁ ପୁନ

ନିଜ ଅଙ୍ଗରୁ କରି ଭିନ୍ନ ବାହ୍ୟେ କରନ୍ତି ଅବସ୍ଥାନ
ସେବେଳେ ସେ ପୁରୁଷଙ୍କର ନଥିଲା ମାୟାର ସମ୍ପର୍କ
ପୁରୁଷ ନିଜ ବାସସ୍ଥାନ ନିମିତ୍ତ ନିଜ ଅଙ୍ଗୁ ପୁନ
ଶୁଦ୍ଧ ଜଳ କଲେ ସର୍ଜନ ଗର୍ଭୋଦକ ଏହାର ନାମ

ଏ ଅନ୍ତେ ନିଜ ଅଙ୍ଗଜାତ ପଞ୍ଚ ସସ୍ତ ବର୍ଷ ପର୍ଯ୍ୟନ୍ତ
ନିଶ୍ଚେଷ୍ଟ ଭାବେ ନିଦ୍ରାଗତ ଗର୍ଭୋଦକ ପୁରୁଷରୁ ଜାତ
ହେବାରୁ ତାଙ୍କର ନାମ ଜଳ ବାସରୁ ନାରାୟଣ
ଦ୍ରବ୍ୟ କାଳ ସ୍ୱାଭାବ କର୍ମ ସକଳ ଜୀବ ଜନ୍ତୁ ଗଣ

ନାରାୟଣ ଅନୁଗ୍ରହରେ ସମର୍ଥ କର୍ମ କରିବାରେ
ତାଙ୍କର ଅନୁଗ୍ରହ ବିନା କେହି କିଛି କରି ପାରେନା
ସେ ଏକ ନାରାୟଣ ହରି ଯୋଗ ନିଦ୍ରାକୁ ତ୍ୟାଗ କରି
କ୍ଷଣକେ ଜାଗ୍ରତ ହୋଇଲେ ଅନେକ ହେବା ଇଚ୍ଛା କଲେ

ସେ ନାରାୟଣ ଯେ ବେଳରେ ନିଜ ମାୟା ଶକ୍ତି ବଳରେ
ଅଖିଳ ବ୍ରହ୍ମାଣ୍ଡର ବୀଜ ନିଜର ହିରଣ୍ମୟ ବୀର୍ଯ୍ୟ
ଅଧି ଦଇବ ଅଧିଭୂତ ଆଧାତ୍ମ ତ୍ରିଭାଗେ ବିଭକ୍ତ
ସେହି ବିରାଟ ପୁରୁଷର ଏକ ହିଁ ବୀର୍ଯ୍ୟ କି ପ୍ରକାର

ତ୍ରିଭାଗରେ ହେଲା ବିଭକ୍ତ ଶୁଣ ହେ ରାଜା ପରୀକ୍ଷିତ
ସେ ପୁରୁଷ ଏହି ଭାବରେ ଅଂଗ ଚାଳନା ଚେଷ୍ଟା କଲେ
ଦେହସ୍ଥ ଆକାଶ ମଣ୍ଡଳ ମଧ୍ୟରୁ ଇନ୍ଦ୍ରିୟର ବଳ
ମାନସ ଶାରୀରିକ ବଳ ଉତ୍ପତ୍ତି ହୋଇଲା ତତ୍କାଳ

ସେବକ ମାନେ ଯେ ପ୍ରକାରେ ଯାଆନ୍ତି ରାଜାଙ୍କ ପଛରେ
ସେପରି ଶରୀର ମଧ୍ୟରେ ପ୍ରାଣ ପ୍ରବଳ ଥିବା କାଳେ
ଇନ୍ଦ୍ରିୟ ଥାନ୍ତି ବଳବାନ ନିସ୍ତେଜ ହୋଇଗଲେ ପ୍ରାଣ
ଇନ୍ଦ୍ରିୟ ହୁଏ ବଳହୀନ ହେ ରାଜା ମନଦେଇ ଶୁଣ

ପ୍ରାଣବାୟୁ ଶୀଘ୍ର ଚାଳିଲା କ୍ଷୁଧା ପିବାସା ଜନମିଲା
ଖାଦ୍ୟ ଗ୍ରହଣ ଇଚ୍ଛାହେଲା ତହୁଁ ବଦନ ପ୍ରକାଶିଲା
ମୁଖରେ ତାଳୁ ଜନମିଲା ତହୁଁ ରସନା ପ୍ରକାଶିଲା
ମଧୁର ଆଦି ରସମାନ ଜିହ୍ୱା କରିଲା ଆସ୍ୱାଦନ

ସେହି ପୁରୁଷ ଯେତେବେଳେ କଥା କହିବା ଇଚ୍ଛାକଲେ
ବାଗିନ୍ଦ୍ରିୟ ପୁଣି ବାକ୍ୟର ଅଧିଷ୍ଠାତା ଦେବ ଅନଳ
ବିଷୟ କଥୋପ କଥନ ଏ ତିନି ଲଭିଲେ ଜନମ
ତାହାପରେ ଅନେକ ଦିନ ସେ ଜଳେ ରହିଲେ ନିମଗ୍ନ

ଶ୍ୱାସ ପ୍ରଶ୍ୱାସର ବେଗରେ ଛିଦ୍ର ଜନମିଲା ନାସାରେ
ଆଘ୍ରାଣ କରିବା ନିମିତ୍ତ ଘ୍ରାଣେନ୍ଦ୍ରିୟ ନାସିକା ଜାତ
କରିବାକୁ ଗନ୍ଧ ବହନ ଅଧିଷ୍ଠାତା ସୂର୍ଯ୍ୟ ଜନମ
ଏ ତିନିଙ୍କର ସାହାଯ୍ୟରେ ସେ ରୂପ ମାନଙ୍କୁ ଦେଖିଲେ

ବେଦ ରୂପ ଋଷି ଯେ କାଳେ ବିରାଟ୍ ପୁରୁଷ ସ୍ତୁତି କଲେ
ଶୁଣିବା ନିମିତ୍ତ ଶ୍ରବଣ ତା ଅଧିଷ୍ଠାତା ଦିଗଗଣ
ଶ୍ରବଣେନ୍ଦ୍ରିୟ ପ୍ରକାଶିଲେ ଏ ଥିରେ ସେ ଶବ୍ଦ ଶୁଣିଲେ
କୋମଳ କଠିନ ଶୀତଳ ଗୁରୁ ଲଘୁ ଉଷ୍ଣ ସକଳ

ଅନୁଭବ ନିମିତ୍ତ ଚର୍ମ ଇନ୍ଦ୍ରିୟ ହୋଇଲା ଜନମ
ପୃଥିବୀ ସ୍ଥିତ ବୃକ୍ଷ ଭଳି ଜାତ ହୋଇଲା ରୋମାବଳି
ବାହ୍ୟ ଆଭ୍ୟନ୍ତରରେ ଚର୍ମର ପବନ କରିଲା ସଂଚାର
କରିବାକୁ ସ୍ପର୍ଶ ଗ୍ରହଣ ଅଧିଷ୍ଠାତା ବାୟୁ ଜନମ

ଏହାଦ୍ୱାରା ବିରାଟ ପୁରୁଷ ଅନୁଭବ କରିଲେ ସ୍ପର୍ଶ
କରମ କରିବା ଇଚ୍ଛାରେ ହସ୍ତ ପ୍ରକଟିଲା ଶରୀରେ
ହସ୍ତେ ଇନ୍ଦ୍ରିୟ ଅଧିଷ୍ଠାତା ପ୍ରକଟିଲେ ଇନ୍ଦ୍ର ଦେବତା
ପଦାର୍ଥ ଗ୍ରହଣ ଶକତି ହସ୍ତରେ ହୋଇଲେ ଉତ୍ପତ୍ତି

କରିବା ନିମିତ୍ତ ଗମନ ପ୍ରକାଶ ପାଇଲା ଚରଣ
ଚରଣେନ୍ଦ୍ରିୟ ଅଧିଷ୍ଠାତା ଯଜ୍ଞ ପୁରୁଷ ଫଳ ଦାତା
ପ୍ରକାଶ ବିଷ୍ଣୁ ନାରାୟଣ ପୁନ ଚଳନ ରୂପ କର୍ମ
ନର ଏ ଚରଣେନ୍ଦ୍ରିୟ ରେ ଯଜ୍ଞ ଦ୍ରବ୍ୟ ସଂଗ୍ରହ କରେ

ସନ୍ତାନ ଲାଭ ରତି କ୍ରିୟା ଅମୃତ ସ୍ୱର୍ଗ ଲାଭ ସ୍ପୃହା
ନିମିତ୍ତ ପୁରୁଷ ଦେହରେ ଲିଙ୍ଗ ଯେ ପ୍ରକଟ ହୋଇଲେ
ଉପସ୍ଥ ତାର ଅଧିଷ୍ଠାତା ସ୍ୱୟଂ ପ୍ରଜାପତି ଦେବତା
ଆଶ୍ରୟ ଏହି ମାନଙ୍କର ଉତ୍ପତ୍ତି ସମ୍ଭୋଗ ସୁଖର

ମଳ ତ୍ୟାଗ ପାଇଁ ତାଙ୍କର ପ୍ରକଟ ହେଲା ମଳଦ୍ୱାର
ବାୟୁ ଇନ୍ଦ୍ରିୟ ମିତ୍ର ଦେବ ଏହା ସାହାଯ୍ୟେ ମଳ ତ୍ୟାଗ
ପ୍ରକ୍ରିୟା ହୋଇଲା ଜନମ ପରୀକ୍ଷ କର ଅବଧାନ
ଦେହରୁ ଅପାନ ମାର୍ଗରେ ଦେହାନ୍ତର ଯିବା ଇଚ୍ଛାରେ

ସେହି ବିରାଟ ପୁରୁଷର ପ୍ରକାଶ ହେଲା ନାଭିଦ୍ୱାର
ଅପାନ ଓ ମୃତ୍ୟୁ ଦୈବତ ଏଠାରେ ହେଲେ ପ୍ରକାଶିତ
ଏହା ଆଶ୍ରୟରେ ମରଣ ଲଭନ୍ତି ସର୍ବ ଜୀବ ଗଣ
ଅନ୍ନ ଭୋଜନ ଜଳପାନ କୁକ୍ଷି ନାଡି ଅନ୍ତ ଜନମ

କୁକ୍ଷିର ଦେବତା ସାଗର ନାଡି ଦେବତା ନଦୀ ସର
ତୁଷ୍ଟି ପୁଷ୍ଟିର ଯେ ଆଶ୍ରୟ ଜନମ ବିଷୟ ସମୂହ
ନିଜର ମାୟା ବିଷୟରେ ବିଚାର କରିବା ଇଚ୍ଛାରେ
ଜନମ ହୋଇଲା ହୃଦୟ ଏଥିରେ ମାନସ ଇନ୍ଦ୍ରିୟ

ମନର ଦେବତା ଚନ୍ଦ୍ରମା ବିଷୟ ଭୋଗର କାମନା
ସଂକଳ୍ପ ବିକଳ୍ପ ପ୍ରକାଶ ଶୁଣହେ ପରୀକ୍ଷ ନରେଶ
ତାଙ୍କ ଦେହରୁ ପୃଥ୍ୱୀ ଅପ ପୁଣି ତେଜରୁ ଧାତୁ ସପ୍ତ
ତ୍ୱଚା ଚର୍ମ ମାଂସ ରୁଧିର ମେଦ ମଜ୍ଜା ଅସ୍ଥି ଆବର

ଆକାଶ ସଲିଳ ପବନ ମଧ୍ୟରୁ ପ୍ରାଣ ଶକ୍ତି ଜନ୍ମ
କର୍ଣ୍ଣ ଆଦି ଇନ୍ଦ୍ରିୟେଗଣ କରନ୍ତି ଶବ୍ଦାଦି ଗ୍ରହଣ
ଏ ସବୁ ଅହଂକାରୁ ଜନ୍ମ ମନ ସର୍ବ ବିକାର ସ୍ଥାନ
ବୁଦ୍ଧି ଦ୍ୱାରା ସବୁ ପଦାର୍ଥର ବୋଧ ଜନ୍ମଇ ନିରନ୍ତର

ଈଶ୍ୱର ସ୍ଥୂଳ ରୂପ ତତ୍ତ୍ୱ ବର୍ଣ୍ଣନା କରିଲି ସମସ୍ତ
ବାହାର ପ୍ରଦେଶ ଏହାର ପୃଥ୍ୱୀ ଜଳ ଅହଂକାର
ତେଜ ବାୟୁ ନଭ ମହତ ପ୍ରକୃତ ଏହି ଅଷ୍ଟ ତତ୍ତ୍ୱ
ଆବରଣେ ସଦା ଆବୃତ୍ତ ଶୁଣ ହେ ରାଜା ପରୀକ୍ଷିତ

ଭଗବାନଙ୍କ ଏ ବ୍ୟତୀତ ଅଛଇ ଏକ ସୂକ୍ଷ୍ମ ରୂପ
ଅବ୍ୟକ୍ତ ନିରାକାର ନିତ୍ୟ ଆଦି ମଧ୍ୟ ଅନ୍ତରହିତ
ବଚନ ମନ ସେ ସ୍ଥାନରେ ପ୍ରବେଶ କରି ଯେ ନ ପାରେ
ଏହି ଯେ ସ୍ଥୂଳ ବ୍ୟକ୍ତ ରୂପ ପୁଣି ଅବ୍ୟକ୍ତ ସୂକ୍ଷ୍ମ ରୂପ

ଏ ଦୁହେଁ ରଚିତ ମାୟାରେ କେ ଅବା ଏହା ବର୍ଣ୍ଣିପାରେ
ତେଣୁ ପ୍ରକୃତ ଜ୍ଞାନୀ ଯେହି ଏହା ସ୍ୱୀକାର କରେ ନାହିଁ
ଈଶ୍ୱର ହେଲେ ବିନିଷ୍କ୍ରିୟ ସ୍ୱ ଶକ୍ତିରେ ହୁଏ ସକ୍ରିୟ
ବିରାଟ ସ୍ୱରୂପକୁ ଧରି ସେ ଇଚ୍ଛାମୟ ଶ୍ରୀହରି

ବହୁ ରୂପ ନାମ ଧରନ୍ତି କର୍ମକୁ ସ୍ୱୀକାର କରନ୍ତି
ଶୁଣ ହେ ରାଜା ପରୀକ୍ଷିତ ପ୍ରଜାପତି ମନୁ ଦେବତା
ଋଷି ପିତୃ ସିଦ୍ଧ ଚାରଣ ବିଦ୍ୟାଧର ମାତୃକାଗଣ
ଗନ୍ଧର୍ବ ଅସୁର ପନ୍ନଗ କିନ୍ନର ଅପ୍‌ସରା ଭରଗ

କିଂ ପୁରୁଷ ପିଶାଚ ପ୍ରେତ ବିନାୟକ କୁଷ୍ମାଣ୍ଡ ଭୂତ
ଉନ୍ମାଦ ବେତାଳ ପର୍ବତ ଗ୍ରହ ପକ୍ଷୀ ମୃଗ ସମସ୍ତ
ସଂସାରେ ଯେତେ ରୂପନାମ ସକଳ ଅଟେ ଭଗବାନ
ଚିର ଆଚର ଦ୍ୱିପ୍ରକାର ସ୍ଥଳ ଆକାଶ ଜଳଚର

ଆଣ୍ଡ ସ୍ୱେଦଜ ଉଦ୍‌ଭିଦଜ ଏହି ଚାରି ପ୍ରକାର ଜୀବ
ଶୁଭାଶୁଭ କର୍ମାନୁସାରେ ଫଳ ଲଭନ୍ତି ଏ ସଂସାରେ
ସତ୍ତ୍ୱ ଗୁଣ ପ୍ରାଧାନ୍ୟେ ଦେବ ରାଜ ପ୍ରାଧାନ୍ୟରେ ମାନବ
ତମର ପ୍ରାଧାନ୍ୟରେ ପୁଣି ମିଳଇ ନାରକୀୟ ଯୋନି

ଗୋଟିଏ ଗୁଣର ସଂଗରେ ଅନ୍ୟ ଦ୍ୱିଗୁଣ ମିଶ୍ରଣରେ
ତେବେ ପ୍ରତ୍ୟେକ ଗତିପୁଣି ପ୍ରଭେଦ ହୁଏ ତିନି ତିନି
ବିଷ୍ଣୁ ରୂପରେ ଭଗବାନ କରନ୍ତି ପୋଷଣ ପାଳନ
ଦେବତା ପଶୁ ପକ୍ଷୀ ନର ରୂପରେ ହୋଇ ଅବତାର

ଜଗତ ପୋଷଣ ପାଳନ କରନ୍ତି ପ୍ରଭୁ ଭଗବାନ
ଯେଉଁ ପ୍ରକାରେ ଏ ପବନ ମେଘକୁ କରେ ଗର୍ଭେ ଲୀନ
ଶ୍ରୀହରି ମହା ପ୍ରଳୟରେ କାଳାଗ୍ନି ରୁଦ୍ର ସ୍ୱରୂପରେ
ଏ ବିଶ୍ୱକୁ ନିଜ ଗର୍ଭରେ ଲୀନ କରନ୍ତି ସ୍ୱଶକ୍ତିରେ

ଭଗବାନଙ୍କୁ ଭକ୍ତଗଣ ଏପରି କରନ୍ତି ବର୍ଣ୍ଣନ
ମାତ୍ର ତତ୍ତ୍ୱ ଜ୍ଞାନୀ ସମୂହ କେବଳ ସୃଷ୍ଟି ସ୍ଥିତି ଲୟ
କାରଣ ଅଟେ ଭଗବାନ ବୋଲି କରିଥାନ୍ତି ବର୍ଣ୍ଣନ
ମାୟା ଶକ୍ତିରେ ଭଗବାନ କଲେ ବି ପୋଷଣ ପାଳନ

ସର୍ବଦା ଉଦାସୀନ ଥାନ୍ତି ଏଣୁ ସେ ଅକର୍ତ୍ତା ବୋଲାନ୍ତୁ
ବ୍ରହ୍ମାଙ୍କର ଏ ମହାକଳ୍ପ ତଥା ଅନ୍ୟାନ୍ୟ ଯେଉଁ କଳ୍ପ
ମୁଁ ଏଠାରେ କଲି ବର୍ଣ୍ଣନ ସବୁ କଳ୍ପରେ ସୃଷ୍ଟି କ୍ରମ
ଅଟଇ ଜାଣ ଏ ପ୍ରକାର ପ୍ରଭେଦ ଏତିକି କେବଳ

ମହା କଳ୍ପର ପ୍ରାରମ୍ଭରେ ଜଡ ପ୍ରକୃତିରୁ କ୍ରମରେ
ସୃଷ୍ଟିଥିଲା ପୂର୍ବେ ଯେପରି ପୁଣି ରଚଇ ସେହିପରି
ହେ ରାଜାମନ ଦେଇ ଶୁଣ ଏ ଅନ୍ତେ କାଳ ପରିମାଣ
କଳ୍ପ ମନ୍ୱନ୍ତର ଲକ୍ଷଣ ମୁଁ କରିବି ସବୁ ବର୍ଣ୍ଣନ
ପଦ୍ମ କଳ୍ପର ଯେ ଲକ୍ଷଣ କହୁଛି ଶୁଣ ବର୍ତ୍ତମାନ

## ଶୌନକ ଉବାଚ

ଶୌନକ କହିଲେ ହେ ସୂତ ଭଗବାନଙ୍କ ଶ୍ରେଷ୍ଠ ଭକ୍ତ
ବିଦୁର ତେଜି ପରିବାର ବିଭିନ୍ନ ତୀର୍ଥ ପୃଥିବୀର
କିପରି କରିଲେ ଭ୍ରମଣ ସେ ବୃତ୍ତାନ୍ତକର ବର୍ଣ୍ଣନ
ତୀର୍ଥ ଭ୍ରମଣ ସମୟରେ ମୈତ୍ରେୟ ଋଷିଙ୍କ ସଂଗରେ

ଆଧ୍ୟାତ୍ମ୍ୟ ବାଦ ସମ୍ବନ୍ଧରେ କେଉଁଠି ଆଳାପ କରିଲେ
ମୈତ୍ରେୟ ତାହାଙ୍କ ପ୍ରଶ୍ନର ଉତ୍ତର ହେଲେ କି ପ୍ରକାର
ହେ ସୂତ ସ୍ୱଭାବ ତୁମର ଅଟଇ ଅନନ୍ତ ଉଦାର
ସାଗର ସମାନ ଗମ୍ଭୀର ହୃଦୟ ଅଟଇ ତୁମର

ସେ ବିଦୁର ନିଜର ଭାଇ ବନ୍ଧୁଙ୍କୁ ତେଜିଲେ କିମ୍ପାଇ
ଫେରିଲେ କି କାରଣେ ପୁନ ଆପଣ କରନ୍ତୁ ବଖାଣ

## ଶ୍ରୀ ସୂତ ଉବାଚ

ପୂର୍ବେ ଏ ପରୀକ୍ଷ ରାଜନ ପଚାରିଲେ ଯେ ଏହି ପ୍ରଶ୍ନ
ତାଙ୍କ ପ୍ରଶ୍ନର ଉତ୍ତରରେ ଶୁକ ମୁନି ଯାହା କହିଲେ
ତାହା କହିବି ବର୍ତ୍ତମାନ ହେ ଶୌନିକ କର ଶ୍ରବଣ
ଏ ସୂତ ଶୌନକ ସମ୍ବାଦ ବିଷୟା ଗରଳ ଔଷଧ

ଯେ ଏହା ପଢ଼ଇ ଶୁଣଇ ଦେହାନ୍ତେ ବୈକୁଣ୍ଠେ ବସଇ
ଦ୍ୱିତୀୟ ସ୍କନ୍ଧ ହେଲା ଶେଷ ଭାବୁକେ ନ ଧରିବ ଦୋଷ

ଇତି ଶ୍ରୀମଦ୍ ଭାଗବତ ମହାପୁରାଣେ ଦ୍ୱିତୀୟ ସ୍କନ୍ଧେ ଶତ ସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପୁରୁଷ ସନ୍ଥାନ ବର୍ଣ୍ଣନଂ ନାମ ଦଶମୋଽଧ୍ୟାୟ ।

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ
ଯଦିଶୁଦ୍ଧ ମଶୁଦ୍ଧଂ ବା ମମଦୋଷୋନ ବିଦ୍ୟତେ

*******

# ତୃତୀୟ ସ୍କନ୍ଧ

## ପ୍ରଥମ ଧ୍ୟାୟ

ନିଗମ କଳ୍ପତରୋର୍ଗଳିତଂ ଫଳ ଶୁକମୁଖାଦମୃତ ଦ୍ରବ ସଂଯୁତଂ
ପିବତ ଭାଗବତଂରସମାଳୟଂ ମୁହୁରହୋ ରସିକାଃ ଭୁବିଭାବୁକାଃ
ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟ ମୁଦୀରୟେତ

ବନ୍ଦଇଦେବ ଗଣେଶ୍ୱର — ବିଘ୍ନ ଅନ୍ଧକାର ଭାସ୍କର
ବିଘ୍ନ ପର୍ବତ ବଜ୍ର — ବିଘ୍ନ ଭୁଜଙ୍ଗ ଖଗେଶ୍ୱର
ବିଘ୍ନଦାଗ୍ନି ନବଘନ — ବିଘ୍ନ ଗଜେନ୍ଦ୍ର ପଞ୍ଚାନନ
ନମଇ ଗିରିଜା ନନ୍ଦନ — ଗଜ ବଦନ ମନୋରମ

ନମୋ ନମସ୍ତେ ସିଦ୍ଧିଦାତା — ଅଗ୍ର ପୂଜ୍ୟ ସର୍ବଦେବତା
ଭାଷାପ୍ରବନ୍ଧେ ଭାଗବତ — ତୃତୀୟ ସ୍କନ୍ଧର ଚରିତ
ଲିଖନେ ବଳାଇଛି ମତି — ଦୟା କର ହେ ଗଣପତି
କାନ୍ତ କୋମଳ ପଦାବଳି — ମୋହିବ ସଜ୍ଜନ ମଣ୍ଡଳି

### ଶ୍ରୀ ଶୁକ ଉବାଚ

କରନ୍ତି ଶୁକ ମୁନିବର — ଶୁଣ ପରୀକ୍ଷ ଦଣ୍ଡଧର
ତୁମେ ମତେ ଯେ ପ୍ରଶ୍ନମାନ — ପଚାରୁଅଛ ବର୍ତ୍ତମାନ
ପୂର୍ବେ ବିଦୁର ଯେତେବେଳେ — ଗୃହ ତେଜି ବନେ ଚଳିଲେ
ସେବେଳରେ ସେ ଏହି ପ୍ରଶ୍ନ — ମୈତ୍ରେୟେ ପୁଛିଥିଲା ଜାଣ

ଶ୍ରୀକୃଷ୍ଣ ଅଖିଳ ଈଶ୍ୱର — ଦୂତରୂପେ ପଣ୍ଡୁପୁତ୍ରର
ଗମିଲେ ହସ୍ତିନା ନଗର — ଅହଙ୍କାରୀ ଦୁର୍ଯ୍ୟୋଧନର
ରାଜ ପ୍ରସାଦ ତ୍ୟାଗକଲେ — ତହିଁ କ୍ଷଣେ ହେଁ ନ ରହିଲେ
ବିଦୁର ଗୃହେ ନିଜଗୃହ — ଭାବେ ଗମିଲେ ଦୟାମୟ

ସେତ ଭକତ ଭାବାଧୀନ — ନିମନ୍ତ୍ରଣେ କି ପ୍ରୟୋଜନ
ପୁଣି ପୁଛିଲେ ପରୀକ୍ଷିତ — ହେ ଶୁକଦେବ ବ୍ୟାସସୁତ
କେଉଁଠି କେଉଁ ସମୟରେ — ମୈତ୍ରେୟ ପୁତ୍ରଙ୍କ ସଙ୍ଗରେ
ହେଲା ବିଦୁରଙ୍କ ମିଳନ — ସେ ବୃତ୍ତାନ୍ତ କର ବର୍ଣ୍ଣନ

ମୈତ୍ରେୟତ ଋଷି ପ୍ରବର — ଅତି ପୂତମନା ବିଦୁର
ବିଦୁର ଅତି ସାଧାରଣ — କ୍ଷୁଦ୍ରବିଷୟେ ପ୍ରଶ୍ନମାନ
କଦାପି ନଥିବେ ପଚାରି — ମୈତ୍ରେୟ ଙ୍କୁ ପ୍ରଶଂସାକରି
ଦେଇଥିବେ ଯୋଗ୍ୟ ଉତ୍ତର — ଉଭୟେ ତ ଭକ୍ତ ସୁଧୀର

### ସୂତ ଉବାଚ

ସେହି ପରୀକ୍ଷିତ ରାଜନ — ପୁଛନ୍ତେ ଏହିପରି ପ୍ରଶ୍ନ
ଶୁକଦେବ ହୋଇ ପ୍ରସନ୍ନ — ଯାହା କହିଲେ ଏବେ ଶୁଣ

### ଶ୍ରୀ ଶୁକ ଉବାଚ

ଅନ୍ଧ ଧୃତରାଷ୍ଟ୍ର ଯେବେକରେ — ସର୍ବଦା ଅନ୍ୟାୟ ପଥରେ
ନିଜର ଦୁଷ୍ଟ ପୁତ୍ରଗଣ — ସ୍ନେହରେ କରିଲେ ପାଳନ
ନିଜ ବଳିଷ୍ଠ ସହୋଦର — ପଣ୍ଡୁଙ୍କ ଅତି ସୁକୁମାର
ଅନାଥ ପୁତ୍ରଙ୍କୁ ଜୁଟରେ — ଦଗ୍ଧକଲେ ଯତୁ ଗୃହରେ

ସେହିସମୟ ସମାଚାର — ଶୁଣ ପରୀକ୍ଷ ନୃପବର
କୁରୁସଭାରେ ଦୁଃଶାସନ — ଦ୍ରୌପଦୀ କେଶ ଆକର୍ଷଣ
ଅତି ନିନ୍ଦିତ କର୍ମ କଲା — କୁରୁ ଗୌରବ ନ ମାନିଲା
ପାଞ୍ଚାଳୀ ନେତ୍ରୁ ଅଶ୍ରୁ ବହି — କୁଚ କୁଙ୍କୁମ ଦେଲା ଧୋଇ

ଧୃତରାଷ୍ଟ୍ର ମଧ୍ୟ ସେବେଳେ — ପୁତ୍ରକୁ ବାରଣ ନ କଲେ
ଯୁଧିଷ୍ଠି ସାଧୁ ସ୍ୱଭାବରେ — ଦ୍ୟୁତ କ୍ରୀଡାରେ ଅନ୍ୟାୟରେ
ରାଜ୍ୟ ହରାଇ ଧର୍ମ ପାଳି — ଆନନ୍ଦେ ବନେ ଗଲେ ଚଳି
ଯଥା କାଳେ ବନୁ ଫେରିଲେ — ରାଜ୍ୟଭାଗ ପ୍ରାର୍ଥନା କଲେ

ଧୃତରାଷ୍ଟ୍ର ପୁତ୍ର ମୋହରେ — ତାଙ୍କୁ ରାଜ୍ୟଭାଗ ନ ଦେଲେ
ଆଜାତଶତ୍ରୁ ଯୁଧିଷ୍ଠିର — ନାହିଁ ତାଙ୍କର ପରାପର
ପାଣ୍ଡବମାନେ ଯେ ବେଳରେ — ଶ୍ରୀକୃଷ୍ଣଙ୍କୁ ଦୂତ ରୂପରେ
କୁରୁ ସଭାକୁ ପଠାଇଲେ — ଜଗତ୍ ଗୁରୁ କୃଷ୍ଣ ସେଠାରେ

ଯେ ଅମୃତ ବାକ୍ୟ କହିଲେ	କୌରବେ ଅନାଦର କଲେ
ଯା କିଛି ପୁଣ୍ୟ ତାଙ୍କ ଥିଲା	ସେହେତୁ ବିନଷ୍ଟ ହୋଇଲା
ବିନାଶ କାଳେ ବିପରୀତ	ବୁଦ୍ଧି ହୁଅଇ ଶାସ୍ତ୍ର ମତ
ବିଦୁରଙ୍କୁ ଯେତେବେଳରେ	ପରାମର୍ଶ ପାଇଁ ଡାକିଲେ

ସେ ଗଲେ ରାଜଭବନକୁ	ଜ୍ୟେଷ୍ଠ ଭ୍ରାତାଙ୍କୁ ସମସ୍ୟାକୁ
ବିଚାରି ପରାମର୍ଶ ଦେଲେ	ଧୃତରାଷ୍ଟ୍ର ତା ନଶୁଣିଲେ
ଏବେ ତାହା ବିଦୁର ନୀତି	ନାମରେ ଲଭିଅଛି ଖ୍ୟାତି
ବିଦୁର କହିଲେ ବୁଝାଇ	ହେ ଭାଇ ଶୁଣ ମନଦେଇ

ଦୁଃସହ ଅପରାଧ ମାନ	ଯାହା କରିଛନ୍ତି ଆପଣ
ଯୁଧିଷ୍ଠିର ତା ଛନ୍ତି ସହି	ମାତ୍ର ତାଙ୍କ କନିଷ୍ଠ ଭାଇ
ଭୀମ କ୍ରୋଧରେ ବର୍ତ୍ତମାନ	ସାକ୍ଷାତ ଅହିରାଜ ସମ
ଉଛେ ନିଶ୍ୱାସ ଛାଡୁଛନ୍ତି	ଆପଣ ଭୀମଙ୍କୁ ଜାଣନ୍ତି

ଅଜାତ ଶତ୍ରୁ ଯୁଧିଷ୍ଠିର	ଦିଅ ତାହାଙ୍କୁ ରାଜ୍ୟ ଭାର
ଭକ୍ତ ବତ୍ସଳ କୃପାସିନ୍ଧୁ	ଶ୍ରୀକୃଷ୍ଣ ପାଣ୍ଡବଙ୍କ ବନ୍ଧୁ
କୃଷ୍ଣ ଅଛନ୍ତି ଯେଉଁଠାରେ	ଦେବ ବ୍ରାହ୍ମଣ ସେ ପକ୍ଷରେ
ଶ୍ରୀକୃଷ୍ଣ ନିଜ ବାହୁବଳେ	ରାଜାଙ୍କୁ ଜିଣିଛନ୍ତି ହେଲେ

ଯଦୁବୀରେ ଯାଙ୍କୁ ପୂଜନ୍ତି	ସେ ବର୍ତ୍ତମାନ ତହିଁଛନ୍ତି
ପାଣ୍ଡବେ ରାଜ୍ୟ ଭାଗ ଦିଅ	ଶାନ୍ତିରେ ଜୀବନ କଟାଅ
ତୁମ ଗୃହରେ ଦୁର୍ଯ୍ୟୋଧନ	ମୂର୍ତ୍ତିମାନ ଦୋଷ ସମାନ
ପୁତ୍ରରୂପେ ତାକୁ ପାଳନ୍ତି	କୃଷ୍ଣେ ଶତ୍ରୁତା ଆଚରନ୍ତି

ଶ୍ରୀକୃଷ୍ଣ ଦ୍ୱେଷରୁ ଆପଣ	ହୋଇଛନ୍ତି ଯଶ ଶ୍ରୀହୀନ
ଶୁଭପାଇଁ ନିଜ କୁଳର	ଦୁର୍ଯ୍ୟୋଧନକୁ ତ୍ୟାଗ କର
ସ୍ୱଭାବେ ବିଦୁର ସୁଶୀଳ	ଚିନ୍ତନ୍ତି ସକଳ ମଙ୍ଗଳ
ସାଧୁଏ ତାଙ୍କର ସଙ୍ଗତି	ସର୍ବଦା କମନା କରନ୍ତି

ମାତ୍ର ସେ କର୍ଣ୍ଣ ଦୁର୍ଯ୍ୟୋଧନ	ଶକୁନି ସହ ଦୁଃଶାସନ
ବିଦୁରଙ୍କ ନୀତି ବଚନ	ଶୁଣି ହୋଇଲେ କୋପମନ
ଅଧର କମ୍ପିଲା ତାଙ୍କର	ବିଦୁରେ କଲେ ତିରସ୍କାର
ବୋଇଲେ 'ଆରେ ଦାସୀ ପୁଅ' ତତେ ଡାକିଲା କିଏ କହ

ତୁଚ୍ଛାରେ ବାଇ ପ୍ରାୟ ହୋଇ	ଏଠାକୁ ଆସିଛୁ କିମ୍ପାଇ
ଯାହାର ଖାଉଛୁ ତୁ ଅନ୍ନ	କରୁତା ବିରୁଦ୍ଧା ଚରଣ
ଶ୍ମଶାନ ପରି ଅଟୁ ତୁହି	ତୋ ମୁଖ ଚାହିଁ ନ ଯୋଗାଇ
ଧନ ଛଡାଇ ନିଅ ଯାର	ରାଜ୍ୟୁ କରି ଦିଅ ବାହାର

ସମ୍ମୁଖେ ଜ୍ୟେଷ୍ଠ ଭ୍ରାତାଙ୍କର	ଦୁର୍ବୃତ୍ତ ସେ ଦୁର୍ଯ୍ୟୋଧନର
ଏସନ କର୍କଶ ବଚନ	କର୍ଣ୍ଣରେ ତୀକ୍ଷ୍ଣ ବାଣସମ
ହୃଦୟ ମଧ୍ୟେ ପ୍ରବେଶିଲା	ମରମ ସ୍ଥଳ ଦଗ୍ଧ କଲା
ଈଶ୍ୱର ଇଛା ବଳବତୀ	ଭାବି ବିଦୁର ମହାମତି

ହୃଦୟୁ ଦୁଃଖ ଦୂରକଲ	ସ୍ୱେଚ୍ଛାରେ ରାଜ୍ୟ ବରଜଲେ
ଏହାଙ୍କ ନିଶ୍ଚୟ ମରଣ	ଘଟିବ ଆଉ ଅଳ୍ପଦିନ
କିବା ପ୍ରୟୋଜନ ଧନୁରେ	ଏହା ବିଚାରି ପୁରଦ୍ୱାରେ
ନିଜର ଧନୁ ରଖି ଦେଇ	ବନେ ଗମିଲେ କୃଷ୍ଣେଧ୍ୟାଇ

ଧରାରେ ଯେଉଁ ଯେଉଁ ତୀର୍ଥ	ବିଷ୍ଣୁ ପ୍ରତିମା ସୁଶୋଭିତ
ବିଭିନ୍ନ ପୁଣ୍ୟ ଉପବନ	ନଗର ନିକୁଂଜ କାନନ
ନିର୍ମଳ ଜଳ ପରିପୂର୍ଣ୍ଣ	ନଦୀ ତ ଜାଗ ତପୋବନ
ସକଳ ପବିତ୍ର ଧାମରେ	ବିଦୁର ଏକାକୀ ଭ୍ରମିଲେ

ସଦା ଅବଧୂତ ବେଶରେ	ଧରାରେ ଏକାକୀ ରହିଲେ
ତେଣୁ ଆତ୍ମୀୟ ଜନ ଯେତେ	ତାକୁ ଚିହ୍ନିବେ ବା କେମନ୍ତେ
ଶରୀର ନକରି ମାର୍ଜନ	ସୁ ପବିତ୍ର ଅନ୍ନ ଭୋଜନ
ପ୍ରାଣଧରି ଶୁଦ୍ଧ ବୃତ୍ତିରେ	ଭ୍ରମିଲେ ବିଭିନ୍ନ ତୀର୍ଥରେ

ଭୂମିପରେ କରି ଶୟନ	ଶ୍ରୀହରି ସନ୍ତୋଷ ବିଧାନ
ବ୍ରତ ଉପବାସ ପାଳନ	ଜୀବନ କରିଲେ ଯାପନ
ଏପରି ଭାରତ ବର୍ଷରେ	ପୁଣ୍ୟ ତୀର୍ଥ ଭ୍ରମି ଶେଷରେ
ପ୍ରବେଶି ପ୍ରଭାସ କ୍ଷେତ୍ରରେ	ଶ୍ରୀକୃଷ୍ଣଙ୍କ ସହାୟତାରେ

ମହାଭାରତ ସମୟରେ	ଜୟ ଲାଭ କରି ପୃଥ୍ୱୀରେ
ଯୁଧିଷ୍ଠିର ଧର୍ମ ନନ୍ଦନ	ଏକଛତ୍ର ରାଜ୍ୟ ଶାସନ
ସମ୍ବାଦ କରିଲେ ଶ୍ରବଣ	ବିଧିର ବିଚିତ୍ର ବିଧାନ
ଏ ଅନ୍ତେ ସେଠାରେ ନିଜର	କୌରବ ବନ୍ଧୁ ମାନଙ୍କର

ଶ୍ରବଣେ ମରଣ ସମ୍ବାଦ ହୃଦୟେ ଜନ୍ମିଲା ବିଷାଦ
ବେଣୁ ଜାତ ବନ ଅନଳ ଯଥା ବନ କରେ କବଳ
କୌରବ ଗଣ ସେ ପ୍ରକାରେ ପରସ୍ପର ମଧ୍ୟେ ଯୁଦ୍ଧରେ
ବିନାଶ ଲଭିବା ଶୁଣିଣ ବିଦୁର ଶୋକାତୁର ମନ

କୃଷ୍ଣଙ୍କୁ ଚିନ୍ତି ହୃଦୟରେ ମଉନେ ସରସ୍ୱତୀ ତୀରେ
ପ୍ରବେଶ କରିଲେ ସତ୍ତ୍ୱରେ ସ୍ନାନ କଲେ ଶୁଦ୍ଧ ନୀରରେ
ସେଠାରେ ସେ ମନୁ ଅସିତ ଉଶନା ମନୁ ଅଗ୍ନି ମିତ୍ର
ବାୟୁ ଦାଶ ଧେନୁ ଚୁହକ ଶୁଦ୍ଧ ଶ୍ରାଦ୍ଧ ଦେବ ନାମକ

ଦେବ ଦ୍ୱିଜ କୃତ ବିଭିନ୍ନ ତୀର୍ଥ ମାନ କଲେ ଦର୍ଶନ
କୃଷ୍ଣ ନାମ କରି କୀର୍ତ୍ତନ ଅନ୍ୟ ସ୍ଥାନେ କଲେ ଗମନ
ସମୃଦ୍ଧ ସୌରାଷ୍ଟ୍ର ସୌବୀର କୁରୁ ଜାଙ୍ଗଳ ହୋଇପର
ପ୍ରବେଶି ଯମୁନା ତୀରରେ ସାକ୍ଷାତ ଉଦ୍ଧବ ସଙ୍ଗରେ

ଉଦ୍ଧବ କୃଷ୍ଣ ଅନୁଚର ପ୍ରଶାନ୍ତ ପ୍ରକୃତି ସୁଧୀର
ବୃହସ୍ପତିଙ୍କ ଶିଷ୍ୟ ସେହି ନମ୍ର ବିନୟୀ ଗୁଣଗ୍ରାହୀ
ବିଦୁର ତାହାଙ୍କୁ ପ୍ରେମରେ ସ୍ନେହରେ ଆଲିଙ୍ଗନ କଲେ
ଭଗବାନ ଶ୍ରୀକୃଷ୍ଣଙ୍କର ଅନ୍ୟ ଆତ୍ମୀୟ ମାନଙ୍କର

ପୁଚ୍ଛିଲେ ଶୁଭ ସମାଚାର ଉଭୟେତ ଭକ୍ତ ପ୍ରବର
ଶ୍ରୀକୃଷ୍ଣ ପୁରୁଷ ପୁରାଣ ନିଜ ଅଗ୍ରଜ ବଳରାମ
ସ୍ୱନାଭି କମଳ ସମ୍ଭୂତ ଧାତାଙ୍କ ପ୍ରାର୍ଥନାରେ ତୃପ୍ତ
ଧରାରେ ହୋଇ ଅବତାର ଉଶ୍ୱାସ କଲେ ଭୂମି ଭାର

ଜଗତ ଆନନ୍ଦ ବର୍ଦ୍ଧନ ସେ ପ୍ରଭୁ କୃଷ୍ଣ ବଳରାମ
ଶୁଭେଛନ୍ତିତ ବର୍ତ୍ତମାନ କହ ହେ ବିଦୁର ଧୀମାନ
ବସୁଦେବ କୁରୁବଂଶର ଯେ ପରମ ବନ୍ଧୁ ଆମର
କୁନ୍ତୀ ପ୍ରଭୃତି ଭଗିନୀର ତାହାଙ୍କ ସ୍ୱାମୀ ମାନଙ୍କର

ସନ୍ତୋଷ ବିଧାନ ନିମିତ୍ତ ଦିଅନ୍ତିତ ନାନା ପଦାର୍ଥ
ସେହି ପ୍ରଦ୍ୟୁମ୍ନ ବୀରବର ସେନାନୀ ଯଦୁ ମାନଙ୍କର
ଯେ କାମଦେବ ପୂର୍ବ ଜନ୍ମେ ବିଖ୍ୟାତ ରତି ପତି ନାମେ
ରୁକ୍ମିଣୀ ପରମା ସାଧବୀ ଗୋବିପ୍ରଗଣଙ୍କୁ ଆରାଧି

ଯାହାକୁ ଶ୍ରୀକୃଷ୍ଣ କୃପାରେ ପାଉଥିଲେ ପୁତ୍ର ରୂପରେ
ଦ୍ୱାରକାରେ ସେହି ପ୍ରଦ୍ୟୁମ୍ନ ଶୁଭେଛନ୍ତିତ ବର୍ତ୍ତମାନ
ସାତ୍ୱତ ବୃଷ୍ଣି ଭୋଜଙ୍କର ଦାଶାର୍ହ ଯାଦବ ଗଣର
ଅଧିପ ରାଜା ଉଗ୍ରସେନ ଶ୍ରୀକୃଷ୍ଣ କମଳ ନୟନ

କୃପାରେ ଯେ ରାଜ୍ୟ ପାଇଲେ ସେ ଅଛନ୍ତିତ ଆନନ୍ଦରେ
ଶ୍ରୀକୃଷ୍ଣଙ୍କ ପୁତ୍ର ରତନ ରଥୀ ଶ୍ରେଷ୍ଠ ପିତା ସମାନ
ପୂର୍ବେ ଯେ କାର୍ତ୍ତିକେୟ ଥିଲେ ଉମା ଯାକୁ ଗର୍ଭେ ଧରିଲେ
ନିଷ୍ଠା ବ୍ରତରେ ଜାମ୍ବବତୀ ପୁତ୍ର ରୂପରେ ପାଇଛନ୍ତି

ସେ ସାମ୍ବଛନ୍ତି କୁଶଳେତ କହ ଉଦ୍ଧବ ସେ ବୃତ୍ତାନ୍ତ
ଅର୍ଜୁନଠାରୁ ଅକ୍ଳେଶରେ ଗୁପ୍ତ ଧନୁ ବିଦ୍ୟା ଶିଖିଲେ
ଶ୍ରୀକୃଷ୍ଣଙ୍କ ସେବା ଫଳରେ ଯେ ପରମା ସ୍ଥିତି ଲଭିଲେ
ସେ ସାତ୍ୟକି ସୁଖେଛନ୍ତି ତ କହ ଉଦ୍ଧବ କହ ସତ୍ୟ

ସେ ଜ୍ଞାନୀ ଭକ୍ତ ଅକ୍ରୁର କହନ୍ତୁ ଶୁଭ ସମାଚାର
ଶ୍ରୀକୃଷ୍ଣଙ୍କର ପଦଚିହ୍ନ ବ୍ରଜଦାନ୍ତେ କରି ଦର୍ଶନ
ଯେ ଅତି ପ୍ରେମ ଭକତିରେ ଲୋଟି ଯାଉଥିଲେ ଧୂଳିରେ
ଶୁଭେ ଛନ୍ତିତ ସେ ଅକ୍ରୁର କହତା ଶୁଭ ସମାଚାର

ଭୋଜ ବଂଶୀ ଦେବକ କନ୍ୟା ଗୁଣରେ ତ୍ରିଭୁବନ ଧନ୍ୟା
ଯଜ୍ଞ ବିସ୍ତାର ଅର୍ଥ ଧର୍ମ ଯଥା ତ୍ରୟୀ କରେ ଧାରଣ
ଦେବ ମାତା ଅଦିତି ପରି ଯେ ଗର୍ଭେ ବିଷ୍ଣୁ ଥିଲେ ଧରି
ସେ ଦେବକୀ ନିଜ ପୁରରେ ରହିଛନ୍ତି ତ କୁଶଳରେ

ଯେ କରେ ଭକ୍ତ ବାଞ୍ଛାପୂର୍ଣ୍ଣ ସେ ଅନିରୁଦ୍ଧ ଭଗବାନ
ଯାହାଙ୍କୁ ଶବ୍ଦର କାରଣ ବୋଲି କହନ୍ତି ଦେବଗଣ
ମାନସ ବୁଦ୍ଧି ଅହଙ୍କାର ଚିତ୍ତ ସହ ଚାରି ପ୍ରକାର
ଅନ୍ତ କରଣର ମଧ୍ୟରେ ମନର ଦେବତା ରୂପରେ

ଯେହୁ ଚଳାନ୍ତି ମନୋବୃତ୍ତି ସେ ସର୍ବଶୁଭେତ ଅଛନ୍ତି
କୃଷ୍ଣାର୍ଜୁନ ବାହୁ ବଳରେ ଯୁଧିଷ୍ଠିର ଦିଗ୍ ବିଜୟର
ପ୍ରାପ୍ତ ରାଜଲକ୍ଷ୍ମୀ ଦର୍ଶନ ଯେଉଁ ଦୁରାତ୍ମା ଦୁର୍ଯ୍ୟୋଧନ
ଦୁଃଖେ ହୋଇଲେ ସନ୍ତପିତ ସେ ଯୁଧିଷ୍ଠି ଶୁଭେଛନ୍ତି ତ

ଧର୍ମ ମର୍ଯ୍ୟାଦାରେ ପାଳିତ ପ୍ରଜାଏ କୁଶଳେ ଛନ୍ତି ତ
ସତ୍ୟଭାମା ଗର୍ଭ ସମ୍ଭୂତ ଚାରୁଦେଷ୍ଣ ପ୍ରଭୃତି ସୁତ
ଦେହ ଭିନ୍ନ ଆତ୍ମ ଦୈବତ ସ୍ୱରୂପ ଯେ କୃଷ୍ଣ ସାକ୍ଷାତ
ତାହାଙ୍କୁ ଉତ୍ତମ ରୂପରେ ସଦା ଆନ୍ତରିକ ଭାବରେ

ଯେ ଅନୁସରଣ କରନ୍ତି ସେମାନେ ଶୁଭେତ ଅଛନ୍ତି
ଯେଉଁ ଭୀମ ଗଦା ହସ୍ତରେ ବିଚରେ ବିଚିତ୍ର ଗତିରେ
ସମର ଭୂମି ଯାହାଙ୍କର ପାଦ ପାତେ ହୁଏ ଜର୍ଜର
କୌରବ ଗଣ ଅପରାଧ ହେତୁ ଯେ ହୋଇ ଅତି କ୍ରୁଦ୍ଧ

ସର୍ପପରି କରେ ଗର୍ଜନ ସେ ଭୀମସେନ ବର୍ତ୍ତମାନ
କୋପ କଲେଶିତ ବର୍ଜନ ଯେ ଗାଣ୍ଡିଧ୍ୱନା ଅର୍ଜୁନ
ରଥୀ ଯୂଥପ ଅଗ୍ରଗଣ୍ୟ ସଖା ଶ୍ରୀକୃଷ୍ଣଙ୍କ ଜୀବନ
ଯେ ମାୟା କିରାତ ରୂପରେ ଶଙ୍କରଙ୍କୁ ଶର ଜାଲରେ

ଆଚ୍ଛାଦି ସନ୍ତୁଷ୍ଟ କରିଲେ ଯେ ଉତ୍ତର କୁରୁ ଜିଣିଲେ
ସେ ଶତ୍ରୁ ସୂଦନ ଅର୍ଜୁନ ଶୁଭେ ଛନ୍ତି ତ ବର୍ତ୍ତମାନ
ଯାହାଙ୍କୁ ଆଖିପତା କରି ଧର୍ମଜ ଥାନ୍ତି ରକ୍ଷା କରି
ଇନ୍ଦ୍ର ଠୁଁ ଗରୁଡ ଯେପରି ଅମୃତ ଆଣିଥିଲେ ହରି

ଯେ ଦୁଇ ଭାଇ ସେହିପରି ଦୁର୍ଯ୍ୟୋଧନକୁ ଜୟ କରି
ଆଣିଥିଲେ ରାଜ୍ୟ ଛଡାଇ ନକୁଳ ସହଦେବ ଦୁଇ
ସୁଖରେ ବାସ କରନ୍ତିତ କହ ଉଦ୍ଧବ ତସ ବୃତ୍ତାନ୍ତ
ଯେ ପଣ୍ଡୁ ଅଦ୍ୱିତୀୟ ବୀର ଏକାକୀ ବସି ରଥପରି

କେବଳ ଧନୁ ସାହାଯ୍ୟରେ ଦିଗ୍‌ବିଜୟ କରିଥିଲେ
ସ୍ୱାମୀ ପଣ୍ଡୁଙ୍କ ମୃତ୍ୟୁପରେ ଯେ କୁନ୍ତୀ ଦୁଃଖରେ ବଞ୍ଚିଲେ
ସନ୍ତାନର ପାଳନ ପାଇଁ ଯେ ପ୍ରାଣ ଧରିଥିଲେ ରହି
କୌଣସି ବିଷୟ ଭୋଗର ଲାଳସା ନଥିଲା ଯାହାର

ସେ କୁନ୍ତୀ ଦେବୀଙ୍କର କଥା ଭାବି ଜାଣେ ମୋ ହୃଦେ ବ୍ୟଥା
ପଣ୍ଡୁ ରାଜାଙ୍କ ମୃତ୍ୟୁପରେ ଧୃତରାଷ୍ଟ୍ର ପଣ୍ଡୁ ପୁତ୍ରରେ
ଦୁଷ୍ଟପୁତ୍ର ପ୍ରରୋଚନାରେ ଅହିତ ଆଚରଣ କଲେ
ମତେ ବି ଅପମାନ ଦେଲେ ରାଜ୍ୟ ମଧ୍ୟରୁ ତଡିଦେଲେ

ଅଧମ ଧୃତରାଷ୍ଟ୍ର କଥା ଭାବିଲେ ଜାଗେ ହୃଦେ ବ୍ୟଥା
ଶ୍ରୀକୃଷ୍ଣ ମାନବୀ ଲୀଳାରେ ନରମାନଙ୍କୁ ଐଶ୍ୱର୍ଯ୍ୟରେ
ମୋହିତ କରି ତାହାଙ୍କର ନୟନ ଓ ଚିତ୍ତ ବୃତ୍ତିର
ଘଟାନ୍ତି ସର୍ବଦା ବିଭ୍ରମ ଆଶ୍ଚର୍ଯ୍ୟ ତାଙ୍କ ଲୀଳାମାନ

ଏ ପୃଥ୍ୱୀରେ ଅଲକ୍ଷ୍ୟରେ ସଦା ଭ୍ରମଇ ଆନନ୍ଦରେ
ବର୍ତ୍ତମାନ ସକଳ ମୋର ବିସ୍ମୟ ହୋଇ ଅଛି ଦୂର
ଭକ୍ତର ଦୁଃଖ ନିବାରଣ କୁରୁବଂଶ କଲେ ନିଧନ
ମାତ୍ର ଯେମାନେ ବିଦ୍ୟାଧନ ବିପୁଳ ସଂପଦ ଲଭିଣ

ପୃଥ୍ୱୀ କରନ୍ତି କମ୍ପମାନ ନ ମାନି ଗୁରୁ ଗୁରୁଜନ
ତାଙ୍କୁ ମଧ କୁରୁ ସଙ୍ଗରେ ବିନାଶ କରିବା ଇଚ୍ଛାରେ
ଅପେକ୍ଷା କରି ରହିଛନ୍ତି ସେତ କାଳ ଯମ ଅଟନ୍ତି
ଅଜ ଅବ୍ୟୟ ଭଗବାନ କରିବାକୁ ଦୁଷ୍ଟ ନିଧନ

ଯୁଗେ ଯୁଗେ ଧରା ବକ୍ଷରେ ଅବତରନ୍ତି ସ୍ୱ ଇଚ୍ଛାରେ
ଅକର୍ତ୍ତା ହୋଇ ମଧ ସେଇ ପ୍ରାଣୀଙ୍କୁ ଶିକ୍ଷା ଦେବା ପାଇଁ
ନିଜେ କରନ୍ତ ସର୍ବ କର୍ମ ଏହା ବ୍ୟତୀତ ସେ ନିର୍ଗୁଣ
କିମ୍ପାଇଁବା ଦେହ ଧରନ୍ତେ କର୍ମର ଅଧୀନ ହୁଅନ୍ତେ

ଶରଣାଗତ ଭକ୍ତଗଣ ସକଳ ଲୋକପାଳ ଗଣ
ମଙ୍ଗଳ ସାଧନ ନିମିତ୍ତ ଯୁଦ କୁଳରେ ଏବେ ଜାତ
ଗୁଣ କୀର୍ତ୍ତନେ ଯାହାଙ୍କର ଏ ଜୀବ ହୁଏ ଭବୁ ପାର
କେ ଅବା ଏ ଚର୍ମ ଜିହ୍ୱାରେ ଶ୍ରୀକୃଷ୍ଣ ଗୁଣ ବର୍ଣ୍ଣିପାରେ

ବିଦୁର ଉଦ୍ଧବ ସମ୍ବାଦ ହରଇ ବିଷୟ ବିଷାଦ
ଭଣଇ ଧନେଶ୍ୱର ଦାଶ ସୁଜନେ ରାମନାମେ ରସ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ବିଦୁର ଉଦ୍ଧବ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟ ।

*******

## ଦ୍ୱିତୀୟ ଅଧ୍ୟାୟ

କହନ୍ତି ଶୁକ ମୁନିବର ଶୁଣ ପରୀକ୍ଷ ଜ୍ଞାନ ସାର
ବିଦୁର ଏପରି ଭାବରେ ଶ୍ରୀକୃଷ୍ଣଙ୍କ ବିଷୟରେ
ଉଦ୍ଧବେ ପୁଚ୍ଛିଲେ ଯେବେଳେ ଉଦ୍ଧବଙ୍କ ସ୍ମୃତି ପଥରେ
କୃଷ୍ଣ ଆସିଲେ ସେ କାଳରେ ବିଦୁର ତାଙ୍କୁ ପ୍ରକୃତରେ

ତେଣୁ ଉତ୍‌କଣ୍ଠା ବଶ ହୋଇ ସେ କିଛି ନପାରିଲେ କହି ।
ପାଞ୍ଚବରଷ ବୟସରେ ଉଦ୍ଧବ ଖେଳ ବାହାନାରେ
ନିର୍ମାଣ କରି କୃଷ୍ଣ ମୂର୍ତ୍ତି ପୂଜାରେ ତନ୍ମୟ ହୁଅନ୍ତି ।
ମାତା ଭୋଜନ କରିବାକୁ ଡାକିଲେ ମଧ ସେ ଯିବାକୁ

କେବେ ଇଚ୍ଛା କରୁନଥିଲେ ସେ କୃଷ୍ଣପ୍ରିୟ ଭକ୍ତ ଥିଲେ ।
ଦୀର୍ଘକାଳ କୃଷ୍ଣ ଅର୍ଚ୍ଚନ କରି ସେ ବୃଦ୍ଧ ବର୍ତ୍ତମାନ
ବିଦୁର ପଚାରନ୍ତେ ପ୍ରଶ୍ନ ପ୍ରେମରେ ହେଲେ ନିମଗନ
ପ୍ରଭୁଙ୍କ କମଳ ଚରଣ ହୃଦୟେ ଜାଣିଲା ତକ୍ଷଣ ।

ତେଣୁ ଉଦ୍ଧବ ବିରହରେ ଅତ୍ୟନ୍ତ ବ୍ୟାକୁଳିତ ହେଲେ ।
ଉତ୍ତର ଦେଇ ନ ପାରିଲେ କ୍ଷଣେ ନୀରବରେ ରହିଲେ ।
କୃଷ୍ଣଙ୍କ ଚରଣାର ବିନ୍ଦ ନିଃସୃତ ସୁଧା ମକରନ୍ଦ
ପିଇ ତିବ୍ର ଭକ୍ତିଯୋଗରେ ମନ ଭ୍ରମର ମଜ୍ଜାଇଲେ ।

ଜନ୍ମିଲା ବିରହର ବ୍ୟଥା ମୁଖରୁ ନସ୍ଫୁରିଲା କଥା
ଶରୀର ହେଲା ରୋମାଞ୍ଚିତ ହୃଦୟେ କମ୍ପହେଲା ଜାତ ।
ନୟନ ମୁଦ୍ରିତ ହୋଇଲା ପ୍ରେମ ଅଶ୍ରୁଧାରା ବହିଲା ।
ସ୍ୱରଭଙ୍ଗ ହେଲା ଜନମ ମତିରେ ଘଟିଲା ବିଭ୍ରମ ।

ଉଦ୍ଧବଙ୍କୁ ଏହି ପ୍ରକାର ଦେଖି ପ୍ରେମ ମଗ୍ନ ହେବାର
ବିଦୁର ତାଙ୍କୁ ପ୍ରକୃତରେ କୃତାର୍ଥ ପୁରୁଷ ମଣିଲେ ।
ଏ ଅନ୍ତେ କିଛିକ୍ଷଣ ପରେ ତାଙ୍କ ଚେତନା ଧୀରେ ଧୀରେ
ସଂସାରକୁ ପ୍ରେମ ଧାମରୁ ଫେରନ୍ତେ ସେ ନିଜ ନେତ୍ରରୁ

ଅଶ୍ରୁ ପୋଛିଣ ବିସ୍ମୟରେ ଶ୍ରୀକୃଷ୍ଣଙ୍କ ଲୀଳା ସ୍ମରିଲେ ।
କୋମଳ ମଧୁର ବାଣୀରେ ବିଦୁରଙ୍କୁ ଉତ୍ତର ଦେଲେ ।

### ଉଦ୍ଧବ ଉବାଚ

ଉଦ୍ଧବ ବୋଲେ ହେ ବିଦୁର ଶୁଣ ଜ୍ଞାତିଙ୍କ ସମାଚାର
ଆସ୍ତ ଯାନ୍ତେ କୃଷ୍ଣ ତପନ ଆମ ଗୃହକୁ ବର୍ତ୍ତମାନ
ଗ୍ରାସିଛି କାଳ ଭୁଜଙ୍ଗମ ଆମେ ହୋଇଛୁ ଶିରିହୀନ
ବଂଧୁ ମାନଙ୍କ ବର୍ତ୍ତମାନ କି ଶୁଭ କରିବି ବର୍ଣ୍ଣନ ।

ମର୍ତ୍ତ୍ୟଲୋକରେ ବର୍ତ୍ତମାନ ଯାଦବେ ଅତି ଭାଗ୍ୟହୀନ
ଯଥା ମତ୍ସ୍ୟମାନେ ସାଗରେ ବାସ କରିବା ସମୟରେ
ଚିହ୍ନି ନ ପାରନ୍ତି ଚନ୍ଦ୍ରକୁ ତଥା ଯାଦବେ ଶ୍ରୀକୃଷ୍ଣଙ୍କୁ ।
ଥାଇଁ ମଧ କୃଷ୍ଣ ସଙ୍ଗରେ ତିଳେହେଁ ଚିହ୍ନି ନ ପାରିଲେ ।

ଯାଦବେ ନିପୁଣ ଅଟନ୍ତି ମନର ଭାବନା ଜାଣନ୍ତି ।
ମାତ୍ର ଶ୍ରୀକୃଷ୍ଣଙ୍କ ସଙ୍ଗରେ ରହି ମଧ ଏକ ସ୍ଥାନରେ
ସେମାନେ ବିଶ୍ୱର ଆଶ୍ରୟ ସର୍ବାନ୍ତର୍ଯ୍ୟାମୀ ଦୟାମୟ
କୃଷ୍ଣଙ୍କୁ ଯାଦବ ମହାନ ସର୍ବଦା କରୁଥିଲେ ଜ୍ଞାନ

ମାୟାରେ ବିମୋହିତ ହେଲେ ବନ୍ଧୁ ବୋଲି ତାଙ୍କୁ ଭାବିଲେ
ଯଥା ଶିଶୁପାଳ ପ୍ରଭୃତି ତାଙ୍କୁ ଶତ୍ରୁ ଭାବେ ଚିନ୍ତନ୍ତି
ଶୁଣି ସେମାନଙ୍କ ବଚନ ମତି ମୋ ନୋହିଲା ବିଭ୍ରମ
ସର୍ବଦା ଏକାଗ୍ର ମୋ ଚିତ୍ତ ଶ୍ରୀକୃଷ୍ଣେ ଥିଲା ସମର୍ପିତ ।

ବିନା ତପେ କୃଷ୍ଣ କୃପାରେ ସର୍ବେ ତାଙ୍କ ରୂପ ଦେଖିଲେ
ଦର୍ଶନା ଲାଳସା ପୂରଣ ନକରି ଭୂବନ ମୋହନ
ଶ୍ରୀକୃଷ୍ଣ ହେଲେ ଅନ୍ତର୍ଦ୍ଧାନ ଏହା ଅତି ଦୁର୍ଭାଗ୍ୟ ଆମ
ନିଜ ଯୋଗ ମାୟା ପ୍ରଭାବ ଦେଖାଇବା ପାଇଁ ମାଧବ

ମାନବୀ ଲୀଳା କରିବାକୁ ଧରିଥିଲେ ଦିବ୍ୟ ଦେହକୁ
ତହିଁରେ ସୌନ୍ଦର୍ଯ୍ୟ ସମସ୍ତ ସୌଭାଗ୍ୟ ଥିଲା ଯେ ନିହିତ
କୃଷ୍ଣ ମଧ ନିଜେ ନିଜର ସୌନ୍ଦର୍ଯ୍ୟରେ ଥିଲେ ବିଭୋର
ଧର୍ମ ନନ୍ଦନ ଯେବେକଳରେ ରାଜସୂୟ ଯଜ୍ଞ କରିଲେ

କୃଷ୍ଣଙ୍କ ନୟନା ଭିରାମ ଦିବ୍ୟ ରୂପ କରି ଦର୍ଶନ
ସକଳେ ଭାବିଲେ ଚିତ୍ତରେ ଧାତାଙ୍କ ରୂପ ନିର୍ମାଣରେ
ସମସ୍ତ କୌଶଳ ଏଠାରେ ଶେଷ ଶ୍ରୀକୃଷ୍ଣଙ୍କ ରୂପରେ
ଭଗବାନ ଜନ୍ମ ସହିତ ଦେବତା ସାଧୁ ରୂପ ଶାନ୍ତ

ଦେବ ସାଧୁଙ୍କୁ ଦୈତ୍ୟଗଣ କଲେ ଯେତେବେଳେ ପୀଡନ
କାଷ୍ଠମଧ୍ୟୁ ଅଗ୍ନି ସମାନ ସଙ୍ଗରେ ଭ୍ରାତା ବଳରାମ
ଶ୍ରୀକୃଷ୍ଣ ହୋଇ ଅବତୀର୍ଣ୍ଣ ସାଧୁ ସନ୍ଥ କଲେ ପାଳନ
ଶ୍ରୀକୃଷ୍ଣର ପ୍ରେମ ପୂର୍ଣ୍ଣ ବିଳାସ ହାସ ବିନୋଦନ

ଲୀଳା ଦୃଷ୍ଟିରେ ସମ୍ମାନିତ ବ୍ରଜ ବାଳା ହେଲେ ମୋହିତ
ଦୃଷ୍ଟି ଶ୍ରୀକୃଷ୍ଣରେ ଜଡିଲା ଚିତ୍ତ କୃଷ୍ଣରେ ଲୀନ ହେଲା
ତେଜି ସମସ୍ତ ଗୃହକର୍ମ କରିବାକୁ କୃଷ୍ଣ ଦର୍ଶନ
ସର୍ବେ ଉଦ୍‌ବିଗ୍ନ ହୋଇଲେ ଗୃହ ସମ୍ପଦ ପାଶୋରିଲେ ।

ଜନ୍ମ ରହିତ ଭଗବାନ କିନ୍ତୁ ବନ୍ଦୀ ଗୃହେ ଜନମ
ବରାଭୟ ଦାତା ଶ୍ରୀହରି କଂସ ରାଜାକୁ ଭୟ କରି
ବ୍ରଜପୁର ମଧ୍ୟେ ଲୁଚିଲେ ଆତ୍ମ ପ୍ରକାଶ ନ କରିଲେ ।
ତାଙ୍କ ପରାକ୍ରମ ଅନନ୍ତ କାଳ ଯବନ ଆଦି ଦୈତ୍ୟ ।

ଭୟରେ ମଥୁରା ଛାଡିଲେ ଏ ବିଚିତ୍ର ଲୀଳା ଭାବିଲେ
ଖେଦ ଜନ୍ମଇ ମୋ ହୃଦରେ କିବା ବର୍ଣ୍ଣିବତୋ ଆଗରେ
ପିତା ମାତାଙ୍କର ଚରଣ ବନ୍ଦନା କରି ଭଗବାନ
କହିଲେ କଂସ ଭୟେ ମୁହିଁ ତୁମକୁ ସେବି ପାରିନାହିଁ ।

କ୍ଷମି ସେ ଅପରାଧ ମାନ ମୋଠାରେ ହୁଅ ସୁପ୍ରସନ୍ନ ।
ଭାବି ଶ୍ରୀକୃଷ୍ଣ ସେହି କଥା ମୋ ଚିତ୍ତେ ଜନମଇ ବ୍ୟଥା ।
ଯେ କାଳ ସ୍ୱରୂପୀ ନିଜର ଭ୍ରୂକୁଟି ବିଳାସେ ପୃଥ୍ୱୀର
ଉଶ୍ୱାସ କରିଦେଲେ ଭାର ସେ ପ୍ରଭୁ ଶ୍ରୀକୃଷ୍ଣଙ୍କର

ଚରଣ ପଦ୍ମ ପରାଗର ଗନ୍ଧକୁ କରିଲେ ଆଘ୍ରାଣ ।
ଭୁଲି ପାରିବ କେଉଁ ଜନ ଅତି ଭାଗ୍ୟବାନ ଆପଣ
ମହାଯୋଗୀଏ ଯୋଗ ସାଧି କାମନା କରନ୍ତି ଯେ ସିଦ୍ଧି ।
ଶିଶୁପାଳାଦି ଶତ୍ରୁତାରେ ସେ ସିଦ୍ଧି ଅକ୍ଳେଶେ ଲଭିଲେ ।

ପୁରୁଷୋତ୍ତମ ବାସୁଦେବ ବିରହ କିଏ ବା ସହିବ ।
ମହାଭାରତ ସମରରେ ଯେଉଁ ଯୋଦ୍ଧାମାନେ ନେତ୍ରରେ
କୃଷ୍ଣଙ୍କ ନୟନାଭିରାମ ମୁଖାର ବିନ୍ଦ ସୁଧାପାନ
କରି ଅର୍ଜୁନଙ୍କ ଅସ୍ତ୍ରରେ ପରାଣ ତ୍ୟାଗ କରିଥିଲେ ।

ସେମାନେ ପବିତ୍ର ହୋଇଲେ ପରମ ଧାମକୁ ଗମିଲେ ।
ସେତ ତ୍ରିଲୋକ ଅଧିଶ୍ୱର କେ ନୁହେଁ ସମାନ ତାଙ୍କର ।
ସେ ସ୍ୱୟଂ ନିଜ ଐଶ୍ୱର୍ଯ୍ୟରେ ସଦା ପୂର୍ଣ୍ଣକାମ ବିଶ୍ୱରେ ।
ଇନ୍ଦ୍ରାଦି ଲୋକପାଳ ଗଣ ସହ ନାନା ଉପଢୌକନ ।

ରାଜସିଂହାସନ ଆସୀନ ନୃପତି ସେହି ଉଗ୍ରସେନ
ଠିଆ ହୋଇ ତାଙ୍କ ଆଗରେ ଜଣାଣ କରନ୍ତି କୃଷ୍ଣରେ
ହେ ଦେବ ଭଗବାନଶୁଣନ୍ତୁ ଆମ ନିବେଦନ ।
ମନଦେଇ ଶୁଣ ବିଦୁର ମୁଁ ଭୃତ୍ୟ ଅଟେ ଶ୍ରୀକୃଷ୍ଣର

ସେ ଦାସ୍ୟ ଭାବକୁ ଭାବିଲେ ବ୍ୟଥା ଜନ୍ମଇ ମୋ ହୃଦରେ
ଶ୍ରୀକୃଷ୍ଣଙ୍କୁ ମାରିବା ପାଇଁ ନିଜ ସ୍ତନେ ବିଷ ଲଗାଇ
କପଟେ ସ୍ତନ୍ୟପାନ ଦେଇ ପୁତନା ଗଲା ମୋକ୍ଷ ହୋଇ
ଯାହାକି ଧାଇ କି ମିଳଇ ଭାବିଲେ ମୋ ହୃଦ କମ୍ପଇ ।

କୃଷ୍ଣ ସମାନ ବର୍ତ୍ତମାନ ଦୟାଳୁ ଅଛି କେବା ଅନ୍ୟ
ଯା ପାଦେ ପଶିବା ଶରଣ ଭାବି ବ୍ୟଥିତ ମୋର ମନ
ଦୈତ୍ୟମାନଙ୍କୁ ମଧ ମୁହଁ ଶ୍ରେଷ୍ଠ ଭକ୍ତ ବୋଲି ଭାବଇ
ସେମାନେ ତ ଶତ୍ରୁ ଭାବରେ ସଦା କ୍ରୋଧ ବହି ହୃଦରେ

ଚିତ୍ତକୁ ସମର୍ପି କୃଷ୍ଣରେ ସମରେ ଗରୁଡ କନ୍ଧରେ
ଆସୀନ କୃଷ୍ଣଙ୍କୁ ନେତ୍ରରେ ଅତିଶୟ ଶତ୍ରୁ ଭାବରେ
ଦର୍ଶନରେ କରି ପରମ ଧାମ କ୍ଷଣକେ କରନ୍ତି ଗମନ ।
ବିଧାତାଙ୍କର ପ୍ରାର୍ଥନାରେ ପୃଥିବୀ ମଙ୍ଗଳ ଇଚ୍ଛାରେ

କଂସାସୁର କାରାଗାରରେ ଲୋକ ଲୋଚନ ଅଗୋଚର
ଦେବକୀ ଦେବୀଙ୍କ ଗର୍ଭରୁ ଜନ୍ମିଲେ କାମ କଳ୍ପତରୁ ।
ବସୁଦେବ କଂସ ଭୟରେ ତାଙ୍କୁ ନେଲା ନନ୍ଦ ବ୍ରଜରେ
ବଳଦେବ ସଙ୍ଗେ ସେଠାରେ ରହିଲେ ସେ ଗୁପ୍ତ ଭାବରେ

ଏକାଦଶ ବର୍ଷ କଟିଲା ପ୍ରଭାବ ପ୍ରକଟ ନ ହେଲା ।
ବ୍ରଜର ଦୃଷ୍ଟି ଆକର୍ଷଣ କରିଲେ ବାଳଲୀଳା ମାନ
କେବେ ସେ କ୍ରନ୍ଦନ କରନ୍ତି ପୁଣି କେତେବେଳେ ହସନ୍ତି ।
ସିଂହ ଶିଶୁପରି ଖେଳନ୍ତି ମୋହନ ଦୃଷ୍ଟିରେ ଚାହାନ୍ତି ।

ସକଳ ସମ୍ପଦ ଆଧାର ବୃଷଭ ଧବଳ ବର୍ଣ୍ଣର
ନାନା ରଙ୍ଗର ଧେନୁଗଣ କୃଷ୍ଣ କରାଇଲେ ଚାରଣ
ମଧୁର ବଂଶୀ ନିନାଦରେ ଗୋପବାଳ ସଙ୍ଗେ ଖେଳିଲେ
ଭୋଜରାଜ କଂସ ପ୍ରେରିତ ମାୟାବୀ ଅତି ବଳବନ୍ତ

ରାକ୍ଷସଙ୍କୁ ଅନାୟସରେ ନିଜର ଐଶ୍ୱରୀ ଶକ୍ତିରେ
ବାଳକ ଖେଳନା ସମାନ ଶ୍ରୀକୃଷ୍ଣ କରିଲେ ନିଧନ
ବିଷାକ୍ତ ଯମୁନାର ଜଳ ପାନକରି ଗୋପୀ ଗୋପାଳ
ଧେନୁଗଣ ହେଲେ ବିପନ୍ନ ସେବେଳେ କୃଷ୍ଣ ଭଗବାନ

ତାଙ୍କୁ ମରଣରୁ ରଖିଲେ କାଳୀୟ ବିତାଡନ କଲେ
ଯମୁନା ଜଳ ଶୁଦ୍ଧ କଲେ ସେ ସମସ୍ତଙ୍କୁ ପିଆଇଲେ ।
ଯମୁନାକୂଳ ଉପବନ ବୃକ୍ଷ ଲତିକା ସୁଶୋଭନ
ବିହଙ୍ଗର କଳ ନିଃସ୍ୱନ କର୍ଣ୍ଣ ମାନସ ରସାୟନ

ଭଗବାନ କୃଷ୍ଣ ସେଠାରେ ଗୋପାଳ ମାନଙ୍କ ସଙ୍ଗରେ
ବତ୍ସା ଚରାଇଣ ରଙ୍ଗରେ ବିହାର କରନ୍ତି ପ୍ରେମରେ
ସମୃଦ୍ଧିଶାଳୀ ଗୋପପୁର ନନ୍ଦରାଜବର ନଗର
ଧନର ସଦ୍ ବ୍ୟୟ ପାଇଁ ବିଜ୍ଞ ବ୍ରାହ୍ମଣଙ୍କୁ ଡକାଇ

ଗୋବର୍ଦ୍ଧନ ପୂଜା ରୂପରେ ଗୋପୂଜନ ଯଜ୍ଞ କରିଲେ
ଅପମାନ ପାଇ ଏଥିରେ ଇନ୍ଦ୍ରଦେବ ଅତି କ୍ରୋଧରେ
ଘୋର ବୃଷ୍ଟି କଲେ ବ୍ରଜରେ ସକଳେ ଥରିଲେ ଭୟରେ
ଦୟାରେ କୃଷ୍ଣ ଭଗବାନ ଛତ୍ର ରୂପରେ ଗୋବର୍ଦ୍ଧନ

ସପତି ଦିବସ ଧରିଲେ ଗୋପ ବାସୀଙ୍କୁ ରକ୍ଷାକଲେ ।
ଶରତ ସନ୍ଧ୍ୟାର ସମୟ ପୂର୍ଣ୍ଣଚନ୍ଦ୍ର ହେଲା ଉଦୟ
ବୃନ୍ଦାବନ ବନାନୀ ସ୍ଥଳ ଜ୍ୟୋତ୍ସ୍ନାରେ ହୋଇଛି ଉଜ୍ଜ୍ୱଳ
କୃଷ୍ଣ ତାକୁ କରି ସମ୍ମାନ କଲେ ମୋହନ ବଂଶୀ ସ୍ୱନ

ଗୋପିକା ରସ ଲୀଳା ମାନ ରାମ ରଚିଲେ ଭଗବାନ
କହଇ ଧନେଶ୍ୱର ଦାଶ ଏହିଶ୍ରୀ କୃଷ୍ଣ ଲୀଳାରସ
ଭବସାଗରର ତରଣୀ ଅଜ୍ଞାନ ତମ ନିଶାମଣି
ଏ ସରରେ ରସ ସୃଜନ ତୁଟିଯିବ ଭବ ବନ୍ଧନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ବିଦୁର ଉଦ୍ଧବ ସମ୍ୱାଦେ ନାମ ଦ୍ୱିତୀୟ ଅଧ୍ୟାୟ ।

* * * * *

## ତୃତୀୟ ଅଧାୟ

ଭଗବାନ କୃଷ୍ଣ ଏ ଅନ୍ତେ ପିତାଙ୍କ ସନ୍ତୋଷ ନିମନ୍ତେ
ବଳରାମଙ୍କର ସଙ୍ଗରେ ମଥୁରାକୁ ଯାଇ ସେ ଠାରେ
ପ୍ରଧାନ ବଇରୀ କଂସକୁ ନିପାତି ତା ମୃତ ପିଣ୍ଡକୁ
ମଞ୍ଚାରୁ ତଳେ ପକାଇଲେ ପୃଥ୍ୱୀରେ ଆକର୍ଷଣ କଲେ ।

ସେ ସାନ୍ଦିପନି ଗୁରୁବର ଉଚ୍ଚାରଣରେ ଏକଥର
ଅଙ୍ଗ ସହିତ ବେଦମାନ ସମ୍ପୂର୍ଣ୍ଣ କରି ଅଧୟନ
ପଞ୍ଚଜନକୁ ବଧ କଲେ ଗୁରୁଙ୍କ ପୁତ୍ରଙ୍କୁ ଆଣିଲେ ।
ଦକ୍ଷିଣା ରୂପେ ସମର୍ପିଣ କଲେ ଆଶୀର୍ବାଦ ଗ୍ରହଣ ।

ରୁକ୍ମିଣୀ ଭୀଷ୍ମକ ନନ୍ଦିନୀ ରୂପେ ସାକ୍ଷାତ କମଳିନୀ
ତାପାଣି ଗ୍ରହଣ ନିମିତ୍ତ ଅସଂଖ୍ୟ ନୃପତି ସହିତ
ଶିଶୁପାଳ ଯେ ଉପସ୍ଥିତ ଅତି ବଳବନ୍ତ ଉଦ୍ଧତ
କୃଷ୍ଣ ସେମାନଙ୍କ ଶିରରେ ପାଦଦେଇ ତାଙ୍କ ଆଗରେ

ଗରୁଡର ସୁଧା ହରଣ ପ୍ରକାରେ କୃଷ୍ଣ ଭଗବାନ
ବିବାହ ଗାନ୍ଧର୍ବ ରୀତିରେ ରୁକ୍ମିଣୀ ହରଣ କରିଲେ
ଆବିଦ୍ଧ ନାସିକା ସପତ ବୃଷଭଙ୍କୁ କରି ଦଳିତ
କୃଷ୍ଣ ସ୍ୱୟଂମ୍ବର ସଭାରେ ନାଗ୍ନଜିତୀ ପାଣି ଧରିଲେ

ଯେତେ ନୃପତି ତହିଁଥିଲେ ବୃଷଭେ ତା ଗର୍ବ ଭାଙ୍ଗିଲେ
ସେମାନେ କନ୍ୟାକୁ ହରଣ ପାଇଁ କଲେ ଅସ୍ତ୍ର ଧାରଣ ।
ଶ୍ରୀକୃଷ୍ଣ ଅକ୍ଷତ ଦେହରେ ସେମାନଙ୍କୁ ବଧ କରିଲେ ।
ରମଣୀର ପ୍ରେମ ଅଧୀନ ଗ୍ରାମୀଣ ପୁରୁଷ ସମାନ

ଶ୍ରୀକୃଷ୍ଣ ନିଜ ପ୍ରେୟସୀର ନାରୀରତ୍ନ ସତ୍ୟଭାମାର
ସନ୍ତୋଷ ବିଧାନ ନିମିତ୍ତ ସ୍ୱର୍ଗୁ ହରିଲେ ପାରିଜାତ
ନିଜସ୍ତ୍ରୀ ବୁଦ୍ଧିରେ ଚାଳିତ ଦେବେନ୍ଦ୍ର ହୋଇ ଉତ୍ତେଜିତ
ଘେନି ନିଜ ସୈନ୍ୟ ସାମନ୍ତ କ୍ରୋଧେ ଶ୍ରୀକୃଷ୍ଣଙ୍କ ସହିତ

ଯୁଦ୍ଧ ପାଇଁ ହେଲା ଉଦ୍ୟତ ଶେଷରେ ହେଲା ପରାଜିତ ।
ଭୂମିପୁତ୍ର ନାରକାସୁର ଶରୀରକୁ କରି ବିସ୍ତାର

ଉଦ୍ୟତ ଆକାଶ ଗ୍ରାସରେ କୃଷ୍ଣ ସୁଦର୍ଶନ ଚକ୍ରରେ
ତାହାଙ୍କୁ ବିନାଶ କରିଲେ ପୃଥ୍ୱୀର ପ୍ରାର୍ଥନାନୁସାରେ

ତା ପୁତ୍ରେ ରାଜପଦ ଦେଲେ ନାରକାର ଅନ୍ତପୁରରେ
ଶ୍ରୀକୃଷ୍ଣ ପ୍ରବେଶ କରିଲେ ଯେ ଅପହୃତା କନ୍ୟାଥିଲେ
ଆର୍ତ୍ତ ବାନ୍ଧବ ଭଗବାନ ଶ୍ରୀକୃଷ୍ଣଙ୍କୁ କରି ଦର୍ଶନ
ପ୍ରେମ ଲଜ୍ଜାପୂର୍ଣ୍ଣ ଦୃଷ୍ଟିରେ କୃଷ୍ଣେପତିରୂପେ ବରିଲେ ।

କୃଷ୍ଣ ଯୋଗମାୟା ବଳରେ ନିଜେ ସେତେ ରୂପ ଧରିଲେ
ପୃଥକ ପୃଥକ ଗୃହରେ ବିଧିରେ ଏକ ମୁହୂର୍ତ୍ତରେ
ପ୍ରତ୍ୟେକ କନ୍ୟାଙ୍କର ପାଣି ଗ୍ରହଣ କଲେ ଚିନ୍ତାମଣି
ଲୀଳା ବିସ୍ତାରି ଏହାପରେ ପ୍ରତ୍ୟେକ ରମଣୀ ଗର୍ଭରେ

ଦଶ ଦଶ ନିଜ ସମାନ ପୁତ୍ର କରିଲେ ଉଦ୍ ପାଦନ
ଯେବେଳରେ କାଳ ଯବନ ଜରାସନ୍ଧାଦି ଦୈତ୍ୟଗଣ
ନିଜ ସୈନ୍ୟ ସେନା ସଙ୍ଗରେ ଦ୍ୱାରକା ଅବରୁଦ୍ଧ କଲେ
ଶ୍ରୀକୃଷ୍ଣ ସ୍ୱଜନ ମାନଙ୍କୁ ଦେଇ ନିଜ ଐଶୀ ଶକ୍ତିକୁ

ସେମାନଙ୍କ ଦ୍ୱାରା ଅସୁର ମାନଙ୍କୁ କରିଲେ ସଂହାର
ମୁର ବଲ୍ୱଳ ବାଣାସୁର ଦନ୍ତ ବକ୍ର ପୁଣି ସମ୍ବର
ଆଦି ଯେତେକ ଯୋଦ୍ଧାଥିଲେ କୃଷ୍ଣ ସେମାନଙ୍କୁ ବଧିଲେ
ଅନ୍ୟଦ୍ୱାରା କେତେ ଜଣଙ୍କୁ ପେଷିଲେ ସେ ଯମପୁରକୁ

ତୁମର ଭ୍ରାତୃପୁତ୍ର ଗଣ ସପକ୍ଷେ ଯେଉଁ ଯୋଦ୍ଧାମାନ
ଆସିଥିଲେ କୁରୁକ୍ଷେତ୍ରରେ ଯାହାଙ୍କ ସୈନ୍ୟ ଚାଳନାରେ
ପୃଥ୍ୱୀ କମ୍ପୁଥିଲା ଭୟରେ ଶ୍ରୀକୃଷ୍ଣ ବିନାଶ କରିଲେ
କର୍ଣ୍ଣ ବିକର୍ଣ୍ଣ ଦୁଃଶାସନ ଦ୍ରୋଣ ପ୍ରଭୃତି ଦୁଷ୍ଟଗଣ

ଯାଁ'ର ଶ୍ରୀସହିତ ଆୟୁଷ ସମ୍ପଦ ହେଉଥିଲା ଶେଷ
ଗଦାଘାତରେ ଭୀମସେନ ଯାହା ଉରୁ କଲେ ଭଗ୍ନ
ସେ ଦୁର୍ଯ୍ୟୋଧନ ଭୂମିରେ ପଡିଥିବା ଦେଖି ନେତ୍ରରେ
ତଥାପି କୃଷ୍ଣ ଆନନ୍ଦିତ ହୋଇ ନଥିଲେ ତ କିଞ୍ଚିତ

ଦ୍ରୋଣ ଭୀଷ୍ମ ଭୀମ ଅର୍ଜ୍ଜୁନ ଅଠର ଅକ୍ଷୌହିଣୀ ସୈନ୍ୟ
ବଧ କରିବାରୁ ଧରାର ଉଶ୍ୱାସ ହୋଇଅଛି ଭାର

କିନ୍ତୁ ମୋ ବଂଶେ ବର୍ତ୍ତମାନ ଘଟୁଛି ନାନା ଅଘଟନ
ପ୍ରଦ୍ୟୁମ୍ନ ଆଦି ଯୋଦ୍ଧାଙ୍କର ବଳରେ ହୋଇ ବଳୀୟାର

ଦୁଃସହ ଯାଦବଙ୍କ ବଳ ବୃଦ୍ଧି ହେଉଛି ବେଳୁ ବେଳ
ଯଦି ସେମାନେ ସୁରାପାନ କରି ହରାଇ ବୁଦ୍ଧିଜ୍ଞାନ
ପ୍ରମତ୍ତ କୋପ ନୟନରେ ଜ୍ଞାନ ଦୈବ ବଳରେ
ଯୁଦ୍ଧ କରିବେ ପରସ୍ପର ତେବେ ମୃତ୍ୟୁହେବ ତାଙ୍କର

ଏହାଛଡା ସେମାନଙ୍କର ନାହିଁ ଉପାୟ ବିନାଶର
ଏମାନେ ହେଲେ ବି ଏକାତ୍ମ ମୁଁ ନିଜେ କରିଲେ ଉଦ୍ୟମ
ତେବେ ନିଶ୍ଚୟ ପରସ୍ପର ଯୁଝି ଗମିବେ ଯମପୁର
ଏପରି ଚିନ୍ତି ଭଗବାନ ଶ୍ରୀକୃଷ୍ଣ ସେ ଧର୍ମ ନନ୍ଦନ

ଯୁଧିଷ୍ଠିରଙ୍କୁ ନିଜ ରାଜ୍ୟରେ ତକ୍ଷଣେ ସଂସ୍ଥାପନ କଲେ
ସାଧୁ ମାନଙ୍କୁ ସେ ଉତ୍ତମ ମାର୍ଗ କରାଇଲେ ଦର୍ଶନ
ଯେ ଇଷ୍ଟ ବଂଧୁ ଜନଥିଲେ ସେମାନଙ୍କୁ ସନ୍ତୋଷ କଲେ
ଅଭିମନ୍ୟୁ ଉତ୍ତର ଗର୍ଭରେ ପୁରୁବଂଶ ବୀଜ ଥାପିଥିଲେ ।

ସେ ମଧ୍ୟ ଦ୍ରୋଣି ବ୍ରହ୍ମାସ୍ତ୍ରରେ ନିହତ ହୋଇଥାନ୍ତା ହେଲେ
ତାକୁ ଅକାଳ ମରଣରୁ ରକ୍ଷିଲେ କୃଷ୍ଣ କଳ୍ପତରୁ ।
ପୁଣି ଯୁଧିଷ୍ଠି ମହାଭାଗ ତିନୋଟି ଅଶ୍ୱମେଧ ଯାଗ
କରିଲେ କୃଷ୍ଣ ସାହାଯ୍ୟରେ ଭ୍ରାତା ମାନଙ୍କର ସଙ୍ଗରେ

ଅନୁଗାମୀ ହୋଇ କୃଷ୍ଣଙ୍କର ଧର୍ମନନ୍ଦନ ଯୁଧିଷ୍ଠିର
ଭାଇଙ୍କ ସହ ଆନନ୍ଦରେ ପୃଥିବୀ ପାଳନ କରିଲେ
ସେ ବିଶ୍ୱ ଆତ୍ମା ଭଗବାନ ଶ୍ରୀକୃଷ୍ଣ ସେ ସମୟେ ପୁନ
ସମୃଦ୍ଧ ଦ୍ୱାରକା ପୁରରେ ଲୌକିକ ବୈଦିକ ରୀତିରେ

ପ୍ରକୃତି ପୁରୁଷ ରୂପରେ ସଦା ଅନାସକ୍ତ ଭାବରେ
ବିଷୟ ଉପଭୋଗ କଲେ ଅଷ୍ଟପାଟ ବଂଶୀ ସଙ୍ଗରେ
ସେ ସ୍ନିଗ୍ଧ ସସ୍ମିତ ଦୃଷ୍ଟିରେ ଅମୃତ ମଧୁର ବାକ୍ୟରେ
ନିର୍ମଳ ପୁଣ୍ୟ ଚରିତ୍ରରେ ନିଜ ଲକ୍ଷ୍ମୀବନ୍ତ ଦେହରେ

ଲୋକ ପରଲୋକ ସହିତ ଯାଦବଙ୍କୁ କଲେ ମୋହିତ
ଅର୍ଦ୍ଧାଙ୍ଗିନୀ ସହ ରାତ୍ରିରେ ପତ୍ନୀ ସହିତ ରଜନୀରେ

ଅନାସକ୍ତ ଅନୁରାଗରେ   ବିହରି ଯଥା ସମୟରେ
ସେମାନଙ୍କ ଚିତ୍ତ ତୋଷିଲେ   କୃଷ୍ଣ ଅନାସକ୍ତ ଭାବରେ

ବହୁବର୍ଷ ଭୋଗ ବିହାର   କରିବା ପରେ ତାହାଙ୍କର
ଗାର୍ହସ୍ଥ୍ୟ ଭୋଗ ବିଳାସରେ   ବୈରାଗ୍ୟ ଜନ୍ମିଲା ଚିତ୍ତରେ
ସ୍ୱୟଂ ସ୍ୱାଧୀନ ଭଗବାନ   ଭୋଗ୍ୟ ବସ୍ତୁ ତାଙ୍କ ଅଧୀନ
ଯୋଗେଶ କୃଷ୍ଣଙ୍କ ଚିତ୍ତରେ   ସକଳ ଭୋଗ ସାମଗ୍ରୀରେ

ଯେଣୁ ବୈରାଗ୍ୟ ହେଲା ଜାତ   କୃଷ୍ଣଙ୍କ ଚରଣ ଆଶ୍ରିତ
ବିଜ୍ଞାନୀ ସାଧୁ ଭକ୍ତ ଚିତ୍ତ   ହେଲେ ବି ବିଷୟ ଜଡ଼ିତ
ଯଦୁଭୋଜ ପିଲାଏ ଥରେ   ଖେଳୁଥିବାର ସମୟରେ
ସମସ୍ତେ ହୋଇ ଏକତ୍ରିତ   ମୁନିଙ୍କୁ କରିଲେ କୋପିତ

ବିନାଶ ଯେ ଯଦୁକୁଳର   ଅଭିପ୍ରାୟ ବୁଝି କୃଷ୍ଣଙ୍କର
ସେମାନେ ବାଳକ ମାନଙ୍କୁ   କ୍ରୋଧେ ଦେଲେ ଅଭିଶାପକୁ
ଏମନ୍ତେ ଗଲା କେତେଦିନ   ଭୋଜ୍ଞ ଅନ୍ଧକ ଯଦୁଗଣ
ବିମୋହିତ ହେବ ମାୟାରେ   ରଥ ଆରୋହି ଆନନ୍ଦରେ

ପ୍ରଭାସ କ୍ଷେତ୍ରକୁ ଗମିଲେ   ସେମାନେ ସମସ୍ତେ ସେଠାରେ
ସ୍ନାନ କରି ତୀର୍ଥ ଜଳରେ   ଦେବର୍ଷି ପିତୃ ଉଦ୍ଦେଶ୍ୟରେ
ତିଳ ତର୍ପଣାଦି କରିଲେ   ବ୍ରାହ୍ମଣ ମାନଙ୍କୁ ଭକ୍ତିରେ
ସୁବର୍ଣ୍ଣ ଧେନୁ ରତ୍ନ ତୁଳେ   ଦୁଗ୍ଧବତୀ ଧେନୁ ଅର୍ପିଲେ

ରଜତ ବସ୍ତ୍ର ଶଯ୍ୟାପୂର୍ଣ୍ଣ   ମୃଗଚର୍ମ କମଳ ଯାନ
ରଥ ହସ୍ତୀ କନ୍ୟକା ଗଣ   ବୃତ୍ତି ନିମିତ୍ତ ଭୂମିଦାନ
ସରସ ଅନ୍ନ ଆଦି ପୁନ   କରି ଭାଗବତ ଅର୍ପଣ
ବ୍ରାହ୍ମଣଙ୍କୁ କଲେ ପ୍ରଦାନ   ଗୋ ବ୍ରାହ୍ମଣ ପାଇଁ ପ୍ରାଣ

ଧରିଥିବା ସେ ବୀରଗଣ   ଅତି ଭକ୍ତିଭାବରେ ପୁନ ପୁନ
ଶିର ଲଗାଇ ଭୂମିପରେ   ବ୍ରାହ୍ମଣ ମାନଙ୍କୁ ନମିଲେ
ଭଣଇ ଧନେଶ୍ୱର   ସମ୍ବାଦ ଉଦ୍ଧବ ବିଦୁର
ସୁଜନ ଭକ୍ତ ଗୁଣ   ଦଣ୍ଡେ ନ ନେବ କାମଯମ

ଇତି ଶ୍ରୀମଦଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନାମ ତୃତୀୟ ସ୍କନ୍ଧେ ବିଦୁରୋଦ୍ଧବ ସମ୍ବାର୍କ ନାମ ତୃତୀୟୋଽଧ୍ୟାୟେ ।

*******

# ଚତୁର୍ଥ ଅଧ୍ୟାୟ

## ଉଦ୍ଧବ ଉବାଚ

ଉଦ୍ଧବ କହେ ହେ ବିଦୁର   ଶୁଣନ୍ତୁ ଅନ୍ୟ ସମାଚାର
ଯାଦବମାନେ ଏହାପରେ   ବ୍ରାହ୍ମଣଗଣଙ୍କ ଆଜ୍ଞାରେ
ମିଷ୍ଟାନ୍ନ ଭୋଜନ କରିଲେ   ବାରୁଣି ମଦ୍ୟର ପାନରେ
ସସ୍ତେ ଜ୍ଞାନ ହରାଇଲେ   କେ କାକୁ ଚିହ୍ନିନ ପାରିଲେ

ସେମାନେ କଟୁ ବଚନକୁ   କହିଲେ ଯେ ପରସ୍ପରକୁ
ମଦୀରା କରିବାରୁ ପାନ   ଚିତ୍ତ ହେଲା ତାଙ୍କ ବିଭ୍ରମ
ଯେପରି ବେଣୁ ଘର୍ଷରେ   ଦାବାଦି ଜନ୍ମଇ ବନରେ
ସେପରି ସୂର୍ଯ୍ୟାସ୍ତ ବେଳରେ   ଆପଣା ଆପଣା ମଧ୍ୟରେ

ମାତିଲେ ସକଳେ ଯୁଦ୍ଧରେ   କେହି କାହାକୁ ନ ଚିହ୍ନିଲେ
କୃଷ୍ଣ ସ୍ୱ ମାୟାର ଏପରି   ବିଚିତ୍ର ଗତି ଦେଖିପାରି
ସରସ୍ୱତୀ ପୂତ ଜଳରେ   ଆଚମନ କରି ସେଠାରେ
ବୃକ୍ଷ ତଳେ ବସି ପଡ଼ିଲେ   ଦୈବକୁ କେବା ଏଡ଼ିପାରେ

ଶରଣାଗତ ଦୁଃଖହର   ଭଗବାନ ଶ୍ରୀକୃଷ୍ଣଙ୍କର
ସ୍ୱକୁଳ ସଂହାର ନିମିତ୍ତ   ଯେବେବେଳେ ଇଛାହେଲା ଜାତ
ମତେ ଡାକିସେ ସେ ବେଳରେ   ବଦରିକା ଯାଅ କହିଲେ ।
ଶ୍ରୀକୃଷ୍ଣଙ୍କର ଅଭିପ୍ରାୟ   ମୁଁ ବୁଝିପାରିଲି ନିଶ୍ଚୟ

ତଥାପି ପ୍ରଭୁଙ୍କ ଚରଣ   ବିରହ ସହିବା ଅକ୍ଷମ
ହୋଇ ମୁଁ ତାହାଙ୍କ ପଛରେ   ଗମିଲି ପ୍ରଭାସ କ୍ଷେତ୍ରରେ
ଯାହାର କେ ନାହିଁ ଆଶ୍ରୟ   ମାତ୍ର ଯେ ଜଗତ ଆଶ୍ରୟ
ସେ ପ୍ରଭୁ ମୋର ପ୍ରିୟତମ   ଶ୍ୟାମ ସୁନ୍ଦର ଶୋଭାଧାମ

ଏକାକୀ ସରସ୍ୱତୀ ତୀରେ   ବସି ଅଛନ୍ତି ନିରୋଳାରେ
ଦିବ୍ୟ ବିଶୁଦ୍ଧ ସତ୍ୱମୟ   ସକଳ ଜଗତ ଆଶ୍ରୟ
ସୁନ୍ଦର ନବଘନ ଶ୍ୟାମ   ପ୍ରଶାନ୍ତ ଅରୁଣ ନୟନ
ଚତୁର ଭୁଜ ପୀତବର୍ଣ୍ଣ   ପରିହିତ ପୀତ ବସନ

ଦୂରରୁ ମୁଁ ଦେଖି ପାରିଲି   ନିଜ ପ୍ରଭୁ ବୋଲି ଜାଣିଲି ।
ବାମ ଜଙ୍ଘରେ ସେ ଦକ୍ଷୀଣ   ଚରଣକୁ କରି ସ୍ଥାପନ
ଅଶ୍ୱତଥ ବୃକ୍ଷ ଆଉଜିଣ   କରିଥିଲେ ଉପବେଶନ
ସର୍ବ ବିଷୟ ସେ ତେଜିଲେ   ମାତ୍ର ପ୍ରଫୁଲ୍ଲ ଦିଶୁଥିଲେ ।

ବ୍ୟାସଦେବଙ୍କ ପ୍ରିୟମିତ୍ର  ସିଦ୍ଧପରମ ଭାଗବତ
ମୈତ୍ରେୟ ଋଷି ସ୍ୱଚ୍ଛନ୍ଦରେ  ଭ୍ରମି ଭ୍ରମିଣ ପୃଥିବୀରେ
ଆସି ସେଠାରେ ପ୍ରବେଶିଲେ  ବସିଲେ ସନନ୍ଦ ଚିତ୍ତରେ
ମୈତ୍ରେୟ ମୁନି କୃଷ୍ଣଙ୍କର  ଅନୁରକ୍ତ ଭକ୍ତ ପ୍ରବର

ଯାହାଙ୍କର ଶିର ପ୍ରେମରେ  ଅବନତି ଭକ୍ତି ଭାବରେ
ତାହାଙ୍କୁ ଶୁଣାଇ ଶ୍ରୀହରି  ସ୍ନେହରେ ସ୍ମିତହାସ୍ୟ କରି
ମୋ ଉଦ୍ଦେଶ୍ୟରେ କହିଲେ  ପଥ ପରିଶ୍ରମ ତେଜିଲେ

**ଭଗବାନ ଉବାଚ**

ଆହେ ଉଦ୍ଧବ ମୁଦିତୋର  କାମନା ଜାଣିଛି ଚିତ୍ତର
ତୁହିତ ପୂର୍ବ ଜନମରେ  ଜନ୍ମିଥିଲୁ ବସୁ ରୂପରେ
ବସୁମାନଙ୍କର ଯଜ୍ଞରେ  ମତେ ପାଇବା କାମନାରେ
ବିଶ୍ୱସ୍ରଷ୍ଟା ବ୍ରହ୍ମା ସଙ୍ଗରେ  ତୁ ମତେ ପୂଜିଲୁ ସେଠାରେ

ତେଣୁ ତତେହିଁ ବର୍ତ୍ତମାନ  କହୁଛି ବିଷୟ ସାଧନ
ଯାହାକି ଅନ୍ୟ ବ୍ୟକ୍ତିପାଇଁ  ଅତ୍ୟନ୍ତ ଦୁର୍ଲଭ ଅଟଇ
ଜଗତେ ତୁମ ଏହି ଜନ୍ମ  ଶେଷ ଜନମ ବୋଲି ଜାଣ
ଏ ଜନ୍ମରେ ତୁମେ ମୋହର  ଲଭିଛ ଅନୁଗ୍ରହ ସାର

ତେଜି ମୁଁ ଏ ମର୍ତ୍ତ୍ୟଭୂବନ  ଯିବାକୁ ଚାହେଁ ନିଜ ଧାମ
ତୁମେ ନିଶ୍ଚୟ ଏ ବେଳରେ  ମୋଠାରେ ଅନନ୍ୟ ଭକ୍ତିରେ
ଏକାନ୍ତେ ପାଇଲ ଦର୍ଶନ  ଉଦ୍ଧବ ତୋ ଜୀବନ ଧନ୍ୟ ।
ପୂର୍ବକାଳରେ ପ୍ରଥମରେ  ପଦ୍ମକଳ୍ପର ପ୍ରାରମ୍ଭରେ

ମୋ ନାଭିକମଳେ ଆସୀନ  ବ୍ରହ୍ମାଙ୍କୁ ଏହି ତତ୍ତ୍ୱଜ୍ଞାନ
ମୁଁ କରିଥିଲି ଯେ ପ୍ରଦାନ  ଯେ ଜ୍ଞାନକୁ ବିବେକବନ୍ତ
କହୁ ଅଛନ୍ତି ଭାଗବତ  ଯହିଁ ମୋ ମହିମା ପ୍ରକାଶ
ଶୁଣ ସେ ଜ୍ଞାନ ଉପଦେଶ  ମନଧ୍ୟାନ ଦେଇ ବିଶେଷ

ପରଂ ପୁରୁଷ ଭଗବାନ  କରନ୍ତି କୃପା ଅନୁକ୍ଷଣ
ତାଙ୍କ ସାଦର କଥା ଶୁଣି  ଗଦ୍‌ଗଦ୍ ହେଲା ମୋର ବାଣୀ
ଶରୀରେ ଜନ୍ମିଲା ପୁଲକ  ନେତ୍ରରୁ ବହିଲା ଲୋତକ
ମୁଁ ତାଙ୍କ ଚରଣେ ପଡିଲି  ହାତ ଯୋଡି ଧୀରେ କହିଲି

ହେ ସ୍ୱାମୀ ତୋ ପାଦ ପଦ୍ମରେଯେ ପ୍ରାଣୀ ସେବଇ ଭକ୍ତିରେ
ତାପକ୍ଷେ ଧର୍ମ ଅର୍ଥ କାମ  ମୋକ୍ଷ ଏ ଚତୁର୍ବର୍ଗ ମାନ
କଦାପି ଦୁର୍ଲଭ ନୁହଁଇ  ମାତ୍ର ମୁଁ କିଛି ମାଗୁନାହିଁ
କେବଳ ତୋ ପାଦ ଅର୍ଚ୍ଚନା  ସର୍ବଦା କରଇ କାମନା
ହେ ପ୍ରଭୋ ନିସ୍ପୃହ ଆପଣ  ତଥାପି କରନ୍ତି କରମ
ଅଜନ୍ମା ହୋଇବି ଆପଣ  କରିଥାନ୍ତି ଜନ୍ମ ଗ୍ରହଣ

ସ୍ୱୟଂ କାଳ ସ୍ୱରୂପୀ ହୋଇ  ଶତ୍ରୁଭୟେ ଯାନ୍ତି ପଳାଇ
ଦୁର୍ଗମଧ୍ୟେ ଲୁଚି ରହନ୍ତି  ତୋ ଲୀଳା ଶଚିତ୍ର ଅତି
ନିଜେ ଆତ୍ମାରାମ ଅଟନ୍ତି  ଷୋଳସସ୍ର ନାରୀ ରମନ୍ତି
ଏହି ବିଚିତ୍ର ଲୀଳା ମାନ  ଜ୍ଞାନୀଙ୍କୁ କରାଏ ବିଭ୍ରମ ।

ତବ ସ୍ୱରୂପ ଜ୍ଞାନ ତତ୍ତ୍ୱ  କାଳ ଦ୍ୱାର ଯେ ଅଖଣ୍ଡିତ
ସର୍ବଦା ସଂଶୟ ରହିତ  ତୁମର ନାହିଁ ଆଦିଅନ୍ତ
ମାତ୍ର ଅଜ୍ଞଜନ ସମାନ  ମତେ ଡାକିଆଣି ଆପଣ
ମୋ ସଙ୍ଗେ ମନ୍ତ୍ରଣା କରନ୍ତି  କିସ କରିବା ପଚାରନ୍ତି

ଏହା ଭାବିଲେ ମୋର ଚିତ୍ତ  ସଂଶୟେ ହୁଏ ଆନ୍ଦୋଳିତ
ଗୂଢ଼ ରହସ୍ୟ ପ୍ରକାଶଇ  ଯାହା ଶ୍ରେଷ୍ଠ ଜ୍ଞାନ ଅଟଇ
ଯାହା ବ୍ରହ୍ମାଙ୍କୁ ପ୍ରଥମରେ  ଆପଣ ସ୍ୱୟଂ କହିଲେ
ସେହି ସମସ୍ତ ଗୁପ୍ତଜ୍ଞାନ  ଯଦି ମୋ ପକ୍ଷେ ବୋଧଗମ୍ୟ

ତେବେ ଦୟାବହି ଆପଣ  କହନ୍ତୁ ସେହି ଦିବ୍ୟଜ୍ଞାନ
ଯାହାଶୁଣି ଏହି ସଂସାର  ଦୁଃଖରୁ ହୋଇବି ମୁଁ ପାର
ମୋ ହୃଦ ଭାବ ନିବେଦନ  ଶୁଣି ସେ ପୁରୁଷ ପୁରାଣ
ପଦ୍ମନୟନ ଭଗବାନ  ନୟନ ମନ ଅଭିରାମ

ଶ୍ରୀକୃଷ୍ଣ ନିଜ ସ୍ୱରୂପରେ  ପରମାସ୍ଥିତ ବିଷୟରେ
ମତେ ସେ ଉପଦେଶ ଦେଲେ  କରୁଣା ବାରି ବରଷିଲେ
ସେ ପୂଜ୍ୟପାଦ ବିଶ୍ୱଗୁରୁ  ଭଗବାନ ଶ୍ରୀକୃଷ୍ଣ ଠାରୁ
ଆତ୍ମତତ୍ତ୍ୱ ଜ୍ଞାନ ସାଧନ  ଶୁଣି ବନ୍ଦି ପ୍ରଭୁ ଚରଣ

ତାଙ୍କୁ ପରିକ୍ରମା କରିଲି  ତାପରେ ଏଠାକୁ ଆସିଲି
ତାଙ୍କ ବିରହେ ବର୍ତ୍ତମାନ  ଚିତ୍ତ ବ୍ୟାକୁଳ ହୁଏ ମମ
ପ୍ରଭୁଙ୍କୁ ଦର୍ଶନ କରିଲି  ଆନନ୍ଦେ ବିହ୍ୱଳ ହୋଇଲି
ତାହାଙ୍କ ବିଯୋଗ ଜନିତ  ଦୁଃଖରେ ହୋଇ ମୁଁ ବ୍ୟଥିତ
ପ୍ରଭୁଙ୍କ କ୍ଷେତ୍ର ପ୍ରିୟତମ  ଯାଉଛି ବଦ୍ରିକା ଆଶ୍ରମ
ସେଠାରେ ନର ନାରାୟଣ  ଋଷି କରିଛନ୍ତି ବିଶ୍ରାମ
ଲୋକଙ୍କ ଅନୁଗ୍ରହ ପାଇଁ  ତପସ୍ୟା କରୁଛନ୍ତି ରହି

**ଶୁକ ଉବାଚ**

କହିଲେ ଶୁକ ମୁନିବର ଉଦ୍ଧବଙ୍କ ଠାରୁ ବିଦୁର
ନିହତ ବଂଧୁ ମାନଙ୍କର ଶୁଣି ଅସହ୍ୟ ସମାଚାର
ହୃଦୟେ ଶୋକ ହେଲା ଜାତ ମାତ୍ର ଜ୍ଞାନରେ ହେଲେ ଶାନ୍ତ ।
ଉଦ୍ଧବ ମହା ଭାଗବତ ଯିବାକୁ ହୁଅନ୍ତେ ଉଦ୍ୟତ

ବିଦୁର ଅତି ବିଶ୍ୱାସରେ ତାହାଙ୍କୁ ପୁଣି ପଚାରିଲେ ।
ଉଦ୍ଧବେ କହିଲେ ବିଦୁର ଭଗବାନ କୃଷ୍ଣ ଯୋଗେଶ୍ୱର
ଗୂଢ଼ ରହସ୍ୟ ବିଷୟରେ ଯେ ପରମ ଜ୍ଞାନ କହିଥିଲେ ।
ଉଦ୍ଧବେ କହିଲେ ତକ୍ଷଣ ଲଭିବା ପାଇଁ ତତ୍ତ୍ୱଜ୍ଞାନ

ମୈତ୍ରେୟ ମୁନିଙ୍କ ଚରଣ ଅର୍ଚ୍ଚନା କରନ୍ତୁ ଆପଣ
ଇହଧାମ ତ୍ୟାଗ କାଳରେ ଭଗବାନ ମୋ ସମ୍ମୁଖରେ
ତୁମକୁ ଉପଦେଶ ପାଇଁ ମୈତ୍ରେୟେ ଛନ୍ତି ଆଜ୍ଞାଦେଇ

**ଶ୍ରୀ ଶୁକ ଉବାଚ**

ଶୁକ ବୋଲନ୍ତି ପରୀକ୍ଷିତ ଶୁଣନ୍ତୁ ଅପୂର୍ବ ବୃତ୍ତାନ୍ତ
ବିଦୁର ସଙ୍ଗେ ଏ ପ୍ରକାର ବିଶ୍ୱ ମୁରତି ଶ୍ରୀ କୃଷ୍ଣର
ଲୀଳାଗୁଣ କରି ଶ୍ରବଣ ପ୍ରଭୁପାଦ କରି ସ୍ମରଣ
ଉଦ୍ଧବଙ୍କ ବିରହ ଜାତ ମହାତାପ ହେଲା ପ୍ରଶାନ୍ତ
ତା ସଙ୍ଗେ ଯମୁନା କୂଳରେ ସେହି ରାତ୍ରିକୁ ବିତାଇଲେ
ସେ ସ୍ଥାନରୁ ପ୍ରାତ କାଳରେ ଅନ୍ୟ ସ୍ଥାନକୁ ବାହାରିଲେ

**ରାଜୋବାଚ**

ପୁଛିଲେ ରାଜା ପରୀକ୍ଷିତ କୁହନ୍ତୁ ଆହେ ବ୍ୟାସସୁତ
ବୃଷ୍ଣିଭୋଜ ରଥୀଗଣେ ପ୍ରଧାନ ଯୁଥପତି ମାନେ
ସମରେ ହୋଇଲେ ନିହତ ଶ୍ରୀକୃଷ୍ଣ ତ୍ରିଭବନ ନାଥ
ଶ୍ରୀହରି ଅପ୍ରକଟ ହେଲେ ଉଦ୍ଧବ କିମ୍ପାଇ ବଂଚିଲେ

**ଶ୍ରୀ ଶୁକ ଉବାଚ**

ଯାହାଙ୍କ ଇଚ୍ଛାଏ ବିଶ୍ୱରେ ବ୍ୟର୍ଥ ନୁହଁଇ କେବେହେଲେ
ସେ ହରି ଯଥା ସମୟରେ ବ୍ରହ୍ମ ଅଭିଶାପ ଛଳରେ
ସ୍ୱକୁଳ କରିଲେ ସଂହାର ଶ୍ରୀବିଗ୍ରହ ମୂର୍ତ୍ତି ନିଜର
ତ୍ୟାଗ କରିବା ସମୟରେ ମନେ ଏପରି ବିଚାରିଲେ

ମୁଁ ତ୍ୟାଗକଲେ ମରଧାମ ଉଦ୍ଧବ ହିଁ ମୋ ତତ୍ତ୍ୱଜ୍ଞାନ
କେବଳ କରିବ ଗ୍ରହଣ ସେତ ତତ୍ତ୍ୱଜ୍ଞାନୀ ପ୍ରଧାନ
ଉଦ୍ଧବ ମୋଠୁଁ ନୁହେଁ ନ୍ୟୁନ ସାକ୍ଷାତ୍ ସେ ମୋର ସମାନ
ସେ ଆତ୍ମଜୟୀ କଦାଚିତ ବିଷୟେ ବିକ୍ଷୋଭିତ

ଲୋକେ ତତ୍ତ୍ୱଜ୍ଞାନ ଦିଅନ୍ତୁ ଏ ସ୍ଥାନରେ ବଞ୍ଚି ରୁହନ୍ତୁ ।
ଲୋକଙ୍କୁ ତତ୍ତ୍ୱଜ୍ଞାନ ଦେଇ ଏଠାରେ ବଞ୍ଚିଥାନ୍ତୁ ରହି
ସର୍ବବେଦ ମୂଳ କାରଣ ବେଦର ସ୍ରଷ୍ଟା ଭଗବାନ
ଶ୍ରୀକୃଷ୍ଣଙ୍କର ଆଦେଶରେ ଉଦ୍ଧବ ବଦରିକା ଗଲେ

ସେଠାରେ ସମାଧି ଯୋଗରେ ଶ୍ରୀଗୋବିନ୍ଦଙ୍କୁ ଆରାଧିଲେ
ପରମାତ୍ମା ଶ୍ରୀ ଭଗବାନ କୃଷ୍ଣଙ୍କ ଶ୍ଳାଘ୍ୟ ଲୀଳାମାନ
ଲୀଳାରେ ସ୍ୱଧାମ ଗମନ ଶ୍ରବଣ ମନ ରସାୟନ
ସକଳ ପୁଣ୍ୟ ସମାଚାର ଶୁଣିଥିଲେ ଭକ୍ତ ବିଦୁର

ଶ୍ରୀକୃଷ୍ଣ ଲୀଳା ଶରୀର ପରିତ୍ୟାଗ ବିଜ୍ଞ ବ୍ୟକ୍ତିର
ଧୈର୍ଯ୍ୟକୁ କରଇ ବର୍ଦ୍ଧନ ହୃଦେ ଜନ୍ମାଏ କୃଷ୍ଣ ପ୍ରେମ
ପଶୁ ତୁଲ୍ୟ ଅଜ୍ଞ ଜନର ପକ୍ଷରେ ଏହା ଯେ ଦୁଷ୍କର
ହେ ପରିକ୍ଷିତ କୁରୁବୀର ସେ ଭକତ ଶ୍ରେଷ୍ଠ ବିଦୁର

ଶ୍ରୀକୃଷ୍ଣ ପରମ ଧାମକୁ ଯିବା ସମୟରେ ତାହାଙ୍କୁ
ସଦା କରୁଥିଲେ ସ୍ମରଣ ମହା ଭାଗବତ ପୁରାଣ
ଭକ୍ତ ଉଦ୍ଧବ ଯିବାପରେ ବିଦୁର ବିହ୍ୱଳେ କାନ୍ଦିଲେ
ବିଦୁର ଯମୁନା କୂଳରେ କିଛିଦିନ ମାତ୍ର ରହିଲେ

ତା ପରେ ଜାହ୍ନବୀ ତୀରରେ ମୈତ୍ରେୟ ଋଷି ଯହିଁଥିଲେ
ପ୍ରବେଶ ହୋଇଲେ ସେଠାରେ ସାଷ୍ଟାଙ୍ଗେ ତାଙ୍କୁ ପ୍ରଣମିଲେ ।
ଏ ପୁଣ୍ୟ ଭାଗବତ କଥା ହରଇ ତାପତ୍ରୟ ବ୍ୟଥା
କହଇ ଧନେଶ୍ୱର ଦାଶ ସୁଜନେ କୃଷ୍ଣ ଭାବେ ରସ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନାମ ତୃତୀୟ ସ୍କନ୍ଧେ ବିଦୁରୋଦ୍ଧବ ସମ୍ବାଦେ ଚତୁର୍ଥୋଽଧ୍ୟାୟ

* * * * * * *

## ପଞ୍ଚମ ଅଧ୍ୟାୟ

ତ୍ରିକାଳଜ୍ଞ ପରମ ଜ୍ଞାନୀ ସେହି ମୈତ୍ରେୟ ମହାମୁନି
ପବିତ୍ର ଜାହ୍ନବୀ ତୀରରେ ହରିଦ୍ୱାର ତୀର୍ଥ କ୍ଷେତ୍ରରେ
ବସିଥିଲେ ଶାନ୍ତ ଚିତ୍ତରେ ହରିଭାବ ଭବି ହୃଦରେ
ବିଦୁର ପ୍ରବେଶି ସେଠାରେ ତାଙ୍କର ସୁଶୀଳ ଗୁଣରେ
ଅତ୍ୟନ୍ତ ଆନନ୍ଦିତ ହେଲେ କୃଷ୍ଣ ପୁଣ୍ୟ ଲୀଳା ପୁଛିଲେ

**ବିଦୁରୋବାଚ**

ଆନନ୍ଦେ କହିଲେ ବିଦୁର ହେ ଭଗବାନ ଋଷିବର
ଲୋକ ଏ ସଂସାର ମଧ୍ୟରେ କର୍ମ କରେ ସୁଖ ଆଶାରେ
ସେଥିରେ ମିଳେ ନାହିଁ ସୁଖ ଦୂର ବି ହୁଏ ନାହିଁ ଦୁଃଖ
ବରଂ ଦୁଃଖ ବଢ଼େ ଏଥିରେ ବ୍ୟକ୍ତିର ଏହି ବିଷୟରେ

କି କରିବା ବିଧି ଅଟଇ ମତେ କୁହନ୍ତୁ ଦୟାବହି
ପୂର୍ବ କର୍ମ ଫଳରେ ଯେହି ଶ୍ରୀକୃଷ୍ଣ ପଦେ ନ ସେବଇ
ଅଧର୍ମ କର୍ମ ଆଚରଇ ଇହଲୋକେ ଦୁଃଖ ଭୋଗଇ
ଅନୁଗ୍ରହ କରି ତା ଠାରେ ଭକ୍ତ ବିଚରଇ ସଂସାରେ

ହେ ମୈତ୍ରେୟ ସାଧୁପ୍ରବର ମୋ ପ୍ରତି ବାରେ ଦୟାକର
ମଙ୍ଗଳମୟ ସେ ସାଧନ ପଥକୁ କହନ୍ତୁ ଆପଣ
ଯେ ପଥେ କଲେ ଆରାଧନ ଜଗତ ବଂଧୁ ଭଗବାନ
ଭକ୍ତ ଭକ୍ତି ଦୃଢ ହୃଦୟରେ ବିଜୟ କରନ୍ତି ପ୍ରେମରେ

ସ୍ୱରୂପ ତତ୍ତ୍ୱ ପ୍ରକାଶନ୍ତି ସନାତନ ଜ୍ଞାନ ଦିଅନ୍ତି
ସ୍ୱାଧୀନ ଅଟନ୍ତି ଶ୍ରୀହରି ତ୍ରିଲୋକ ନିୟନ୍ତଣ କାରୀ
କରି ଅବତାର ଗ୍ରହଣ କରନ୍ତି କି କି କର୍ମମାନ
ସେ କର୍ତ୍ତା ଅକର୍ତ୍ତା ଶ୍ରୀହରି କଳ୍ପ ଆରମ୍ଭରେ କିପରି

ଜଗତ ସର୍ଜନ ସ୍ଥାପନ ଜୀବର ଜୀବିକା ବିଧାନ
ବିଶ୍ୱକୁ ହୃଦେ କରେ ଲୀନ ହୋଇ ମଧ ସେ ବୃତ୍ତିଶୂନ୍ୟ
ଯୋଗ ମାୟା ଶ୍ରୟେ ଶୟନ ତା ମହିମା ଅଟେ ଅସୀମ
ସେ ପ୍ରଭୁ ଯୋଗ ଯୋଗେଶ୍ୱର ଏକ ହୋଇ ମଧ କି ପ୍ରକାର

ସର୍ବାନ୍ତର୍ଯ୍ୟାମୀ ସ୍ୱରୂପରେ ପ୍ରବେଶ କରି ବ୍ରହ୍ମାଣ୍ଡରେ
ଅନେକ ରୂପେ ପ୍ରକଟଇ ପ୍ରତିଘଟରେ ବିଚରଇ
ସେ ରହସ୍ୟ କୁହନ୍ତୁ ଆପଣ ଶୁଣିବା ପାଇଁ ମୋର ମନ
ଦେବତା ବ୍ରାହ୍ମଣ ଗୋଜାତି ରକ୍ଷା ନିମିତ୍ତ ବିଶ୍ୱପତି

କରି ଅବତାର ଗ୍ରହଣ ଲୀଳାରେ ଯେତେ ଦିବ୍ୟ କର୍ମ
ସେ ସବୁ କୁହନ୍ତୁ ଆପଣ ଶ୍ରବଣ ପାଇଁ ଇଛା ମମ
ପୁଣ୍ୟ ଶ୍ଳୋକ ଶିରୋମଣିର ଲୀଳା ଚରିତ ବାରବାର
ଶୁଣିଲେ ମଧ ମୋର ଚିତ୍ତ ନ ହୁଏ କେବେ ପରିତୃପ୍ତ

ଶ୍ରୀହରି ଲୋକପତି ପତି ସକଳ ଲୋକଙ୍କୁ ପାଳନ୍ତି
ଏ ସମସ୍ତ ଲୋକ ଲୋକପାଳ ଆବର ତ୍ରିଲୋକ ମଣ୍ଡଳର
ସେ ସୃଜନ ବସିସ୍ଥ ଭବନ ଏ ଲୋକ ମଣ୍ଡଳକୁ ପୁନ
ମାନବ ଆଦି ଜୀବଗଣ ଅନୁସାରେ ସ୍ୱଗୁଣ କର୍ମ

କରି ଥାଆନ୍ତି ଅଧିକାର କୃଷ୍ଣଙ୍କ ମହିମା ଅପାର
କେଉଁ ତତ୍ତ୍ୱକୁ ଆଶ୍ରେ କରି ସୃଷ୍ଟିକୁ ରଚନ୍ତି ଶ୍ରୀହରି
ତାହା ପ୍ରକାଶନ୍ତୁ ଆପଣ ହେ ବିଜ୍ଞାନୀ ମୁନି ଉତ୍ତମ
ସେ ବିଶ୍ୱସ୍ରଷ୍ଟା ପ୍ରଜାପତି ସ୍ୱଭ୍ୱେ ସ୍ୱୟଂସିଦ୍ଧ ଅଟନ୍ତି

ପ୍ରଜାଙ୍କର ସ୍ୱଭାବ କର୍ମ ବିଭିନ୍ନ ଜାତି ରୂପନାମ
କିପରି କରନ୍ତି ରଚନା ତାହା କୁହନ୍ତୁ ମହାମନା
ବ୍ରାହ୍ମଣାଦି ଚାରି ବର୍ଣ୍ଣର ଧର୍ମ କର୍ମାଦି ବହୁବାର
ବ୍ୟାସ ମୁଖ କରି ଶ୍ରବଣ ତୃପତ ହୁଏ ମୋର ମନ

କୃଷ୍ଣ କଥା ନାହିଁ ଯହିଁରେ ତାହା କିପରି ମୋ ମନର
ତୃପ୍ତିବା କରିବ ପ୍ରଦାନ ମାତ୍ର ଶ୍ରୀକୃଷ୍ଣାମୃତ ପୂର୍ଣ୍ଣ
କଥା ଶୁଣିବି ପୁନପୁନ ତୋଷ ନ ଭଲେ ମୋସନ
ଶୁଣିବାକୁ ଇଛା ହୁଅଇ ତାହା କୁହନ୍ତୁ ଦୟାବହି

ତୀର୍ଥ ପାଦ ଶ୍ରୀ ହରିଙ୍କର ଗୁଣ କୀର୍ତ୍ତନେ ବା କାହାର
ହୃଦ ପରିତୃପ୍ତ ହୋଇବ ଶୁଣିବାର ଇଛା ନ ଜାଗିବ
ନାରଦାଦି ମହାତ୍ମାଗଣ ସର୍ବଦା ହରିଙ୍କର ଗୁଣ
କୀର୍ତ୍ତନ କରନ୍ତି ସଂସାରେ ତାହା ମାନବର କର୍ଣ୍ଣରେ

ପ୍ରବେଶ କରି ତତକ୍ଷଣ ଜନମ ମରଣ କାରଣ
ଗୃହାସକ୍ତି କରେ ଛେଦନ ଗୁଣ ମହିମାତ ଅସୀମ
ଦ୍ୱୈପାୟନ ଯେ ମୁନିବର ଯେ ସଖା ଅଟନ୍ତି ତୁମର
ଶ୍ରୀକୃଷ୍ଣଙ୍କର ଗୁଣଗାନ ମହାଭାରତ ପ୍ରଣୟନ

କଲେ କୃଷ୍ଣ ଲୀଳା କୀର୍ତ୍ତନ ହୋଇଲେ ଆନନ୍ଦିତ ମନ
ବିଷୟ ସୁଖାଦି ଏଥିରେ ଉଲ୍ଲେଖ କରି ତନ୍ମଧରେ
ମନୁଷ୍ୟ ମାନଙ୍କର ମନ ମୋହିବାକୁ କଲେ ପ୍ରଯତ୍ନ
ପରାଶର ଋଷି ନନ୍ଦନ ସେତ ଦ୍ୱିଭୁଜ ଭଗବାନ

ଶ୍ରଦ୍ଧାଳୁ ପୁରୁଷ ହୃଦରେ ଭବତ୍‌ଲୀଳା ବିଷୟରେ
ଯେବେବେଳେ ସୁରୁଚି ବଢ଼ଇ ବିଷୟ ବିରକ୍ତି ଜନ୍ମଇ
ସଦା ଭାଗବତ ଚିନ୍ତନ କରି ଆନନ୍ଦେ ହୁଏ ମଗ୍ନ
ହରି ସର୍ବଦୁଃଖ ହରିଣ ଦିଅନ୍ତି ଶ୍ରୀଚରଣେ ସ୍ଥାନ

ପୂର୍ବଜନ୍ମ ପୁଣ୍ୟ ଫଳରେ ରୁଚି ଜନ୍ମଇ ହରିକଥାରେ
ଯେ ଦେହ ମନ ବନରେ ମଜ୍ଜଇ ବାଦ ବିବାଦରେ
ସେ ଆଜ୍ଞା ଜନଙ୍କର କଥା ଭାବି ମୋ ହୃଦେ ଜାଗେ ବ୍ୟଥା
ଭ୍ରମର ପୁଷ୍ପରୁ ଯେପରି ମଧୁ ସଂଗ୍ରହ ଥାଏ କରି

ହେ ମୁନି ସେପରି ଆପଣ ବିଶ୍ୱର ମଙ୍ଗଳ କାରଣ
ଶ୍ରୀହରି ଲୀଳା ସାରତତ୍ତ୍ୱ ପ୍ରକାଶି ତୋଷନ୍ତୁ ମୋ ଚିତ୍ତ
ଶ୍ରୀ ଭଗବାନ ସର୍ବେଶ୍ୱର ଏହି ନଶ୍ୱର ସଂସାରର
ଉତ୍‌ପତ୍ତି ସଂହାର ପାଳନ କରିଣ ଥାନ୍ତି ପୁନ ପୁନ

ନିଜସ୍ୱ ମାୟା ଶକ୍ତି ଆଶ୍ରୟରେ ଭିନ୍ନ ଭିନ୍ନ ଅବତାରରେ
ଯେ ଆଲୌକିକ ଲୀଳାମାନ ସଦୟେ କରନ୍ତୁ ବର୍ଣ୍ଣନ

### ଶ୍ରୀଶୁକ ଉବାଚ

କହିଲେ ଶୁକ ମୁନିବର କଲ୍ୟାଣ ନିମିତ୍ତ ଜୀବର
ବିଦୁର ଯାସବୁ ପୁଛିଲେ ମୈତ୍ରେୟ ସେସବୁ କହିଲେ

### ମୈତ୍ରେୟ ଉବାଚ

ବୋଲେ ମୈତ୍ରେୟ ମୁନିବର ଶୁଣ ଆହେ ସାଧୁ ବିଦୁର
ସର୍ବଦା ଆପଣଙ୍କ ଚିତ୍ତ କୃଷ୍ଣ ପ୍ରେମରେ ନିମଜ୍ଜିତ
ଅନୁଗ୍ରହରେ ଜୀବପ୍ରତି ଉତ୍ତମ ପ୍ରଶ୍ନ ପୁଛିଛନ୍ତି
ବିସ୍ତାରି କୃଷ୍ଣଲୀଳା କୀର୍ତ୍ତି ସଂସାରେ ଅର୍ଜିଛ ସୁଖ୍ୟାତି

ଆପଣ ବ୍ୟାସ ବୀର୍ଯ୍ୟଜାତ ଅନନ୍ୟ ଭାବେ କୃଷ୍ଣାଶ୍ରିତ
ଏହା ଆପଣଙ୍କ ପକ୍ଷରେ ବିଚିତ୍ର ନୁହଁଇ ସଂସାରେ
ପ୍ରଜା ମାନଙ୍କ ଦଣ୍ଡଦାତା ତୁମେ ସ୍ୱୟଂ ଯମଦେବତା
ମାଣ୍ଡବ୍ୟଙ୍କ ଅଭିଶାପରେ ସ୍ଥାନଚ୍ୟୁତ ହୋଇ ମର୍ତ୍ତ୍ୟରେ

ସତ୍ୟବତୀଙ୍କର କୁମାର ରାଜା ବିଚିତ୍ର ବୀର୍ଯ୍ୟଙ୍କର
ଦାସୀ ଭୂଜିଷ୍ୟାଙ୍କ ଗର୍ଭରେ ଜାତ ବ୍ୟାସଦେବ ବୀର୍ଯ୍ୟରେ
ଭକତ ତଥା ଭଗବାନ ପ୍ରିୟ ଅତିଶୟ ଆପଣ
ଭଗବାନ ନିଜ ଧାମକୁ ଯିବା ସମୟେ ଆପଣଙ୍କୁ

ଜ୍ଞାନୋପଦେଶ ଦେବା ପାଇଁ ମତେ ଆଦେଶ ଛନ୍ତି ଦେଇ
ଜଗତ ସ୍ଥିତି ଉତପତ୍ତି ସଂହାର ପାଇଁ ବିଶ୍ୱପତି
ଯୋଗ ମାୟାର ଆଶ୍ରୟରେ ଅବତରି ଧରା ଧାମରେ
କରନ୍ତି ଯେଭଳି କରମ ମୁଁ ତାହା କରୁଛି ବର୍ଣ୍ଣନ

ଆହେ ବିଦୁର ଏବେ ଶୁଣ ହରିଙ୍କ ଲୀଳା ତ ଅସୀମ
ସକଳ ଆତ୍ମାଙ୍କର ଆତ୍ମା କେବଳ ଏକ ପରମାତ୍ମା
ଏ ବିଶ୍ୱ ରଚନା ପୂର୍ବରେ ସର୍ବାତ୍ମାର ଆତ୍ମା ରୂପରେ
ଏକଇ ପରମାତ୍ମା ଥିଲେ ନାହିଁ ଦ୍ରଷ୍ଟା ଦୃଶ୍ୟ ସେବେଳେ

ସୃଷ୍ଟିକାଳେ ଯେଉଁ ବିଭିନ୍ନ ଦୃଶ୍ୟ ବୃତ୍ତିରେ ଭେଦମାନ
ସେଗୁଡ଼ିକ ଐଶୀ ଇଚ୍ଛାରେ ବିଲୀନ ଥିଲା ତାଙ୍କଠାରେ
ସେତ ଏକାକୀ ସେ ବେଳରେ ରହିବାକୁ ଇଚ୍ଛା କରିଲେ
ସେ ଦ୍ରଷ୍ଟା ହୋଇଣ ଚାହିଁଲେ ମାତ୍ର ଦୃଶ୍ୟ ନହିଁ ସେ ବେଳେ

ସେ ଅଜୟ ବିରାଟ ରୂପରେ ପ୍ରକାଶିତ ଥିଲେ ସେବେଳେ
କେବଳ ସେହି ସତ୍ୟ ଥିଲେ ନିଜକୁ ଅସତ୍ୟ ମଣିଲେ

ତା ମାୟା ଶକ୍ତି ଥିଲା ସୁପ୍ତ ଦୃଷ୍ଟଶକ୍ତି ଥିଲା ଜାଗ୍ରତ
ଦ୍ରଷ୍ଟା ଦୃଶ୍ୟ ଅନୁସନ୍ଧିନୀ କାର୍ଯ୍ୟ କାରଣ ସ୍ୱରୂପିଣୀ

ଶକତି ଯେ ମାୟା ଅଟଇ ଶୁଣ ବିଦୁର ମନଦେଇ
ସଦ ସଦାତ୍ମିକା ମାୟାରେ ଭଗବାନ ବିଶ୍ୱ ସୃଜନରେ
ଗୁଣମୟୀ ମାୟା ଯେବେଳେ ବିକ୍ଷୋଭିତ କାଳ ଶକ୍ତିରେ
ସେବେଳେ ଅତୀତ ଇନ୍ଦ୍ରିୟ ସେହି ପରମାତ୍ମା ଚିନ୍ମୟ

ପୁରୁଷ ରୂପରେ ତହିଁରେ ଚିଦାଭାସ ବୀଜ ସ୍ଥାପିଲେ
କାଳ ଶକ୍ତିରେ ବିକ୍ଷୋଭିତ ମାୟାରୁ ମହତତ୍ତ୍ୱ ଜାତ
ଏ ମହତ ସତ୍ତ୍ୱ ପ୍ରଧାନ ବିଜ୍ଞାନାତ୍ମା ଏହାର ନାମ
ବୀଜୁ ଅଙ୍କୁର ଜାତ ହୋଇ ଯେପରି ବୃକ୍ଷ ପ୍ରକାଶଇ

ସେ ବିଜ୍ଞାନ ଆତ୍ମା ସେପରି ଅଜ୍ଞାନ ତମ ନାଶ କରି
ବିଶ୍ୱକୁ ପ୍ରକାଶିତ କରେ ବିଶ୍ୱର ପ୍ରପଞ୍ଚ ଏଥିରେ
ରହିଥାଏ ସୂକ୍ଷ୍ମ ରୂପରେ ବିଦୁର ଶୁଣ ମନସ୍ଥିରେ
ଚିଦାଭାସ ପୁଣ କାଳର ଅଧ୍ୟକ୍ଷ ସେ ପରମେଶ୍ୱର

ମହତତ୍ତ୍ୱରେ ଦୃଷ୍ଟିପାତ କରିବାରୁ ସୃଷ୍ଟି ନିମିତ୍ତ।
ତାହା ଅନ୍ୟରୂପ ଧାରଣ ଶୁଣହେ ବିଦୁର ଧୀମାନ
ସେହି ବିକୃତ ମହତତ୍ତ୍ୱ ମଧ୍ୟରୁ ଅହଂକାର ଜାତ
କାର୍ଯ୍ୟ କାରଣ ଓ କର୍ତ୍ତାର ଆଶ୍ରୟ ଏହି ଅହଂକାର

ଅହଂକାର ବିକୃତ ହୋଇ ଭୂତେନ୍ଦ୍ରିୟ ମନ ସୃଜଇ
ମନ ଅହଂକାର ଯେ ଏକ ତୈଜସ ତାମସ ସାତ୍ତ୍ୱିକ
ଏ ତିନିଭାଗରେ ବିଭକ୍ତ ସାତ୍ତ୍ୱିକାହଂକାର ବିକୃତ
ଯେମାନେ ହୋଇଥାନ୍ତି ଜାତ ଶୁଣ ହୋଇଣ ଏକଚିତ୍ତ

ଏମାନେ ଇନ୍ଦ୍ରିୟେଶ ଅଟନ୍ତି ଶବ୍ଦାଦି ପ୍ରକାଶ କରନ୍ତି
ତୈଜସୁ ଜ୍ଞାନ କର୍ମେନ୍ଦ୍ରିୟ ତାମସୁ ତନ୍ମାତ୍ରା ସମୂହ
ଶବଦୁ ଜନ୍ମ ଆକାଶରେ ଏହା ବ୍ରହ୍ମଙ୍କର ଶରୀର
ଈଶ୍ୱରଙ୍କ ଦୃଷ୍ଟିପାତରେ କାଳମାୟା ଅଂଶ ଯୋଗରେ

ନଭୁ ସ୍ପର୍ଶ ତନ୍ମାତ୍ରା ଜାତ ଏ ସ୍ପର୍ଶ ତନ୍ମାତ୍ରା ବିକୃତ
ହେବାରୁ ବାୟୁ ହେଲା ଜାତ ପବନ ଅତି ବଳବନ୍ତ
ଆକାଶ ସହିତ ବିକୃତ ରୂପ ତନ୍ମାତ୍ରା ବିରଚିତ
ତହିଁରୁ ତେଜ ହେଲା ଜାତ ଶୁଣ ହୋଇ ଏକ ଚିତ୍ତ

ପବନ ଅତି ବଳବନ୍ତ ଆକାଶ ସହିତ ବିକୃତ
ରୂପ ତନ୍ମାତ୍ରା ବିରଚିତ ତହିଁରୁ ତେଜ ହେଲା ଜାତ
ଏ ତେଜ ଲୋକର ଲୋଚନ କରେ ସକଳ ପ୍ରକାଶନ
କରନ୍ତେ ବ୍ରହ୍ମ ଦୃଷ୍ଟିପାତ ବାୟୁରେ ତେଜ ହୋଇଯୁକ୍ତ

କାଳମାୟା ଅଂଶ ଯୋଗରେ ବିକୃତ ହୋଇଯିବା ପରେ
ରସ ତିନ୍ମାତ୍ରା ସୃଷ୍ଟିକଲା ତହିଁରୁ ଜଳ ଜନମିଲା
ଜଳ ତେଜରେ ହୋଇ ଯୁକ୍ତ ବ୍ରହ୍ମ କରନ୍ତେ ଦୃଷ୍ଟିପାତ
କାଳ ମାୟାଂଶରେ ବିକୃତ ଗନ୍ଧ ତନ୍ମାତ୍ରା କଲା ଜାତ

ପୃଥିବୀ ପ୍ରକୃତି ପୂର୍ବୋକ୍ତ ତହୁଁ ପୃଥିବୀ ପ୍ରକଟିତ
ପୂର୍ବୋକ୍ତ ପୃଥିବୀ ପ୍ରକୃତି ତତ୍ତ୍ୱ ମଧରେ ପରବର୍ତ୍ତୀ
ତତ୍ତ୍ୱର ହୁଏ ଗୁଣ ପ୍ରାପ୍ତ ଶବଦ ଗୁଣ ଏକମାତ୍ର
ଶବ୍ଦସ୍ପର୍ଶ ରହେ ବାୟୁରେ ଶବ୍ଦସ୍ପର୍ଶ ରୂପ ତେଜରେ

ଶବଦ ସ୍ପର୍ଶ ରୂପ ରସ ଜଳରେ କରିଥାନ୍ତି ବାସ
ଜଳରେ କରିଥାନ୍ତି ବାସ ଗନ୍ଧଗୁଣ ପୃଥ୍ୱୀ ନିବାସ
ଏ ଅନ୍ତେ ଶୁଣ ଆନରସ ଦେବତା ଈଶ୍ୱରଙ୍କ ଅଂଶ
ଇଚ୍ଛାଶକ୍ତି ଚିହ୍ନ ବିକାର ବିକ୍ଷେପ ଯେ ଚିହ୍ନ ମାୟାର

ଚିଦାଭାସ ଶକ୍ତିର ଚିହ୍ନ ଚେତନା ଥାଏ ବିଦ୍ୟମାନ
ମାତ୍ର ସେମାନେ ସ୍ୱପ୍ରଧାନ କରିବାରୁ ଭିନ୍ନାବସ୍ଥାନ
ବିଶ୍ୱ ନିର୍ମାଣରେ ଅକ୍ଷମ ଯୋଡ଼ି ହସ୍ତ ଶ୍ରୀ ଭଗବାନ
ଚରଣେ କରିଲେ ପ୍ରାର୍ଥନା ଶୁଣ ବିଦୁର ମହାମନା ।

**ଦେବା ଉଚୁଃ**

ଦେବତା ଗଣ କଲେ ସ୍ତୁତି ଶୁଣହେ ପ୍ରଭୁ ବିଶ୍ୱପତି
ଚରଣ କମଳରେ ତୋର ଆମ୍ଭେ କରୁଛୁ ନମସ୍କାର
ଶରଣ୍ୟ ତାପ ନିବାରଣ ଛତ୍ର ସମାନ ଯେ ଆପଣ
ଆପଣଙ୍କର ଆଶ୍ରୟରେ ଯତି ମୁନି ଏ ସଂସାରରେ

ସହଜରେ ଭବଦୁଃଖକୁ ନିକ୍ଷେପ କରନ୍ତି ଦୂରକୁ
ହେ ଭାଗ୍ୟବିଧାତା ଈଶ୍ୱର ଘେନନ୍ତୁ ଆମ ନମସ୍କାର
ଜୀବଗଣ ଏ ସଂସାରରେ ଦଗ୍ଧ ତ୍ରିତାପ ଅନଳରେ
ଦୁଃଖ ଶୋକେ କାଳ ଯାପନ୍ତି ତାଙ୍କୁ ନମିଳେ ତିଳେ ଶାନ୍ତି

ଆପଣଙ୍କ ଶ୍ରୀ ଚରଣରେ ଜ୍ଞାନମୟୀ ଛତ୍ର ଛାୟାରେ
ଆମ୍ଭେ ନେଉଅଛୁ ଶରଣ ରକ୍ଷା କର ହେ ନାରାୟଣ ।
ମୁନିଏ ନିଃସଙ୍ଗ ମନରେ ତବ ମୁଖ ବେଦ ମନ୍ତ୍ରରେ
ତୁମର ଯେଉଁ ଶ୍ରୀଚରଣ ସଦା କରି ଅନୁସରଣ

ସକଳ ପାପ ବିନାଶିନୀ ନଦୀ ମାନଙ୍କ ଶିରୋମଣି ।
ଗଙ୍ଗା ଯେଉଁଥିରୁ ଜନମ ତୋର ସେ ପରମ ପାବନ
ପାଦପଦ୍ମରେ ଥାପି ମନ ଲଭନ୍ତି ବଇକୁଣ୍ଠ ଧାମ
ଆପଣଙ୍କ ପଦ୍ମ ଚରଣ ପୀଠକୁ ସାଧୁ ଭକ୍ତଗଣ

ଶ୍ରଦ୍ଧାରେ ଶ୍ରବଣ କୀର୍ତ୍ତନ ଭକ୍ତିରେ କରି ଆବାହନ
ବିଶୁଦ୍ଧ ଅନ୍ତ କରଣରେ ଧାରଣ କରି ନିରନ୍ତରେ
ସଂସାରୁ ବୈରାଗ୍ୟ ହୁଅନ୍ତି ପରମ ସୁଧାର ବୋଲାନ୍ତି
ସେ ପଦ୍ମଚରଣ ପୀଠରେ ଆମକୁ ସ୍ଥାନ ଦିଅ ବାରେ

ହେ ଜଗଦୀଶ ଦାମୋଦର ଆପଣ ଏହି ସଂସାରର
ଜନମ ପାଳନ ସଂହାର ପାଇଁ ହୁଅନ୍ତି ଅବତାର
ଯେ ଚରଣ କରି ସ୍ମରଣ ଅଭୟ ଲଭେ ଭକ୍ତଗଣ
ହେ ଦୀନବନ୍ଧୁ ନାରାୟଣ ସେ ଚରଣେ ଦିଅ ଶରଣ

ଆମେ ଆପଣଙ୍କର ଚରଣ ସର୍ବଦା କରୁଛୁ ଭଜନ
ତୁଚ୍ଛ ଦେହାଦି ବିଷୟରେ ମମତା ଥାଏ ଯା ହୃଦରେ
ତୁମ୍ଭେ ସେ ପୁରୁଷ ଦେହରେ ଥାଅ ଅନ୍ତର୍ଯ୍ୟାମୀ ରୂପରେ
ମାତ୍ର ଆପଣ ପ୍ରକୃତରେ ତାଠାରୁ ଥାନ୍ତି ବହୁ ଦୂରେ

ଯେ ଭକ୍ତ ତୋ ଲୀଳା ସ୍ମରଣ କରେ କୃତାର୍ଥ ତା ଜୀବନ
ଯା ଚିତ୍ତ ଇନ୍ଦ୍ରିୟ ଅଧୀନ ସେ ନଲଭେ ତୋର ଦର୍ଶନ
ସାଧୁ ସଙ୍ଗତି ଅଭାବରେ ସେହି ମାନଙ୍କ ଜୀବନରେ
ଶ୍ରୀହରି କଥା ଶ୍ରୁତି ପାଇଁ ସୌଭାଗ୍ୟ କେବେ ଆସେ ନାହିଁ

ସେମାନଙ୍କ ହୃଦେ ଆପଣ କରିଥିଲେ ବି ଅବସ୍ଥାନ
ସେ ନର ପାପାତ୍ମା କୁତ୍ସିତ ତୋ ପାଦ ଲାଭରୁ ବଞ୍ଚିତ
ପିଅଇତାହା ଭକତି ବଢ଼ଇ ତାକୁ ତତ୍ତ୍ୱଜ୍ଞାନ ମିଳଇ
କେହି ଧୀର ବ୍ୟକ୍ତି ସଂସାରରେ ଚିତ୍ତ ନିରୋଧ ସମାଧିରେ

ବଳିଷ୍ଠ ମାୟାକୁ ଜିଣନ୍ତି ତୋଠାରେ ପ୍ରବେଶ କରନ୍ତି
ବହୁଶ୍ରମ ଯୋଗ ପଥରେ ଶ୍ରମ କଷ୍ଟନାହିଁ ସେବାରେ
ଏ ସୃଷ୍ଟି ରଚନା ଇଚ୍ଛାରେ ଆପଣ ତ୍ରିଗୁଣା ମାୟାରେ
ଆମକୁ କରିଛ ସର୍ଜନ ଆମ ସ୍ୱଭାବ ଭିନ୍ନଭିନ୍ନ

ନାହିଁ ପରସ୍ପର ମିଳନ ହେ ପ୍ରଭୋ ପତିତ ପାବନ
ତବ କ୍ରୀଡା ଉପକରଣ ବ୍ରହ୍ମାଣ୍ଡ କୁ କଲ ରଚନ
ତୁମ୍ଭଙ୍କୁ ସମର୍ପଣ ପାଇଁ ଆମ୍ଭର ସାମର୍ଥ୍ୟ ଯେ ନାହିଁ ।
ଆହେ ଅବ୍ୟୟ ଭଗବାନ ନିତ୍ୟ ଅବ୍ୟକ୍ତ ସନାତନ

ଆମ୍ଭେମାନେ ଯେ ଯେଉଁପରି ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି କରି
ସକଳ ଭୋଗ୍ୟ ବସ୍ତୁମାନ କରିପାରିବୁ ସମର୍ପଣ ।
ନିଜ ଯୋଗ୍ୟତା ଅନୁସାରେ ଅବସ୍ଥାନ କରି ସୁଖରେ
ଅନ୍ନ ଗ୍ରହଣେ ହେବୁକ୍ଷମ ଯେଉଁ ଭାବରେ ଜୀବଗଣ

ନିଜ ନିଜ ଭୋଜ୍ୟ ଅନ୍ନକୁ ଆପଣଙ୍କୁ ପୁଣି ଆମକୁ
ପ୍ରଥମେ କରି ସମର୍ପଣ କରିବେ ଆନନ୍ଦେ ଭୋଜନ
ସେପରି କୌଣସି ଉପାୟ କରନ୍ତୁ ଆହେ ଦୟାମୟ
ହେ ଦେବ ପୁରୁଷ ପୁରାଣ ନିର୍ବିକାର କାର୍ଯ୍ୟ କାରଣ

ଆଦି ଦେବତା ନିରଞ୍ଜନ ତ୍ରିଗୁଣ ଜନ୍ମ ଆଦି କର୍ମ
କାରଣ ମାୟାରେ ଆଦ୍ୟରେ ଚିଦାଭାସ ବୀର୍ଯ୍ୟ ସ୍ଥାପିଲେ
ହେ ପରାତ୍ମା ଭଗବାନ ମହତତ୍ତ୍ୱାଦି ଦେବଗଣ
ଆମେ ଯେ କାର୍ଯ୍ୟ ପାଇଁ ଜନ୍ମ କରିବା ପାଇଁ ସେହି କର୍ମ

ବ୍ରହ୍ମାଣ୍ଡ ରଚନା ନିମିତ୍ତ କ୍ରିୟାତ୍ମିକା ଶକ୍ତି ସହିତ
ଜ୍ଞାନ ଶକ୍ତି କର ପ୍ରଦାନ ହେ ମହା ପ୍ରଭୁ ଭଗବାନ
ଦୟା ନକରିଲେ ହେ ପ୍ରଭୁ କେଉଁପରି ସୃଷ୍ଟି ରଚିବୁ ।

ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାସଂହିତୟା ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ମୈତ୍ରେୟ ବିଦୁର ସମ୍ବାଦେ ନାମ ପଞ୍ଚମୋଽଧ୍ୟାୟ ।

*******

## ଷଷ୍ଠ ଅଧ୍ୟାୟଃ

### ଋଷିରୁବାଚ

ତହୁଁ ମୈତ୍ରେୟ ଋଷିବର କହିଲେ ଶୁଣହେ ବିଦୁର
ଈଶ୍ୱର ସର୍ବଶକ୍ତିମାନ ଯେବେଳେ କରିଲେ ଦର୍ଶନ
ମହତ୍ୱଆଦି ଶକ୍ତିତତ୍ତ୍ୱ ପରସ୍ପର ନୋହି ମିଳିତ ।
ପ୍ରବେଶ କରି ତା ମଧ୍ୟରେ ନିଜକ୍ରିୟା ଶକ୍ତି ବଳରେ

ପୃଥକ ଭାବେ ଅବସ୍ଥିତ ତତ୍ତ୍ୱ ପରସ୍ପର ସହିତ
ମିଳାଦେଲେ ଜଗନ୍ନାଥ ଜୀବମାନଙ୍କର ପ୍ରସୁପ୍ତ
ଅଦୃଷ୍ଟକୁ କଲେ ଜାଗ୍ରତ ଶୁଣ ବିଦୁର ଦେଇ ଚିତ୍ତ
ଈଶ୍ୱରଙ୍କ କ୍ରିୟା ଶକ୍ତିରେ ପ୍ରବୃତ୍ତ ହୋଇଲେ କର୍ମରେ

ଭଗବାନଙ୍କ ପ୍ରେରଣାରେ ନିଜର ନିଜର ଅଂଶରେ
ସେହି ତେରଶିଗୋଟି ତତ୍ତ୍ୱ ବିରାଟ ଦେହ କଲେ ଜାତ
ଈଶ୍ୱରଙ୍କ ଅଂଶ ପ୍ରବେଶ କରିବା ହେତୁ ଏହି ବିଶ୍ୱ
ରଚନାକାରୀ ମହତତ୍ତ୍ୱ ପ୍ରଭୃତି ହୋଇ ଏକତ୍ରିତ

ହୋଇଲେ ପରିଣାମ ପ୍ରାପ୍ତ ସୃଷ୍ଟିର ସର୍ଜନା ନିମିତ୍ତ
ତତ୍ତ୍ୱମାନଙ୍କ ପରିଣାମ ବିରାଟ ପୁରୁଷ ଯା ନାମ
ତହିଁରେ ସ୍ଥାବର ଜଙ୍ଗମ ପ୍ରାଣୀଏ ସଦା ବିଦ୍ୟମାନ
ସେହି ହରିଣ୍ମୟ ପୁରୁଷ ପର୍ଯ୍ୟନ୍ତ ସହସ୍ର ବରଷ

ସୁପ୍ତ ଜୀବସତ୍ତା ସଙ୍ଗରେ ବ୍ରହ୍ମାଣ୍ଡ ମଧ୍ୟସ୍ଥ ଜଳରେ
ବାସ କରିବାକୁ ଲାଗିଲେ ନାରାୟଣ ନାମ ବହିଲେ
ବିଶ୍ୱ ରଚନା କାରୀ ଗର୍ଭ ବିରାଟ ଦେହ କାର୍ଯ୍ୟରୂପ
ଜୈବିଶକ୍ତି କର୍ମ ଶକ୍ତିରେ ଆତ୍ମଶକ୍ତିରେ ଯୁକ୍ତ ଥିଲେ

ସେହି ଶକ୍ତିର ସାହାଯ୍ୟରେ ନିଜେ ନିଜେକୁ ଧୀରେ ଧୀରେ
ଏକ ଚୈତନ୍ୟ ସ୍ୱରୂପରେ ଦଶବିଧ ପ୍ରାଣ ରୂପରେ
ଆଧ୍ୟାତ୍ମିକାଦି ତ୍ରିଭାଗରେ କ୍ରମଶ ବିଭକ୍ତ କରିଲେ
ଏ ଜୀବ ବିରାଟ ପୁରୁଷ ଅଟଇ ପରମାତ୍ମା ଅଂଶ

ଆତ୍ମା ସମସ୍ତ ଜୀବଙ୍କର ସେ ମଧ୍ୟ ଭଗବାନଙ୍କର
ଅଟଇ ଆଦି ଅବତାର ସାବଧାନେ ଶୁଣ ବିଦୁର
ସବର୍ଣ୍ଣ ବିଶ୍ୱ ଭୂତଗଣ ତା'ଠାରୁ ପ୍ରକାଶିତ ଜାଣ
ବିରାଟ ଦେହ ଅଧିଭୂତ ଆଧାତ୍ମ ଅଧିହୈବ ତତ୍ତ୍ୱ

ସ୍ୱରୂପେ ତ୍ରିପ୍ରକାର ନାମ ପ୍ରାଣପାନ ସମାନ ବ୍ୟାନ
ଉଦାନ ନାଗକୁ କୂର୍ମ କର ଧନଞ୍ଜୟ ପୁଣା ଦେବଦତ୍ତ
ଦଶ ପ୍ରାଣ ରୂପେ ବିଭକ୍ତ ସେ ପୁଣି ହୃଦୟ ରୂପରେ
ଏକଇ ପ୍ରକାର ହୋଇଲେ ଶୁଣ ସକଳ ଚିତ୍ତ ସ୍ଥିରେ

ମହତତ୍ତ୍ୱାଦିର ବୃତ୍ତିକୁ ଜାଗରିତ ଯେ କରିବାକୁ
ଭଗବାନ ବିଶ୍ୱ ଅଧିପ ନିଜର ଚୈତନ୍ୟ ସ୍ୱରୂପ
ପ୍ରଦୀପ୍ତ ତେଜ ପ୍ରଭାବରେ ବିରାଟ କୁ ଜାଗ୍ରତ କଲେ
ବିରାଟ ପୁରୁଷ ଜାଗ୍ରତ ହେବାରୁ ଦେବଙ୍କ ନିମିତ୍ତ

ପ୍ରକାଶ ହେଲା କେତେ ସ୍ଥାନ ତାହା ମୁଁ କହୁଅଛି ଶୁଣ ।
ମୁଖ୍ୟ ପ୍ରକାଶ ପ୍ରଥମରେ ଲୋକପାଳ ଅଗ୍ନି ତହିଁରେ
ସ୍ୱାଂଶ ବାଗିନ୍ଦ୍ରିୟ ସଂଗରେ ପ୍ରବେଶ କରିଲେ ସେଠାରେ
ଏ ବାଗିନ୍ଦ୍ରିୟ ସାହାଯ୍ୟରେ ଜୀବ ଯେ କଥା ବାର୍ତ୍ତା କରେ

ବିରାଟଙ୍କର ତାଳୁ ଜନ୍ମ ଯହିଁ ଲୋକପାଳ ବରୁଣ
ନିଜ ଅଂଶ ଜିହ୍ୱା ସଙ୍ଗରେ ପ୍ରବେଶ କରିଣ ରହିଲେ
ଜୀବ ଏ ଜିହ୍ୱା ସାହାଯ୍ୟରେ ଷଡରସ ଗ୍ରହଣ କରେ ।
ନାସା ପ୍ରକଟ ଏହାପରେ ଅଶ୍ୱିନୀ କୁମାର ତହିଁରେ

ନିଜାଂଶ ଘ୍ରାଣେନ୍ଦ୍ରିୟ ଘେନି ପ୍ରବେଶ କରିଲେ ତକ୍ଷଣି
ଜୀବ ଏହାର ସାହାଯ୍ୟରେ ଗନ୍ଧକୁ ଗ୍ରହଣ ଯେ କରେ
ପ୍ରକାଶିତ ହେଲା ନୟନ ତହିଁ ଲୋକପତି ତପନ
ସ୍ୱାଂଶନେ ନେତ୍ରେନ୍ଦ୍ରିୟ ସଙ୍ଗରେ ପ୍ରବେଶ କରିଣ ରହିଲେ

ଜୀବ ଏ ନେତ୍ର ଇନ୍ଦ୍ରିୟରେ ବିଭିନ୍ନ ରୂପ ଦେଖି ପାରେ
ତା'ପରେ ଉପୁଜିଲା ଚର୍ମ ଏଥିରେ ଦେବତା ପବନ
ସ୍ୱାଂଶ ତ୍ୱଗିନ୍ଦ୍ରିୟ ସଙ୍ଗରେ ପ୍ରବେଶ କରିଲେ ସତ୍ତ୍ୱରେ
ଜୀବ ଏ ତ୍ୱଚା ଇନ୍ଦ୍ରିୟରେ ସ୍ପର୍ଶକୁ ଗ୍ରହଣ ଯେ କରେ

କର୍ଣ୍ଣ ପ୍ରକାଶ ଯେ ବେଳରେ ଦିଗ ଦେବଗଣ ସେଥିରେ
ନିଜ ନିଜ ଅଂଶ ସଙ୍ଗରେ ପ୍ରବେଶ କରିଣ ରହିଲେ
ଜୀବ ଏ ଶ୍ରବଣେନ୍ଦ୍ରିୟରେ ଶବ୍ଦକୁ ଗ୍ରହଣ ଯେ କରେ
ବିରାଟ ଶରୀରରେ ପୁନ ଚର୍ମ ହୋଇଲା ଉତ୍ପନ୍ନ

ଔଷଧମାନେ ନିଜ ଅଂଶ ରୋମ ସହ କଲେ ପ୍ରବେଶ
ଏହି ରୋମରେ ଜୀବଗଣ ଅନୁଭବନ୍ତି କଣ୍ଡୁୟନ ।
ପୁଣି ଲିଙ୍ଗହେଲା ଉତ୍ପତ୍ତି ସେଥିରେ ଦେବ ପ୍ରଜାପତି
ନିଜ ଅଂଶ ବୀର୍ଯ୍ୟ ସଙ୍ଗରେ ପ୍ରବେଶ କରିଣ ରହିଲେ

ଏ ଲିଙ୍ଗ ସାହାଯ୍ୟରେ ଜୀବ ଆନନ୍ଦ କରେ ଅନୁଭବ ।
ଏ ଅନ୍ତେ ବିରାଟ ପୁରୁଷର ପ୍ରକାଶ ହେଲା ମଳଦ୍ୱାର
ସେ ସ୍ଥାନରେ ଦେବତା ମିତ୍ର ବାୟୁ ଇନ୍ଦ୍ରିୟର ସହିତ
ପ୍ରବେଶ କରିଲେ ସତ୍ତ୍ୱରେ ଜୀବ ଯେ ମଳତ୍ୟାଗ କରେ

ହସ୍ତ ପ୍ରକାଶ ଏହାପରେ ଦେବରାଜ ଇନ୍ଦ୍ର ତହିଁରେ
ଗ୍ରହଣ ତ୍ୟାଗ ଶକ୍ତି ସଙ୍ଗେ ପ୍ରବେଶ କରିଥିଲେ ରଙ୍ଗେ
ଏହା ସାହାଯ୍ୟେ ଜୀବଗଣ ଜୀବିକା କରନ୍ତି ସାଧନ ।
ପ୍ରକାଶ ପାଇଲା ଚରଣ ସ୍ୱୟଂ ଲୋକେଶ ନାରାୟଣ

ନିଜ ଗତି ଶକ୍ତି ସଙ୍ଗରେ ପ୍ରବେଶ କରିଲେ ଏଥିରେ
ଏ ଗତି ଶକ୍ତି ସାହାଯ୍ୟରେ ଗମନାଗମ ଜୀବ କରେ
ବୁଦ୍ଧି ଉତ୍ପନ୍ନ ହେଲା ପୁନ ବାକ୍ଶକ୍ତି ଚତୁର ଆନନ
ବୁଦ୍ଧିଶକ୍ତି ସହ ସେଥିରେ ପ୍ରବେଶ କରି ବାସକଲେ

ଜୀବ ଏ ବୁଦ୍ଧି ଶକ୍ତି ଘେନି ସର୍ବ ବିଷୟ ପାରେ ଜାଣି
ହୃଦୟ ହୋଇଲା ପ୍ରକାଶ ତହିଁ ଦେବତା ନକ୍ଷତ୍ରେଶ
ନିଜ ଅଂଶ ମନ ସଙ୍ଗରେ ପ୍ରବେଶ କରିଣ ରହିଲେ
ଜୀବ ଏହି ମନ ଶକ୍ତିରେ ସଙ୍କଳ୍ପ ବିକଳ୍ପନା କରେ

ଏ ଅନ୍ତେ ବିରାଟ ପୁରୁଷର ପ୍ରକଟ ହେଲା ଅହଂକାର
ନିଜ କ୍ରିୟା ଶକ୍ତି ସହିତ ପ୍ରବେଶିଲେ ରୁଦ୍ର ଦୈବତ
ଜୀବ ଏହି ଅହଂକାରରେ ସ୍ୱକର୍ତ୍ତବ୍ୟ ସ୍ୱିକାର କରେ
ତହୁଁ ପ୍ରକାଶ ହେଲା ଚିତ୍ତ ବିଧାତା ଚିତ୍ଶକ୍ତି ସହିତ

ସେଠାରେ ହେଲେ ଉପସ୍ଥିତ ଶୁଣ ହୋଇଣ ଏକ ଚିତ୍ତ
ଜୀବ ଏହି ଚିତ୍ତ ଶକ୍ତିରେ ଚେତନା ଉପଲବ୍ଧି କରେ
ଶିର ପ୍ରଦେଶ ସ୍ୱର୍ଗ ଲୋକ ନାଭିରୁ ଜାତ ଅନ୍ତରୀକ୍ଷ
ଚରଣୁ ପୃଥିବୀ ଜନମ କ୍ରମରେ ସତ୍ୱ ରଜ ତମ

ପୁଣି ତାହାଙ୍କ ପରିଣାମ ସ୍ୱରୂପ ଦେବ ନରଗଣ
ଏ ଅନ୍ତେ ଗୁହ୍ୟ ଭୂତ ପ୍ରେତ ବୃତ୍ତିମାନ ହେଲା ପ୍ରତୀତ
ସତ୍ୱଗୁଣରେ ଆଧିକ୍ୟରେ ଦେବତା ସ୍ୱର୍ଗେ ବାସକଲେ
ଆଧିକ୍ୟ ହେତୁ ରଜଗୁଣ ନର ଗବାଦି ପଶୁଗଣ

ରହିଲେ ପୃଥିବୀ ମଧ୍ୟରେ ତମୋଗୁଣର ପ୍ରଭାବରେ
ବିରାଟ ପୁରୁଷ ନାଭିରେ ଦୂର ଅନ୍ତରିକ୍ଷ ମଧ୍ୟରେ
ରୁଦ୍ରଙ୍କ ପାର୍ଷଦ ରହିଲେ ବ୍ରାହ୍ମଣ ମୁଖରୁ ଜନ୍ମିଲେ
ସକଳ ବର୍ଣ୍ଣଙ୍କ ମଧ୍ୟରେ ବ୍ରାହ୍ମଣ ଶ୍ରେଷ୍ଠ ବୋଲାଇଲେ

ସମସ୍ତଙ୍କ ଗୁରୁ ହୋଇଲେ ସର୍ବତ୍ର ପୂଜିତ ହୋଇଲେ
ବୈଶ୍ୟ ଜାତି ଓ ବୈଶ୍ୟ ବୃତ୍ତି ଜଙ୍ଘରୁ ହୋଇଲେ ଉତ୍ପତ୍ତି
ବାଣିଜ୍ୟ କୃଷି ଗୋଚାରଣ ଜୀବିକା ଏ ଜାତିର ଜାଣ
ଏହି ବର୍ଣ୍ଣ ନିଜ ବୃତ୍ତିରେ ଚଳାଏ ସକଳ ଜୀବରେ

ସର୍ବ ଧର୍ମସିଦ୍ଧ ନିମିତ୍ତ ପାଦରୁ ସେବା ବୃତ୍ତି ଜାତ
ସେବା ନିମିତ୍ତ ସର୍ବବର୍ଣ୍ଣ ଶୁଦ୍ର ହୋଇଲେ ଉତ୍ପନ୍ନ
ସେବା କରଇ ଯେଉଁ ବ୍ୟକ୍ତି ଶ୍ରୀହରି ପ୍ରସନ୍ନ ହୁଅନ୍ତି ।
କାଳ କର୍ମ ଆତ୍ମଶକତି ସମ୍ପନ୍ନ ଏହି ବିଶ୍ୱପତି

ଯୋଗମାୟାକୁ ପ୍ରକାଶନ୍ତି ଯେ ଘଟେ ଘଟେ ବିରାଜନ୍ତି
ତାହାଙ୍କ ସ୍ୱଭାବ ସମ୍ପୂର୍ଣ୍ଣ କେ ଅବା କରିବ ବର୍ଣ୍ଣନ
ବ୍ରାହ୍ମଣାଦି ଯେ ଚାରିବର୍ଣ୍ଣ ଈଶ୍ୱରଙ୍କ ଠାରୁ ଜନମ
ସେମାନେ ନିଜ ଧର୍ମେ ରହି ନିଜର ଚିତ୍ତ ଶୁଦ୍ଧି ପାଇଁ

ନିଜ ଗୁରୁ ଶ୍ରୀ ବିଶ୍ୱପତି ହରିକୁ ଶ୍ରଦ୍ଧାରେ ପୂଜନ୍ତି
ଶ୍ରୀହରିଙ୍କ ଲୀଳାବ୍ୟତିତ ଅନ୍ୟାନ୍ୟ ଚର୍ଚ୍ଚାରେ ଦୂଷିତ
ମୋର ବଚନ କେଉଁପରି ପବିତ୍ର ହୋଇବ ସେପରି
ଗୁରୁଙ୍କ ଠାରୁ ଯା ଶୁଣିଛି ତାହା ମୁଁ ପ୍ରକାଶ କରୁଛି ।

ଶ୍ରୀ ଭଗବାନ ପୁଣ୍ୟଶ୍ଳୋକ ମହାତ୍ମ୍ୟ ମଧ୍ୟରେ ଗରିଷ୍ଠ
ତା ଗୁଣ ସଂକୀର୍ତ୍ତନ ଲୀଳା ଜୀବର ଭବ ସିନ୍ଧୁ ଭେଳା
ସେ କଥାମୃତ ଯେ ଶୁଣଇ ତା କର୍ଣ୍ଣ ସାର୍ଥକ ହୁଅଇ
ହେ ବତ୍ସ ମୁଁ ନୁହେଁ କେବଳ ସ୍ୱୟଂ ବ୍ରହ୍ମାମଧ୍ୟ ନିଜର

ଯୋଗ ପରପକ୍ୱ ବୁଦ୍ଧିରେ ସହସ୍ର ଦିବ୍ୟ ବରଷରେ
ବିଚାର ନିରନ୍ତର କଲେ ମହିମା ଜାଣି ନ ପାରିଲେ ।
ମାୟାର ଶକତି ଅନନ୍ତ ମାୟାବୀଙ୍କୁ କରେ ମୋହିତ
ନିଜେ ମଧ୍ୟ ଶ୍ରୀ ଭଗବନ୍ତ ମାୟାର ନ ପାଆନ୍ତି ଅନ୍ତ

ଯେଠାରେ ପ୍ରବେଶି ନପାରି ମନ ବଚନ ଆସେ ଫେରି
ଅହଂକାରର ଅଧିଶ୍ୱର ନିଜେ ମଧ୍ୟ ରୁଦ୍ର ଶଙ୍କର
ଇନ୍ଦ୍ରିୟାଭିମାନୀ ଅନ୍ୟାନ୍ୟ ନପାନ୍ତି ଯାକୁ ଦେବଗଣ
ସେ ଅନ୍ତର୍ଯ୍ୟାମୀ ପ୍ରଭୁଙ୍କର ଚରଣେ ମୋର ନମସ୍କାର

ଭଣଇ ଦାଶ ଧନେଶ୍ୱର ଅନ୍ତର୍ଯ୍ୟାମୀ ଶ୍ରୀ ପ୍ରଭୁଙ୍କର
ଶ୍ରୀଚରଣେ ନିଅ ଆଶ୍ରୟ ଦୂର ହୋଇବ ଭବଭୟ

ଶ୍ରୀମଦ୍ ଭାଗବତ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟା ତୃତୀୟ ସ୍କନ୍ଧେ ମୈତ୍ରେୟ ବିଦୁର ସମ୍ବାଦେ ନମ ଷଷ୍ଠୋଽଧ୍ୟାୟ ।

*******

## ସପ୍ତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମହାପତି ଶୁଣହେ ଅର୍ଜୁନର ନାତି
ମୈତ୍ରେୟଙ୍କ ଏ ପ୍ରବଚନ ଶୁଣି ବ୍ୟାସଦେବ ନନ୍ଦନ
ସେହି ବିଦୁର ବୁଦ୍ଧିମାନ ଧାଇ ଶ୍ରୀକୃଷ୍ଣଙ୍କ ଚରଣ
ହୋଇ ଅତ୍ୟନ୍ତ ପ୍ରୀତମନା ମୈତ୍ରେୟଙ୍କୁ କଲେ ପ୍ରାର୍ଥନା

### ବିଦୁର ଉବାଚ

ଶୁଦ୍ଧ ସ୍ୱରୂପ ଭଗବାନ ନିର୍ବିକାର ନିତ୍ୟ ନିର୍ଗୁଣ
ସେ ମଧ୍ୟ କିପରି ଲୀଳାରେ ସୁଗୁଣ ସକ୍ରିୟ ହୋଇଲେ
ବାଳକ ଖେଳିବା ଇଚ୍ଛାରେ ଅନ୍ୟ ସହିତ କ୍ରୀଡା କରେ
କରେ ଖେଳ ପାଇଁ ପ୍ରଯତ୍ନ ମାତ୍ର ନିଃସଙ୍ଗ ପୂର୍ଣ୍ଣକାମ

ଭଗବାନଙ୍କର କେମନ୍ତ କ୍ରୀଡାଇଚ୍ଛା ହେବ ଜାଗ୍ରତ
ଭଗବାନ ତ୍ରି ଗୁଣମୟୀ ମାୟାରେ ଏ ବିଶ୍ୱ ସୃଜଇ
ପାଳନ କରନ୍ତି ମାୟାରେ ସଂହରନ୍ତି ମାୟା ବଳରେ
ଶ୍ରୀ ଭଗବାନ ଦେଶଜ୍ଞାନ କାଳ ଅବସ୍ଥା ଭେଦେପୁନ

କେବେ ହେଁ ବା କାହାପାଇଁ ବିଲୁପ୍ତ ହୁଅନ୍ତି ସେ ନାହିଁ
ତେଣୁ ମାୟାସହ ତାଙ୍କର ସଂଯୋଗ ହେଲା କି ପ୍ରକାର
ଶ୍ରୀ ଭଗବାନ୍ ଏକମାତ୍ର ସର୍ବତ୍ର ସାକ୍ଷୀରୂପେ ସ୍ଥିତ
ତେଣୁ ଏହି ଜୀବଙ୍କ କିପାଇଁ ଅଦୃଷ୍ଟ କ୍ଲେଶକୁ ଭୋଗଇ

ଆହେ ବିଭୋ ଆହେ ବିଦ୍ୱାଦ ମୋ ମନ ଅତିଶୟ ଖିନ୍ନ
କୃପା ବହି ମୋର ମନର ମହା ମୋହକୁ ଦୂର କର

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମହାମତି ଶୁଣ ହେ ଅର୍ଜୁନର ନାତି
ତତ୍ତ୍ୱ ଜିଜ୍ଞାସାରେ ବିଦୁର ପଚାରିବାକୁ ଏ ପ୍ରକାର
ତାଙ୍କଠାରୁ ଲଭି ପ୍ରେରଣା ସେହି ମୈତ୍ରେୟ ମହାମନା
ଶ୍ରୀକୃଷ୍ଣ ଚରଣ ସ୍ମରିଲେ ମନ୍ଦେ ହସି ଏହା କହିଲେ

### ମୈତ୍ରେୟ ଉବାଚ

ଯେ ଆତ୍ମା ଅଟେ ସର୍ବସ୍ୱାମୀ ମୁକ୍ତ ସ୍ୱରୂପ ଅନ୍ତର୍ଯାମୀ
ଅଜ୍ଞ ନବନ୍ଧନେ ପଡଇ କହିବା ବିରୁଦ୍ଧ ଅଟଇ
ଏ ମଧ ଭଗବାନ ମାୟା କେବା ବର୍ଣ୍ଣିବ ଅବା ତାହା
ଯେପରି ସ୍ୱପ୍ନ ଦ୍ରଷ୍ଟା ଜନ ନହେଲେ ବି ଶିର ଛେଦନ

ମିଥ୍ୟା ପ୍ରତିତୀର ବଶରେ ଶିରଛେଦ ବୋଲି ବିଚାରେ
ଏ ମୁକ୍ତ ଜୀବ ସେ ପ୍ରକାରେ ବନ୍ଧନ ବିଚାରେ ଭ୍ରମରେ
ମାତ୍ର ଈଶ୍ୱରରେ ଏମିତି ନ ହୁଅଇ ମିଥ୍ୟା ପ୍ରତୀତି ।
ଚନ୍ଦ୍ରର ପ୍ରତିମ୍ବ ଜଳେ ପଜି ଦୋ ହଲେ ବାୟୁବଳେ

ମାତ୍ର ଆକାଶେ ସେ ଚନ୍ଦ୍ର ଥାଇ ସେ ସଦା ନିଶ୍ଚଳ ରହଇ
ତଥା ଆତ୍ମାର ଦେହ ଧର୍ମ ନଥିଲେ ବି ଦେହାଭିମାନ
ବଶରୁ ଏ ଜୀବ ବନ୍ଧନ ସନ୍ତାପ ଅନୁଭବେ ଜାଣ
ମାତ୍ର ଈଶ୍ୱର ଭଗବାନ ଦେହାଦି ଅଭିମାନ ଶୂନ୍ୟ

ତାଙ୍କଠାରେ ଏ ଭ୍ରମ ଜ୍ଞାନ କେବେହେଁ ନ ହୁଅଇ ଜନ୍ମ
ଭକ୍ତିରେ ନିଷ୍କାମ ଧର୍ମରେ ବାସୁଦେବଙ୍କ ସୁଦୟାରେ
ଜୀବ ମାନଙ୍କ ଏହି ଭ୍ରାନ୍ତ ଧାରଣା ହୁଏ ତିରୋହିତ
ଜୀବର ଇନ୍ଦ୍ରିୟ ସମସ୍ତ ବିଷୟରୁ ହୋଇ ନିବୃତ୍ତ

ସାକ୍ଷୀ ପରମାତ୍ମା ହରିରେ ଯେବେଳେ ରହେ ନିଶ୍ଚଳରେ
ଗାଢ଼ ନିଦ୍ରାରେ ସେବଳରେ ପ୍ରସୁପ୍ତ ମନୁଷ୍ୟ ପ୍ରକାରେ
ଜୀବର ସର୍ବ କ୍ଲେଶମାନ ସମ୍ପୂର୍ଣ୍ଣ ହୁଅଇ ବିଲୀନ
ଶ୍ରୀକୃଷ୍ଣଙ୍କ ଗୁଣ ଶ୍ରବଣ କ୍ଲେଶ କରଇ ନିବାରଣ

ଶ୍ରୀକୃଷ୍ଣଙ୍କ ପଦ୍ମ ଚରଣ ପରାଗ ଯେକରେ ସେବନ
ସେମାନଙ୍କ ସର୍ବ ଅନର୍ଥ ତକ୍ଷଣେ ହୁଅଇ ନିବୃତ୍ତ ।
ଏ ବିଷୟରେ ଆଉ ଅନ୍ୟ କହିବା କିବା ପ୍ରୟୋଜନ ।

### ବିଦୁର ଉବାଚ

ଆନନ୍ଦେ କହିଲେ ବିଦୁର ହେ ମୈତ୍ରେୟ ମୁନିବର
ତୁମ ଯୁକ୍ତି ଯୁକ୍ତ ବଚନ ମୋର ସନ୍ଦେହ ହେଲା ଛିନ୍ନ ।
ସ୍ୱାଧୀନ ସଦା ଭଗବାନ ମାତ୍ର ଏ ଜୀବ ପରାଧୀନ ।
ଉଭୟ ଏହି ବିଷୟରେ ସନ୍ଦେହ ନାହିଁ ମୋ ମନରେ

ଜୀବର କ୍ଲେଶର ପ୍ରତୀତି କେବଳ ଅଟେ ମାୟା ଭ୍ରାନ୍ତି
ଜୀବର ସର୍ବକ୍ଲେଶ ମୂଳ ଈଶ୍ୱରଙ୍କ ମାୟା କେବଳ
ପ୍ରକୃତରେ ଯେ କ୍ଲେଶ ଏହି ମିଥ୍ୟା ଅମୂଳକ ଅଟଇ
ମାୟା ବ୍ୟତିତ ନାହିଁ ଆନ ଆହେ ମୈତ୍ରେୟ ଭଗବାନ

ସତ୍ୟ ଆପଣଙ୍କ ବଚନ ସଂଶୟ କଲା ନିବାରଣ
ଯେ ଜନ ଅତ୍ୟନ୍ତ ଅଜ୍ଞାନ ବୁଦ୍ଧି ଅତୀତ ଭଗବାନ
ଈଶ୍ୱରଙ୍କୁ ଲାଭନକରେ ସେ ନୁହେଁ ସୁଖୀ ସଂସାରରେ
ସଂଶୟାଛନ୍ନ ଯା'ର ମତି ସେମାନେ ଦୁଃଖକୁ ଭୋଗନ୍ତି

ଅନାତ୍ମ ବସ୍ତୁ କିଛି ନାହିଁ କେବଳ ପ୍ରତୀତି ହୁଅଇ
ଆହେ ମୈତ୍ରେୟ ମୁନିବର ଚରଣ ସେବାରୁ ତୋହର
ସେ ସର୍ବ ମିଥ୍ୟା ଜ୍ଞାନ ମୋର ସମ୍ପୂର୍ଣ୍ଣ ହୋଇଗଲା ଦୂର
ପଦ ସେବା କଲେ ତୁମର ନିତ୍ୟସିଦ୍ଧ ଶ୍ରୀହରିଙ୍କର

ପାଦେ ପ୍ରେମ ଭକ୍ତି ବଢ଼ଇ ସଂସାର ଦୁଃଖ ନାଶ ଯାଇ<br>
ଭଗବତ ପ୍ରାପ୍ତି ନିମିତ୍ତ ମହାତ୍ମା ସୁପଥ ସାକ୍ଷାତ<br>
ମହାତ୍ମା ଈଶ୍ୱରଙ୍କ ଗୁଣ ସର୍ବଦା କରନ୍ତି ଭଜନ ।<br>
ପୂର୍ବର ପୁଣ୍ୟ ଯା'ର ଥାଇ ମହତ ସେବାରେ ଲଭଇ ।

ହୃଦେ ଜନ୍ମଇ ହରିପ୍ରେମ ଗୃହ ବନ୍ଧନ ହୁଏ ଛିନ୍ନ<br>
ସୃଷ୍ଟି ପ୍ରାରମ୍ଭେ ଭଗବାନ ମହତ ଆଦି ତତ୍ତ୍ୱମାନ<br>
କ୍ରମରେ ସର୍ଜନା କରିଲେ ତାର ବିକାର ସୃଷ୍ଟି କଲେ<br>
ଅଂଶରେ ସେମାନଙ୍କ ତପୁନ ବିରାଟ ଶରୀର ଉତ୍ପନ୍ନ

ବଂଶ ଏ ମନୁମାନଙ୍କର ଚରିତ୍ର ସେ ବଂଶଜଙ୍କର<br>
ଉର୍ଦ୍ଧ୍ୱ ମଧ ଲୋକ ପୃଥ୍ୱୀର ଭୂଲୋକ ବିସ୍ତାର ସ୍ଥିତିର<br>
ବର୍ଣ୍ଣନା କରି ମୁନିବର ମୋର ସଂଶୟ ଦୂର କର<br>
ବିହଙ୍ଗ ସରୀସୃପ ତଥା ତୀର୍ଯ୍ୟକ ମନୁଷ୍ୟ ଦେବତା

ଜରାୟୁଜ ପୁଣି ଅଣ୍ଡଜ ସ୍ୱେହିଜାତ ଓ ଉଦ୍ଭିଦ<br>
ଚାରି ପ୍ରକାରର ଜୀବ କରନ୍ତୁ ବର୍ଣ୍ଣନ ହେବ ଦେବ<br>
ସେ ବିରାଟ ଆଦି ପୁରୁଷ ପାଦ ଜଙ୍ଘ ବାହୁ ସହସ୍ର<br>
ଲୋକ ସମସ୍ତ ତାଙ୍କ ପରେ ରହିଛି ବିସ୍ତୃତ ଭାବରେ

ସେହି ପୁରୁଷେ ସର୍ବେନ୍ଦ୍ରିୟ ରହିଛି ସମସ୍ତ ବିଷୟ<br>
ଇନ୍ଦ୍ରିଭିମାନୀ ଦେବଗଣ ସହିତ ଦଶବିଧ ପ୍ରାଣ<br>
ପ୍ରାଣ ଇନ୍ଦ୍ରିୟ ମନୋବଳ ପୁନଶ୍ଚ ଶାରୀରିକ ବଳ<br>
ତାଙ୍କଠି ସଦା ଦିବ୍ୟମାନ ତହୁଁ ବ୍ରାହ୍ମଣ ଚାରିବର୍ଣ୍ଣ

ସଂସାରେ ଲଭିଣ ଜନମ କରନ୍ତି ନିଜ ନିଜ କର୍ମ<br>
ବ୍ରହ୍ମାଦି ବିଭୁତି ତାଙ୍କର ବର୍ଣ୍ଣନା କର ମୁନିବର<br>
ଯାହାଙ୍କର ପୁତ୍ର ପ୍ରପୌତ୍ର ପୌତ୍ର କୁଟୁମ୍ବାଦି ସହିତ<br>
ନାନାଦି ପ୍ରଜା ହୋଇ ଜନ୍ମ ବିଶ୍ୱରେ ଛନ୍ତି ପରିପୂର୍ଣ୍ଣ

ବ୍ରହ୍ମାଦି ପ୍ରଜାପତିଙ୍କର ଏ ବିରାଟ ପୁରୁଷ ଈଶ୍ୱର<br>
ସେ ପ୍ରଜାପତିକୁ ସୃଜିଲେ ସ୍ୱର୍ଗ ଅନୁସର୍ଗ କ୍ରମରେ<br>
ମନ୍ୱନ୍ତରାଧିପ ରଚିଲେ କହନ୍ତୁ ସମସ୍ତ ବିସ୍ତାରେ<br>
ଶ୍ରୀହରି ସୃଷ୍ଟି ସମୟରେ ଜନ୍ମସ୍ଥିତି ନାଶ ଇଚ୍ଛାରେ

ନିଜର ତ୍ରିଗୁଣ ଅବତାର ବିଧାତା ବିଷ୍ଣୁ ମହେଶ୍ୱର<br>
ରୂପେ କଲେ ଯେ ଲୀଳାମାନ ଆପଣ କରନ୍ତୁ ବର୍ଣ୍ଣନ<br>
ବେଶ ଭୂଷଣ ଆଚରଣ ସ୍ୱଭାବ ବର୍ଣ୍ଣାଶ୍ରମ ଧର୍ମ<br>
ଜନ୍ମ କର୍ମାଦି ଋଷିଙ୍କର ବିଭାଗ ବେଦ ମାନଙ୍କର

ଯୋଗମାର୍ଗ ଯଜ୍ଞ ବିସ୍ତାର ସାଧନ ଜ୍ଞାନ ମାର୍ଗ ତା'ର<br>
ଶ୍ରୀ ଭଗବାନଙ୍କ କଥିତ ନାରଦ ମୁନି ପଞ୍ଚ ରାତ୍ର<br>
ପ୍ରଭୃତି ନାନା ତନ୍ତ୍ରଶାସ୍ତ୍ର ପାଖଣ୍ଡ ମାର୍ଗର ବୈଚିତ୍ର<br>
ନୀଚ ପୁରୁଷ ଉଚ୍ଚବର୍ଣ୍ଣ ସ୍ତ୍ରୀ ଠାରୁ ଜନ୍ମିତ ସନ୍ତାନ

ବିଭିନ୍ନ ଗୁଣ ପୁଣି କର୍ମ ଆଶ୍ରୟ କରି ଜୀବଗଣ<br>
ଯେଉଁ ଯେଉଁ ଗତି ଲଭନ୍ତି ବର୍ଣ୍ଣନ୍ତୁ ଆହେ ଶୁକ୍ରଯତୀ<br>
ହେ ଶୁକ ବ୍ରାହ୍ମଣ୍ୟ ମୁରତି ଧର୍ମାର୍ଥ କାମ ମୋକ୍ଷ ପ୍ରାପ୍ତି<br>
ବାଣିଜ୍ୟ ଦଣ୍ଡନୀତି ମାନ ଶାସ୍ତ୍ରର ଶ୍ରବଣ ବିଧାନ

ପିତୃ ସୃଷ୍ଟି ଶ୍ରାଦ୍ଧ ବିଧାନ କାଳଚକ୍ରରେ ତାରାଗଣ<br>
ଗ୍ରହ ନକ୍ଷତ୍ର ଅବସ୍ଥାନ ସମସ୍ତ କରନ୍ତୁ ବର୍ଣ୍ଣନ<br>
ଦାନ ତପସ୍ୟା ଇଷ୍ଟ କର୍ମ ପୂର୍ତ୍ତକର୍ମର ଫଳମାନ<br>
ପ୍ରବାସେ ବିପଦ କାଳରେ ମନୁଷ୍ୟ କେଉଁ କର୍ମକରେ

ଧର୍ମମୂଳ ଶ୍ରୀ ବିଶ୍ୱପତି କିପରି ସନ୍ତୋଷ ଲଭନ୍ତି<br>
କାହାକୁ ସଦୟ ହୁଅନ୍ତି ଶ୍ରୀହରିଙ୍କ ଅର୍ଚ୍ଚନ ରୀତି<br>
ସର୍ବ ବୃତ୍ତାନ୍ତ ବିସ୍ତାରିଣ ବର୍ଣ୍ଣନା କରନ୍ତୁ ଆପଣ<br>
ହେ ଦୀନବଂଧୁ ଦ୍ୱିଜବର ଗୁରୁଜନ ମାନେ ନିଜର

ଆଶ୍ରିତ ଶିଷ୍ୟ ପୁତ୍ରଠାରେ ଦୟାବହି ବିନା ପ୍ରଶ୍ନରେ<br>
ହିତ ବାଣୀମାନ କହନ୍ତି ଏତ ଗୁରୁଜନ ପ୍ରକୃତି<br>
ମହାଦାଦି ତତ୍ତ୍ୱ ଗଣର ପ୍ରଳୟ କେତେ ପ୍ରକାରର<br>
ଶ୍ରୀ ଭଗବାନ ଯେ ବେଳରେ ସୁପ୍ତଥାନ୍ତି ଯୋଗନିଦ୍ରାରେ

କେଉଁ କେଉଁ ତତ୍ତ୍ୱ ତାଙ୍କର ସେବା କରନ୍ତି ନିରନ୍ତର<br>
ପୁନଶ୍ଚ କେଉଁ ତତ୍ତ୍ୱମାନ ତାଙ୍କଠାରେ ହୁଏ ବିଲୀନ<br>
ହେ ମୁନିବର ଜୀବତତ୍ତ୍ୱ ପରମେଶ୍ୱରଙ୍କ ସ୍ୱରୂପ<br>
ଉପନିଷଦରେ ବର୍ଣ୍ଣିତ ସମସ୍ତ ଯେଉଁ ଜ୍ଞାନତତ୍ତ୍ୱ

ଗୁରୁ ଶିଷ୍ୟର ପ୍ରୟୋଜନ ବିଷୟ ବର୍ଣ୍ଣନ୍ତୁ ଆପଣ
ମନୁଷ୍ୟର ଜ୍ଞାନ ଭକତି ଅଥବା ବଇରାଗ୍ୟ ପ୍ରାପ୍ତି
ବିନା ଚେଷ୍ଟାରେ ହୁଏ ନାହିଁ ଜ୍ଞାନୀ ଏ ଜ୍ଞାନ ଲାଭପାଇଁ
କହିଛନ୍ତି କି କି ଉପାୟ କହନ୍ତୁ ଆହେ ମହାଶୟ

ହେ ବ୍ରାହ୍ମଣ୍ୟ ମୁହିଁ ଅଜ୍ଞାନ ମୋ ପ୍ରିୟ ସୁହୃଦ ଆପଣ
ମୋ ବିଚାର ମୋହ ମାୟାରେ ନଷ୍ଟ ହୋଇଅଛି ସଂସାରେ
ଶ୍ରୀହରିଙ୍କର ଲୀଳାମାନ ବର୍ଣ୍ଣନା କରି ଦିଅ ଜ୍ଞାନ
ଆହେ ଅନଘ ମୁନିଈଶ ଭଗବତ୍‌ତତ୍ତ୍ୱ ଉପଦେଶ

ଜୀବକୁ ଅଭୟ ଦେବାରେ ଯେଉଁ ପୁଣ୍ୟ ହୁଏ ସଂସାରେ
ତାର ଏକ କଳା ସହିତ ବେଦ ଯଜ୍ଞ ତପ ଅର୍ଜିତ
ଦାନ ବ୍ରତ ତୀର୍ଥ ଗମନ ପୂଣ୍ୟ ନୁହେଁ କେବେ ସମାନ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମହାଯତୀ ଶୁଣ ପରୀକ୍ଷ ନରପତି
ବିଦୁର କୌରବ ପ୍ରଧାନ ପୁରାଣ ବିଷୟରେ ପ୍ରଶ୍ନ
ଶୁଣି ମୈତ୍ରେୟଙ୍କ ଚିତ୍ତରେ ଭଗବତ୍ ଚର୍ଚ୍ଚା ବିଷୟରେ
ପ୍ରେରଣା ହୋଇବା ଜନମ ଜାଣି ସେ ହୋଇ ସୁପ୍ରସନ୍ନ

ସୁ ସ୍ମିତହାସ୍ୟ ବଦନରେ ଉତ୍ତର ଦେବାକୁ ଲାଗିଲେ
ଭଣଇ ଦାଶ ଧନେଶ୍ୱର ସଂଳାପ ମୈତ୍ରେୟ ବିଦୁର
ପବିତ୍ର ଭାଗବତ ବାଣୀ ଶୁଣି ସଂସାରୁ ତର ପ୍ରାଣୀ ।

ଶ୍ରୀମଦ୍ ଭାଗବତ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟା ତୃତୀୟ ସ୍କନ୍ଧେ ମୈତ୍ରେୟ ବିଦୁର ସମ୍ବାଦେ । ନାମ ସପ୍ତମୋଽଧ୍ୟାୟ ।

*******

## ଅଷ୍ଟମ ଅଧ୍ୟାୟ

ମୈତ୍ରେୟ କହେ ହେ ବିଦୁର ଏ ଅନ୍ତେ ଶୁଣ ଜ୍ଞାନ ସାର
ଭକ୍ତଙ୍କ ମଧ୍ୟରେ ପ୍ରଧାନ ଆପଣ ଲୋକପାଳ ଯମ
ହେବାରୁ ଆପଣ ଜନମ ହୋଇଛି କୁରୁବଂଶ ଧନ୍ୟ
ପ୍ରତି କ୍ଷଣରେ ଯେ ଆପଣ ଶ୍ରୀହରିଙ୍କର ଲୀଳାମାନ

କରୁଛନ୍ତି ଗାନ ସ୍ମରଣ କେବା ହେବ ତୁମ ସମାନ
କ୍ଷୁଦ୍ର ବିଷୟ ସୁଖ ପାଇଁ ନର ମହାଦୁଃଖ ଭୋଗଇ
ସେ ଦୁଃଖ ନିବୃତ୍ତି ନିମିତ୍ତ ମହାପୁରାଣ ଭାଗବତ
ମୁଁ ଆରମ୍ଭୁଛି ବର୍ତ୍ତମାନ ଶୁଣନ୍ତୁ ହୋଇ ସାବଧାନ

ପ୍ରଥମେ ଏହି ପୁରାଣକୁ ସନକାଦି ଋଷିମାନଙ୍କୁ
ଶଙ୍କର୍ଷଣ ଥିଲେ ଶୁଣାଇ ଶୁଣ ବିଦୁର ମନଦେଇ
ଅଖଣ୍ଡ ଜ୍ଞାନ ପରିପୂର୍ଣ୍ଣ ଶ୍ରୀ ଆଦିଦେବ ଶଙ୍କର୍ଷଣ
ଯେବେ ପାତାଳ ପୁରେ ଥିଲେ ସନତ୍‌କୁମାରଦି ସେବେଳେ

ପରଂବ୍ରହ୍ମଙ୍କୁ ଜାଣିବାକୁ ଏ ପ୍ରଶ୍ନ ପୁଛିଥିଲେ ତାଙ୍କୁ
ଶେଷ ଦେବ ଶ୍ରୀ ଶଙ୍କର୍ଷଣ ନିଜ ଆଶ୍ରୟ ଭଗବାନ ।
ପରମାତ୍ମାଙ୍କ ଉଦ୍ଦେଶ୍ୟରେ ମାନସିକ ପୂଜା କରିଲେ
ପରମ ଆତ୍ମା ଏ ପ୍ରକୃତ ବାସୁଦେବ ନାମେ ବିଖ୍ୟାତ ।

ସେବେଳେ ତାଙ୍କ ପଦ୍ମନେତ୍ର ସମ୍ପୂର୍ଣ୍ଣ ଥିଲା ଯେ ମୁଦ୍ରିତ
ପ୍ରଶ୍ନ କରନ୍ତେ ଶଙ୍କରାଦି ଶ୍ରୀ ଶଙ୍କର୍ଷଣ କୃପାନିଧି
ଅର୍ଦ୍ଧ ମୁଦ୍ରିତ ନୟନରେ ଚାହିଁଲେ ସେମାନଙ୍କୁ ଧୀରେ
ମର୍ତ୍ତ୍ୟ ପାତାଳକୁ ଯେବେଳେ ଋଷିମାନେ ଅବତରିଲେ

ସେମାନଙ୍କ ଜଟା ସେବେଳେ ଭିଜିଲା ମନ୍ଦାକିନୀ ଜଳେ
ଶ୍ରୀଶଙ୍କର୍ଷଣଙ୍କ ଚରଣ ପୀଠକୁ କରିଲେ ଦର୍ଶନ
ନାଗକନ୍ୟା ଯେ ଚରଣକୁ ଇପ୍‌ସିତ ପତି ପାଇବାକୁ
ଉପହାର ସହ ପ୍ରେମରେ ସର୍ବଦା ଉପାସନା କରେ

ଭଗବାନ ଶେଷ ଦେବର　　ଶିରରେ ସହସ୍ର ଫଣାର
ମୁକୁଟ ଥିଲା ସୁଶୋଭିତ　　ମଣିର ଜ୍ୟୋତି ବିରାଜିତ
ମଣିର ଜ୍ୟୋତି ବିଚ୍ଛୁରିତ　　ଚତୁର ଦିଗ ଆଲୋକିତ
ସନତ୍‌କୁମାର ଋଷିଗଣ　　ଶେଷ ଦେବଙ୍କ ଲୀଳାମାର୍ମ

ଜାଣିଥିଲେ ପୂର୍ଣ୍ଣ ଭାବରେ　　ପ୍ରେମରେ ଗଦ୍‌ଗଦ୍ ବାଣୀରେ
ବାରବାର ଲୀଳା ଗାୟନ　　ଚରଣେ କରିଲେ ପ୍ରଣାମ ।
ସଦା ନିବୃତ୍ତ ପରାୟଣ　　ସେ ଶଙ୍କର୍ଷଣ ଭଗବାନ
ସନତ୍ କୁମାର ଏହାପରେ　　ମୁନି ସାଖ୍ୟାୟନେ କହିଲେ

ପରମ ହଂସରେ ପ୍ରଧାନ　　ମହାମୁନି ଶ୍ରୀସାଂଖ୍ୟୟନ
ଦେବଗୁରୁ ବୃହସ୍ପତିଙ୍କୁ　　ତାଙ୍କ ଅନୁଗତ ଶିଷ୍ୟଙ୍କୁ
ମୋର ଗୁରୁ ପରାଶରଙ୍କୁ　　କହିଲେ ଏ ଭାଗବତକୁ
ସେ ଦୟାଳୁ ଶ୍ରୀପରାଶର　　ତୃଷ୍ଣା ପୌଲସ୍ତ୍ୟ ମୁନିଙ୍କର

ବର ଅନୁସାରେ ମୋ ଆଗରେଏ ଆଦି ପୁରାଣ କହିଲେ
ହେ ବିଦୁର ତୁମେ ସତତ　　ଶ୍ରୀକୃଷ୍ଣଙ୍କର ଅନୁଗତ
ଶ୍ରଦ୍ଧାଳୁ ପରମ ଭକତ　　ସ୍ୱରୂପେ ସଂସାରେ ବିଖ୍ୟାତ
ବର୍ତ୍ତମାନ ଏହି ପୁରାଣ　　ସାବଧାନେ କର ଶ୍ରବଣ

ଏ ଜଗତ ସୃଷ୍ଟି ପୂର୍ବରେ　　ବୁଡି ରହିଥିବାଲା ଜଳରେ
ଶ୍ରୀ ନାରୟଣ ଏ ବେଳରେ　　ଶୋଇଥିଲେ ଶେଷ ଶଯ୍ୟାରେ
ଯୋଗ ନିଦ୍ରାର ଆଶ୍ରୟରେ　　ଚକ୍ଷୁ ମୁଦ୍ରିତ କରିଥିଲେ
ତେଜି ସକଳ ସୃଷ୍ଟି କର୍ମ　　ପରମାନନ୍ଦେ ଥିଲେ ମଗ୍ନ

ସେ ଏକମାତ୍ର ଭଗବାନ　　ନିଷ୍କ୍ରିୟ ଥିଲେ ଯେ ସମ୍ପୂର୍ଣ୍ଣ
ଦାହିକା ଶକ୍ତିକୁ କାଷ୍ଠରେ　　ଅଗ୍ନି ଲୁପ୍ତ କଲା ପ୍ରକାରେ
ସେହିପରି ଶ୍ରୀ ଦାମୋଦର　　ସମସ୍ତ ପ୍ରାଣୀ ମାନଙ୍କର
ସୂକ୍ଷ୍ମଦେହକୁ ସ୍ୱ ଦେହରେ　　ଲୀନକରି ନିଜ ଆଧାରରେ

ନିଶ୍ଚେଷ୍ଟଯେ ନିର୍ବିକାରରେ　　ଶୋଇଥିଲେ ଜଳ ମଧ୍ୟରେ
ସୃଷ୍ଟିର ସମୟରେ ପୁନ　　ଉତ୍ଥାନ ପାଇଁ ଭଗବାନ
କାଳଶକ୍ତି କୁ ସେ ବେଳରେ　　ଜାଗ୍ରତ କରି ରଖିଥିଲେ
ନିଜର ଚିତ୍‌ଶକ୍ତି ସଙ୍ଗରେ　　ଶୟନ କରିଲେ ଜଳରେ

ସହସ୍ର ଯୁଗ ବିତିଗଲା　　ତଥାପି ନିଦ୍ରା ନ ଭାଙ୍ଗିଲା
ତାଙ୍କ ନିଯୁକ୍ତ କାଳଶକ୍ତି　　ଜାଗରଣେ ଜୀବ ପ୍ରବୃତ୍ତି ।
କରିଲା ପ୍ରେରଣା ପ୍ରଦାନ　　ସେତେବେଳେ ଶ୍ରୀ ଭଗବାନ
ନିଜର ଶରୀରରେ ଲୀନ　　ଜୀବଙ୍କୁ କରିଲେ ଦର୍ଶନ ।

ଯେବେଳେ ତାଙ୍କ ଦେହଲୀନ　ଲିଙ୍ଗ ଦେହାଦି ତତ୍ତ୍ୱ ସୂକ୍ଷ୍ମ ।
ଉପରେ କଲେ ଦୃଷ୍ଟିପାତ　　ସେବେଳେ ତାହା କାଳାଶ୍ରିତ
ରଚନା ଗୁଣରେ କ୍ଷୋଭିତ　　ସୃଷ୍ଟିର ସର୍ଜନା ନିମିତ୍ତ
ନାଭିଦେଶୁ ଭଗବାନଙ୍କର　　ତତ୍‌କ୍ଷଣେ ହୋଇଣ ବାହାର

କାଳ ଶକ୍ତିରେ କର୍ମଶକ୍ତି　　ଜାଗ୍ରତ ହେବାରୁ ଝଟିତି
ନାଭିରୁ ଯେଉଁ ସୂକ୍ଷ୍ମତତ୍ତ୍ୱ　　ହୋଇଥିଲା ଯେ ପ୍ରକାଶିତ
ତାହା ପଦ୍ମକୋଷ ରୂପରେ　　ଉଠି ଯେ ଆସିଲା ଉପରେ
ନିଜ ତେଜରେ ସୂର୍ଯ୍ୟତୁଲ୍ୟ　　ଜଳକୁ କଲା ଆଲୋକିତ

ଭଗବାନଙ୍କ ଅପାର ମହିମା　　କେବା ବର୍ଣ୍ଣିବ ଗୁଣସୀମା ।
ସମସ୍ତ ଲୋକର ପ୍ରକାଶ　　ଗୁଣପୂର୍ଣ୍ଣ ଏ ପଦ୍ମକୋଷ
ବିଷ୍ଣୁ ଅନ୍ତର୍ଯ୍ୟାମୀ ରୂପରେ　　ପ୍ରବେଶ କରିଲେ ତହିଁରେ
ତହିଁରୁ ସର୍ବବେଦ ଜ୍ଞାତା　　ଆବିର୍ଭୂତ ହେଲେ ବିଧାତା

ସେହେତୁ ସ୍ୱୟମ୍ଭୁ ନାମରେ　　ବ୍ରହ୍ମା ବିଖ୍ୟାତ ଜଗତରେ
ବ୍ରହ୍ମା ପଦ୍ମକୋଷ ଉପରେ　　ବସି କିଛି ହିଁ ନ ଦେଖିଲେ
ତେଣୁ ସେ ନେତ୍ର ମେଲାଇଲେ ନଭ ଚାରିଆଡେ ଚାହିଁଲେ,
ସେହେତୁ ଚତୁର୍ମୁଖ ହେଲେ　　ଚତୁରାନନ ବୋଲାଇଲେ

ପ୍ରଳୟ ବାୟୁ ଘାତ ପାଇ　　ତରଙ୍ଗମାଳା ଉଚ୍ଛୁଳଇ
ସେ ଜଳ ମଧ୍ୟରୁ ଉଦ୍ଭିତ　　ପଦ୍ମକୋଷ ଉପରେ ସ୍ଥିତ
ଆଦିଦେବ ବ୍ରହ୍ମା ନିଜର　　ସର୍ବ ଲୋକତତ୍ତ୍ୱ ଆଧାର
ସେ ପଦ୍ମକୋଷର ରହସ୍ୟ　　ଜାଣିଯେ ନ ପାରିଲେ ଲେଶ

ବ୍ରହ୍ମାଚିନ୍ତା କଲେ ମନରେ　　ଏହି ପଦ୍ମକୋଷ ଉପରେ
ବସି ରହିଅଛି ଯେ ମୁହିଁ　　ନିଜକୁ ଜାଣି ନ ପାରଇ
କୌଣସି ଆଧାର ବ୍ୟତୀତ　　ଜଳେ ପଦ୍ମ ଜଳ କେମନ୍ତ
ତଳେ ନିଶ୍ଚୟ ଏ ପଦ୍ମର　　ରହିଛି କୌଣସି ଆଧାର

ଯାହା ଉପରେ ଏ ପଦ୍ମଅଛି
ମାତ୍ର ମୁଁ କିଛି ନ ଜାଣୁଛି ।
ପଦ୍ମନାଡ ସୁକ୍ଷ୍ମ ପଥରେ
ଧାତା ପ୍ରବେଶିଲେ ଜଳରେ
ମାତ୍ର ସେ ନାଡର ଆଧାର
ଖୋଜି ଖୋଜି ନାଭି ଦେଶର
ନିକଟେ ଯାଇ ପ୍ରବେଶିଲେ
କିନ୍ତୁ କିଛି ହିଁ ନ ପାଇଲେ

ପିତାମହ ସେହି ଦୁସ୍ତର
ଅନ୍ଧକାର ମଧ୍ୟେ ନିଜର
ଉତ୍ପତ୍ତି ସ୍ଥାନକୁ ଖୋଜିଲେ
ବହୁତକାଳ ବିତାଇଲେ
ଏକାଳ ଭଗବାନଙ୍କର
ଚକ୍ର ଅଟେ ଆହେ ବିଦୁର
କାମନା ନ ହେବାରୁ ପୂର୍ଣ୍ଣ
ଫେରିଲେ ଚତୁର ଆନନ

ରହି ପଦ୍ମ କୋଶ ଉପରେ
ପ୍ରାଣ ବାୟୁକୁ ଧୀରେ ଧୀରେ
ଜୟ କରି ସ୍ଥିର ଚିତ୍ତରେ
ବସି ରହିଲେ ସମାଧିରେ
ଏପରି ଦିବ୍ୟ ଏକଶତ
ବରଷ ହୋଇଲା ଅତୀତ
ଜ୍ଞାନ ଲାଭ କଲେ ତାପରେ
ଯାହାକୁ ସେ ପ୍ରଥମରେ

ଖୋଜି ଖୋଜି ପାଉନଥିଲେ
ତାହାକୁ ସ୍ୱ ଅନ୍ତକପରଣରେ
ପ୍ରକାଶିତ ହେବା ଦେଖିଲେ
ଅତି ଆନନ୍ଦିତ ହୋଇମନ
ସେ ପ୍ରଳୟ କାଳୀନ ଜଳରେ
ଶେଷନାଗ ନିଜ ଦେହରେ
ପଦ୍ମନାଡ ପରି ଧବଳ
ଶଯ୍ୟାକରିଅଛି ବିସ୍ତାର

ସେ ଶଯ୍ୟାରେ ପୁରୁଷୋତ୍ତମ
ଏକାକୀ କରନ୍ତି ଶୟନ
ଶେଷଙ୍କର ଦଶହଜାର
ଫଣାଛତ୍ର ପରି ବିସ୍ତାର
ମସ୍ତକ ମୁକୁଟ ମଣିର
ଆଭା ଦୂରକରେ ଅନ୍ଧାର
ଶ୍ରୀହରିଙ୍କ ଶ୍ୟାମ ଶରୀର
ଆଭା ମର୍କତ ପର୍ବତର

ଶୋଭାକୁ କରଇ ଧିକ୍କାର
କଟି ଶୋଭିତ ପୀତାମ୍ବର
ପର୍ବତ ଶିଖର ଦେଶରେ
ଆଚ୍ଛାଦିତ ସାନ୍ଧ୍ୟ ମେଘରେ
ଚମକୁ ଥିବା ବିଜୁଳିର
ସୁଷମା ନ ହୋଇବ ତୁଲ୍ୟ
ଶିରରେ ମୁକୁଟ ଶୋଭନ
ସ୍ୱର୍ଣ୍ଣାଦି ଗର୍ବ କରେ ଚୂର୍ଣ୍ଣ

ବନମାଳା ବକ୍ଷ ଶୋଭିତ
ଅଦ୍ରି ରତ୍ନ ଜଳ ପ୍ରପାତ
ଲତା ଗୁଳ୍ମ ବୃକ୍ଷ ପୁଷ୍ପିତ
ଶୋଭାକୁ କରେ ପରାଜିତ
ଭୁଜ ଯୁଗ ବଂଶ ଦପ୍ତର
ଚରଣ ଯୁଗଳ ବୃକ୍ଷର
ଶୋଭାକୁ କରେ ତିରସ୍କାର
ସେତ ସର୍ବ ଶୋଭା ଆଧାର

ପରିଣାମ ଶ୍ରୀ ବିଗ୍ରହର
ଲୋକ ତ୍ରିତୟ ସଂଗ୍ରହର
ପରିଣାମ ପରିଗଠିତ
ପିତାମ୍ବରରେ ସୁଶୋଭିତ
ଶ୍ରୀବିଗ୍ରହ ଦୀର୍ଘ ପ୍ରସ୍ଥରେ
ନିରୁପମ ଲୋକ ତ୍ରୟରେ
ପୀତାମ୍ବର ନାନା ଭୂଷଣ
ଅଳଙ୍କାରରେ ମନୋରମ

ତଥାପି ସେ ବିଗ୍ରହର
ସୌନ୍ଦର୍ଯ୍ୟ ଅଳଙ୍କାରର
ଶୋଭାକୁ କରଇ ବର୍ଦ୍ଧନ
ସେତ ଭୂଷଣର ଭୂଷଣ
ବେଦୋକ୍ତ ବିଶୁଷ ମାର୍ଗରେ
ନାନାବିଧ ଉପଚାରରେ
ପୂଜୁଥିବା ଭକତ ଗଣ
ବାଞ୍ଛା କରିବାକୁ ପୂରଣ

କଳ୍ପତରୁ ଶ୍ରୀ ଭଗବାନ
କୃପା ବହି ପଦ୍ମଚରଣ
ଦର୍ଶନ କରୁଥାନ୍ତି ଦାନ
ସେତ ଭକତର ଜୀବନ
ସେତେବେଳେ ତାଙ୍କ ସୁନ୍ଦର
ନଖ ରୂପକ ଚନ୍ଦ୍ରମାର
ଚନ୍ଦ୍ରିକା ଗୋଟି ଗୋଟି ହୋଇ
ସର୍ବତ୍ର ଝଟକି ଉଠଇ

ଭ୍ରୂଲତା ଅନୁଗ୍ରହ ପୂର୍ଣ୍ଣ
ମକର କୁଣ୍ଡଳ ଯେ କର୍ଣ୍ଣ
ଆରକ୍ତିମ ବିମ୍ବ ଅଧର
ସକଳ ସୁଷମା ଆଧାର
ମନୋଜ୍ଞ ତୁଙ୍ଗ ନାସିକାରେ
ବଙ୍କିମ ନୟନ ଭଙ୍ଗିରେ
ଉପାସକଙ୍କୁ ସମ୍ମାନିତ
କରୁଥିଲେ ଅଭିନନ୍ଦିତ

ସେତ କ୍ଷମା ଦୟା ସାଗର
କିବା ବର୍ଣ୍ଣିବି ନରଛାର
କଦମ୍ବ କୁସୁମ ସମାନ
ମନୋରମ ପୀତ ବସନ
ମେଖଳା ସୁବର୍ଣ୍ଣର ସୂତା
କଟିଦେଶରେ ସୁଶୋଭିତ
ସ୍ୱର୍ଣ୍ଣହାର ଶ୍ରୀବସ୍ତ୍ର ଚିହ୍ନ
ବକ୍ଷସ୍ଥଳରେ ବିଦ୍ୟମାନ

ସେତେବେଳେ ଶ୍ରୀ ଭଗବାନ
ଅବ୍ୟକ୍ତ ମୂଳ ଶ୍ରୀଚନ୍ଦନ
ବୃକ୍ଷ ସମାନ ଦିଶୁଥିଲେ
ଅନର୍ଘ କେୟର ମଣିଲେ
ମଣ୍ଡିତ ତାହାଙ୍କ ବିଶାଳ
ମନୋରମ ବକ୍ଷସ୍ଥଳ
ଶ୍ରୀଭୁଜ ଚନ୍ଦନ ବୃକ୍ଷର
ଶାଖା ସମାନ କି ସୁନ୍ଦର

ଚନ୍ଦନ ବୃକ୍ଷରେ ଯେପରି
ସର୍ପ ରହିଥାନ୍ତି ସେପରି
ସ୍କନ୍ଧରେ ଭଗବାନଙ୍କର
ଫଣା ଶୋଭେ ଶେଷ ନାଗର
ନାଗରାଜ ଅନନ୍ତଙ୍କ ବଂଧୁ
ଶ୍ରୀ ନାରାୟଣ କୃପାସିନ୍ଧୁ
ତା ଦର୍ଶନେ ହୁଅଇ ପ୍ରତୀତ
ସତ୍ୟରେ ଯେପରି ପ୍ରକୃତ

ଜଳ ମଧ୍ୟ ଏକ ପର୍ବତ ପର୍ବତେ ଅନେକ ପ୍ରକାର
ଜୀବ ବାସ କଲା ପ୍ରକାର ଶ୍ରୀଭଗବାନଙ୍କ ଶରୀର
ଆଶ୍ରୟ ଜୀବ ଚରାଚର କେବା ବର୍ଣ୍ଣିବ ନରଛାର
ଫଣାରେ ଶେଷ ନାଗଙ୍କର ମୁକୁଟ ସହସ୍ର ପ୍ରକାର

ଅଦ୍ରିର ସୁବର୍ଣ୍ଣ ମଣ୍ଡିତ ଶିଖର ପରି ସୁଶୋଭିତ
ଭଗବାନଙ୍କ ବକ୍ଷ ସ୍ଥଳର କଉସ୍ତୁଭ ଅଦ୍ରି ଗର୍ଭର
ରତ୍ନ ସମାନ ମନୋରମ କେ କରିପାରିବ ବର୍ଣ୍ଣନ
ବେଦରୂପ ଭ୍ରମରଗଣ ଗୁଂଜନେ ଅତି ମନୋରମ

ସ୍ୱ କୀର୍ତିମୟୀ ସୁମଞ୍ଜୁଳା କଣ୍ଠେ ଲମ୍ବଇ ବନମାଳା
ତ୍ରିଲୋକ ରକ୍ଷଣରେ କ୍ଷମ ସୁଦର୍ଶନାଦି ଅସ୍ତ୍ରମାନ
ପ୍ରଭୁଙ୍କର ଚଉପାଶରେ ପରିକ୍ରମା ଯେ କରୁଥିଲେ
ସୂର୍ଯ୍ୟ ଚନ୍ଦ୍ରାଦି ଦେବଗଣ ସେଠାରେ ପ୍ରବେଶେ ଅକ୍ଷମ

ସର୍ବଲୋକ ବିଧାତା ବ୍ରହ୍ମା ଇଚ୍ଛୁଥିଲେ ବିଶ୍ୱ ରଚନା
ହରିଙ୍କ ନାଭିରୁ ପ୍ରକାଶ ପଦ୍ମକୋଷ ଜଳ ଆକାଶ
ବାୟୁ ଓ ସ୍ୱଦେହ ବ୍ୟତୀତ ଅପର କୌଣସି ପଦାର୍ଥ
ବ୍ରହ୍ମାଙ୍କୁ ଦେଖାଗଲା ନାହିଁ ବସିରହିଲେ ମୌନ ହୋଇ

ରଜୋଗୁଣରେ ପରମେଷ୍ଠୀ ଇଚ୍ଛାକରିଲେ ପ୍ରଜାସୃଷ୍ଟି
ଜଳଆଦି ପଞ୍ଚ ପଦାର୍ଥ ସୃଷ୍ଟିର କାରଣ ସ୍ୱରୂପ
ଯେବେଳେ ଦର୍ଶନ କରିଲେ ସୃଷ୍ଟି ପାଇଁ ଉତ୍ସୁକ ହେଲେ
ପରମ ପୂଜ୍ୟ ସେ ଅଚିନ୍ତ୍ୟ ଭଗବାନଙ୍କ ପାଦେ ଚିତ୍ତ
ସମର୍ପି ଅନନ୍ୟ ଭକ୍ତିରେ ସ୍ତୁତି କରିବାକୁ ଲାଗିଲେ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ବିଧାତା ଆବିର୍ଭାବ ନାମ ଅଷ୍ଟମୋଽଧ୍ୟାୟ ।

*******

## ନବମ ଅଧ୍ୟାୟ

ଧାତା ସ୍ତୁତି କରି କହିଲେ ହେ ପ୍ରଭୋ ବହୁକାଳ ପରେ
ଆଜି ତୁମକୁ ଜାଣି ମୁହିଁ ନିଜକୁ କୃତାର୍ଥ ମଣଇ
ଶରୀର ଧାରୀ ଜୀବ କେହି ମହିମା ଜାଣି ନ ପାରଇ
ବିଶ୍ୱର ସମସ୍ତ ପଦାର୍ଥ ଅସତ୍ୟ ଅଟଇ ପ୍ରକୃତ

ଆପଣ ଏକମାତ୍ର ସତ୍ୟ ଅନ୍ୟ ସବୁ ମାୟା କଳ୍ପିତ
ଆପଣ ମାୟା ଆଶ୍ରୟରେ ପ୍ରକାଶିତ ବହୁ ରୂପରେ
ଆପଣଙ୍କ ଚିତ୍ ଶକ୍ତିରେ ଅଜ୍ଞାନ ତମ ରହେ ଦୂରେ
ଏ ଯେ ରୂପ ଆପଣଙ୍କର ଯା ନାଭି ପଦ୍ମ ଜନ୍ମ ମୋର

ତହିଁରୁ ଅବତାର ମାନ ହୋଇ ଅଛନ୍ତି ଅବତୀର୍ଣ୍ଣ
ଭକ୍ତ ଅନୁଗ୍ରହ ଇଚ୍ଛାରେ ରୂପ ପ୍ରକାଶ ପ୍ରଥମରେ
ତୁମେ ଅଭେଦ ଅଖଣ୍ଡିତ ତେଜୋମୟ ଆନନ୍ଦ ମାତ୍ର
ଏ ଯେଉଁ ରୂପ ନିରୁପମ ଆନନ୍ଦ ସ୍ୱରୂପ ବିଭିନ୍ନ

ଆପଣଙ୍କର ଏହି ରୂପ ଉପାସ୍ୟ ରୂପ ମଧ୍ୟେ ମୁଖ୍ୟ
ଏହା ସମ୍ପୂର୍ଣ୍ଣ ଭୂତଗଣ ତଥା ଇନ୍ଦ୍ରିୟ ଅଧିଷ୍ଠାନ
ମୁଁ ବିଶ୍ୱର ସୃଷ୍ଟି ଇଚ୍ଛାରେ ଏହି ଅଦ୍ୱିତୀୟ ରୂପରେ
ହେ ପ୍ରଭୋ ନେଇଛି ଶରଣ ସୁବୁଦ୍ଧି ଦିଅନ୍ତୁ ଆପଣ

ମୋ ମଙ୍ଗଳ ପାଇଁ ଆପଣ ଧ୍ୟାନେ ଦେଇଛ ଦରଶନ
ମିଥ୍ୟା ବିଷୟ ଆସକ୍ତିରେ ଯେ ତତେ ଅନାଦର କରେ
ନରକ ଗତି ହୁଏ ତାର ହେ ପ୍ରଭୋ ଘେନ ନମସ୍କାର
ବେଦ ବାୟୁରେ ପ୍ରବାହିତ ତୋ ପଦ୍ମପାଦ ସୁବାସିତ

ଗନ୍ଧକୁ ଯେ କର୍ଣ୍ଣପୁଟରେ ଗ୍ରହଣ କରଇ ଆଦରେ
ହୃଦୟ ପଦ୍ମ ଭକତର ଆପଣ ନ ହୁଅନ୍ତି ଦୂର
ଯେ ଅନନ୍ୟ ଭକ୍ତି ସୂତ୍ରରେ ତୋ ପାଦକୁ ବାନ୍ଧେ ହୃଦରେ
ହେ ପ୍ରଭୋ ତୋ ପଦ୍ମଚରଣ ବରାଭୟ କରେ ପ୍ରଦାନ

ଯେ ପର୍ଯ୍ୟନ୍ତ ଏ ମୂଢ଼ଦୀନ ତୋ ପାଦେ ନପଶେ ଶରଣ
ତା ଧନ ଜନ ସେ ପର୍ଯ୍ୟନ୍ତ ଗୃହ ପୁତ୍ର ଦାରା ନିମିତ୍ତ
ଭୟ ଶୋକ ଲାଳସା ଦୈନ୍ୟ ଲୋଭ ବଢ଼ଇ ଦିନୁଦିନ
ଗୃହ ପୁତ୍ରାଦିରେ ମମତ୍ୱ ଦୁଃଖ କାରଣ ଏକମାତ୍ର

ଯେ ଇନ୍ଦ୍ରିୟର ଲାଳସାରେ ମଜ୍ଜଇ ବିଷୟ ଭୋଗରେ
ସର୍ବ ଅଶୁଭ ବିନାଶନ ତୋ ଲୀଳା ନକରେ କୀର୍ତ୍ତନ
ଯା ମନ ସବୁ ସମୟରେ ଲାଗି ରହଇ ଦୁଷ୍କର୍ମରେ
ତାର ବିବେକ ବୁଦ୍ଧି ଜ୍ଞାନ ଦୈବ ବଳେ କରେ ହରଣ

ହେ ଉରୁକ୍ରମ ଭଗବାନ ମାୟା ସଂସାରେ ପ୍ରଜାଗଣ
କ୍ଷୁଧା ତୃଷା ବାତ ପୀତରେ କଫ ତ୍ରିଧାତୁ ଶୀତୋଷ୍ଣରେ
ଦୁଃସହ କାମନା ଅଗ୍ନିରେ ଅସୀମ କ୍ରୋଧ ଅସୂୟାରେ
ଦୁଃଖ କଷ୍ଟ ସଦା ଭୋଗଇ ଦେଖି ମତେ ଦୁଃଖ ଲାଗଇ

ନର ଇନ୍ଦ୍ରିୟ ଲାଳସାରେ ମାୟା ବିଷୟ ପ୍ରଭାବରେ
ତୁମଠାରୁ ରହେ ଦୂରରେ ତାହାର ବିବେକନସ୍ଟରେ
ସେ ପର୍ଯ୍ୟନ୍ତ ଭବ ସଂସାର ଦୁଃଖ ନସରଇ ତାହାର
ମିଥ୍ୟା ହେଲେ ବି ଏହି ମାୟା ଅତ୍ୟନ୍ତ ବଳବତୀ ତାହା

କରମ ଫଳ ଭୋଗ ପାଇଁ ଦୁଃଖ ମଧ୍ୟେ ଦିଏ ପକାଇ
ଏ ନର ଜୀବ ସାଧାରଣ ତା କଥା କହିବା ବା କ'ଣ
ବଡ ବଡ ସାଧୁ ମହତ ମାୟା ବଳେ ହୋଇ ମୋହିତ ।
ଭ୍ରମିଛନ୍ତି ଭବ ଚକ୍ରରେ ମନୁଷ୍ୟର ମନ ଦିନରେ

ମଜ୍ଜେ ବିଷୟ ବ୍ୟାପାରରେ ନାନା ବିଷୟ ଭାବନାରେ
ନିଦ୍ରା ଭାଙ୍ଗଇ କ୍ଷଣୁକ୍ଷଣ ମାତିରେ ଘଟଇ ବିଭ୍ରମ
ନାନା ଚେଷ୍ଟା ଅର୍ଥ ଲାଭର ଦୈବ ଯୋଗୁଁ ହୁଏ ବିଫଳ ।
ଗୁଣ କୀର୍ତ୍ତନ ଶ୍ରବଣରେ ଭକ୍ତି ଜନ୍ମାଇ ତୋ ପାଦରେ

ଭକ୍ତି ଶୁଦ୍ଧ ହୃଦ ପଦ୍ମରେ ତୁ ବାସକରୁ ନିଶ୍ଚୟରେ
ହେ ପୁଣ୍ୟଶ୍ଳୋକ ଜଗନ୍ନାଥ ତୋହର ମହିମା ଅନନ୍ତ
ଯେ ଭକ୍ତ ଚିନ୍ତେ ଯେ ଭାବରେ ତୁ ଦେଖାଦେଉ ସେ ରୂପରେ
ହେ ପରଂବ୍ରହ୍ମ ଭଗବାନ ଏକ ହୋଇ ମଧ୍ୟ ଆପଣ

ଜୀବ ମାନଙ୍କ ହୃଦୟରେ ହିତୈଷୀ ବଂଧୁ ପରକାରେ
ବିଜେ ଅନ୍ତରାତ୍ମା ରୂପରେ ଯେ ସର୍ବ ଭୂତେ ଦୟାକରେ
ତୁ ତୋଷ ହେଉ ତା ଉପରେ କାମନା ରଖି ହୃଦୟରେ ।
ଦେବେ ବିବିଧ ଉପଚାରେ ପୂଜା କଲେ ବି ତାଠାରେ

ତୋଷ ନ ହେଉ ସେ ପ୍ରକାରେ ଅନୁକଂପୀ ସର୍ବ ଭୂତରେ
ନିଷ୍କାମ ଭକ୍ତି ତୋ ପୟରେ ଦୁର୍ଲଭ ଅଜ୍ଞାନ ବ୍ୟକ୍ତିରେ
ତୋ ପାଦେ କଲେ ସମର୍ପଣ ଅକ୍ଷୟ ହୁଏ କର୍ମମାନ
ଘୋର ତପ ଯଜ୍ଞ ଦାନରେ ବ୍ରତାଦି ନାନା କରମରେ

ତୋହର ସନ୍ତୋଷ ବିଧାନ ଜୀବର ଅତି ପ୍ରୟୋଜନ
ଆପଣ ପ୍ରସନ୍ନ ହୋଇଲେ ସମସ୍ତ ମିଳେ ସହଜରେ
ତୁ କଲେ ସ୍ୱରୂପ ପ୍ରକାଶ ବିଭେଦ ମୋହ କରୁନାଶ
ତୁ ଅଟୁ ଜ୍ଞାନ ଅଧିଷ୍ଠାନ ସାକ୍ଷାତ ପୁରୁଷ ଉତ୍ତମ

ତୋ ପାଦେ ନମସ୍କାର ମୋର ଏ ବିଶ୍ୱ ଖେଳଘର ତୋର
ସୃଜି ପାଳି କରି ସହାର ତୁ ଲୀଳା କରୁ ବାରମ୍ବାର
ତେଣୁ ହେ ପରମ ଈଶ୍ୱର ତୋ ପାଦେ ନମେ ବାରମ୍ବାର
ଯେ ପ୍ରାଣ ପ୍ରୟାଣ କାଳରେ ବିବଶ ହୋଇ ମଧ୍ୟ ଥରେ

ତୋ ଅବତାର ଗୁଣ କର୍ମ ଜନାର୍ଦ୍ଦନ ମଧୁସୂଦନ
ଦେବକୀ ପୁତ୍ର ଘନଶ୍ୟାମ ପ୍ରଭୃତି ତୋର ପୁତ୍ରନାମ
କରି ପାରଇ ଉଚ୍ଚାରଣ ସେ ଜନ୍ମାନ୍ତର ପାପ ମୁକ୍ତ
ମାୟା ଆବରଣ ରହିତ ବ୍ରହ୍ମପଦ ହୁଅଇ ପ୍ରାପ୍ତ

ହେ ଅଜ ନିତ୍ୟ ସନାତନ ଦିଅ ଶ୍ରୀଚରଣେ ଶରଣ
ବିଶ୍ୱ ବୃକ୍ଷରୂପେ ଆପଣ ବିରାଜିତ ହେ ଭଗବାନ
ମୂଳ ପ୍ରକୃତି ଆଶ୍ରୟରେ ବ୍ରହ୍ମା ବିଷ୍ଣୁ ଶିବ ରୂପରେ
ତିନିହେଁ ପ୍ରଧାନ ଶାଖାରେ ବିଭକ୍ତ ହୋଇ ଏ ବିଶ୍ୱରେ

ପ୍ରଜାପତି ମନୁ ପ୍ରଭୃତି ଶାଖା ପ୍ରଶାଖାରେ ବିସ୍ତୃତି
ଲାଭ କରିଛନ୍ତି ଆପଣ ତବ ଶ୍ରୀଚରଣେ ପ୍ରଣାମ
ଲୋକର ସ୍ୱଧର୍ମ ପାଳନ ସାଧଇ ଅଶେଷ କଲ୍ୟାଣ
ମାତ୍ର ଲୋକ ତବ ପୂଜାରେ ଉଦାସୀନ ରହି ସଂସାରେ

ନିଷିଦ୍ଧ କରମ କରନ୍ତି ପ୍ରମାଦ ଦୁଃଖରେ ପଡନ୍ତି
ପ୍ରାଣୀ ମାନଙ୍କର ଜୀବନ କାଳ କରେ ବଳେ ହରଣ
କାଳ ସ୍ୱରୂପୀତ ଆପଣ ସେ କାଳକୁ ମୋର ପ୍ରଣାମ
ଅନ୍ୟ ଲୋକ ନିବାସୀ ଗଣ ଯାହାକୁ କରନ୍ତି ବନ୍ଦନ

ଦୁଇ ପରାର୍ଦ୍ଧ କାଳ ସ୍ଥାୟୀ ସେ ବ୍ରହ୍ମଲୋକେ ମୁଁ ବସଇ
ତଥାପି ମୁଁ ଆପଣଙ୍କର କାଳକୁ ଡରେ ନିରନ୍ତର
ତୁମକୁ ପାଇବାକୁ ଇଛି ବହୁ ବର୍ଷ ତପ କରିଛି ।
ଅଧିଯଜ୍ଞ ରୂପେ ଆପଣ ସେ ତପ ସାକ୍ଷୀ ବର୍ତ୍ତମାନ

ଅଧିଯଜ୍ଞ ରୂପକୁ ତୋର ମୁଁ କରୁଅଛି ନମସ୍କାର
ସ୍ୱ ଆତ୍ମାନନ୍ଦରେ ଆପଣ ସର୍ବଦା କରନ୍ତି ରମଣ
ଆପଣ ପରିପୂର୍ଣ୍ଣ କାମ ବିଷୟ ଭୋଗ ଇଚ୍ଛାଶୂନ୍ୟ
କିନ୍ତୁ ଧର୍ମରକ୍ଷା ନିମିତ୍ତ ପଶୁ ପକ୍ଷୀ ନର ଦୈବତ

ଯୋନିରେ ନିଜର ଇଛାରେ ଶରୀର ଧରି ଏ ସଂସାରେ
କରନ୍ତି ଦିବ୍ୟ ଲୀଳାମାନ ହେ ପୁରୁଷୋତ୍ତମ ଆପଣ
କରନ୍ତୁ ଶୁଭବୁଦ୍ଧି ଦାନ ଘେନି ଏ ଦୀନର ପ୍ରଣାମ
ଅଭିନିବେଶ ରାଗ ଦ୍ୱେଷ ଅବିଦ୍ୟା ସ୍ମିତା ପଞ୍ଚକୋଷ

ଅଧୀନ ନୁହଁନ୍ତି ଆପଣ କିନ୍ତୁ ତଥାପି ବର୍ତ୍ତମାନ
ସମ୍ପୂର୍ଣ୍ଣ ବିଶ୍ୱକୁ ଆପଣ ନିଜ ଉଦରେ କରି ଲୀନ
ପ୍ରଳୟ ଜଳ ଭୟଙ୍କର ଊର୍ମି ମଧ୍ୟେ ଶେଷନାଗର
କୋମଳ ଶଯ୍ୟାରେ ଶୟନ କରିଛନ୍ତି ହେ ନାରାୟଣ

ପୂର୍ବ କଳ୍ପରେ କର୍ମକ୍ଳାନ୍ତ ଜୀବଙ୍କ ଆଶ୍ରୟ ନିମିତ୍ତ
ତୁମ୍ଭର ଯୋଗନିଦ୍ରା ଏହି କେବଳ ଉଦ୍ଦିଷ୍ଟ ଅଟଇ
ଆପଣଙ୍କ ନାଭି ନଳୀନ ଭବନରେ ମୋର ଜନମ
ସମ୍ପୂର୍ଣ୍ଣ ଜଗତ ସୃଷ୍ଟିର ସର୍ବ ଉପକରଣ ତୋର

ରହିଛି ଉଦର ମଧ୍ୟରେ ତୁମ୍ଭେ ଦୟାବହି ମୋଠାରେ
ନିୟୋଜିଛ ସୃଷ୍ଟି କାର୍ଯ୍ୟରେ ଏ ଦୁରୂହ ବ୍ୟାପାରରେ
ହେ ପୂଜ୍ୟପ୍ରଭୁ ବର୍ତ୍ତମାନ ଯୋଗନିଦ୍ରାର ଅବସାନ
ନେତ୍ର ପଦ୍ମ ହେଉ ବିକଶିତ ଘେନନ୍ତୁ ପ୍ରଣତି ହେ ନାଥ ।

ଆହେ ଅନନ୍ତ ଶକ୍ତିମାନ ପରମ ପୁରୁଷ ଆପଣ
ପ୍ରଳୟ ଜଳରେ ନିଦ୍ରିତ ତୋ ନାଭି କମଳୁ ମୁଁ ଜାତ
ସେହେତୁ ପ୍ରକୃତରେ ମୁହିଁ ତୋ ବିଜ୍ଞାନ ଶକ୍ତି ଅଟଇ
ପୁଣି ତୋ କୃପା ପ୍ରଭାବରେ ବେଦ ମୁଁ ଉଚ୍ଚାରଣ କରେ

ଭକ୍ତମାନଙ୍କ ମନସ୍କାମ ପୂରଣ କରନ୍ତି ଆପଣ
ଆତ୍ମଶକ୍ତି ରୂପା ଲକ୍ଷ୍ମୀର ସଙ୍ଗେ ନାନା ଗୁଣାବତାର
ଗ୍ରହଣ କରିଣ ଆପଣ କରନ୍ତି ଅଦଭୂତ କର୍ମ
ମୋ ବିଶ୍ୱ ରଚନା ଉଦ୍ୟମ ଅଟଇ ଆପଣଙ୍କ କର୍ମ

ସୃଷ୍ଟି ରଚନା ସମୟରେ ପ୍ରେରଣା ଦିଅ ମୋ ଚିତ୍ତରେ
ସୃଷ୍ଟି ରଚନା ଅଭିମାନ ଜାତ ନ ହେଉ ମୋର ମନ
ହେ ପ୍ରଭୋ ସର୍ବଶକ୍ତିମାନ ପରମ ପୁରୁଷ ଆପଣ
ପ୍ରଳୟ ଜଳରେ ଶୟନ ତୋ ନାଭିପଦ୍ମୁ ମୋର ଜନ୍ମ

ମୁଁ ତୋର ବିଜ୍ଞାନ ଶକତି ଦୟାରେ ବେଦ ଉଚ୍ଚାରୁଛି
ଜଗତର ରୂପ ବିସ୍ତାର ବେଳେ ତା ଲୁପ୍ତ ନୋହୁମୋର
ହେ କରୁଣାମୟ ପୁରାଣ ପୁରୁଷ ଉତ୍ତମ ଆପଣ
ସୃଷ୍ଟି ରଚିବ କେଉଁପରି ଚିନ୍ତାରେ ହେଉଅଛି ଘାରି

ଯୋଗ ନିଦ୍ରା ତେଜି ଆପଣ ମୋ ଉପରେ ହୁଅ ପ୍ରସନ୍ନ
ମଧୁସ୍ମିତ ମୁଖ କମଳ ଖୋଲନ୍ତୁ ଆହେ ଆଦିମୂଳ
ମଧୁର ବାଣୀରେ ମୋହର ବିଷାଦ ଚିନ୍ତା ଦୂର କର

### ମୈତ୍ରେୟ ଉବାଚ

କହେ ମୈତ୍ରେୟ ମୁନିବର ଶୁଣ ହେ ବିଦୁର ସୁଧୀର
ତପ ଆଧ୍ୟାତ୍ମିକ ଜ୍ଞାନରେ ବିଜ୍ଞାନ ସମାଧି ବଳରେ
ନିଜର ଉତ୍ପତ୍ତି ସ୍ଥାନ ଭଗବାନଙ୍କୁ କରି ଦର୍ଶନ
ତାଙ୍କୁ ନିଜ ମନ ବାଣୀର ଯଥାଶକ୍ତିରେ ବେଦବର

ସ୍ତୁତି କରି ଥକି ପଡିଲେ ମଉନ ହୋଇଣ ରହିଲେ
ମଧୁସୂଦନ ଭଗବାନ ସେବେଳେ କରିଲେ ଦର୍ଶନ
ଧାତା ସେ ପ୍ରଳୟ ଜଳରେ ସୃଷ୍ଟି ରଚନା ବିଷୟରେ
ନଜାଣି ବିଷର୍ଣ୍ଣ ଚିତ୍ତରେ ବସିଛନ୍ତି ମନ କଷ୍ଟରେ

ମନୋଭାବ ଜାଣି ବ୍ରହ୍ମାର ଦୁଃଖ କରିବା ପାଇଁ ଦୂର
ଶ୍ରୀହରି ଗମ୍ଭୀର ବାଣୀରେ ବ୍ରହ୍ମାଙ୍କୁ ଆଶ୍ୱାସି କହିଲେ
ହସି କହିଲେ ଭଗବାନ ଶୁଣ ହେ ଚତୁର ଆନନ
ଦୁଃଖ ଆଳସ୍ୟ ତେଜି ଧୀରେ ସୃଷ୍ଟି ରଚନା ଉଦ୍ୟମରେ

ସାବଧାନେ ହୁଅ ତତ୍ପର କାମନାପୂର୍ଣ୍ଣ ହେବ ତୋର
ତୁମ ପ୍ରାର୍ଥନା ଯାହା କିଛି ମୁଁ ସମସ୍ତ କରି ସାରିଛି ।
ଆଶ୍ରୟେ ଭାଗବତ ଜ୍ଞାନ ତୁହି ତପସ୍ୟା କର ପୁନ
ସର୍ବ ଲୋକ ସ୍ପଷ୍ଟ ଭାବରେ ଦେଖିବୁ ନିଜର ହୃଦରେ

ଭକ୍ତି ସମାହିତ ଚିତ୍ତରେ ଦେଖିବୁ ଦିବ୍ୟ ନୟନରେ
ମୁଁ ସମ୍ପୂର୍ଣ୍ଣ ବିଶ୍ୱ ସହିତ ତୋ ହୃଦେ ରହିଅଛି ବ୍ୟାପ୍ତ
ତୁମ ମଧ ବିଶ୍ୱ ସଙ୍ଗେ ଘେନି ମୋ ଠାରେ ରହିଅଛୁ ପୁଣି
ଏ ଜୀବ ଯେଉଁ ସମୟରେ କାଷ୍ଠେ ବ୍ୟାପ୍ତ ଅଗ୍ନି ପ୍ରକାରେ

ମତେ ସର୍ବଭୂତେ ଦେଖଇ ଅଜ୍ଞାନରୁ ମୁକ୍ତ ହୁଅଇ
ପଞ୍ଚଭୂତ ଇନ୍ଦ୍ରିୟ ମନ ଅନ୍ତକରଣ ଠାରୁ ଭିନ୍ନ
ଯେତେବେଳେ ଜୀବ ବୁଝଇ ମୋ ଠାରୁ ଅଭିନ୍ନ ମଣଇ
ସେବେଳେ ସେ ମୁକ୍ତି ଲଭଇ ଏହା ବେଦେ ମୁଁ ଅଛି କହି

ହେ ବର୍ଷିୟାନ ବେଦବର ତୁହିତ ଜୀବ ମଧ୍ୟେ ସାର
ପଞ୍ଚଭୂତ ଇନ୍ଦ୍ରିୟ ମନ ଗୁଣତ୍ରୟ ଅନ୍ତ କରଣ
ରହିତ ଅଟଇ ଯେ ମୁହିଁ ହେ ଧାତା ଜାଣିଅଛୁ ତୁହି
ଶରୀର ଧାରୀ ଜୀବଗଣ ମୋ ରୂପ ଜାଣିବା କଠିନ

ତଥାପି ଆହେ ପଦ୍ମଯୋନି କେବଳ ତୁହି ଅଛୁ ଜାଣି
ଆଧାର ଅଛି କିବା ନାହିଁ ସେହି ସନ୍ଦେହରେ ତୁହି
ଯାଇ ପଦ୍ମନାଡ ମଧରେ ଖୋଜିଲୁ ପ୍ରଳୟ ଜଳରେ
ତେଣୁ ମୁଁ ତୋର ହୃଦୟରେ ଦେଖାଦେଲି ସ୍ୱ ସ୍ୱରୂପରେ

ତପେ ଯେ ନିଷ୍ଠା ଅଛି ତୋର ଗୁଣ ବୈଭବ ଯୁକ୍ତ ମୋର
ତୁ ସ୍ତୁତି କଲୁ ମତେ ଯାହା ମୋ ଅନୁଗ୍ରହ ଫଳ ତାହା
ସର୍ବ କାମନା ମନୋରଥ ପୂରଣେ ଅଟେ ମୁଁ ସମର୍ଥ
ଯେଉଁ ପୁରୁଷ ପ୍ରତିଦିନ ସ୍ତୁତିରେ କରିବ ଭଜନ

ମୁଁ ସେହି ଭକତ ଉପରେ ପ୍ରସନ୍ନ ହୋଇବି ସତ୍ୱରେ
ମୁଁ ବିଶ୍ୱ ସୃଷ୍ଟି ଇଛାକରି ସଗୁଣ ରୂପ ଅଛି ଧରି
କିନ୍ତୁ ତୁହି ମୋର ନିର୍ଗୁଣ ରୂପ ସ୍ତୁତି କରୁ ବର୍ଣ୍ଣନ
ସେଥିରେ ମୁଁ ଅତି ପ୍ରସନ୍ନ ହେ ବ୍ରହ୍ମା ହେଉତୋ କଲ୍ୟାଣ

ଯଜ୍ଞ ତପ ପୂର୍ତ୍ତ କର୍ମରେ ଯୋଗ ଦନାଦି ସମାଧିରେ
ଯେ ସୁମଙ୍ଗଳ ଫଳ ମିଳେ ସବୁତାହୁଏ ମୋ ତୋଷରେ
ଏହା ତତ୍ତ୍ୱବିଦ୍‌ଙ୍କ ମତ ହେ ବ୍ରହ୍ମା ଏହା ସତ୍ୟ ସତ୍ୟ
ମୁଁ ସକଳ ଆତ୍ମାର ଆତ୍ମା ମୋ ନାମ ଜାଣ ପରମାତ୍ମା

ପ୍ରିୟଜନ ପୁତ୍ର କଳତ୍ର ସମସ୍ତଙ୍କ ମୁଁ ପ୍ରୀତିପାତ୍ର
ଦେହାଦି ପ୍ରିୟ ମୋ ନିମିତ୍ତ ମୋ ବିନା ସମସ୍ତ ଅନିତ୍ୟ
ତେଣୁ ମୋ ଚରଣରେ ପ୍ରେମ ଭକ୍ତି କରିବା ପ୍ରୟୋଜନ
ସର୍ବଲୋକର ପ୍ରଜାଗଣ ମୋଠାରେ ଲୀନ ବର୍ତ୍ତମାନ

ସର୍ବେ ମୋଠାରୁ ହେବେ ଜନ୍ମ ହେ ବ୍ରହ୍ମାହୋଇ ସାବଧାନ
ସର୍ବବେଦମୟ ରୂପରେ ପୂର୍ବ କଳ୍ପର ପରକାରେ
ସେମାନଙ୍କୁ କର ରଚନ ମୋର ଏ ଆଦେଶକୁ ମାନ

### ମୈତ୍ରେୟ ଉବାଚ

କହନ୍ତି ମୈତ୍ରେୟ ମୁନି ଶୁଣ ହେ ବିଦୁର ବିଜ୍ଞାନୀ
ସ୍ୱାମୀ ପ୍ରକୃତି ପୁରୁଷର ପଦ୍ମନାଭ ହରି ଏ ପ୍ରକାର
ସୃଷ୍ଟିକରତା ପ୍ରଜାପତି ବ୍ରହ୍ମାଙ୍କୁ ବିଶ୍ୱ ଅଭିବ୍ୟକ୍ତି
ବିଷୟେ ସୂଚନା ପ୍ରଦାନ କରି ହୋଇଲେ ଅନ୍ତର୍ଦ୍ଧାନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ମୈତ୍ରେୟ ବିଦୁର ସମ୍ବାଦେ ଧାତା ଭଗବାନ ସଂଳାପେ ନାମ ନବମୋଽଧ୍ୟାୟ

*******

## ଦଶମ ଅଧ୍ୟାୟ

### ବିଦୁର ଉବାଚ

ବିନୟେ ପୁଚ୍ଛିଲେ ବିଦୁର	ହେ ଭଗବାନ ମୁନିବର
ଆପଣ ଜ୍ଞାନୀ ଅଗ୍ରଗଣ୍ୟ	ହରି ହୁଅନ୍ତେ ଅନ୍ତର୍ଦ୍ଧାନ
ପିତାମହ ଚତୁରାନନ	ସ୍ମରି ଶ୍ରୀହରି ବଚନ
ଶରୀର ମନରୁ ନିଜର	ସୃଷ୍ଟିକଲେ କେତେ ପ୍ରକାର

ପୁଣି ମୋ ଅନ୍ୟାନ୍ୟ ପ୍ରଶ୍ନର	ପ୍ରଦାନ କରିଣ ଉତ୍ତର
ମୋର ସଂଶୟ କର ଦୂର	ଏତିକି ପ୍ରାର୍ଥନା ଦୀନର

### ସୂତ ଉବାଚ

ସୂତ କହନ୍ତି ଅନୁରାଗେ	ଶୌନକ ମୁନିଙ୍କର ଆଗେ
ଶୁଣି ବିଦୁରଙ୍କର ପ୍ରଶ୍ନ	ମୈତ୍ରେୟ ହୋଇ ସୁପ୍ରସନ୍ନ
ହୃଦୟରେ କରି ବିଚାର	ବିହିଲେ ଉଚିତ୍ ଉତ୍ତର

### ମୈତ୍ରେୟ ଉବାଚ

ଅଜ ଭଗବାନ ଯେପରି	କହିଥିଲେ ବ୍ରହ୍ମା ସେପରି
ପରମାତ୍ମାରେ ଦେଇ ଚିତ୍ତ	ଦିବ୍ୟ ବରଷ ଏକଶତ
ଘୋର ତପେ ହେଲେ ନିରତ	ବାହ୍ୟ ବ୍ୟାପାରରୁ ନିବୃତ୍ତ
ବ୍ରହ୍ମା ଦେଖିଲେ ସେ ବେଳରେ	ପ୍ରଳୟ ପବନ ବେଗରେ

ସ୍ୱ ଅସ୍ଥାନ ପଦ୍ମ ସହିତ	ସାଗର ଜଳ ପ୍ରକମ୍ପିତ
ଘୋର ତପ ଆତ୍ମଜ୍ଞାନରେ	ସମୃଦ୍ଧ ବିଜ୍ଞାନ ବଳରେ
ବିଧାତା ଚତୁର ଆନନ	ବାୟୁ ଜଳକୁ କଲେ ପାନ
ଅତି ବିଶାଳ ସେ ନଳୀନ	ତହିଁରୁ ଚଉଦ ଭୁବନ

ହୋଇ ପାରିଥିଲା ନିର୍ମାଣ	କିନ୍ତୁ ସେ କମଳ ଆସନ
ଭଗବାନଙ୍କ ପ୍ରେରଣାରେ	ନିଯୁକ୍ତ ସୃଷ୍ଟି ସର୍ଜନାରେ
ପ୍ରବେଶି ସେ ପଦ୍ମ କୋଷରେ	ଭୂର୍ଭୁବ ସ୍ୱ ତିନିଭାଗରେ
ବିଭାଗ କରିଲେ ସ୍ୱଦ୍ୱରେ	ନିଜ ବିବେକ ଅନୁସାରେ

ବ୍ରହ୍ମା ଯେଉଁ ପଦ୍ମ ଉପରେ	ନିଜେ ଅସୀନ ହୋଇଥିଲେ
ଆକାଶ ଯାଏ ପରିବ୍ୟାପ୍ତ	ସେ ପଦ୍ମକୁ ଦେଖି ବିଧାତ
ପୂର୍ବ କଳପରେ ବିଲୀନ	ସେହି ପଦ୍ମର ଜୀବଗଣ
ସୃଷ୍ଟିପାଇଁ ନିଜ ହୃଦରେ	ବ୍ରହ୍ମା ଯେ ବିଚାର କରିଲେ

ଜୀବମାନଙ୍କ ଭୋଗସ୍ଥାନ	ଅଟଇ ଏ ତିନି ଭୁବନ
ଶାସ୍ତ୍ରରେ ହୋଇଛି ବର୍ଣ୍ଣନ	ଯେ କରେ ନିଷ୍କାମ କରମ
ସେ ସତ୍ୟ ଲୋକ ମହଜନ	ଲୋକକୁ କରଇ ଗମନ

### ବିଦୁର ଉବାଚ

ବିନୟେ ପୁଚ୍ଛନ୍ତି ବିଦୁର	ହେ ମୈତ୍ରେୟ ମୁନିବର
ଅଦ୍‌ଭୂତ କର୍ମା ବିଶ୍ୱରୂପ	ହରିଙ୍କର କାଳ ନାମକ
ଶକ୍ତି ବିଷୟରେ ଆପଣ	ବିସ୍ତାରି କରନ୍ତୁ ବର୍ଣ୍ଣନ
ବିଷୟ ଗୁଣ ରୂପାନ୍ତର	ଅଟଇ କାଳର ଆକାର

କାଳର ଆଦିଅନ୍ତ ନାହିଁ	ସେ ନିରାକାର ଯେ ଅଟଇ
କାଳକୁ ନିମିତ୍ତ କରିଣ	ଲୀଳା ଛଳରେ ଭଗବାନ
ନିଜକୁ ଏହି ସୃଷ୍ଟିରୂପେ	ପ୍ରକଟ କରିଥାନ୍ତି ଆମେ
ସଂପୂର୍ଣ୍ଣ ବିଶ୍ୱ ପ୍ରଥମରେ	ଶ୍ରୀଭଗବାନଙ୍କ ମାୟାରେ

ବିଲୀନ ବ୍ରହ୍ମ ତନ୍ମାତ୍ରାରେ	ଅବ୍ୟକ୍ତ କାଳ ସାହାଯ୍ୟରେ
ଈଶ୍ୱର ପୃଥକ ରୂପରେ	ତାହାକୁ ପ୍ରକଟ କରିଲେ
ଭୂତ ଭବିଷ୍ୟ ବର୍ତ୍ତମାନ	ବିଶ୍ୱର ଆକୃତି ସମାନ
ଏହାର ସୃଷ୍ଟି ନ ପ୍ରକାରେ	ପ୍ରାକୃତ ବୈକୃତ ଭେଦରେ

ପୁଣି ଏକଇ ସୃଷ୍ଟି ଦଶମରେ	ଆହେ ବିଦୁର ଶୁଣଧୀରେ
ଏ ଛ ପ୍ରାକୃତ ସର୍ଜନ	ଶୁଣ ବୈକୃତ ବିବରଣ
କାଳଦ୍ରବ୍ୟ ଗୁଣ ରୂପରେ	ଏହା ଅଟେ ତିନି ପ୍ରକାରେ
ମହତ ସୃଷ୍ଟି ପ୍ରଥମରେ	ଭଗବାନଙ୍କ ପ୍ରେରଣାରେ

ସତ୍ତ୍ୱାଦି ଗୁଣ ମାନଙ୍କର	ବୈଷମ୍ୟ ସୃଷ୍ଟି ହିଁ କେବଳ
ସ୍ୱରୂପ ସେ ମହତତ୍ତ୍ୱର	ସାବଧାନେ ଶୁଣ ବିଦୁର
ଅହଙ୍କାର ସୃଷ୍ଟି ଦ୍ୱିତୀୟ	ତହୁଁ ପଞ୍ଚଭୂତ ଜ୍ଞାନେନ୍ଦ୍ରିୟ
କର୍ମେନ୍ଦ୍ରିୟ ହେଲା ଉତ୍ପତ୍ତି	ଭୂତ ସର୍ଗ ତୃତୀୟ ସୃଷ୍ଟି

ଏଥିରେ ପଞ୍ଚ ମହାଭୂତ
ସର୍ବଦା ଥାଏ ଅବସ୍ଥିତ
ଏ ଜ୍ଞାନ କ୍ରିୟାଶକ୍ତି ଯୁକ୍ତ
ଇନ୍ଦ୍ରିୟାଧିଶ ଦେବଗଣ
ଉତ୍ପାଦକ ପଞ୍ଚତନ୍ମାତ୍ର
ଶୁଣ ବିଦୁର ଦେଇଚିତ୍ତ
ସାତ୍ତ୍ୱିକ ଅହଂକାରୁ ଜାତ
ମନର ସୃଷ୍ଟି ଯେ ପଞ୍ଚମ

ଏକଥା ବୁଝିବା ଗହନ
ଷଷ୍ଠରେ ଅବିଦ୍ୟାର ସୃଷ୍ଟି
ତାମିସ୍ର ତମ ମହାମୋହ
ଜୀବ ବୁଦ୍ଧିକୁ ଆବରଣ
ବିଦୁର ମନଦେଇ ଶୁଣ
ଏଥି ରହିଛି ପଞ୍ଚଗ୍ରନ୍ଥି
ଅନ୍ଧତାମିସ୍ର ପୁଣି ମୋହ ।
ବିକ୍ଷେପ କରନ୍ତି ଏମାନ

ଏ ସୃଷ୍ଟି ସମସ୍ତ ପ୍ରକାର
ବ୍ରହ୍ମାରୂପରେ ରଜୋଗୁଣ
ସପ୍ତମ ବୈକୃତ ପ୍ରଧାନ
ବୃକ୍ଷ ପ୍ରଭୃତି ଯେ ସ୍ଥାବର
ଦୁଃଖହାରୀ ଲୀଳା ହରିଙ୍କର
ଏ ବିଶ୍ୱ କରନ୍ତି ସର୍ଜନ
ଏଥିରେ ଥାଏ ଛ ପ୍ରକାର
କେବା ବର୍ଣ୍ଣିବ ନରଛାର

ବନସ୍ପତି ଲତା ବିରୁଧ
ଏହି ଛ ପ୍ରକାର ସ୍ଥାବର
ମାତ୍ର ସ୍ପର୍ଶ ଅନୁଭବନ୍ତି
ଏହାଙ୍କର ବିଶେଷ ଗୁଣ
ତ୍ୱକସାର ଦ୍ରୁମ ଔଷଧ
ତଳୁ ଉପରକୁ ସଞ୍ଚାର
ନଥାଏ ଯାଙ୍କ ଜ୍ଞାନ ଶକ୍ତି
ଅଦ୍‌ଭୂତ କର୍ମା ଭଗବାନ

ତିର୍ଯ୍ୟକ ଯୋନି ପଶୁଗଣ
ଏହାଙ୍କ ମଧ୍ୟେ ଅଠାଇଶ
ଏହାଙ୍କ ନାହିଁ କାଳଜ୍ଞାନ
ଶୁଙ୍ଘି ବସ୍ତୁଭେଦ ଜାଣନ୍ତି
ସୃଷ୍ଟି ଯେ ଅଟଇ ଅଷ୍ଟମ
ପ୍ରାଣୀଏ କରିଥାନ୍ତି ବାସ
ଅଧିକ ଥାଏ ତମୋଗୁଣ
ନାହିଁ ହୃଦେ ବିଚାର ଶକ୍ତି

ପଶୁପକ୍ଷୀଙ୍କ ମଧ୍ୟେ ଛେଳି
ନୀଳଗାଈ ଗୁରୁ ମୃଗମେଷ
ଗର୍ଦ୍ଦଭ ଘୋଟକ ଖଚର
ଶ୍ୱାନ ହେଟାବାଘ ବିଲୁଆ
ଗୋରୁ ମହିଷ ଓ ଘୁଷୁରି
ଓଟ ଆଦି ଜନ୍ତୁ ବିଶେଷ
ଶରଭ ଚମରୀ ଏ ଖୁର
ଶଲ୍ଲକ ମର୍କଟ ଠେକୁଆ

ସିଂହ ଗଜ କଚ୍ଛପ ଗୋଧି
ଏମାନେ ପଞ୍ଚନଖ ନାମ
ମୟୂର ହଂସ ଚକ୍ରବାକ
ଏ ପକ୍ଷୀମାନେ ଆକାଶରେ
ତଥା କୁମ୍ଭୀର ପଶୁ ଆଦି
ବକ ଓ ଶାଗୁଣା ଚଞ୍ଚାଣ
ଭଲ୍ଲୁକ ସାରସ ପେଚକ
ଉଡି ବୁଲନ୍ତି ସ୍ୱଛନ୍ଦରେ

ନବମେ ସୃଷ୍ଟି ମନୁଷ୍ୟର
ନର ରଜୋଗୁଣ ପ୍ରଧାନ
ଦୁଖ କାରକ ବିଷୟରେ
ଉର୍ଦ୍ଧ୍ୱ ତଳକୁ ମନୁଷ୍ୟର
ଏହିମାନେ ଏକ ପ୍ରକାର
ସର୍ବଦା କର୍ମ ପରାୟଣ ।
ମଜ୍ଜନ୍ତି ସୁଖ ପ୍ରତ୍ୟାଶାରେ
ଅଟଇ ଆହାର ସଞ୍ଚାର

ପଶୁ ପକ୍ଷୀ ନର ସ୍ଥାବର
ଦେବ ସର୍ଗ ପୂର୍ବ କଥିତ
ମହତତ୍ତ୍ୱାଦି ବୈକାରିକ
ପ୍ରକୃତ ସୃଷ୍ଟିର ମଧ୍ୟରେ
ଏହି ସୃଷ୍ଟି ତିନି ପ୍ରକାର
ଏମାନେ ସର୍ବେ ବୈକୃତିକ
ଏ ଦେବ ସର୍ଗ ଗୁଡିକ
ଗଣାଯାଆନ୍ତି ପ୍ରଥମରେ

ଏ ଛଡା ସନତ୍ କୁମାର
ସୃଷ୍ଟି କୌମାର ସର୍ଗନାମ
ଉଭୟାତ୍ମକ ଯେ ଅଟଇ
ଦେବତା ଅସୁର ପିତର
ପ୍ରଭୃତି ଋଷି ମାନଙ୍କର
ପ୍ରାକୃତ ବିକୃତ ଏମାନ
ଶୁଣ ବିଦୁର ମନ ଦେଇ
ଯକ୍ଷ ଗନ୍ଧର୍ବ ବିଦ୍ୟାଧର

ସିଦ୍ଧ ଚାରଣ ଅପସରସ
ପିଶାଚ କିନ୍ନର ପ୍ରେତଗଣ
ଦେବ ସୃଷ୍ଟି ଆଠପ୍ରକାର
ରଚିତ ଏ ଦଶ ପ୍ରକାରେ
ବିଦ୍ୟାଧର ଭୂତ ରାକ୍ଷସ
କିଂ ପୁରୁଷ ଅଶ୍ୱ ବଦନ
ସଂସାର କର୍ତ୍ତା ବ୍ରହ୍ମାଙ୍କର
ତତେ ଦେବତା ବିଷୟରେ

ବଂଶ ମନ୍ୱନ୍ତର ଆଦି
ପ୍ରତ୍ୟେକ କଳ୍ପ ଆରମ୍ଭରେ
ଅବତରି ବ୍ରହ୍ମାଙ୍କ ରୂପରେ
ସୃଷ୍ଟି କରନ୍ତି ଭଗବାନ
ଏ ପରେ ବର୍ଣ୍ଣନା କରିବି
ରଜୋଗୁଣର ଆଶ୍ରୟରେ
ନିଜକୁ ଜଗତ ରୂପରେ
ତାଙ୍କ ସଙ୍କଳ୍ପ ନୁହେଁ ଆନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ମୈତ୍ରେୟ ବିଦୁର ସମ୍ବାଦେ ଧାତା ଭଗବାନ ସଂଳାପେ ଦଶମୋଽଧ୍ୟାୟ ।

*******

## ଏକାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

କହେ ମୈତ୍ରେୟ ହେ ବିଦୁର ଭୂରାଦି କାର୍ଯ୍ୟ ସମୂହର
ଅତ୍ୟନ୍ତ ସୁକ୍ଷମ ଅଂଶ ଯେହି ବିଭାଗ ପୁନ ହେବନାହିଁ
ଅନ୍ୟ ପରମାଣୁ ସହିତ ଯାହା ନ ହୋଇଛି ସଂଯୁକ୍ତ
କହନ୍ତି ତାକୁ ପରମାଣୁ ଏପରି ବହୁ ପରମାଣୁ

ପରସ୍ପର ସହ ମିଳିତ ହେଲେ ମଧ ଭ୍ରମ ବଶତଃ
ମନୁଷ୍ୟକୁ ତାହା ଏକଇ ବସ୍ତୁପରି ଜଣାପଡଇ
ପରମାଣୁର ଯେଉଁ ସତ୍ୟ ବସ୍ତୁର ଅଂଶ ସେହି ସତ୍ୟ
ବସ୍ତୁ ସମଷ୍ଟିର ଏକତ୍ୱ ମହାପରମ ନାମେ ଖ୍ୟାତି

କାର୍ଯ୍ୟ ରହେ ନିଜ ରୂପରେ ପରିବର୍ତ୍ତନ ହୋଇପାରେ
ସେହିମାନେ ଯେ ସମସ୍ତ ମହାପ୍ରପଞ୍ଚ ଅନ୍ତର୍ଗତ
ଆହେ ସାଧୁଶ୍ରେଷ୍ଠ ବିଦୁର ଏହିପରି ସବୁ ବସ୍ତୁର
ସୁକ୍ଷ୍ମ ମହତ ସ୍ୱରୂପର କରାଯାଇଅଛି ବିଚାର

ସୁକ୍ଷ୍ମତା ସ୍ଥୁଳତା କାଳର ତଥା ହୋଇପାରେ ବିଚାର
ଈଶ୍ୱର ହିଁ ଅବ୍ୟକ୍ତ କାଳ କିନ୍ତୁ ପରମାଣୁଠାରୁ ସ୍ଥୁଳ
ଭୋଗ୍ୟ ପଦାର୍ଥ ପରିଯନ୍ତ କାଳ ସୃଜିବାରେ ସମର୍ଥ
ଯେଉଁକାଳ ଏ ପ୍ରପଞ୍ଚର ପରମାଣୁ ଯେ ସୁକ୍ଷ୍ମତର

ରହିଛି ଅବସ୍ଥାକୁ ବ୍ୟାପି ସୁକ୍ଷ୍ମକାଳ ତାକୁ କହନ୍ତି
ସୃଷ୍ଟିରୁ ପ୍ରଳୟ ପର୍ଯ୍ୟନ୍ତ ଯେକାଳ ଅବସ୍ଥା ସମସ୍ତ
ଭୋଗକରେ ମହାପରମ ମହାକାଳ ଅଟଇ ଜାଣ
ମିଶିଲେ ଦୁଇ ପରମାଣୁ ହୁଅଇ ଜାଣ ଏକ ଅଣୁ

ମିଶ୍ରଣେ ତିନିଗୋଟି ଅଣୁ ହୁଅଇ ଏକତ୍ରସ ଅଣୁ
ସୂର୍ଯ୍ୟରଶ୍ମି ବାତାୟନରେ ଘରେ ପଡେ ଲମ୍ବଭାବରେ
ଯେ କଣିକା ମାନ ତହିଁରେ ଉଡି ବୁଲିବା ଦେଖାଯାଏ
ତାହା ତ୍ରସ ରେଣୁ ଅଟଇ ଶୁଣ ବିଦୁର ମନଦେଇ

ତିନିଗୋଟି ତ୍ରସ ରେଣୁକୁ ଅତିକ୍ରମ ପାଇଁ ସୂର୍ଯ୍ୟଙ୍କୁ
ଯେତିକି ସମୟ ଲାଗଇ ତାହାକୁ ତ୍ରୁଟି ବୋଲି କହି
ଶତ ତ୍ରୁଟିରେ ଏକ ବେଧ ତିନି ବେଧରେ ଏକ ଲବ
ଏକ ନିମିଷ ତ୍ରିଲବରେ ଏକ କ୍ଷଣ ତ୍ରିନିମିଷରେ

ଏକ କାଷ୍ଠା ପଞ୍ଚକ୍ଷଣରେ ଏକ ଲଘୁ କାଷ୍ଠା ପନ୍ଦରରେ
ଦଣ୍ଡ ଏକ ଲଘୁ ପନ୍ଦରରେ ମୁହୂର୍ତ୍ତ ଏକ ଦ୍ୱିଦଣ୍ଡରେ
ବଡଛୋଟ ଦିନ ଭେଦରେ ଛଅ ଅବା ସାତ ଦଣ୍ଡରେ
ଏକ ପ୍ରହର ଯେ ହୁଅଇ ଏହାକୁ ଯାମ ବୋଲି କହି

ଏହା ମନୁଷ୍ୟ ମାନଙ୍କର ଦିବସ କିଅବା ରାତ୍ରିର
ଚାରିଭାଗରୁ ଏକ ଭାଗ ଶୁଣ ବିଦୁର ମହାଭାଗ
ଛପଳ ତମ୍ବାରେ ଏପରି ପାତ୍ର ଏକ ପ୍ରସ୍ତୁତ କରି
ପାତ୍ର ସମତଳ ହୋଇବ ଏକ ପ୍ରସ୍ଥ ଜଳ ଭରିବ

ଚାରି ମଶା ମାତ୍ର ସୁନାରେ ଚାରି ଆଙ୍ଗୁଳିର ଲମ୍ବରେ
ଏକ ଛୁଞ୍ଚି ନିର୍ମାଣ କର ଏ ଛୁଞ୍ଚିରେ ତମ୍ବା ପାତ୍ରର
ତଳେ ଏକ ଛିଦ୍ର କର ତାକୁ ରଖ ଜଳ ଉପର
ଜଳ ପଶି ଛିଦ୍ର ପଥରେ ଯେତେ ସମୟର ମଧ୍ୟରେ

ପାତ୍ରକୁ ବୁଡାଇବ ଜଳେ ଦୃଷ୍ଟିଦେଇ ଦେଖ ନିରୋଳେ
ସେହି ସମୟ ପରିମାଣ ଏକ ନାଡିକା ଅଟେ ଜାଣ
ଆହେ ବିଦୁର ମାନବର ଦିନରାତି ଆଠ ପ୍ରହର
ପନ୍ଦର ଦିବା ରଜନୀରେ ଏକ ପକ୍ଷ ହୁଏ ପୃଥ୍ୱୀରେ

ଶୁକ୍ଳ ଏବଂ କୃଷ୍ଣ ନାମରେ ଦୁଇପକ୍ଷ ଏକ ମାସରେ
ଦୁଇପକ୍ଷ ଏକ ମାସର ଏ ଆହୋରାତ୍ର ପିତୃଙ୍କର
ଏକ ଋତୁ ଦୁଇମାସରେ ଏକ ଅୟନ ଛ ଋତୁରେ
ଦୁଇ ପ୍ରକାର ଏ ଅୟନ ଦକ୍ଷୀଣ ଉତ୍ତର ଆୟନ

ମିଶ୍ରଣେ ଏ ଆୟନ ଦୁଇ ଦେବଙ୍କ ଅହୋରାତ୍ର ହୋଇ
ଏ ମନୁଷ୍ୟର ଏକ ବର୍ଷ କିମ୍ବା ଅଟଇ ବାରମାସ
ପରମାୟୁ ମନୁଷ୍ୟଙ୍କର ଏକ ଶତ ବର୍ଷ ମାତର ।
ଚନ୍ଦ୍ରମା ପ୍ରଭୃତି ଗ୍ରହର ଅଶିନୀ ଆଦି ନକ୍ଷତ୍ରର

ତାରାମଣ୍ଡଳ ଅଧିଷ୍ଠାତା    କାଳରୂପ ସୂର୍ଯ୍ୟ ଦେବତା
ପରମାଣୁରୁ ବର୍ଷ ପର୍ଯ୍ୟନ୍ତ    କାଳେ ଦ୍ୱାଦଶ ରାଶିରୂପ
ଭୂବନ କୋଷକୁ ସମ୍ପୂର୍ଣ୍ଣ    କରିଥାନ୍ତି ପରିକ୍ରମଣ
ସୌର ଚନ୍ଦ୍ର ଆଦି ମାସର    ଭେଦେ ବର୍ଷକୁ ସମ୍ୱତ୍ସର

ପରିବତ୍ସର ଇଡା ବତ୍ସର    ଅନୁବତ୍ସର ସମ୍ୱତ୍ସର
ନାମରେ ହୁଅଇ କଥିତ    କେବା ପାଇବ ତାର ଅନ୍ତ
ହେ ଭକ୍ତ ପ୍ରବର ବିଦୁର    ଏହିପରି ପଞ୍ଚ ପ୍ରକାର
ବର୍ଷ କରିଣ ପ୍ରବର୍ତ୍ତନ    ସୂର୍ଯ୍ୟେ ଉପହାର ଅର୍ପଣ

ତୁମେ ପୂଜାକର ଭକ୍ତିରେ    ଏହି ସୂର୍ଯ୍ୟ ପଞ୍ଚ ଭୂତରେ
ବସନ୍ତି ତେଜ ସ୍ୱରୂପରେ    ସୂର୍ଯ୍ୟ ନିଜ କାଳଶକ୍ତିରେ
ନାନା ପ୍ରକାର ବୀଜାତିରେ    ଅଙ୍କୁର ଜନମ ଶକ୍ତିରେ
ସଦା ଉତ୍ପାଦନ କରନ୍ତି    ଏହାତ ପ୍ରକୃତିର ଅତି

ପୁରୁଷ ମାନଙ୍କର ମୋହ    ନିବାରଣେ ସେ ଜ୍ୟୋତିର୍ମୟ
ପରମାୟୁ କ୍ଷୟ କରନ୍ତି    ଆକାଶ ମାର୍ଗରେ ଭ୍ରମନ୍ତି
ସକାମ ଯଜ୍ଞ କର୍ମ ପ୍ରାପ୍ତ    ସୁମଙ୍ଗଳ ଫଳ ସମସ୍ତ
କରିଥାନ୍ତି ସଦା ବିସ୍ତାର    ସେ ନାରାୟଣ ଦିବାକର

### ବିଦୁର ଉବାଚ

ପୁଣି ପୁଚ୍ଛାକଲେ ବିଦୁର    ଆହେ ମୈତ୍ରେୟ ମୁନିବର
ପିତୃଦେବ ମନୁଷ୍ୟ ଗଣ    ଆୟୁଷ ବର୍ଣ୍ଣିଲେ ଆପଣ
ତିନିଲୋକର ବାହାରରେ    ଯେ ଜ୍ଞାନୀବ୍ୟକ୍ତି ବାସକରେ
ତାଙ୍କ ଗତିକର ବର୍ଣ୍ଣନ    କାଳତ ସ୍ୱୟଂ ଭଗବାନ ।

ତା ଗତି ଜାଣନ୍ତି ଆପଣ    ଶୁଣିବା ପାଇଁ ମୋର ମନ
ଜ୍ଞାନୀ ନିଜ ଯୋଗ ସିଦ୍ଧିରେ    ଦିବ୍ୟ ନୟନ ପ୍ରଭାବରେ
ସର୍ବ ବିଶ୍ୱ ଦେଖି ପାରନ୍ତି    କରନ୍ତୁ ତାହାଙ୍କର ଗତି
ଆପଣତ ସବୁ ଜାଣନ୍ତି    ଆହେ ମୈତ୍ରେୟ ମହାମତି

### ମୈତ୍ରେୟ ଉବାଚ

କହନ୍ତି ସେ ମୈତ୍ରେୟ ମୁନି    ଶୁଣହେ ବିଦୁର ବିଜ୍ଞାନୀ
ସତ୍ୟ, ତ୍ରେତା, ଦ୍ୱାପ କଳିର    ଏହି ଚାରିଯୁଗ ନିଜର
ସନ୍ଧ୍ୟା ଓ ସନ୍ଧ୍ୟାଂଶ ସହିତ    ପରସ୍ପର ହୋଇ ମିଳିତ
ଦେବଙ୍କ ଦ୍ୱାଦଶ ସହସ୍ର    ନିରୂପିତ ହୋଇଛି ବର୍ଷ

ତ୍ରେତା ତିନି ସତ୍ୟ ଚତୁର    କଳିଏକ ଦୁଇ ଦ୍ୱାପର
ଅଟେ ଦିବ୍ୟସସ୍ର ବରଷ    ପ୍ରତିଯୁଗେ ଯେତେ ସହସ୍ର
ଭୋଗହୁଏ ଦିବ୍ୟ ବରଷ    ତାର ଦ୍ୱିଗୁଣ ଶତବର୍ଷ
ସତ୍ୟ ଚାରି ସସ୍ର ବରଷ    ସନ୍ଧ୍ୟା ସନ୍ଧ୍ୟାଶର ବର୍ଷ

ଅନ୍ୟଯୁଗ ବୁଝ ଏମନ୍ତ    ଆହେ ବିଦୁର ବୁଦ୍ଧିମନ୍ତ
ସନ୍ଧ୍ୟାଯୁଗର ଆରମ୍ଭରେ    ସନ୍ଧ୍ୟାଂଶ ଯୁଗର ଶେଷରେ
ସନ୍ଧ୍ୟା ସନ୍ଧ୍ୟାଂଶ ମଧ୍ୟରେ    ଯେତେକ କାଳ ଗଣନାରେ
ଯୁଗ ଅଟଇ ତାର ନାମ    କହନ୍ତି କାଳ ବଦଗଣ

ପ୍ରତିଯୁଗରେ ଏକ ଜାଣ    ବିଶେଷ ଯେ ଧର୍ମ ବିଧାନ
ସତ୍ୟେ ଧର୍ମ ଚାରିପାଦରେ    ରହିଥାଏ ପୂର୍ଣ୍ଣ ଭାବରେ
ତା ପର ଯୁଗ ମାନଙ୍କରେ    ଅଧର୍ମ ବୃଦ୍ଧି ପ୍ରଭାବରେ
ଏକ ଏକ ପାଦ କ୍ଷୀଣ    ବିଦୁର ସାବଧାନେ ଶୁଣ

ହେ ବିଦୁର ଏ ପୃଥ୍ୱୀରେ    ଏକ ସସ୍ର ଯୁଗ ଶେଷରେ
ମହର୍ଲୋକୁ ବ୍ରହ୍ମ ପର୍ଯ୍ୟନ୍ତ    ଏହି ସମସ୍ତ ଯେ ଜଗତ
ଗୋଟିଏ ଦିବସ ହୁଅଇ    ସେପରି ରାତ୍ରି ମଧ୍ୟ ହୋଇ
ବିଶ୍ୱସ୍ରଷ୍ଟା ଚତୁରାନନ    କରନ୍ତି ସେ ରତ୍ରେ ଶୟନ

ବ୍ରହ୍ମ ରଜନୀ ଅବସାନ    ଆରମ୍ଭ ଏକ କଳ୍ପ ପୁନ
ବ୍ରହ୍ମାଙ୍କର ଏକଇ ଦିନ    ଏକ କଳ୍ପ ଯେ ପରିମାଣ
ଚଉଦ ମନୁ କଳ୍ପକରେ    ଭୋଗ ହୁଅଇ ଧୀରେ ଧୀରେ
ପ୍ରତି ମନୁ ଏକ ସପ୍ତତି    ଚତୁର୍ଯ୍ୟୁଗ ଭୋଗ କରନ୍ତି

ପ୍ରତିମନୁରେ ଭିନ୍ନ ଭିନ୍ନ    ମନୁବଂଶୀୟ ନୃପଗଣ
ସପ୍ତର୍ଷିଦେବ ପୁରନ୍ଦର    ଗନ୍ଧର୍ବାଦି ନିଜ ନିଜର
ଭୋଗ କରନ୍ତି ଅଧିକାର    ଶୁଣହେ ଭକତ ବିଦୁର
ଦୈନିକ ସୃଷ୍ଟିରେ ବ୍ରହ୍ମାର    ପୁନପୁନ ପ୍ରତ୍ୟେକ ଥର

ତ୍ରିଲୋକ ରଚିତ ହୁଅଇ    ନିଜ କର୍ମର ଅନୁଯାୟୀ
ପଶୁପକ୍ଷୀ ନର ପିତୃଗଣ    ଦେବତା ଲଭନ୍ତି ଜନମ
ଏ ମନ୍ୱନ୍ତର ମାନଙ୍କରେ    ଭଗବାନ ସତ୍ତ୍ୱ ଅଂଶରେ
ସ୍ୱ ମନୁ ଆଦି ମୂର୍ତ୍ତୀଧରି    ପୌରୁଷକୁ ପ୍ରକଟ କରି

ବିଶ୍ୱକୁ କରନ୍ତି ପାଳନ ବ୍ରହ୍ମାଙ୍କ କାଳକ୍ରମେ ଦିନ
ଶେଷ ହୋଇଲେ ଭଗବାନ ଆଶ୍ରୟ କରି ତମୋଗୁଣ
ସ୍ଥଗିତ କରି ସ୍ୱ ବିକ୍ରମ ପୁନର୍ବାର କରି ଶୟନ
ରହନ୍ତି ନିଶ୍ଚେଷ୍ଟ ଭାବରେ କେ ଅବା ତାହା ବର୍ଣ୍ଣିପାରେ

ଏ ବେଳେ ପ୍ରଳୟର ରାତ୍ରି ଚନ୍ଦ୍ରମା ଭାସ୍କର ନଥାନ୍ତି
ଭୂଃ ପ୍ରଭୃତି ତ୍ରିଭୁବନ ହରିଙ୍କ ଦେହେ ହୁଏ ଲୀନ
ଭୂ ଭୁବ ସ୍ୱ ତିନିଲୋକ ସଙ୍କର୍ଷଣ ମୁଖ ନିଃସୃତ
ଅଗ୍ନିରୂପ ଏହି ଶକ୍ତିରେ. ଦଗ୍ଧ ହୁଏ ଏ ଅବସରେ

ସେ ଅଗ୍ନି ତାପରେ ଆତୁର ଭୃଗୁ ଆଦି ମୁନି ଈଶ୍ୱର
ମହର୍ଲୋକକୁ ଯେ ତେଜନ୍ତି ଜନଲୋକକୁ ଚାଲିଯାନ୍ତି
ପ୍ରଳୟ ପ୍ରଚଣ୍ଡ ବାୟୁରେ ଉଚ୍ଛୁଳି ଉଠନ୍ତି ସାଗରେ
ଉତ୍ତାଳ ତରଙ୍ଗ ଉଠଇ ତ୍ରିଲୋକକୁ ଦିଏ ବୁଡାଇ

ଏ ଅଗାଧ ଜଳ ମଧ୍ୟରେ ଭଗବାନ ଶେଷ ଶଯ୍ୟାରେ
ନୟନକୁ ମୁଦ୍ରିତ କରି ଶୟନ କରନ୍ତି ଶ୍ରୀହରି
ଜନ ଲୋକସ୍ଥ ମୁନିଗଣ ଉଚ୍ଚେ କରନ୍ତି ସ୍ତୁତିଗାନ
ଏପରି କାଳର ଗତିରେ ଏକ ଏକ ସସ୍ର ଯୁଗରେ

କ୍ରମେ ବ୍ରହ୍ମାଙ୍କୁ ଏକଶତ ବର୍ଷ ପରମାୟୁ ହୁଏ ଗତ
ବ୍ରହ୍ମାଙ୍କ ଅୟୁ ଭାଗଅର୍ଦ୍ଧ କଥିତ ହୁଅଇ ପରାର୍ଦ୍ଧ
ଆଦ୍ୟ ପରାଦ୍ଧ ଶେଷ ହୋଇ ଦ୍ୱିତୀୟ ପରାର୍ଦ୍ଧ ଚାଲଇ
ପୂର୍ବ ପରାର୍ଦ୍ଧ ଆରମ୍ଭରେ ବ୍ରାହ୍ମ ନାମ ମହାକଳ୍ପରେ

ଏହାର ନାମ ଶବ୍ଦବ୍ରହ୍ମ କହନ୍ତି କାଳ ବିଦ ଗଣ
ସେ ପରାର୍ଦ୍ଧ ଶେଷ ହେଲା ପରେ ଯେ ପରାର୍ଦ୍ଧ ହୋଇଲା ।
ତାହାକୁ ପାଦ୍ମକଳ୍ପ କହି ଶୁଣ ବିଦୁର ସ୍ଥିର ହୋଇ
ଏଥିରେ ଭଗବାନଙ୍କର ଗଭୀର ନାଭି ସରୋବର

ମଧ୍ୟରୁ ସର୍ବଲୋକାଶ୍ରୟ ପ୍ରକଟ ହେଲା ସରୋରୁହ
ଅବ୍ୟକ୍ତ ନିତ୍ୟ ସର୍ବେଶ୍ୱର ବିଶ୍ୱର ଆତ୍ମା ଶ୍ରୀହରିଙ୍କର
ଏହି ଯେ ପରାର୍ଦ୍ଧ ଦୁଇ ଗୋଟିଏ ନିମିଷ ଅଟଇ
ଯେ କଳ୍ପ ଚାଲେ ବର୍ତ୍ତମାନ ତାହା ଅଟେ କଳ୍ପ ପ୍ରଥମ

ବରାହ କଳ୍ପ ଯାର ନାମ ଏହି କଳ୍ପରେ ଭଗବାନ
ଶୂକର ରୂପେ ଅବତୀର୍ଣ୍ଣ ଦନ୍ତାଗ୍ରେ ପୃଥିବୀ ଧାରଣ
ପରମାଣୁରୁ ଆରମ୍ଭ ହୋଇ ସର୍ବ ସମର୍ଥ କାଳ ଏହି
ଦ୍ୱିପରାର୍ଦ୍ଧ ଯାଏ ବିସ୍ତୃତ ମାତ୍ର ସର୍ବଆତ୍ମା ଅଚ୍ୟୁତ

ଠାରେ ଯାର ନାହିଁ ପ୍ରଭୁତ୍ୱ ସକଳ ଆଧାର ସେହିତ
ଦେହାଦି ମୋହ ପରାୟଣ ଜୀବକୁ କରଇ ଶାସନ
ମନ ଇନ୍ଦ୍ରିୟ ମହତତ୍ତ୍ୱ ପ୍ରକୃତି ଆଦି ପଞ୍ଚଭୂତ
ବୈକାରିକ ତତ୍ତ୍ୱମାନଙ୍କର ମିଶ୍ରଣେ ବ୍ରହ୍ମାଣ୍ଡ କୋଷର

ପଚାଶ କୋଟି ପରିମାଣ ଯୋଜନ ଅଟଇ ବିସ୍ତୀର୍ଣ୍ଣ
ଏହାଛଡା ଉତ୍ତରୋତ୍ତରେ ଦଶଦଶ ଗୁଣ ବିସ୍ତାର
ଅଛି ସାତଟି ଆବରଣ ଏହା ହରିଙ୍କଠାରୁ ଭିନ୍ନ
ହରିଠାରେ ବ୍ରହ୍ମାଣ୍ଡ ଏହି ପରମାଣୁ ପରି ରୁହଇ

ହରିଙ୍କ ଠାରେ ଏହିପରି କୋଟି ବ୍ରହ୍ମାଣ୍ଡ ଅଛି ପୁରି
ଶ୍ରୀଭଗବାନ ଶ୍ରେଷ୍ଠଧାମ ପୁରାଣ ପୁରୁଷ ଉତ୍ତମ
ପ୍ରଧାନାଦି ସର୍ବ କାରଣ କାରଣ ସେ ଅକ୍ଷର ବ୍ରହ୍ମ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ସୃଷ୍ଟି ବର୍ଣ୍ଣନେ ତୃତୀୟ ସ୍କନ୍ଧେ ନାମ ଏକାଦଶୋଽଧ୍ୟାୟ ।

*******

## ଦ୍ୱାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

କହେ ମୈତ୍ରେୟ ମୁନିବର ହେ ଭକ୍ତ ପ୍ରବର ବିଦୁର
ହରିଙ୍କ କାଳ ମହିମାକୁ ପ୍ରଥମେ କହିଲି ତୁମ୍ଭକୁ
ବିଧାତା ଏ ବିଶ୍ୱ ସର୍ଜନ କଲେ କିପରି ଏବେ ଶୁଣ
ତମ ତାମିସ୍ର ମହାମୋହ ଅନ୍ଧ ତାମିସ୍ର ପୁଣି ମୋହ

ଏ ପଞ୍ଚ ବୃତ୍ତି ଅଜ୍ଞାନର ଆଗେ ରଚିଲେ ବେଦବର
ଅବିବେକିତା ଅଟେ ତମ ମୋହାନ୍ତକରଣ ବିଭ୍ରମ
ସଦା ଭୋଗ ସୁଖ କାମନା ମହାମୋହର ନାମସିନା
ମରଣ ଯେ ଅନ୍ଧ ତାମିଶ୍ର କ୍ରୋଧକୁ ବୋଲନ୍ତ ତାମିସ୍ର

ଏପରି ପାପମୟୀ ସୃଷ୍ଟି ଦେଖି ବିଧାତା ହୋଇ କଷ୍ଟି
ହରି ଧ୍ୟାନ ପୁତ ଚିତ୍ତରେ ଅନ୍ୟ ସୃଷ୍ଟିକୁ ବିରଚିଲେ
ଏ ଅନ୍ତେ ବ୍ରହ୍ମା ସନାତନ ସନତ କୁମାର ସନନ୍ଦନ
ସନକ ଆଦି ଚାରିଜଣ ସଦା ନିବୃତ୍ତି ପରାୟଣ

ଉର୍ଦ୍ଧରେତା ମୁନିଗଣଙ୍କୁ ରଚିଲେ ଧାୟୀ ଶ୍ରୀହରିଙ୍କୁ
ବ୍ରହ୍ମା କହିଲେ ସ୍ୱପୁତ୍ରଙ୍କୁ ସୃଷ୍ଟି ଉତ୍ପନ୍ନ କରିବାକୁ
କିନ୍ତୁ ଯେ ସେମାନେ ଆଜନ୍ମ ଚରମ ବ୍ରହ୍ମ ଧ୍ୟାନ ମଗ୍ନ
ନିବୃତ୍ତି ମାର୍ଗ ପରାୟଣ ଆଶ୍ରିତ ଶ୍ରୀହରି ଚରଣ

ସୃଷ୍ଟି କରିବାକୁ ଉତ୍ପନ୍ନ କଦାପି ନ କରିଲେ ମନ
ଅବାଧ ପୁତ୍ରଙ୍କୁ ଦେଖିଣ ବ୍ରହ୍ମାଙ୍କ କ୍ରୋଧ ହେଲା ଜନ୍ମ
ମାତ୍ର ସେ କ୍ରୋଧକୁ ଦମନ ଚେଷ୍ଟା କରିଲେ ପୁନ ପୁନ
ବୁଦ୍ଧିରେ ନୋହି ନିୟନ୍ତ୍ରିତ ସେହି କ୍ରୋଧ ତତ୍କ୍ଷଣାତ୍

ବ୍ରହ୍ମାଙ୍କ ଭ୍ରୂଲତା ଯୁଗଳ ସେହି କ୍ରୋଧ ମଧ୍ୟସ୍ଥଳର
ନୀଳରକ୍ତ ବାଳ ରୂପରେ ପ୍ରକାଶ ହେଲା ସେ କାଳରେ
ସେହି ବାଳକ ଦେବଗଣ ପୂର୍ବଜ ରୁଦ୍ର ଭଗବାନ
ଉଚ୍ଚସ୍ୱରେ କଲା କ୍ରନ୍ଦନ କହିଲା ହେ ଚତୁର୍ବଦନ

ହେ ଜଗତପିତା ମୋ ନାମ ସ୍ଥାନ କରନ୍ତୁ ନିରୂପଣ
ପଦ୍ମଜ ବ୍ରହ୍ମା ଭଗବାନ ସେ ବାଳ ପ୍ରାର୍ଥନା ପୁରଣ
ନିମିତ୍ତ ମଧୁର ବାଣୀରେ ଆଶ୍ୱାସନା ଦେଇ କହିଲେ
ବାଳକ ନକର କ୍ରନ୍ଦନ ଇଛାତୋ କରୁଛି ମୁଁ ପୂର୍ଣ୍ଣ

ହେ ଦେବ ଶ୍ରେଷ୍ଠ ତୁମେ ଜନ୍ମ ହେବା ମାତ୍ରେ ବାଳକ ସମ
ଉଦ୍‌ବେଗେ କରୁଛ କ୍ରନ୍ଦନ ରୁଦ୍ର ହୋଇଲା ତୁମ ନାମ
ହୃଦୟେ ଇନ୍ଦ୍ରିୟ ପବନ ଅନଳ ଜଳ ପୃଥ୍ୱୀ ପ୍ରାଣ
ତପସ୍ୟା ଚନ୍ଦ୍ରମା ତପନ ଏହି ସବୁ ସକଳ ସ୍ଥାନ

ତୁମର ଆବାସ ନିର୍ମାଣ ପ୍ରଥମେ କରିଅଛି ଜାଣ
ଋତୁଧ୍ୱଜ ଉଗ୍ରରେତା ଭବ ମନ୍ୟୁ ମହିମ ସଦାଶିବ
ମନୁ କାଳ ସେ ବାମଦେବ ଏସବୁ ନାମ ତୁମ ହେବ
ଧୀ ବୃତ୍ତି ନିଯୁତ ଉଶନା ସର୍ପି ଇଳା ଅମ୍ବିକା ଉମା

ଇରାବତୀ ଦୀକ୍ଷା ସୁଦାମ୍ନୀ ଏହି ଏକାଦଶ ରୁଦ୍ରାଣୀ
ତୁମର ହୋଇବେ ଯେ ପତ୍ନୀ ତୁମେ ତ ସ୍ୱୟଂ ପ୍ରଜାପତି
ଯଥାର୍ଥ ନାମ ସ୍ଥାନ ପତ୍ନୀ ଆହେ ରୁଦ୍ର ତୁମେ ମହାମତି
ଗ୍ରହଣ କର ହେ ସୁଧୀର ବହୁପ୍ରଜା ଉତ୍ପନ୍ନ କର

ଲୋକିତାଶ୍ରୀ ବ୍ରହ୍ମାଙ୍କର ଆଦେଶ ପାଇ ଏ ପ୍ରକାର
ନୀଳ ଲୋହିତ ଭଗବାନ ବଳ ଆକୃତି ନିଜ ସମ
ପ୍ରଜା କରିଲେ ଉତ୍ପାଦନ ରୁଦ୍ରଙ୍କ ସୃଷ୍ଟ ରୁଦ୍ରଗଣ
ଯୂଥ ଯୂଥ କରି ଭ୍ରମଣ ସଂସାର କରିଲେ ଭକ୍ଷଣ

ଏହା ଦେଖି ବ୍ରହ୍ମା ଭୟରେ ସମସ୍ତ ରୁଦ୍ରଙ୍କୁ କହିଲେ
ଆହେ ସୁରଶ୍ରେଷ୍ଠ ତୁମର ସେ ପ୍ରଜାଗଣ ମାନଙ୍କର
ଅତି ଭୟଙ୍କର ଦୃଷ୍ଟିରେ ଭ୍ରମଣ କରି ଏ ବିଶ୍ୱରେ
ଏ ପୃଥ୍ୱୀକୁ ମୋର ସହିତ କରୁ ଅଛନ୍ତି ଭସ୍ମିଭୂତ

ସେ ହେତୁ ତୁମେ ପୁନର୍ବାର ଏହିପରି ସୃଷ୍ଟି ନକର
ହେ ରୁଦ୍ର ହେଉ ତୋ କଲ୍ୟାଣ ତୁମେ ତପକର ସାଧନ
ତପ ପ୍ରଭାବ ଲାଭକରି ସୃଷ୍ଟି ରଚିବ ପୂର୍ବପରି
ଇନ୍ଦ୍ରିୟାତୀତ ସ୍ୱୟଂ ଜ୍ୟୋତି ସର୍ବାନ୍ତର୍ଯ୍ୟାମୀ ବିଶ୍ୱପତି

ହରିଙ୍କୁ ତପ ପ୍ରଭାବରେ ପୁରୁଷ ଅତି ସହଜରେ
କେବଳ କରଇ ଦର୍ଶନ ହୁଅଇ ଜଗତ କଲ୍ୟାଣ

### ମୈତ୍ରେୟ ଉବାଚ

ମୈତ୍ରେୟ କହେ ବିଦୁରକୁ ଧାତାଙ୍କ ଏହି ଆଦେଶକୁ
ମସ୍ତକରେ କରି ଧାରଣ ସେ ରୁଦ୍ରଦେବ ଭଗବାନ
ତହିଁରେ ପ୍ରକାଶି ସମ୍ମତି ଧାତାଙ୍କ ନେଇ ଅନୁମତି
ଆନନ୍ଦେ ପରିକ୍ରମା କଲେ ତପପାଇଁ ବନେ ଗମିଲେ

ଭଗବତ୍ ଶକ୍ତି ପ୍ରଭାବରେ ବ୍ରହ୍ମାପୁଣି ପ୍ରଜା ସୃଷ୍ଟିରେ
ସଙ୍କଳ୍ପ କରନ୍ତେ ତାଙ୍କର ଜାତ ହେଲେ ଦଶ କୁମର
ଅଙ୍ଗିରା ପୁଲସ୍ତ୍ୟ ପୁଲହ ମରୀଚି ଅତ୍ରି କ୍ରତୁ ସହ
ଭୃଗୁ ବଶିଷ୍ଠ ଦକ୍ଷ ଜାଣ ନାରଦ ଅଟେ ତାଙ୍କ ନାମ

କୋଳରୁ ନାରଦ ଜନମ ଅଙ୍ଗୁଳିରୁ ଦକ୍ଷ ଉତ୍ପନ୍ନ
ପ୍ରାଣୁ ବଶିଷ୍ଠ ଭୃଗୁ ଚର୍ମ ନାଭିରୁ ପୁଲହ ଜନମ
ମୁଖୁ ଅଙ୍ଗିରା ନେତ୍ରୁ ଅତ୍ରି ହସ୍ତ କ୍ରତୁ ମରିଚି ମତି
କର୍ଣ୍ଣରୁ ପୁଲସ୍ତ୍ୟ ଜନମ କ୍ରମେ କ୍ରମେ ହେଲେ ଜନମ

ଦକ୍ଷୀଣ ସ୍ତନମଧ୍ୟୁ ଧର୍ମ ପୃଷ୍ଠରୁ ଅଧର୍ମ ଜନମ
ଧର୍ମ ପତ୍ନୀ ମୂର୍ତ୍ତୀ ଗର୍ଭରେ ନାରାୟଣ ଅବତରିଲେ
ସଂସାରର ଭୟ କାରଣ ଅଧର୍ମରୁ ମୃତ୍ୟୁ ଉତ୍ପନ୍ନ ।
ଭ୍ରୂମଧ୍ୟୁ କ୍ରୋଧ ହୃଦୁ କାମ ତଳି ଓଠରୁ ଲୋଭ ଜନ୍ମ

ମୁଖରୁ ବାଣୀ ଅଧିଷ୍ଠାତ୍ରୀ ମା ସରସ୍ୱତୀ ବିଦ୍ୟାଦାତ୍ରୀ
ଲିଙ୍ଗରୁ ଜନମ ସାଗର ପାୟୁରୁ ଆଶ୍ରୟ ପାପର
ନିରତି ହେଲେ ଉତ୍ପତ୍ତି ଛାୟା ଦେବ ହୁତି ପତି
କର୍ଦ୍ଦମ ଋଷିଙ୍କର ପତ୍ନୀ ସୁଶୀଳ ଅତି ଭାଗ୍ୟବତୀ

ସାରାଜଗତ ଏ ପ୍ରକାର ବିଶ୍ୱକର୍ତ୍ତା ଶ୍ରୀ ବ୍ରହ୍ମାଙ୍କର
ଶରୀର ମନରୁ ଜନମ ହେ ବିଦୁର ମନ ଦେଇ ଶୁଣ
ଏ ଅନ୍ତେ ଶୁଣ ହେ ବିଦୁର ଭଗବାନ ଶ୍ରୀ ବ୍ରହ୍ମାଙ୍କର
ଦୁହିତା ଅତି ସୁକୁମାରୀ ସରସ୍ୱତୀ ଥିଲେ ସୁନ୍ଦରୀ

ତାଙ୍କର କୌଣସି କାମନା ନଥିଲା ହୃଦୟ ବାସନା
ମାତ୍ର ତା ରୂପ ଦର୍ଶନରେ ବିଧାତା ମୋହିତ ହୋଇଲେ
ଅଧର୍ମ ସଙ୍କଳ୍ପ ଦର୍ଶନ କରି ତାହାଙ୍କ ପୁତ୍ରଗଣ
ମରିଚି ଆଦି ବିଶ୍ୱାସରେ ପିତାଙ୍କୁ ବୁଝାଇ କହିଲେ

ହେ ପିତା ସମର୍ଥ ଆପଣ କାମକୁ ନକରି ଦମନ
ଦୁହିତା ଗମନ ଦୁଷ୍କର୍ମ ସଙ୍କଳ୍ପ କରୁଛ ଆପଣ
କଉଣସୀ ବ୍ରହ୍ମା ପୂର୍ବରେ ଏପରି ପାପ କରି ନଥିଲେ
କରିବେ ନାହିଁ ଭବିଷ୍ୟରେ ଏ ତିନିଲୋକ ମଧ୍ୟରେ

ତେଜସ୍ୱୀ ପୁରୁଷ ଆପଣ ଏକର୍ମ ନୁହଁଇ ଶୋଭନ
ଆପଣଙ୍କ ସଦାଚାରଣ ଅନୁସରଣ ଜୀବଗଣ
ସଂସାରେ ଲଭନ୍ତି କଲ୍ୟାଣ ଯେ ଜ୍ୟୋତିର୍ମୟ ଭଗବାନ
ଅବ୍ୟକ୍ତ ନିତ୍ୟ ନିରଞ୍ଜନ ସ୍ୱରୂପେ କରି ଅବସ୍ଥାନ

ନିଜ ତେଜରେ ଏ ଜଗତ କରିଅଛନ୍ତି ପ୍ରକାଶିତ
ତାଙ୍କୁ କରୁଅଛୁ ପ୍ରଣାମ ସେ ଭଗବାନ ବର୍ତ୍ତମାନ
କରିବେ ହିଁ ଧର୍ମରକ୍ଷଣ ନିଜ ପୁତ୍ରଙ୍କ କଥା ସ୍ମରିଣ
ବ୍ରହ୍ମା ନିଜ ଦେହୁ ତେଜିଲେ ଶୁଣ ଯା ଘଟିଲା ଯାପରେ

ଦିଗଗଣ ସେ ସମୟରେ ତାଙ୍କ ଦେହକୁ ଗ୍ରହଣ କଲେ
ଘନ କୁହୁଡି ସେ ବେଳରେ ବ୍ୟାପିଗଲା ଚତୁର୍ଦ୍ଦିଗରେ
ଯାହାକୁ ମଧ ଅନ୍ଧକାର ବୋଲି କହନ୍ତି ଏ ସଂସାର
ଏହି ବିଶ୍ୱକୁ ପୂର୍ବପରି ରଚନା କରିବି କିପରି

ବିଧାତା ଭାବୁଥିଲା ବେଳେ ମୁଖୁଁ ଚତୁର୍ବେଦ ଜନ୍ମିଲେ ।
ଉପବେଦ ବ୍ରହ୍ମା ଉଦ୍‌ଗାତା ଅଧ୍ୱର୍ଯ୍ୟୁ ନ୍ୟାୟଶାସ୍ତ୍ର ହୋତା
ଏ ଚାରି ପୁରୋହିତ କର୍ମ ଧର୍ମର ଚତୁର ଚରଣ
ଯଜ୍ଞ ବିସ୍ତାର ବର୍ଣ୍ଣାଶ୍ରମ ବିଭିନ୍ନ ବୈଦିକ ବିଧାନ
ପୁଣି ବର୍ଣ୍ଣାଶ୍ରମ ବୃତ୍ତି ତାଙ୍କ ମୁଖୁ ହେଲା ଉତ୍ପତ୍ତି

## ବିଦୁର ଉବାଚ

ପୁଣି ବିଦୁର କଲେ ପ୍ରଶ୍ନ ଆହେ ମୈତ୍ରେୟ ତପୋଧନ
ବିଶ୍ୱସ୍ରଷ୍ଟା ବ୍ରହ୍ମା ଯେବେଳେ ମୁଖୁ ଚତୁର୍ବେଦ ରଚିଲେ
ନିଜ ମୁଖରୁ ସେତେବେଳେ ପୁଣି ଆଉ କି ସୃଷ୍ଟି କଲେ
ବୁଝାଇ କହନ୍ତୁ ଆପଣ ଶୁଣିବା ପାଇଁ ମୋର ମନ

## ମୈତ୍ରେୟ ଉବାଚ

ମୈତ୍ରେୟ ବୋଲେ ହେ ବିଦୁର ଶୁଣ ଏ ସର୍ବ ସମଚାର
ବ୍ରହ୍ମା ନିଜ ପୂର୍ବ ଦକ୍ଷୀଣ ପଶ୍ଚିମ ଉତ୍ତର ବଦନ
ମଧ୍ୟରୁ ଋକ ଯଜୁ ସାମ ଅଥର୍ବ ରଚି ଯଥାକ୍ରମ
ଶାସ୍ତ୍ର ହେତାଙ୍କର ଯେ କର୍ମ ଇଜ୍ୟା ଯେ ଅଧ୍ୱର୍ଯ୍ୟୁ କରମ

ଉଦ୍‌ଗାତା କର୍ମ ସ୍ତୁତି ସ୍ତୋମ ବ୍ରହ୍ମାଙ୍କ ପ୍ରାୟଶ୍ଚିତ କର୍ମ
ଚାରିକର୍ମ ଶାସ୍ତ୍ର ରଚିଲେ ନିଜ ବିଚାର ଅନୁସାରେ
ଆୟୁର୍ବେଦ ଯେ ଧନୁର୍ବେଦ ଗାନ୍ଧର୍ବ ସ୍ଥାପତ୍ୟାଦି ବେଦ
ଚତୁ ଉପବେଦ କ୍ରମରେ ପୂର୍ବାଦି ମୁଖରୁ ରଚିଲେ

ସେ ସର୍ବଦର୍ଶୀ ଭଗବାନ ବ୍ରହ୍ମା ନିଜ ଚାରି ବଦନ
ମଧ୍ୟୁ ଇତିହାସ ପୁରାଣ ପଞ୍ଚମ ବେଦ କଲେ ଜନ୍ମ
ଷୋଡଶୀ ଉତ୍‌କଥ ଚୟନ ଅଗ୍ନିଷ୍ଟୋମ ଓ ଆପ୍ତୋର୍ଯ୍ୟାମ
ଅତି ରାତ୍ର ଯେ ବାଜପେୟୀ ଏପରି ଯଜ୍ଞ ଦୁଇ ଦୁଇ

ପୂର୍ବାଦି ମୁଖରୁ କ୍ରମରେ ଏମାନେ ଉତ୍‌ପନ୍ନ ହୋଇଲେ
ତପସ୍ୟା ସତ୍ୟ ବିଦ୍ୟା ଦାନ ଧର୍ମର ଏଚାରି ଚରଣ
ବୃତ୍ତି ସହ ଚାରି ପ୍ରକାଶିତ ସାବିତ୍ରୀ ବ୍ରହ୍ମ ପ୍ରଜାପତ୍ୟ
ବହତ୍ ଏହି ଚାରିବୃତ୍ତି ବ୍ରହ୍ମଚାରି ପାଇଁ ଉତପତି

ଶିଳୋଞ୍ଛ ସଂଚୟ ଶୀଳୀନ ବାର୍ତ୍ତା ଏ ଚାରି ବୃତ୍ତି ପୁନ
ଗୃହସ୍ଥଙ୍କ ପାଇଁ ଉତ୍‌ପତ୍ତି ରଚିଲେ ବ୍ରହ୍ମା ବେଦ ପତି
ବୈଖାନସ ଓ ବାଳଖିଲ୍ୟ ଫେନପ ପୁଣି ଔଡ଼ମ୍ବର
ବାନପ୍ରସ୍ଥ ଚାରି ପ୍ରକାର ମନ ଦେଇ ଶୁଣ ବିଦୁର

କୁଟିଚକ ବହୁଦକ ହଂସ ନିଷ୍କ୍ରିୟ ଯେ ପରମ ହଂସ ।
ସନ୍ୟାସୀ ଏ ଚାରପ୍ରକାରେ ଉତ୍‌ପନ୍ନ ହେଲେ ଏହାପରେ
ବାରଣ ଅନ୍ୱିକ୍ଷିକୀ ତ୍ରିୟୀ ଦଣ୍ଡନୀତି ବିଦ୍ୟା ଚତୁଷ୍ଟୟୀ ।
ପୁଣି ଚତୁର୍ବିଧ ବ୍ୟାହୃତି ବ୍ରହ୍ମାଙ୍କ ମୁଖରୁ ଉତ୍‌ପତି

ଓଁକାର ହୃଦୟା କାଶରୁ ଯେ ଅଟେ ସର୍ବ ମନ୍ତ୍ରଗୁରୁ ।
ଉଷ୍ଣିଙ୍କ ଲୋମରୁ ଜନମ ତ୍ୱଚାରୁ ଗାୟତ୍ରୀ ଉତ୍ପନ୍ନ
ତ୍ରିଷ୍ଟୁପ ଜନମ ମାଂସରୁ ଅନୁଷ୍ଟପ ହେଲା ସ୍ନାୟୁରୁ
ଅସ୍ଥି ଜଗତୀ ମଜ୍ଜା ପଙ୍‌କ୍ତି ପ୍ରାଣରୁ ସମ୍ଭବ ବୃହତୀ

ଶରୀର ସ୍ୱର ସ୍ପର୍ଶବର୍ଣ୍ଣ ଇନ୍ଦ୍ରିୟ ଗଣ ଉଷ୍ମବର୍ଣ୍ଣ
ବାଳ ଅଟେ ଅନ୍ତସ୍ଥ ବର୍ଣ୍ଣ ନିଷାଦ ଋଷଭ ମଧ୍ୟସ୍ଥ
ଷଡଜ ଧୈବତ ପଞ୍ଚମ ଏପରି ଭାବେ କ୍ରମ କ୍ରମ
ଗାନ୍ଧାର ଏହି ସ୍ୱରସାତ ତାଙ୍କ କ୍ରୀଡାରୁ ହେଲାଜାତ

ବ୍ରହ୍ମା ଶବ୍ଦ ବ୍ରହ୍ମ ସ୍ୱରୂପ ସେ ବୈଖରୀ ରୂପରେ ବ୍ୟକ୍ତ
ଅବ୍ୟକ୍ତ ଓଁକାର ରୂପରେ ପୁଣି ନାନାବିଧ ଶକ୍ତିରେ
ହୋଇ ଅଛନ୍ତି ବିରାଜିତ ଶୁଣ ହେ ବିଦୁର ଧୀମନ୍ତ
ହେ ବିଦୁର ବ୍ରହ୍ମା ତାଙ୍କର ଆଦ୍ୟ କାମାସକ୍ତ ଶରୀର

ତେଜି ଧରି ଅନ୍ୟ ଶରୀର ବିଚାରିଲେ ବିଶ୍ୱ ବିସ୍ତାର
ମରୀଚି ଆଦି ଋଷିଗଣ ସୃଷ୍ଟି ବିସ୍ତାରରେ ଅକ୍ଷମ
ଏହା ଦେଖି ବ୍ରହ୍ମା ହୃଦରେ ଚିନ୍ତା କରିବାକୁ ଲାଗିଲେ
ନିରନ୍ତର ଚେଷ୍ଟା କରଇ ମାତ୍ର ପ୍ରଜା ବୃଦ୍ଧି ନୁହଁଇ

ଅତି ଆଶ୍ଚର୍ଯ୍ୟ ଲାଗୁଅଛି ଦୈବ କିଛି ବିଘ୍ନ କରୁଛି
ଏପରି ଦୈବ ବିଷୟରେ ଚିନ୍ତା କରୁଥିବା କାଳରେ
ତାହାଙ୍କ ଶରୀର ହଠାତ ହେଲା ଦୁଇଭାଗ ବିଭକ୍ତ
ବ୍ରହ୍ମା 'କ' ନାମେ ପରିଚିତ ରୂପ ଦ୍ୱିଭାଗରେ ବିଭକ୍ତ ।

ହେବାରୁ ଶରୀରକୁ 'କାୟ' କହନ୍ତି ସଂସାରେ ନିଶ୍ଚୟ ।
ଏହି ଦ୍ୱିଭାଗରୁ ଦେହର ପ୍ରକଟ ନାରୀ ପୁରୁଷର
ତନ୍ମଧ୍ୟୁ ପୁରୁଷ ଯେ ଥିଲେ ସେ ସ୍ୱାୟମ୍ଭୁବ ମନୁ ହେଲେ
ସ୍ତ୍ରୀ ଭାଗ ଶତରୂପା ହେଲା ସ୍ୱାୟମ୍ଭୁବ ମନୁ ହେଲେ

ସ୍ତ୍ରୀ ଭାଗ ଶତରୂପା ହେଲା ସ୍ୱୟମ୍ଭୁବ ରାଣୀ ବୋଲାଇଲେ
ସେ ଦୁହେଁ ମିଥୁନ ଧର୍ମରେ ପ୍ରଜା ବୃଦ୍ଧି କଲେ ବିଶ୍ୱରେ
ସ୍ୱାୟମ୍ଭୁବଙ୍କ ଔରସରେ ରାଣୀ ଶତରୂପା ଗର୍ଭରେ
ପାଞ୍ଚ ସନ୍ତାନ ହେଲେ ଜନ୍ମ ଶୁଣ ବିଦୁର ଦେଇ ମନ ।
ଉତ୍ତାନପାଦ ପ୍ରିୟବ୍ରତ ନାମରେ ଦୁଇପୁତ୍ର ଜାତ
ଆକୂତି ଦେବହୂତି ପ୍ରସୂତି କନ୍ୟା ତ୍ରୟ ହେଲେ ଉତ୍‌ପତ୍ତି

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ବିଦୁର ମୈତ୍ରେୟ ସମ୍ବାଦେ ନାମ ଦ୍ୱାଦଶୋଽଧ୍ୟାୟ ।

*******

## ତ୍ରୟୋଦଶ ଅଧ୍ୟାୟ

କହନ୍ତି ଶୁକ ମୁନିବର  ଶୁଣ ପରୀକ୍ଷ ଦଣ୍ଡଧର
ମୈତ୍ରେୟଙ୍କ ଠାରୁ ବିଦୁର  ଶୁଣି କୃଷ୍ଣଲୀଳା ମଧୁର
ଶ୍ରଦ୍ଧାରେ ଅତି ଆଦରରେ  ପୁଣି ଶୁଣିବାକୁ ପୁଛିଲେ ।

### ବିଦୁର ଉବାଚ

ପଚାରିଲେ ଭକ୍ତ ବିଦୁର  ଆହେ ମୈତ୍ରେୟ ମୁନିବର
ସ୍ୱାୟମ୍ଭୁ ବ୍ରହ୍ମାଙ୍କ ସନ୍ତତି  ସ୍ୱାୟମ୍ଭୁବ ମନୁ ନୃପତି
ପତ୍ନୀ ଶତରୂପା ସଙ୍ଗରେ  କି କି କର୍ମମାନ କରିଲେ
ଆଦିରାଜ ରାଜର୍ଷି ବର  ସେ ସ୍ୱୟମ୍ଭୁବ ମନୁଙ୍କର

ସୁପବିତ୍ର ଚରିତ ମାନ  ଆପଣ କରନ୍ତୁ ବର୍ଣ୍ଣନ
ଶ୍ରୀବିଷ୍ଣୁ ଚରଣ ଆଶ୍ରିତ  ସେହି ରାଜର୍ଷିଙ୍କ ଚରିତ
ଶ୍ରବଣ ପାଇଁ ଇଛା ମୋର  ହୃଦୟ ମଧ୍ୟେ ଯାହାଙ୍କର
ଭଗବାନ ମୁକୁନ୍ଦଙ୍କର  ରାଜେ ପଦ୍ମପାଦ ସୁନ୍ଦର
ସେ ଭକ୍ତର ଗୁଣ ଶ୍ରବଣ  କରିବା ମାନବର ଧର୍ମ

### ଶ୍ରୀ ଶୁକ ଉବାଚ

କହିଲେ ଶୁକ ହେ ରାଜନ  ପରୀକ୍ଷ ମନଦେଇ ଶୁଣ
ସହସ୍ର ଶୀର୍ଷା ଭଗବାନ  ଶ୍ରୀକୃଷ୍ଣ ଯାକୋଳେ ଚରଣ
କରନ୍ତି ସ୍ନେହେ ପ୍ରସାରଣ  ସେହି ଅତ୍ୟନ୍ତ ଭାଗ୍ୟବାନ
ହରି ଆଶ୍ରିତ ବିଦୁରର  ପ୍ରେରଣାରେ ସେ ମୁନିବର
ପ୍ରେମ ପୁଲକିତ ଚିତ୍ତରେ  ଲୀଳା ବର୍ଣ୍ଣନା ଆରମ୍ଭିଲେ ।

### ମୈତ୍ରେୟ ଉବାଚ

ଭାର୍ଯ୍ୟା ଶତରୂପା ସହିତ  ମନୁ ଯେବେଳେ ହେଲେ ଜାତ
ସେତେବେଳେ ସେ ବିନୟରେ ଦୁଇହାତ ଯୋଡି କହିଲେ
ହେ ଭଗବାନ ଏକମାତ୍ର  ଆପଣ ହିଁ ଜୀବ ଜଗତ
ସର୍ବଜୀବର ଜନ୍ମଦାତା  ଜୀବିକା ଦାନକାରୀ ପିତା

ତଥାପି ମୁଁ ତବ ସନ୍ତାନ  କେଉଁ ଭାବରେ କରି କର୍ମ
କରିବି ତୋ ପାଦେ ସେବନ  ମୁଅଟେ ବାଳକ ଅଜ୍ଞାନ
ଆଦେଶ କରନ୍ତୁ ଆପଣ  ହେ ପୂଜାସ୍ପଦ ଭଗବାନ
ଘେନନ୍ତୁ ଆମର ପ୍ରଣାମ  ଏହି ଦୀନର ନିବେଦନ

କରି ପାରିଲେ କେଉଁ କର୍ମ  ଏ ମର ଜଗତରେ ମମ
ରହିବ ଅକ୍ଷୟ କିରତି  ପରଲୋକେ ହେବ ସଦ୍‌ଗତି

### ବ୍ରହ୍ମୋବାଚ

ହେ ତାତ ପୃଥିବୀ ଈଶ୍ୱର  ସର୍ବ ଶୁଭହେଉ ତୁମର
ତୁ ନିଷ୍କପଟ ଭାବ ବହି  ମୋ ଆଜ୍ଞା ପାଳିବାକୁ କହି
କରିଲୁ ଆତ୍ମ ସମର୍ପଣ  ତୋଠାରେ ତୋଷ ମୋର ମନ
ନିଜର ଜନକଙ୍କୁ ପୁତ୍ର  ଏପରି ପୂଜିବା ଉଚିତ୍ ।

ଇର୍ଷ୍ୟା ବିଦ୍ୱେଶ ତ୍ୟାଗ କର  ପିତୃଆଜ୍ଞା ପାଳ ସତ୍ତ୍ୱର
ନିଜ ଶକ୍ତିରେ ସାବଧାନ  ସନ୍ତାନକର ଉତ୍ପାଦନ
ତୁମେ ଏହି ଭାର୍ଯ୍ୟା ଗର୍ଭରେ  ନିଜପରି ଗୁଣ ରୂପରେ
ସନ୍ତାନକରି ଉତ୍ପାଦନ  ଧର୍ମେ କର ପୃଥ୍ୱୀପାଳନ

ଭକ୍ତିରେ ଶ୍ରୀ ହରି ଚରଣ  କର ସର୍ବଦା ଆରାଧନ
ମୋର ମହାନ ସେବାକର୍ମ  ହେ ରାଜନ ପ୍ରଜାପାଳନ
ଶ୍ରୀହରି ହୋଇବେ ପ୍ରସନ୍ନ  କର ସର୍ବଦା ପ୍ରଜାପାଳନ
ଯାଠାରେ ନୁହଁନ୍ତି ପ୍ରସନ୍ନ  ଯଜ୍ଞମୂରତି ଭଗବାନ

ବୃଥା ନ ହୁଏ ତାର ଶ୍ରମ  ଏହା ସତ୍ୟ ଧ୍ରୁବ ବଚନ
ଏପରି ଲୋକ ଏ ସଂସାରେ  ଆତ୍ମାକୁ ଅନାଦର କରେ

### ମନୁ ଉବାଚ

ମନୁ କହିଲେ ଆହେ ପିତ  ତୁମେ ପାପ ନାଶେ ସମର୍ଥ
ନିଷ୍ଠେ ତୋର ଆଜ୍ଞା ପାଳନ  ବିଚାରି କୁହନ୍ତୁ ଆପଣ
ମୋ ଭବିଷ୍ୟତ ପ୍ରଜାଗଣ  କେଉଁଠି କରିବେ ବିଶ୍ରାମ
ଜୀବମାନଙ୍କ ବାସସ୍ଥାନ  ପୃଥ୍ୱୀପ୍ରଳୟ ଜଳମଗ୍ନ
ତୁମେ ପୃଥ୍ୱୀକୁ ବର୍ତ୍ତମାନ  ଉଦ୍ଧାର ପାଇଁ କର ଯତ୍ନ ।

### ମୈତ୍ରେୟ ଉବାଚ

ମୈତ୍ରେୟ ମୁନି ଆନନ୍ଦରେ  କହିଲେ ବିଦୁରକୁ ଧୀରେ
ପୃଥ୍ୱୀକୁ ଜଳରେ ନିମଗ୍ନ  ବିଲୋକି ଚତୁର ଆନନ
କିପରି ଉଦ୍ଧାର କରିବି  ବହୁ ସମୟ ହେଲେ ଭାବି
ଲୋକ ସର୍ଜନା ସମୟରେ  ପୃଥିବୀ ବୁଡିଲା ଜଳରେ

ଚାଲିଗଲା ରସା ତଳରେ  ମୁନିଯୁକ୍ତ ସୃଷ୍ଟି କର୍ମରେ
କିବା କରିବ ବର୍ତ୍ତମାନ  ଯାଇ ସଙ୍କଟ ମୋର ଜନ୍ମ
ସେ ହରି ସର୍ବ ଶକ୍ତିମାନ  ମୋ କର୍ମ କରନ୍ତୁ ପୂରଣ
ଏପରି ଚିନ୍ତା କରୁ କରୁ  ବ୍ରହ୍ମାଙ୍କର ନାଶା ଛିଦ୍ରରୁ

ହଠାତ ଅଙ୍ଗୁଳି ଆକାର  ବରାହ ଶାବକବହାର
ବରାହ ଶିଶୁ ବାହାରିଲା  ବ୍ରହ୍ମାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା
ଚାହୁଁ ଚାହୁଁ ଦୃଷ୍ଟି ସମ୍ମୁଖେ  ବୃଦ୍ଧିପ୍ରାପ୍ତ ହୋଇ କ୍ଷଣକେ
ମହାହସ୍ତୀପରି ଦିଶଇ  ଏକି ଦୈବୀ ମାୟା ଅଟଇ

ସେ ବିଶାଳ ବରାହ ମୂର୍ତ୍ତୀ  ଦେଖି ମରିଚି ଆଦି ଯତୀ
ମନୁ ସହ ସନତ କୁମାର  ବ୍ରହ୍ମାକଲେ ମନେ ବିଚାର
ଆଜି ଯେ ଶୁକର ରୂପରେ  ଦିବ୍ୟ ପ୍ରାଣୀ ଦୃଶ୍ୟ ଏଠାରେ
ଏତ ମୋ ନାସିକା ଭିତରୁ  ବାହାରିଲା କେଉଁ ସ୍ଥାନରୁ

ପ୍ରଥମେ ଏତ ଅଙ୍ଗୁଳିର  ପବ ପରିଥିଲା ସୁନ୍ଦର
କ୍ଷଣକ ମଧ୍ୟେ ବୃଦ୍ଧିପାଇ  ବଡ ଶିଳାପରି ଦିଶଇ
ଏହି ନିଶ୍ଚୟ ଯଜ୍ଞ ମୂର୍ତ୍ତି  ସ୍ୱୟଂ ଭଗବାନ ଅଟନ୍ତି
ଆମ ମନଙ୍କୁ ବିମୋହିତ  କରିବାପାଇଁ ଆବିର୍ଭୂତ

ବ୍ରହ୍ମା ପୁତ୍ରଙ୍କର ସଙ୍ଗରେ  ଏହା ବିଚାରି ବା କାଳରେ
ସେ ଭଗବାନ ଯଜ୍ଞ ମୂର୍ତ୍ତୀ  ଧରି ପରବତ ଆକୃତି ।
ଗର୍ଜନ କରିଲେ ଉଚ୍ଚରେ  ହରିଙ୍କ ସେହି ଗର୍ଜନରେ
ଦିଗ ହେଲା ପ୍ରତିଧ୍ୱନିତ  ଋଷିଏ ହେଲେ ଆନନ୍ଦିତ

ସର୍ବଦୁଃଖ ହରଣ କାରୀ  ମାୟା ଶୂକର ରୂପ ଧାରୀ
ଭଗବାନଙ୍କର ଭୀଷଣ  ଘୋର ନାଦ କରି ଶ୍ରବଣ
ଜନ ତପ ସତ୍ୟ ଲୋକରେ  ଥିବା ମୁନିମାନେ ଭକ୍ତିରେ
ତ୍ରିବେଦ ପବିତ୍ର ମନ୍ତ୍ରରେ  ତାଙ୍କର ସ୍ତୁତି ଆରମ୍ଭିଲେ ।

ଶ୍ରୀହରିଙ୍କ ସ୍ୱରୂପ ତତ୍ତ୍ୱ  ବେଦରେ ବିସ୍ତାରେ ବର୍ଣ୍ଣିତ
ମୁନିଙ୍କର ବେଦ ସ୍ତୁତିରେ  ଗୁଣଗାନ ଶୁଣି ପ୍ରେମରେ
ହେଲେ ଭଗବାନ ପ୍ରସନ୍ନ  ପୁନର୍ବାର କଲେ ଗର୍ଜନ
ଦେବତାଙ୍କ ହିତ ମନାସି  ଗଜରାଜ ଲୀଳା ପ୍ରକାଶି ।

ଜଳ ମଧ୍ୟେ ଲମ୍ଫ ପ୍ରଦାନ  କଲେ ବରାହ ଭଗବାନ
ଶୁକର ହରି ପ୍ରଥମରେ  ଲାଙ୍ଗୁଳକୁ ଟେକି ଊର୍ଦ୍ଧ୍ୱରେ
ବେଗରେ ଆକାଶ ଭେଦିଲେ  ସଟାକୁ ହଲାଇ କ୍ରୋଧରେ
ମେଘମାଳାକୁ ବିଦାରିଲେ  ପୁନ ଘୋର ନାଦ କରିଲେ

ତାଙ୍କ ଅଙ୍ଗ ଅତି କଠିନ  ଅତ୍ୟନ୍ତ ତୀବ୍ର ଅଟେ ଲୋମ
ଅତ୍ୟନ୍ତ ଧବଳ ଦଶନ  ନୟନ ତେଜ ବିକିରଣ
ସେ ବରାହ ଏହି ପ୍ରକାରେ  ଅତି ସୁନ୍ଦର ଦିଶୁଥିଲା ।
ଯଜ୍ଞ ପୁରୁଷ ଭଗବାନ  ଶୂକର ରୂପକୁ ଧରିଣ

ନାଶିକାରେ କରି ଆଘ୍ରାଣ  ପୃଥ୍ୱୀକୁ କଲେ ଅନ୍ୱେଷଣ
ଦଶନ ଅତ୍ୟନ୍ତ କରାଳ  ପ୍ରତୀତ ହେଉଥିଲେ କ୍ରୁର ।
ତଥାପି ତାହାଙ୍କର ସ୍ତୁତି  ଗାଉଥିବା ମରୀଚି ଅତ୍ରି
ମୁନିଙ୍କୁ ସେ ସୌମ୍ୟ ଦୃଷ୍ଟିରେ  ଚାହିଁ ଜଳରେ ପ୍ରବେଶିଲେ

ଆଦ୍ରିସମ ବଜ୍ର କଠିନ  ଅଙ୍ଗ ଶୂକର ଭଗବାନ
ଜଳେ ପଡିଲେ ଯେ ବେଳରେ  ଘଡଘଡି ସମ ମେଘରେ
ଅତି ଭୀଷଣ ଶବ୍ଦ ହେଲା  ସେ ସମୟରେ ଜଣାଗଲା
ଅବ୍ଧି ଉଦର କି ଫାଟିଲା  ଉତ୍ତାଳ ତରଙ୍ଗ ଉଠିଲା

ସମୁଦ୍ର ଲହରୀ ଛଳରେ  ହାତକୁ ଟେକି ଆର୍ତ୍ତସ୍ୱରେ
ସତେକି ପ୍ରାର୍ଥନା କରୁଛି  ହେ ଯଜ୍ଞେଶ ରଖ କହୁଛି ।
ଯଜ୍ଞ ମୁରତି ଭଗବାନ  ଶର ସମାନ ଅତି ତୀକ୍ଷ୍ଣ
ଖୁରାରେ ଜଳ ବିଦାରିଲେ  ପ୍ରବେଶିଲେ ଅବ୍ଧି ଶେଷରେ

ଯୋଗନିଦ୍ରାଗତ ବେଳରେ  ଭଗବାନ ନିଜ ଉଦରରେ
ପୃଥ୍ୱୀକୁ ଲୀନ କରିଥିଲେ  ନିଜର ଉଦର ମଧ୍ୟରେ
ସେ ଧରଣୀକୁ ବର୍ତ୍ତମାନ  ଯଜ୍ଞ ବରାହ ଭଗବାନ
ରସାତଳେ କରି ଦର୍ଶନ  ହୋଇଲେ ଆନନ୍ଦିତ ମନ ।

ବୁଡି ରହିଥିବା ଜଳରେ  ପୃଥ୍ୱୀକୁ ଉଠାଇ ଦାନ୍ତରେ
ଶୂକର ମୂର୍ତ୍ତୀ ଭଗବାନ  ରସାତଳୁ ଉଠି ତକ୍ଷଣ
ସେ ସମୟେ ଜଳ ମଧ୍ୟରେ  ଦୈତ୍ୟ ହିରଣାକ୍ଷ ଗଦାରେ
ହରିଙ୍କୁ କଲା ଆକ୍ରମଣ  ତହୁଁ ଶୁକର ଭଗବାନ

କ୍ରୋଧେ ଚକ୍ରଧାର ସମାନ ହୋଇଲେ ଅତିଶୟ ତୀକ୍ଷଣ
ସିଂହ ଗଜକୁ ଯେଉଁପରି ଅନାୟାସରେ ଦିଏ ମାରି
ଶ୍ରୀଭଗବାନ ସେ ପ୍ରକାରେ ଦୈତ୍ୟ ରାଜକୁ ହତ୍ୟାକଲେ
ଶୂକରଙ୍କ ଗଣ୍ଡ ଦନ୍ତରେ ରକ୍ତତ ଲାଗି ସେବେଳେ

ଜଣାଗଲା ହସ୍ତୀ ଯେପରି ଗୈରିକ ଭୂମିକୁ ବିଦାରି
ସତେକି ଉଠି ଆସୁଅଛି ହେ ବିଦୁର ଭଜ ଶ୍ରୀବତ୍ସୀ ।
କମଳ କୁସୁମ ପ୍ରକାରେ ଗଜରାଜ ସମ ଦନ୍ତରେ
ତମାଳ ସମ ନୀଳବର୍ଣ୍ଣ ଯଜ୍ଞବରାହ ଭଗବାନ

ଧବଳ ଦର୍ଶନ ଅଗ୍ରରେ ପୃଥ୍ୱୀଧରି ଜଳୁ ଉଠିଲେ
ମରୀଚ ଆଦି ଋଷିଗଣ ଜାଣିତ ସ୍ୱୟଂ ଭଗବାନ
ହାତ ଯୋଡି ବେଦ ବାକ୍ୟରେ ସ୍ତୁତି କରିବାକୁ ଲାଗିଲେ

### ଋଷୟ ଉବାଚ

ସ୍ତୁତି କରିଲେ ଋଷିଗଣ ଆହେ ଅଜିତ ଭଗବାନ
ଶ୍ରୀ ଜୟ ଜୟ ହେଉ ତୁମ ଆହେ ଯଜ୍ଞପତି ଆପଣ
ଘେନନ୍ତୁ ଆମର ପ୍ରଣାମ ହେ ପ୍ରଭୋ ସର୍ବ ଶକ୍ତିମାନ
କାଣିତ ଆମ ଆଗରେ ତ୍ରିଦେବ ସ୍ୱରୂପ ଦେହରେ

ତୋ ଲୋମ କୂପରେ ସମ୍ପୂର୍ଣ୍ଣ ଯଜ୍ଞଯେ ହେ ହୋଇଅଛି ଲୀନ
ଧରାକୁ ଉଦ୍ଧାରିବା ପାଇଁ ତୁମେ ଶୂକର ଅଛ ହୋଇ
ହେ ପ୍ରଭୋ ପତିତ ପାବନ ତବ ଶ୍ରୀଚରଣେ ପ୍ରାଣ
ଆହେ ଦେବ ଦେବ ତୋହର ଯଜ୍ଞସ୍ୱରୂପ ଏ ଶରୀର

ଦୁର୍ବୁଦ୍ଧି ଦୁରାଚାରୀ ଗଣ କରିନପାରନ୍ତି ଦର୍ଶନ ।
ଛନ୍ଦ ବିରାଜଇ ଚର୍ମରେ କୁଶ ତବ ରୋମା ବାଳିରେ
ଦହନୀୟ ଘୃତ ନେତ୍ରରେ ହେ ଦେବ ତୋର ଚରଣରେ
ଅଧ୍ୱର୍ଯ୍ୟୁ ବ୍ରହ୍ମା ହୋତାଗଣ ବ୍ରହ୍ମାଯେ ଚାରି ଋତ୍ୱିକ୍ କମ୍

ସଦା ସର୍ବତ୍ର ବିଦ୍ୟମାନ ହେ ବରାହ ଭଗବାନ ।
ଶ୍ରୁଚ ମୁଖେ ସ୍ରୁବ ନାଶାରେ କର୍ଣ୍ଣେ ଚମସ ଯେ ଉଦରେ
ପ୍ରାସିତ୍ର ଗୁହଛ ମୁଖରେ ଗ୍ରହଗଣ କର୍ଣ୍ଣ ଛିଦ୍ରରେ
ଆହେ ଶୂକର ଭଗବାନ ଆପଣଙ୍କର ଯେ ଚର୍ବଣ

ଅଗ୍ନିହୋତ୍ର ଯଜ୍ଞ ଅଟଇ ନମୋ ନମସ୍ତେ ଭାବଗ୍ରାହୀ
ଇଡା ଯଜ୍ଞୀୟ ଭକ୍ଷପାତ୍ର ପ୍ରାସିତ୍ର ବ୍ରହ୍ମଭାଗ ପାତ୍ର
ଗ୍ରହକୁ ସୋମପାତ୍ର କହି ବିଦୁର ମନେରଖ ତୁହି ।
ହେ ଯଜ୍ଞରୂପୀ ଭଗବାନ ତୋର ଅବତାର ଗ୍ରହଣ

ଦୀକ୍ଷଣୀୟ ଇଷ୍ଟି ଅଟଇ ଗ୍ରୀବାକୁ ଉପସଦ କହି
ପ୍ରାୟଣୀୟ ଉଦୟ ହୀନ ଅଟଇ ତୋହର ଦଶନ ।
ପ୍ରାବର୍ଗ୍ୟ ରସନା ଅଟଇ ଶୁଣ ସକଳେ ମନ ଦେଇ
ସଭ୍ୟ ଆବିସଥ୍ୟ ଶିର ତୁମ ଚିତି ଅଟଇ ପଞ୍ଚପ୍ରାଣ ।

ଏ କ୍ଲିଷ୍ଟ ଶବ୍ଦ ମାନଙ୍କରେ ଅର୍ଥ ଶୁଣ ଆହେ ବିଦୁର
ଦୀକ୍ଷା ଶେଷ ଯଜ୍ଞ ସମାପ୍ତି ପ୍ରାୟଣୀୟ ବୋଲି କହନ୍ତି ।
ପ୍ରତି ଉପସଦ ପ୍ରଥମ କୃତ ଯେ ମହା ବର୍ଷର କର୍ମ
ହୋମହୀନ ଅନଳ ସଭ୍ୟ ଉପାସନାଗ୍ନି ଆବସର୍ଥ୍ୟ ।

ହେ ଦେବଦେବ ସର୍ବେଶ୍ୱର ବୀର୍ଯ୍ୟ ସୋମରସ ତୁମର
ପ୍ରୀତ ସବନ ତ୍ରିସବନ ଆପଣଙ୍କ ଅଟେ ଆସନ
ଅଗ୍ନିଷ୍ଟୋମାଦି ଯଜ୍ଞ ସପ୍ତ ଆପଣଙ୍କର ଧାତୁ ସପ୍ତ
ତୁମ ଶରୀର ସନ୍ଧିମାନ ଯଜ୍ଞସତ୍ର ଅଟେ ସମ୍ପୂର୍ଣ୍ଣ

ସୋମହୀନ ଯେ ଯଜ୍ଞକର୍ମ ତିବ ମାଂସପେଶୀ ବନ୍ଧନ
ଇଷ୍ଟି ସର୍ବଯଜ୍ଞାନୁଷ୍ଠାନ ସକଳେ ମନଦେଇ ଶୁଣ
ଯଜ୍ଞଦେବତା ଯନ୍ତକର୍ମ ଦ୍ରବ୍ୟର ସ୍ୱରୂପ ଆପଣ ।
ବୈରାଗ୍ୟ ଭକତି ଯୋଗରେ ପୁଣିମନ ଏକାଗ୍ରତାରେ

ଯେ ଜ୍ଞାନ ହୁଏ ଅନୁଭୂତ ତାହାତବ ରୂପ ସାକ୍ଷାତ
ସର୍ବବିଦ୍ୟା ଗୁରୁ ଆପଣ ହେ ଦେବ ଦେବ ନମୋନମଃ
ଜଳ ମଧ୍ୟରେ ବହିର୍ଗତ ଗଜରାଜ ଦନ୍ତେ ଯେମନ୍ତ
ପଦ୍ମ କୁସୁମ ପତ୍ରଯୁକ୍ତ ଦିଶେ ଯେମନ୍ତ ସୁଶୋଭିତ

ତୁମ ଦନ୍ତାଗ୍ରରେ ସ୍ଥାପିତ ଏହି ପାର୍ବତାଦି ମଣ୍ଡିତ
ପୃଥିବୀ ଦିଶଇ ଶୋଭନ ହେ ନାଥ ତୋ ପଦେ ଶରଣ
କୁଳାଚଳର ଶିଖରରେ ମେଘମାଳା ଶୋଭା ପ୍ରକାରେ
ତଥା ତୋ ଦନ୍ତାଗ୍ରରେ ସ୍ଥିତି ଏହି ଯେ ଧରିତ୍ରୀ ସହିତ ।

ବେଦମୟ ବରାହ ଦେହ ଶୋଭା ଦିଶଇ ଅତିଶୟ
ଚରାଚର ଜୀବ ଯେପରି ସୁଖେ ରହିବେ ତା ବିଚାରି
ତବ ପତ୍ନୀ ଜଗଜ୍ଜନନୀ ସର୍ବାଶ୍ରୟ ଦାତ୍ରୀ ଧରଣୀ
ଦେବୀଙ୍କୁ ସଲିଳ ଉପରେ ସ୍ଥାପନ କରନ୍ତୁ ସତ୍ୱରେ

ଅରଣୀ ମଧ୍ୟରେ ଯେପରି ଅନଳ ରହଇ ସେପରି
ଏ ପୃଥ୍ୱୀରେ ହେ ବିଶ୍ୱପତି ଆପଣଙ୍କ ଧାରଣା ଶକ୍ତି
ତେଜକୁ କରନ୍ତୁ ସ୍ଥାପନ ଆହେ ବରାହ ଭଗବାନ ।
ପୃଥ୍ୱୀ ସହିତ ତୋ ଚରଣ ଆମେ କରୁଅଛୁ ପ୍ରଣାମ ।

ରସାତଳ ମଗ୍ନ ଧରାକୁ ବଳେ ଉଦ୍ଧାର କରିବାକୁ
ଆପଣଙ୍କ ବିନା ହେ ଦେବ କିଏ ବା ସାହସ କରିବ ।
ନିଜ ମାୟାବଳେ ଆପଣ ଏ ବିଶ୍ୱ କରିଛ ରଚନ ।
ସ୍ୱୟଂ ସର୍ବଶକ୍ତି ସମ୍ପନ୍ନ ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ ଆପଣ ।

ତେଣୁ ଆପଣଙ୍କ ପକ୍ଷରେ କିବା ଆଶ୍ଚର୍ଯ୍ୟ ଏ ବିଶ୍ୱରେ ।
ବେଦମୟ ଶରୀର ଏହି ଯେବେ ଦେଉଛନ୍ତି ହଲାଇ
ସେବେଳେ ତୁମ ଶରୀରର ସଟାରୁ ଝରୁଥିବା ନୀର
ବିନ୍ଦୁମାନ ଆମ ଉପରେ ଛିଟିକି ପଡଇ ସତ୍ୱରେ

ଅଭିଷିକ୍ତ ହୋଇ ସେଥିରେ ଜନ ପଥ ସତ୍ୟ ଲୋକରେ
ରହୁଥିବା ଯେ ମୁନିଗଣ ଆମେ ସକଳ ପୂର୍ଣ୍ଣକାମ
ସର୍ବଦା ହେଉଛୁ ପବିତ୍ର ଆହେ ଶୂକର ଜଗନ୍ନାଥ ।
ଆପଣଙ୍କ ଆଶ୍ଚର୍ଯ୍ୟ କର୍ମ ଜାଣିବା ଇଚ୍ଛେ ଯେଉଁ ଜନ

ନିଶ୍ଚୟ ବୁଦ୍ଧିହୀନ ସେହି ତୋର କର୍ମର ଅନ୍ତ ନାହିଁ ।
ଯୋଗମାୟା ସତ୍ୱାଦି ଗୁଣ ପ୍ରଭାବ ବଳରେ ଆପଣ ।
ଜଗତ ମୋହିତ କରନ୍ତି ବିଶ୍ୱର କଲ୍ୟାଣ ସାଧନ୍ତି ।

**ମୈତ୍ରେୟ ଉବାଚ**

ମୈତ୍ରେୟ ବୋଲେ ହେ ବିଦୁର ଶୁଣ ଏ ଅନ୍ତେ ସମାଚାର
ସେ ବ୍ରହ୍ମବାଦୀ ସର୍ବ ଯତୀ ଏପରି କରିବାରୁ ସ୍ତୁତି ।
ସର୍ବ ରକ୍ଷକ ସେ ଶୂକର ଖୁରାରେ ଜଳ କରି ସ୍ଥିର ।
ତା ଉପରେ ପୃଥ୍ୱୀ ସ୍ଥାପିଲେ ସୁ ପ୍ରସନ୍ନ ମୁନି ସ୍ତୁତିରେ

ଲୀଳାରେ ଶୂକର ଶ୍ରୀହରି ରସାତଳୁ ପୃଥ୍ୱୀ ଉଦ୍ଧାରି
ରଖିଦେଇ ଜଳ ଉପରେ କ୍ଷଣକେ ଅନ୍ତର୍ହିତ ହେଲେ ।
ସେ ଭଗବାନ ଲୀଳାମୟ ଚରିତ ସଦା କୀର୍ତ୍ତନୀୟ
ବୁଦ୍ଧି ଯୋଗକଲେ ଏଥିରେ ସକଳ ପାପ ଯାଏ ଦୂରେ ।

ଯେ ଏହା ଶୁଣନ୍ତି ପଢ଼ନ୍ତି ଶ୍ରୀହରି ପ୍ରସନ୍ନ ହୁଅନ୍ତି ।
ଶ୍ରୀହରି କାମନା ସମସ୍ତ ପୂରଣେ ଅଟନ୍ତି ସମର୍ଥ
ପ୍ରସନ୍ନ ହେଲେ ଭଗବାନ ସଂସାରେ ଦୁର୍ଲଭବା କ'ଣ
ଯେ ଅନନ୍ୟ ଭାବେ ଭଜଇ ସେ ପରମପାଦ ଲଭଇ

ତୁଚ୍ଛ ଏ ବିଷୟ କାମନା କେବଳ ଅଟେ ବିଡମ୍ବନା
ଯେ ଏ ପୁରାଣ ଶୁଣଇ ଏ ଭବ ତାପ ଦୂର ହୋଇ
ପଶୁ ବ୍ୟତୀତ ଏ ସଂସାରେ କେ ଅବା କର୍ଣ୍ଣରେ ଥରେ
ଶ୍ରବଣ କରିବା ପରେ ପୁଣି ମନ ଫେରାଇ ପାରେ ଆଣି

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶୂକର ପ୍ରାଦୁର୍ଭାବେ ନାମ ତ୍ରୟୋଦଶୋଽଧ୍ୟାୟ ।

* * * * * * *

## ଚତୁର୍ଦ୍ଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ଅନୁରାଗେ ପରୀକ୍ଷ ନରପତି ଆଗେ
ହରିଙ୍କ ଶୂକରାବତାର ଲୀଳା ଶୁଣି ଭକ୍ତ ବିଦୁର
ନହୋଇ ସପୂର୍ଣ୍ଣ ତୃପତ ଭକ୍ତିରେ ଯୋଡିବେନି ହସ୍ତ
ପୁଣି ମୈତ୍ରେୟଙ୍କୁ ପୁଚ୍ଛିଲେ ହରି ବରାହ ଅବତାରେ

କଲେ କିକି ଅଦଭୂତ କର୍ମ ବିସ୍ତାରି କରନ୍ତୁ ଆପଣ
ଆନନ୍ଦେ ପୁଚ୍ଛିଲେ ବିଦୁର ଆହେ ମୈତ୍ରେୟ ମୁନିବର
ଯଜ୍ଞ ମୂରତି ଭଗବାନ ସେ ଆଦିଦୈତ୍ୟ ବଳବାନ
ହିରଣାକ୍ଷ କଲେ ନିଧନ ମୁହିଁ ଶୁଣିଲି ବର୍ତ୍ତମାନ ।

ଶ୍ରୀଭଗବାନ ଯେ ବେଳରେ    ଲୀଳାରେ ନିଜ ଦନ୍ତାଗ୍ରରେ
ହିରଣାକ୍ଷ ସହ ସେବେଳେ    ପୃଥ୍ୱୀ ରଖିଣ ବାହାରିଲେ
କମ୍ପାଇ ସମର କରିଲେ ।    କହନ୍ତୁ ଆହେ ମୁନିବର

### ମୈତ୍ରେୟ ଉବାଚ

ହେ ବିଦୁର ଶ୍ରୀହରିଙ୍କର    ଅବତାର ଲୀଳା ମାନବର
ମୃତ୍ୟୁପାଶ କରେ ଛେଦନ    ଦିଏ ପରମଧାମେ ସ୍ଥାନ ।
ସେ ବିଷୟେ ପ୍ରଶ୍ନ ତୁମର    ଅଟଇ ଅତ୍ୟନ୍ତ ସୁନ୍ଦର ।
ଶ୍ରୀହରିଙ୍କ ଅବତାର ଲୀଳା    ଏ ଭବ ସାଗରର ଭେଳା

ଏ ଲୀଳା ଶ୍ରବଣ କୀର୍ତ୍ତନ    ଭବ ପାଶକରେ ଛେଦନ
ସେ ବିଷୟେ ପ୍ରଶ୍ନ ତୁମର    ସୁନ୍ଦର ଜନ ହିତକର
ଉତ୍ତାନପାଦଙ୍କ କୁମର    ଧ୍ରୁବଙ୍କୁ ଦେବର୍ଷି ପ୍ରବର
ନାରଦ ବାଲ୍ୟ ସମୟରେ    ଶ୍ରୀହରି ଲୀଳା ଶୁଣାଇଲେ

ସେ ଧ୍ରୁବ ତାହା ପ୍ରଭାବରେ    ପାଦ ରଖି ମୃତ୍ୟୁ ଶିରରେ
ପରମ ପଦ ଆରୋହିଲେ    ଶ୍ରୀହରିଙ୍କର ସୁଦୟାରେ
ବରାହ ହରିଙ୍କ ସଙ୍ଗରେ    ହିରଣାକ୍ଷ ଯୁଦ୍ଧ ବିଷୟରେ
ଦେବତା ମାନଙ୍କ ପ୍ରଶ୍ନରେ    ବ୍ରହ୍ମା ଏ ବାର୍ତ୍ତା ଶୁଣାଇଲେ ।
ମୁଁ ପରମ୍ପରା କ୍ରମରେ    ଶୁଣିଥିଲି ପୂର୍ବକାଳରେ ।
ଦକ୍ଷ ଦୁହିତା ଦିତିଥରେ    ସୁପୁତ୍ର ପ୍ରାପତି ଇଛାରେ
କାମାତୁରା ହୋଇ ସନ୍ଧ୍ୟାରେ    ଶାସ୍ତ୍ର ନିଷିଦ୍ଧ ସମୟରେ
ସ୍ୱପତି ମରିଚି ତନୟ    କାଶ୍ୟପେ କଲେ ଅନୁନୟ

କାଶ୍ୟପ ଏହି ସମୟରେ    ଅଗ୍ନିହୋତ୍ର ଶାଳା ମଧ୍ୟରେ
ଭକ୍ତିରେ କ୍ଷୀର ଆହୁତିରେ    ଅତି ପବିତ୍ର ମାନସରେ
ଅନଳ ଜିହ୍ୱା ଭଗବାନ    ଯଜ୍ଞେଶଙ୍କୁ କରି ଅର୍ଚ୍ଚନ
ସୂର୍ଯ୍ୟାସ୍ତ ଜାଣି ଅଗ୍ନିଶାଳେ    ଧ୍ୟାନସ୍ଥ ହୋଇ ବସିଥିଲେ ।

### ଦିତି ଉବାଚ

ଦିତି କହିଲେ ହେ ବିଦ୍ୱାନ    ମତ୍ତହସ୍ତୀ କଦଳୀ ବନ
ଯେପରି କରଇ ଦଳନ    ସେପରି ମୁହିଁ ବର୍ତ୍ତମାନ
ମଦନ ବାଣ ତାଡନାରେ    ଆର୍ସି ଅଛି ତୁମ ପାଖରେ
ପୁତ୍ରବତୀ ସପତ୍ନୀଙ୍କର    ସୁଖ ସମୃଦ୍ଧି ଦେଖି ମୋର ।

ଈର୍ଷାରେ ଜଳୁଅଛି ଚିତ୍ତ    କୃପା କରହେ ପ୍ରାଣନାଥ ।
ଆପଣଙ୍କ ହେଉ କଲ୍ୟାଣ    ହେ ଋଷିବର ଧର୍ମପ୍ରାଣ
ସେ ସ୍ତ୍ରୀମାନେ ନିଜ ପତି    ପ୍ରୀତି ସମ୍ମାନିତା ହୁଅନ୍ତି
ଯେ ସ୍ତ୍ରୀ ଗର୍ଭୁ ତୁମ ସମ    ବୁଦ୍ଧିମାନ ପୁତ୍ର ଜନମ

ସେମାନଙ୍କ ଯଶ ସଂସାରେ    ବ୍ୟାପିଯାଏ ସବୁ ସ୍ଥାନରେ
ମୋ ପିତା ଦକ୍ଷ ପ୍ରଜାପତି    କନ୍ୟାଙ୍କୁ ଶରଧା କରନ୍ତି ।
ଆମକୁ ଡାକିଣ ସେ ଥରେ    ପୃଥକ ପୃଥକ ପୁଛିଲେ ।
ତୁମ୍ଭେ କାହାକୁ ପତିରୂପେ    ବରିବ କୁହ ମୋ ସମୀପେ

କନ୍ୟାଙ୍କ ମଧ୍ୟୁ ତେର ଜଣ    ସ୍ୱଭାବ ଗୁଣେ ତୁମ୍ଭ ସମ ।
ପିତା ଆମର ଭାବ ଜାଣି    ତେରଜଣ କନ୍ୟାଙ୍କୁ ଆଣି ।
ତୁମର ସହିତ ବିବାହ    କରାଇଲେ ହେ ମହାଶୟ
ହେ ଶୁଭ ମୂର୍ତ୍ତି ଭଗବାନ    ହେ ସ୍ୱାମୀ କମଳ ନୟନ ।

ମୋ ଇଛା କରନ୍ତୁ ପୂରଣ    ହେ ମହତ୍ତମ ତୁମ ସମ ।
ପୁରୁଷ ନିକଟେ ଦୀନର    ପ୍ରାର୍ଥନା କୌଣସି ପ୍ରକାରର
କେବେହେଁ ନୁହଁଇ ବିଫଳ    ଦୟା କରନ୍ତୁ ମୁନିବର
ଅନଙ୍ଗ ଆବେଗରେ ଦିତି    ବିବଶା ବିଚଳିତା ମତି

ଏପରି ଆତୁର ଭାବରେ    ପ୍ରାର୍ଥନା କରି ବିନୟରେ
ବହୁତ କଥା ସେ କହିଲେ    କଶ୍ୟପ ମଧୁର ବାଣୀରେ
ତାହାଙ୍କୁ ଡାକି ସମୀପରେ    ଏପରି ବୁଝାଇ କହିଲେ
ହେ ଭୀରୁ ନହୁଅ ଆତୁର    ଇଛା ଅନୁସାରେ ତୋହର

ନିଶ୍ଚୟ ମୁହିଁ ବର୍ତ୍ତମାନ    କରିବି ତୋ ପ୍ରୀତି ସାଧନ
ଯେ ପତ୍ନୀ ଧର୍ମ ଅର୍ଥ କାମ    ତ୍ରିବର୍ଗ ଲାଭର କାରଣ ।
ନିଜ ପତ୍ନୀର ମନସ୍କାମ    କିଏ ବା ନକରେ ପୂରଣ ।
ମାନବ ପୋତରେ ଯେପରି    ମହାସାଗର ହୁଏ ପାରି

ଗୃହୀ ଗୃହସ୍ଥାଶ୍ରମେ ରହି    ଦୁଃଖ ପାରାବାର ଲଙ୍ଘଇ
ଶ୍ରେୟ କାମୀ ପୁରୁଷର    ପତ୍ନୀ ଅଟେ ଅର୍ଦ୍ଧ ଶରୀର ।
ଗାର୍ହସ୍ଥ୍ୟ ଆଶ୍ରମର ଭାର    ପତ୍ନୀର ଉପରେ ନିଜର
ସମର୍ପଣ କରି ନିଶ୍ଚିନ୍ତରେ    ପୁରୁଷ ଭ୍ରମଇ ସ୍ୱେଚ୍ଛାରେ

ଯଥା ଦୁର୍ଗପତି ଲୀଳାରେ ଦୁର୍ଜୟ ଶତ୍ରୁ ଜୟକରେ ।
ଗୃହସ୍ଥ ବ୍ୟକ୍ତି ସେ ପ୍ରକାରେ ଧର୍ମ ପତ୍ନୀର ଆଶ୍ରୟରେ ।
ଇନ୍ଦ୍ରିୟ ଶତ୍ରୁ ଅକ୍ଳେଶରେ ଜୟ କରି ଏ ସଂସାରରେ
ବିହାର କରଇ ସୁଖରେ ହେ ମାନିନୀ ଶୁଣଥରେ

ହେ ଗୃହେଶ୍ୱରୀ, ତୁ ମୋର କରିଛୁ ବହୁ ଉପକାର
ମୁହିଁ ଅଥବା ଅନ୍ୟ କେହି ସୁପୁରୁଷ ଯେ ଗୁଣଗ୍ରାହୀ
ନିଜ ଜୀବନେ ବା ଜନ୍ମାନ୍ତରେ ଶୁଝି ନ ପାରିବେ ସଂସାରେ
ସନ୍ତାନପ୍ରାପ୍ତି ଇଛା ତୁମ ଅବଶ୍ୟ କରିବି ପୁରଣ

ପରନ୍ତୁ ଆହେ ଜୀବେଶ୍ୱରୀ ରହକ୍ଷଣେ ଅପେକ୍ଷା କରି
ରକ୍ଷସ ଆଦି ଜୀବଙ୍କର ଏ ବେଳା ଅତି ଭୟଙ୍କର
ଭୂତେଶଭୂତ ପ୍ରେତଗଣ ଭ୍ରମୁ ଅଛନ୍ତି ବର୍ତ୍ତମାନ ।
ଏହି ସମୟେ କଲେ ପ୍ରେମ ମତେ ନିନ୍ଦିବେ ଜନଗଣ ।

ଆହେ ସ୍ୱାଧୀ ସନ୍ଧ୍ୟା କାଳରେ ଭୂତପ୍ରେତ ଆଦି ସାଙ୍ଗରେ
ଆରୋହୀ ବୃଷଭ ଉପରେ ବିହାର କରନ୍ତି ସ୍ୱେଛାରେ
ମହେଶ୍ୱର ଭୂତ ଭବନ କରୁଅଛନ୍ତି ବିଚରଣ
ଏହି ମହେଶ୍ୱର ତୁମର ଅଟନ୍ତି ଦେବର ଶ୍ୱଶୂର ।

ପବନ ବେଗରେ ଉଡ଼ିତ ଶ୍ମଶାନ ଧୂଳି ଧୂସରିତ
ତାଙ୍କ ଜଟାଜୁଟ ଶୋଭଇ ହେ ଅଜ୍ଞା ତୁକି ଜାଣୁନାହିଁ ।
ସ୍ୱର୍ଣ୍ଣକାନ୍ତି ଗୌର ଶରୀର ଭସ୍ମ ଲେପେ ବିଶେ ସୁନ୍ଦର ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ନେତ୍ରରେ ଦେଖନ୍ତି ସର୍ବ ନାରୀନରେ

ଏହି ସଂସାରରେ ତାଙ୍କର କେ ନୁହେଁ ପର ଆପଣାର
ସେ ନିନ୍ଦା ନ କରନ୍ତି କା'ର କିମ୍ୱା ନ କରନ୍ତି ଆଦର ।
ସେ ଶିବ ଯେଉଁ ସବୁ ଭୋଗ୍ୟ ପଦାର୍ଥ କରିଛନ୍ତି ତ୍ୟାଗ ।
ଆମ୍ଭେମାନେ ନାନା ପ୍ରକାର ବ୍ରତମାନି ପାଳି ସେ ଘୋର

ମାୟା କରିବାକୁ ଗ୍ରହଣ କର୍ମ କରୁଛୁ ରାତିଦିନ ।
ବିବେକୀ ବୁଦ୍ଧିମନ୍ତ ଜନ ଦୂରପାଇଁ ଅଜ୍ଞାନ ତମ
ତାଙ୍କ ଚରିତ କରନ୍ତି ଗାନ ଭକ୍ତି ଭାବରେ ପ୍ରତିଦିନ
ତାଙ୍କ ସମାନ ଅନ୍ୟ କେହି ପୁରୁଷ ଏ ସଂସାରେ ନାହିଁ

ଜନ୍ମ ହୋଇମଧ ଏହିପରି ଆଚରନ୍ତି ପିଶାଚ ପରି
କେବଳ ଯେ ଆପ୍ତ ପୁରୁଷ ତା ସୀମାରେ କରଇ ପ୍ରବେଶ
ଏହି ଯେ ଭୌତିକ ଶରୀର ଭୋଜ୍ୟ କୁକୁର ଶୃଗାଳର
ଯା'ର ବିବେକ ବୁଦ୍ଧି ନାହିଁ ସେ ଦେହକୁ ଆତ୍ମା ମଣଇ

ବସ୍ତ୍ର ଭୂଷା ପୁଷ୍ପ ମାଳାରେ ସଜାନ୍ତି ଅତି ଯତନରେ ।
ସେହି ମାନବ ଭାଗ୍ୟହୀନ ଆତ୍ମାରାମ ଶ୍ରୀ ଭଗବାନ ।
ଶଙ୍କରଙ୍କ ଆଚରଣକୁ ଯେ କରଇ ସଦା ଉପାହାସକୁ ।
ବ୍ରହ୍ମାଦି ଲୋକପାଳ ଗଣ ସେହି ଶଙ୍କର ଭଗବାନ ।

ଶିବଙ୍କର ଧର୍ମ ମର୍ଯ୍ୟାଦା ପାଳନ କରନ୍ତି ସର୍ବଦା
ବିଶ୍ୱର ଅଧିଷ୍ଠାନ ସେହି ମାୟା ମଧ ଆଜ୍ଞା ପାଳଇ ।
ସମର୍ଥ ହେଲେ ବି ଏପରି ଆଚରନ୍ତି ପିଶାଚ ପରି ।
ତାଙ୍କ ଅଦ୍‌ଭୂତ ଲୀଳାମାନ ବୁଝିବା ଅତ୍ୟନ୍ତ ଗହନ ।

### ମୈତ୍ରେୟ ଉବାଚ

ସ୍ୱାମୀ ଏପରି ବୁଝାଇଲେ ମାତ୍ର ଦିତି କାମ ଆତୁରେ
ନିର୍ଲଜ୍ଜା ବେଶ୍ୟାର ସମାନ ବ୍ରହ୍ମର୍ଷି କଶ୍ୟପ ବସନ ।
ଅତି ବଳେ ଭିଡି ଧରିଲା କୁଳ ମର୍ଯ୍ୟାଦାକୁ ଲଙ୍ଘିଲା ।
ଭାର୍ଯ୍ୟାର ନିନ୍ଦ୍ୟ କର୍ମପ୍ରତି ଅଗ୍ରଜ ଦେଖି ଦୁଃଖୀ ଅତି

କଶ୍ୟପ ଦୈବକୁ ପ୍ରଣାମ ଏକାନ୍ତେ କରିଲେ ସଙ୍ଗମ
ପରେ ଜଳରେ ସାରି ସ୍ନାନ ପ୍ରାଣ ବାୟୁ କରି ସଂଯମ
ବିଶୁଦ୍ଧ ଜ୍ୟୋତିର୍ମୟ ବ୍ରହ୍ମ ଏକାଗ୍ର ଚିତ୍ତେ କରି ଧ୍ୟାନ ।
ଏକାଗ୍ରେ ମନ୍ତ୍ର ଜପ କଲେ ବିଦୁର ଦିତି ଏ ବେଳରେ

ନିଜର ଏପରି ନିନ୍ଦିତ କର୍ମରେ ହୋଇଲେ ଲଜ୍ଜିତ ।
ଯାଇ ବ୍ରହ୍ମର୍ଷିଙ୍କ ପାଖକୁ ମଥାନତ କରି ତଳକୁ
କହିଲେ ବିନୟ ଭାବରେ ହେ ସ୍ୱାମୀ ଦୋଷ କ୍ଷମବାରେ ।

### ଦିତିରୁବାଚ

ଦିତି କହିଲେ ହେ ବ୍ରହ୍ମଣ୍ୟ ଭୂତଗଣ ସ୍ୱାମୀ ଈଶାନ ।
ଶଙ୍କର ମୋଦୋଷ କ୍ଷମନ୍ତୁ ଏ ଗର୍ଭକୁ ନଷ୍ଟ କରନ୍ତୁ ।
ଶଙ୍କର ପ୍ରଜା ଦୁଃଖହର କେ ଲଘିବ ଆଜ୍ଞା ତାଙ୍କର
ସକାମ ନିଷ୍କାମ ଭକ୍ତର ମଙ୍ଗଳ ଦାତା ମହେଶ୍ୱର ।

ଦୁର୍ବୃତ୍ତ ମାନଙ୍କୁ ଦଣ୍ଡନ୍ତି ସଂହାରକାଳେ କୋପ ମୂର୍ତ୍ତି
ସେ ରୁଦ୍ର ଦେବତା ଶଙ୍କର ଚରଣେ ମୋର ନମସ୍କାର
ବ୍ୟାଧ ମଧ୍ୟ ନାରୀ ଉପରେ କରୁଣା କରଇ ସଂସାରେ
ସ୍ୱାମୀ ସେ ସତୀ ଦେବୀଙ୍କର ପୁଣି ଭିଣୋଇ ସେତ ମୋର
ସେ ମଧ୍ୟ ଦୟାଳୁ ପରମ ମୋ ଠାରେ ହୁଅନ୍ତୁ ପ୍ରସନ୍ନ ।

### ମୈତ୍ରେୟ ଉବାଚ

ସେହି କଶ୍ୟପ ପ୍ରଜାପତି ସାୟଂକାଳ ସନ୍ଧ୍ୟା ଆଳତି ।
ବନ୍ଦନାଦି କର୍ମ ଶେଷରେ ଆସି ନିଜ ଗୃହେ ଦେଖିଲେ
ଦିତି କାମ୍ପଇ ଥରଥର ନିଜ ସନ୍ତାନ ମାନଙ୍କର
ଇହପର କାଳ ଉନ୍ନତି ନିମିତ୍ତ ପ୍ରାର୍ଥନା କରନ୍ତି ।
ସେ ଭାର୍ଯ୍ୟା ଦିତିଙ୍କୁ ଏପରି କହିଲେ ଶୁଣ ଆହେ ଗୋରୀ

### କଶ୍ୟପ ଉବାଚ

କଶ୍ୟପ ଦିତିଙ୍କୁ କହିଲେ ତୋ ଚିତ୍ତ କାମ ବାସନାରେ
ହୋଇଥିଲା ଅତି ମଳିନ ସନ୍ଧ୍ୟାକାଳ ଅତି କଠିନ
ତୁ ମୋ କଥା ନ ମାନିଲୁ ଦେବଙ୍କୁ ଅବହେଳା କଲୁ
ତୋ ଗର୍ଭରୁ ଦୁଇ ଅଧମ କୁ ପୁତ୍ର ଲଭିବେ ଜନମ

ସେମାନଙ୍କ ଅତ୍ୟାଚାରରେ ଲୋକେ କାନ୍ଦିବେ ଏ ସଂସାରେ
ସେହିମାନେ ନିରପରାଧ ପ୍ରାଣୀଙ୍କୁ କରିବେ ଯେ ବଧ
ଅତ୍ୟାଚାର ନାରୀ ଉପରେ ସେମାନେକରିବେ ଯେବେଳେ
କ୍ଷୁବ୍ଧହେବେ ମହାତ୍ମାଗଣ ସେହି ସମୟରେ ସମ୍ପୂର୍ଣ୍ଣ ।

ଲୋକରକ୍ଷକ ଭଗବାନ କୋପରେ ହେବେ ଅବତୀର୍ଣ୍ଣ
ଇନ୍ଦ୍ର ପର୍ବତକୁ ଯେପରି ଦମନ କରନ୍ତି ଯେପରି
ଜଗଦୀଶ୍ୱର ଜନାର୍ଦ୍ଦନ ତୋ ପୁତ୍ରେ କରିବେ ନିଧନ ।

### ଦିତିରୁବାଚ

ଭଗବାନ ଶ୍ରୀ ଚକ୍ରଧର ଦୟାମୟ କ୍ଷମାସାଗର
ହସ୍ତରେ ଦୁଷ୍ଟ ପୁତ୍ରଗଣ ବଧ ହୁଅନ୍ତୁ ଇଚ୍ଛାମମ ।
ଦ୍ୱିଜଙ୍କ ଅଭିଶାପ ପାଇ ନ ମରନ୍ତୁ ହେ ପ୍ରାଣସାଇଁ ।
ଯେ ପ୍ରାଣୀଙ୍କୁ ଭୟ ଦିଅଇ ବା ବିପ୍ରଶାପେ ଦଗ୍ଧ ହୁଅଇ

ସେ ଯେ କୌଣସି ଯୋନିରେ ଜନ୍ମହେଲେ ମଧ ତା'ଠାରେ
ନାରକୀୟ ଯେ ଜନ୍ତୁଗଣ କରେ ନିର୍ଦ୍ଦୟ ଆଚରଣ
ତୁମେ ନିଜକୃତ କର୍ମର କରି ନ୍ୟାୟା ନ୍ୟାୟ ବିଚାର
ଶୋକ ଅନୁତାପ କଲଣି ଚିନ୍ତାତେଜ ଆହେ କଲ୍ୟାଣୀ ।

ବିଷ୍ଣୁ ଶିବ ତଥା ମୋ ପ୍ରତି ତୁମ୍ଭର ଅଛି ଶ୍ରଦ୍ଧାଅତି ।
ଏକ ପୁତ୍ରର ଚାରିପୁତ୍ର ଭବିଷ୍ୟତରେ ହେବେଜାତ
ତାହାଙ୍କ ମଧ୍ୟେ ପୁତ୍ର ଏକ ହୋଇବ ଅତ୍ୟନ୍ତ ଧାର୍ମିକ ।
ସାଧୁଗଣଙ୍କ ପୂଜନୀୟ ହୋଇବ ସଂସାରେ ନିଶ୍ଚୟ

ଉକ୍ତେ ତା ପବିତ୍ର ଚରିତ ଶ୍ରୀହରିଙ୍କ ଗୁଣ ସହିତ
କରିବେ ଭକ୍ତିରେ ଗାୟନ ଆନ ନହେବ ମୋ ବଚନ ।
ଯଥା ଅନଳେ ପୁନଃ ପୁନଃ ସ୍ୱର୍ଣ୍ଣକୁ କରିଲେ ଦହନ

ହୁଅଇ ମଳିନତା ଦୂର ତଥା ସାଧବ ସଚ୍ଚୁଧର
ତାର ଚରିତ୍ର ଅନୁସରି ଅହିଂସାଦି ବ୍ରତ ଆଚରି
ହୋଇବେ ଶୁଦ୍ଧାନ୍ତ କରଣ ଏହା ଅଟେ ବିଧି ବିଧାନ ।
ଯା'ର ସ୍ୱରୂପ ଏ ଜଗତ ଯା କୃପା ଲାଭେ ଆନନ୍ଦିତ ।

ସେ ସ୍ୱପ୍ରକାଶ ଭଗବାନ ଏହି ବାଳକର ଅନନ୍ୟ
ଭକ୍ତିରେ ଲଭିବେ ସନ୍ତୋଷ ଢ଼ାଳିବେ ଆଶୀଷ ପିୟୁଷ ।
ହେ ଦିତି ସେ ବାଳକ ଜାଣ ହୋଇବ ଭକତ ପ୍ରଧାନ
ସେ ପ୍ରଭାବଶାଳୀ ବାଳର ହୃଦୟ ହୋଇବ ଉଦାର

ପୂଜ୍ୟ ମହାପୁରୁଷରେ ଭାବ ଭକ୍ତି ଶୁଦ୍ଧ ଚିତ୍ତରେ
କରିବ ହରି ଆରାଧନ ତେଜିବ ଦେହ ଅଭିମାନ ।
ବିଷୟରେ ଅନାସକ୍ତି ଗୁଣ ଆଧାର ଶୀଳଶକ୍ତି
ପରର ସମୃଦ୍ଧିରେ ସୁଖୀ ପରଦୁଃଖରେ ହେବ ଦୁଃଖୀ

ଶତ୍ରୁକେ ନ ରହିବେ ତାର ସୁଜନେ ଲଭିବ ଆଦର
ଚନ୍ଦ୍ର ଯଥା ଗ୍ରୀଷ୍ମଋତୁର ସନ୍ତାପ କରିଥାଏ ଦୂର
ସେପରି ସେ ସର୍ବ ଜଗତ ଶୋକକୁ କରି ଦେବ ଶାନ୍ତ
ଯେ ହରି ବାହ୍ୟ ଆଭ୍ୟନ୍ତରେ ବ୍ୟାପିଛନ୍ତି ସବୁ ସ୍ଥାନରେ

ସେ ନିଜ ଭକତ ଇଚ୍ଛାରେ ବେଳେବେଳେ ନାନା ପ୍ରକାରେ
ମଙ୍ଗଳ ବିଗ୍ରହ ଧରନ୍ତି ଲକ୍ଷ୍ମୀବନ୍ତ ଲାବଣ୍ୟ ମୂର୍ତ୍ତୀ
ଯାହାଙ୍କ ବଦନ ମଣ୍ଡଳ ଶୋଭିତ ମକର କୁଣ୍ଡଳ
ସେ ପବିତ୍ର ଅମଳ କମଳ ନୟନ ଶ୍ରୀହରି କେବଳ
ତୁମ ପୌତ୍ରକୁ ପ୍ରତ୍ୟକ୍ଷରେ ଦର୍ଶନ ଦେବେ ସବୁବେଳେ

### ମୈତ୍ରେୟ ଉବାଚ

ପୌତ୍ର ହେବ ବିଷ୍ଣୁ ଭକତ ଶୁଣି ଦିତି ଅତି ହର୍ଷିତ
ପୁଣି ତାଙ୍କର ପୁତ୍ରଗଣ ହରି ହସ୍ତେ ହେବେ ନିଧନ
ଜାଣି ଏ ଶୁଭ ସମାଚାର ଉତ୍ସାହ ବୃଦ୍ଧି ଦିତିଙ୍କର
ଏ ଦିତି କଶ୍ୟପ ସମ୍ବାଦ ଏ ଭବ ସନ୍ତାପର ଗଦ
ସୁଜନେ ଶ୍ରୀକୃଷ୍ଣ ଚରଣ ସର୍ବଦା କର ହୃଦୋଧ୍ୟାନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ତୃତୀୟ ସ୍କନ୍ଧେ କଶ୍ୟପ ସମ୍ବାଦେ ନାମ ଚତୁର୍ଦ୍ଦଶୋଽଧ୍ୟାୟ ।

*******

## ପଞ୍ଚଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

କହେ ମୈତ୍ରେୟ ମୁନିବର ଶୁଣ ସାବଧାନେ ବିଦୁର
କଶ୍ୟପଙ୍କ ବୀର୍ଯ୍ୟର ତେଜ ଅନ୍ୟ ତେଜକୁ ବିନାଶିବ
ତାଙ୍କର ଦୁଷ୍ଟ ପୁତ୍ର ଗଣ ଦେବଙ୍କୁ କରିବେ ପୀଡନ
ଦିତି ଦେବୀ ଏ ଆଶଙ୍କାରେ ଶତ ବରଷ ଉଦରରେ

କଶ୍ୟପ ତେଜକୁ ରଖିଲେ ସେହି ଉଦରସ୍ଥ ତେଜରେ
ତ୍ରିଲୋକ ପାଳ ଗଣ ତେଜ ଯେ ହୋଇଲେ ମଳୀନ
ଦଶଦିଶ ତମସାଚ୍ଛନ୍ନ ଭୟ ଆତୁର ଜୀବଗଣ
ଲୋକପାଳ ମାନେ ଭୟରେ ଧାତାଙ୍କୁ ଯାଇ ଜଣାଇଲେ

### ଦେବା ଉଚତୁଃ

ହେ ପ୍ରଭୋ ଚତୁର ଆନନ ଏକାଳ ଆପଣଙ୍କ ଜ୍ଞାନ
ଶକ୍ତିକୁ ସ୍ପର୍ଶ ନ କରଇ ଘୋର ଅନ୍ଧକାର କିଂପାଇଁ
ଚଉଦିଗ ଘୋଟି ଅଛଇ ହେ ପିତାମହ ବିଶ୍ୱସାଇଁ
କହନ୍ତୁ ତାହାର କାରଣ ଭୟ ବିହ୍ୱଳ ଆମ ମନ

ଆହେ ସୁର ଜ୍ୟେଷ୍ଠ ବ୍ରାହ୍ମଣ୍ୟ ବିଶ୍ୱ ରଚୟିତା ଆପଣ
ହେ ଲୋକ ପାଳ ଶିରୋମଣି ଅଶେଷ ତୁମର କରଣି
ଉତ୍ତମ ମଧ୍ୟମ ଅଧମ ବିଶ୍ୱର ସର୍ବ ଜୀବ ଗଣ
ଭାବକୁ ଜାଣନ୍ତି ଆପଣ ସଂଶୟ କରନ୍ତୁ ମୋଚନ

ହେ ବେଦପତି ଆପଣ ବିଜ୍ଞାନ ବଳେ ବଳୀୟାନ
ରଜୋଗୁଣ ଧରି ମାୟାରେ ଚତୁର୍ମୁଖ ବ୍ରହ୍ମା ରୂପରେ
ହୋଇ ଅଛନ୍ତି ଅବତାର ହେ ପ୍ରଭୋ ଘେନ ନମସ୍କାର
ଆପଣଙ୍କଠାରେ ସଂପୂର୍ଣ୍ଣ ଏ ବିଶ୍ୱ କରେ ଅବସ୍ଥାନ

ଏ କାର୍ଯ୍ୟ କାରଣ ଜଗତ ଆପଣଙ୍କ ଦେହ ସାକ୍ଷାତ
ମାତ୍ର ତା ଉର୍ଦ୍ଧ୍ୱରେ ଆପଣ ସ୍ୱୟଂ କରନ୍ତି ଅବସ୍ଥାନ
ତୁମ ଶରୀରୁ ଜୀବଗଣ ସକଳ ଲଭନ୍ତି ଜନମ
ଯେ ନିଷ୍କାମ ଭକ୍ତି ଭାବରେ ତବ ଚରଣ ଧ୍ୟାନ କରେ

ତାଙ୍କର କୌଣସି ପ୍ରକାରେ କ୍ଷତି ନ ହୁଅଇ ସଂସାରେ
ସେମାନେ ତବ ପ୍ରସାଦରେ କୃତାର୍ଥ ହୁଅନ୍ତି ବିଶ୍ୱରେ
ରଜ୍ଜୁବଦ୍ଧ ଗାବ ପ୍ରକାରେ ଆପଣଙ୍କ ବେଦ ବାଣୀରେ
ବନ୍ଧାହୋଇ ଏ ପ୍ରଜାଗଣ କରନ୍ତି କର୍ମ ଅନୁଷ୍ଠାନ

ପ୍ରଧାନ ନିୟନ୍ତା ଆପଣ ତୋ ଚରଣେ ଆମ ପ୍ରଣାମ
ହେ ଭୂମନ ଏ ଅନ୍ଧକାର କର୍ମ ଲୋପ କରେ ପ୍ରଜାର
ଘଟାଏ ଅମଙ୍ଗଳ ମାନ କଲ୍ୟାଣ କରନ୍ତୁ ଆପଣ
ଶରଣାଗତ ଆମଠାରେ କୃପା ନେତ୍ରରେ ଚାହିଁବାରେ

ହେ ଦେବ ଯେପରି ଅନଳ ଇନ୍ଧନରେ ବଢ଼େ ପ୍ରବଳ
ତଥା ଦିତି ଗର୍ଭେ ସ୍ଥାପିତ କଶ୍ୟପଙ୍କ ବୀର୍ଯ୍ୟ ସମସ୍ତ
ଦିଗକୁ କରି ଅନ୍ଧକାର ବଢୁ ଅଛଉ ନିରନ୍ତର

ଦେବତା ମାନଙ୍କ ପ୍ରାର୍ଥନା ଶୁଣି ଶ୍ରୀଭଗବାନ ବ୍ରହ୍ମା
ମନ୍ଦେ ହସି ମଧୁବାଣୀରେ ଆନନ୍ଦେ ଦେବଙ୍କୁ କହିଲେ

### ବ୍ରହ୍ମୋବାଚ

କହିଲେ ଚତୁର ଆନନ ଧୀରେ ଶୁଣ ହେ ଦେବଗଣ
ତୁମ ମାନଙ୍କ ଜ୍ୟେଷ୍ଠଭ୍ରାତ ସନକାଦି ମାନସ ସୁତ
ପ୍ରଜା ସୃଷ୍ଟିର ସ୍ପୃହାତେଜି ନିଷ୍ଠାରେ ହରି ପାଦେ ଭଜି
ସ୍ୱେଚ୍ଛାରେ ଆକାଶ ମାର୍ଗରେ ଭ୍ରମଣ କରୁ କରୁ ଥରେ

ପ୍ରବେଶ ବୈକୁଣ୍ଠ ଧାମରେ ପ୍ରେମ ଆନନ୍ଦ ହୃଦୟରେ
ସକଳ ଲୋକ ଊର୍ଦ୍ଧ୍ୱେସ୍ଥିତ ସେ ଧାମ ସତ୍ତ୍ୱମୟ ପୁତ
ସେ ଲୋକ ଅଧୀବାସୀ ଗଣ ରୂପ ଗୁଣେ ବିଷ୍ଣୁ ସମାନ
ବେଦାନ୍ତ ବେଦ୍ୟ ଧର୍ମ ମୂର୍ତ୍ତି ଆଦି ପୁରୁଷ ତହିଁଥାନ୍ତି

ଶୁଦ୍ଧ ସତ୍ତ୍ୱରୂପ ଧରିଣ ଭକ୍ତେ କରନ୍ତି ସୁଖ ଦାନ
ନିଃଶ୍ରେୟସ ନାମ ବନ ସେଠାରେ ସଦା ବିଦ୍ୟମାନ
ମୂର୍ତ୍ତିମନ୍ତ କୈବଲ୍ୟ ସ୍ଥାନ ଷଡରତୁରେ ସୁଶୋଭନ
ନାନା ବୃକ୍ଷରେ ପରିପୂର୍ଣ୍ଣ କରଇ କାମନା ପୂରଣ

ଗନ୍ଧର୍ବେ ବସି ବିମାନରେ ନିଜ ପ୍ରଣୟିନୀ ସଙ୍ଗରେ
ପ୍ରଭୁଙ୍କ ଦିବ୍ୟ ଲୀଳା ଗୁଣ ପ୍ରେମରେ କରନ୍ତି ଗାୟନ
ସରୋବରରେ ବିକଶିତା ମଧୁପୂର୍ଣ୍ଣ ବାସନ୍ତୀ ଲତା
ମଧୁ ସୁଗନ୍ଧ ତାଙ୍କ ମନ କରଇ ବଳେ ଆକର୍ଷଣ

ମାତ୍ର ଗନ୍ଧର୍ବଗଣ ଚିତ୍ତ ତହିଁ ନହୁଏ ଆକର୍ଷିତ
ସୁଗନ୍ଧ ପବନ ସେବନ ତେଜି କରନ୍ତି ଲୀଳାଗାନ
ଉଚ୍ଚସ୍ୱରରେ ଗୁଞ୍ଜରିଣ ଭ୍ରମର କରେ ଲୀଳାଗାନ
କୋକିଳ ହଂସ ପାରାବତ ଶୁକ ମୟୂରାଦି ସହିତ

ବିହଙ୍ଗମ ହୋଇ ମଉନ କୀର୍ତ୍ତନ ପ୍ରେମରେ ନିମଗ୍ନ
ତୁଳସୀ ସୁଗନ୍ଧେ ଆଦର ସର୍ବଦା ଥାଏ ହରିଙ୍କର
ଶ୍ରୀହରି ଲାବଣ୍ୟ ମୁରତି ତୁଳସୀ ସୁସଜ୍ଜିତ ଅତି
ଏ ବିଷୟ କରି ଦର୍ଶନ ପୁନ୍ନାଗ କୁରୁବକ ଅଣ

କୁନ୍ଦ ଚମ୍ପକ ନାଗେଶ୍ୱର ଉତ୍ପଳ କମଳ ମନ୍ଦାର
ପାରିଜାତାଦି ସୁଗନ୍ଧିତ କୁସୁମ ବାସ ବିକସିତ
ହୋଇ ମଧ୍ୟ ସେ ତୁଳସୀର ତପସ୍ୟାରେ ହୋଇ ଆତୁର
ନିଜକୁ କରନ୍ତି ଧିକ୍କାର ତୁଳସୀ ମହିମା ଅପାର

ସେ ଧାମ ବୈଦୂର୍ଯ୍ୟ ସୁର୍ଣ୍ଣେ ମରକତ ବିମାନ ପୂର୍ଣ୍ଣ
ଏସବୁ ନୁହେଁ କର୍ମଫଳ ଶ୍ରୀହରି ଚରଣ କମଳ
ବନ୍ଦନାରୁ ଏହା ମିଳଇ ହରି ଯାକୁ ଦୟା କରଇ
ବିମାନ ଆରୋହଣ କରି ତାରୁ କିତମ୍ବିନୀ ସୁନ୍ଦରୀ

ନାରୀ ସ୍ମିତ ପରିହାସରେ କୃଷ୍ଣପ୍ରାଣ ଭକ୍ତ ଚିତ୍ତରେ
ମଦନ ବିକାର ଜନମ କରିବାକୁ ନୁହନ୍ତି କ୍ଷମ
ପରମ ସୌନ୍ଦର୍ଯ୍ୟ ଶାଳିନୀ ଲକ୍ଷ୍ମୀଦେବୀ ହରି ଗୃହିଣୀ
କରି ନୁପୂରର ଝଙ୍କାର ପ୍ରେମ ଆନନ୍ଦରେ ଅଧୀର

ଲୀଳା କମଳ ସ୍ୱହସ୍ତରେ ଚାଳନା କରନ୍ତି ପ୍ରେମରେ
ପ୍ରତିବିମ୍ବ ସ୍ୱର୍ଣ୍ଣ ଖଚିତ ଭିତ୍ତିରେ ହେବାରୁ ପତିତ
ତା ପ୍ରତିମାର୍ଜିତ ହୁଅଇ ଲକ୍ଷ୍ମୀ କୃପା କଟାକ୍ଷ ପାଇଁ
ଦେବତା କରନ୍ତି ପ୍ରଯତ୍ନ ଏ ଜଗତ ଲକ୍ଷ୍ମୀ ଅଧୀନ

ଆହେ ପ୍ରତି ଦେବତା ଗଣ ସେ ପ୍ରେମ ପୁଣ୍ୟମୟ ଧାମ
ସରିତ ସରୋବର ଜଳ ସୁଗନ୍ଧ ପବିତ୍ର ନିର୍ମଳ
ସେ ସରୋବର ମଧ୍ୟ ସ୍ଥଳ ଲମ୍ବିଛି ସୋପାନ ପ୍ରବାଳ
ଲକ୍ଷ୍ମୀ ସେହି କେଳି ବନରେ ପରିଚାରିଙ୍କ ମେଳରେ

ହରିଙ୍କୁ ତୁଳସୀ ଜଳରେ ଅର୍ଚ୍ଚନା କରନ୍ତି ପ୍ରେମରେ
ସେ ବେଳେ ସରସୀର ଜଳେ ଲକ୍ଷ୍ମୀଙ୍କ ପ୍ରତିବିମ୍ବ ଝଳେ
ଅଳକାବଳି ମନୋରମ ଉତ୍ତୁଙ୍ଗ ନାସିକା ଶୋଭନ
ମୁଖାର ବିନ୍ଦରେ ଚୁମ୍ବନ ଚିହ୍ନକୁ କରି ଦରଶନ

ନିଜକୁ ଅତି ଭାଗ୍ୟବତୀ ବୋଲି ଲକ୍ଷ୍ମୀ ଦେବୀମଣନ୍ତି
ସେ ଜଳ କଳୁଷ ହାରିଣୀ ହରି ଲୀଳା ଯେ ଶ୍ରୀ ନଶୁଣି
ଅର୍ଥ କାମ ଆଦି ଅନ୍ୟାନ୍ୟ ନିନ୍ଦା କଥା କରେ ଶ୍ରବଣ
ସେ ଅଭାଗା ବୁଦ୍ଧି ହୀନ ନ ଲଭେ ବଇକୁଣ୍ଠ ଧାମ

ଦେହାନ୍ତେ ନିରାଶ୍ରୟ ହୋଇ ନରକ ଯାତନା ଭୋଗଇ
ମହନୀୟ ମାନବ ଜନ୍ମ ଦେବତାଙ୍କର ମଧ୍ୟ କାମ୍ୟ
ତତ୍ତ୍ୱଜ୍ଞାନ ଧର୍ମ ଏଥିରେ ପ୍ରାପତି ହୁଅଇ ଅଚିରେ
ଯେ ଲଭି ମାଳକ ଜନ୍ମ ନକରେ ଶ୍ରୀହରି ଅର୍ଚ୍ଚନ

ସେ ଜନ ଏହି ସଂସାରରେ ଶ୍ରୀଭଗବାନଙ୍କ ମାୟାରେ
ହୁଏ ଅତ୍ୟନ୍ତ ସମ୍ମୋହିତ ସମ୍ମୋହିନୀ ମାୟାଶକ୍ତିତ
ଦେବାଧିଦେବ ହରିଙ୍କର ନାମ ଯେ ଚିନ୍ତେ ନିରନ୍ତର
ନ ଗମଇ ଯମ ଭୁବନ ସଫଳ କରେ ନର ଜନ୍ମ

ପରସ୍ପର ମଧ୍ୟରେ ଯେହି ହରି ଲୀଳା ଚର୍ଚ୍ଚା କରଇ
ଅନନ୍ୟ ପ୍ରେମ.ବଶେଯାର ନେତ୍ରୁ ବହଇ ଅଶ୍ରୁଧାର
ଶରୀର ହୁଏ ପୁଲକିତ ସେ ଭକ୍ତ ମହା ଭାଗ୍ୟବନ୍ତ
ଲାଭପାଇଁ ତାର ସଙ୍ଗତି ଦେବତା ବି ଇଚ୍ଛା କରନ୍ତି

ସେ ଦେବ ଲୋକ ଉର୍ଦ୍ଧ୍ୱ ସ୍ଥାନ ଗମଇ ବୈକୁଣ୍ଠ ଧାମ
ବିଶ୍ୱେଶ ହରି ବାସସ୍ଥାନ ସକଳ ଭୁବନ ବରେଣ୍ୟ
ଶ୍ରେଷ୍ଠ ଦେବତାଙ୍କ ବିଚିତ୍ର ବିମାନ ସମୁହେ ଭୂଷିତ
ପରମ ଦିବ୍ୟ ଅଦଭୂତ ଆନନ୍ଦ ପ୍ରେମମୟ ନିତ୍ୟ

ସେ ବୈକୁଣ୍ଠ ଧାମେ ଯେବେଳେ ସନକାଦି ମୁନି ମିଳିଲେ
ସେମାନଙ୍କ ହୃଦୟସ୍ଥଳ ପ୍ରେମାନନ୍ଦେ ହେଲା ବିହ୍ୱଳ
ହରି ଦର୍ଶନ ଲାଳସାରେ ସେମାନେ ବୈକୁଣ୍ଠ ଧାମରେ
ଅନ୍ୟ ଦର୍ଶନୀୟ ବସ୍ତୁମାନ ଉପେକ୍ଷିତ ବୈକୁଣ୍ଠଧାମ

ଛଅଗୋଟି ପ୍ରାଚୀର ଦ୍ୱାର ପାରହେଉ ସପ୍ତମ ଦ୍ୱାର
ନିକଟେ ଯାଉ ପ୍ରବେଶିଲେ ସେମାନେସେଠାରେ ଦେଖିଲେ
ସମବୟସ ଦେବ ଦୁଇ ସେଠାରେ ଛନ୍ତି ଉଭା ହୋଇ
ଅଙ୍ଗଦ କିରଟ କୁଣ୍ଡଳ ମହାର୍ଘ ରତନର ମାଳ

ଶୋଭିତ ନାନା ଅଳଙ୍କାରେ ଗଦା ଧରିଛନ୍ତି ହସ୍ତରେ
ସେ ଦୁହିଙ୍କ ଭୁଜ ଶ୍ୟାମଳ ଅଜାନୁ ଲମ୍ବୀ ବନମାଳ
ତହିଁ ମତ୍ତ ଭ୍ରମର ଗଣ କରନ୍ତି ମଧୁର ଗୁଂଜନନ
ଭ୍ରୂଲତା ଇଷତ କୁଞ୍ଚିତ ନାସାଗ୍ର କିଞ୍ଚିତ ଉନ୍ନତ

କ୍ରୋଧରେ ଅରୁଣ ନୟନ ଅତି ଭୟଙ୍କର ବଦନ
ତାଙ୍କୁ ଦେଖି ମଧ୍ୟ ଏପରି ସନକାଦି ଯେ ନ ପଚାରି
ପ୍ରବେଶ ସପ୍ତମ ଦ୍ୱାରରେ ନିର୍ଭୟରେ ବିନା ବିଧାରେ
ସର୍ବତ୍ର ବିଚରଣ କଲେ ମଦଅର୍ପି ହରିପାଦରେ

ସେ ସନକାଦି ଚତୁଃସନ ସାତ୍ତ୍ୱିକଭାବ ପରିପୂର୍ଣ୍ଣ
ସେମାନେ ବିଧାତା ଦୃଷ୍ଟିରେ ସକଳେ ଜ୍ୟେଷ୍ଠ ବୟସରେ
ପଞ୍ଚ ବରଷ ବାଳସମ ଦିଶନ୍ତ ଅତି ନିରୁପମ
ତେଜସ୍ୱୀ ଦିଗମ୍ବର ଥିଲେ ଦେଖି ଦୁଇ ଦ୍ୱାରୀ ହସିଲେ

ସେମାନେ ନିର୍ଭୟ ଚିତ୍ତରେ ପ୍ରବେଶନ୍ତେ ଦ୍ୱାର ମଧ୍ୟରେ
ଦ୍ୱାରପାଳ ବେତ୍ର ହସ୍ତରେ ବଳେ ସେଠାରେ ନିରୋଧିଲେ
ବୈକୁଣ୍ଠ ପତି ହରିଙ୍କର ସମ୍ମୁଖେ ଦୁଇ ଦ୍ୱାରପାଳ
ସନକାଦିଙ୍କୁ ଏ ପ୍ରକାର ବାଧାଦେବାରୁ ତାହାଙ୍କର

ପ୍ରିୟତମ ଶ୍ରୀଭଗବାନ ଦର୍ଶନେ ବାଧା ହେଲା ଜନ୍ମ
କ୍ରୋଧରେ ତାହାଙ୍କ ନୟନ ହୋଇଲା ସହସା ଅରୁଣ
ସେମାନେ ଅତ୍ୟନ୍ତ କ୍ରୋଧରେ ଦ୍ୱାରୀଙ୍କୁ ଏପରି କହିଲେ

### ମୁନୟ ଉବାଚ

ହେ ମୂଢ଼ ଦ୍ୱାରପାଳ ଶୁଣ ନାହିଁ ତୁମ ବିବେକ ଜ୍ଞାନ
ଶ୍ରୀହରିଙ୍କ ସେବାଫଳେ ଯେହି ବୈକୁଣ୍ଠପୁରେ ନିବସଇ
ସେ ସଦା ଭଗବାନ ସମ ସମଚିତ୍ତ ସମ ଦର୍ଶନ
ଏଥି ରହୁଛ ତୁମେ ଦୁଇ ବିଷମ ସ୍ୱଭାବ କିମ୍ପାଇ

ପ୍ରଶାନ୍ତ ଆତ୍ମା ହରିଙ୍କର ନୁହଇ କେହି ପରାପର
ଏପରି ଅଛି କେ ଏଠାରେ ତୁମ ଆଶଙ୍କା ଯାହାଠାରେ
ତୁମେ କୁଟ ରଖି ହୃଦରେ ଶଙ୍କାକର ଅନ୍ୟ ଉପରେ
ହରିଙ୍କ ହୃଦୟ ଉଦାର ତହି ରହେ ସାରା ସଂସାର

ଏଠି ବସନ୍ତି ବିଜ୍ଞଗଣ ସମଜ୍ଞାନ ସମଦର୍ଶନ
ମହାକାଶରେ ଯେଉଁପରି ଘଟାକାଶ ରହେ ସେପରି
ଜ୍ଞାନୀ ନିଜକୁ ହରିଙ୍କର ଅନ୍ତର୍ଗତ କରେ ବିଚାର
ଦୁହେଁତ ଦେବ ରୂପଧାରୀ କି ଦୃଶ୍ୟ ଦେଖିଲ ଏପରି

ଯାହାଫଳେ ହରିସହିତ    ଭେଦ ଭାବନା ହେଲା ଜାତ
ହୃଦେ କଲ ଭୟ କଳ୍ପନା    ଏଠାରେ ଏହା ବିଡ଼ମ୍ବନା
ବୈକୁଣ୍ଠ ପତି ଭଗବାନ    ପାର୍ଷଦ ତୁମେ ଦୁଇ ଜଣ
ମାତ୍ର ତୁମର ମନ୍ଦମତି    ବୃଥା ଆଚରିଲେ ଅନୀତି

ତୁମର କଲ୍ୟାଣ ନିମିତ୍ତ    ଅପରାଧର ଉପଯୁକ୍ତ
ଦଣ୍ଡ ଭୋଗ ଅଟେ ଉଚିତ    ଦୋଷର ପ୍ରାୟଶ୍ଚିତ ଏତ
ତୁମେ ଭେଦ ବୁଦ୍ଧି ଦୋଷରୁ    ବିଚ୍ୟୁତ ବୈକୁଣ୍ଠ ଧାମରୁ
କ୍ରୋଧାଦି ଅରି ପରିପୂର୍ଣ୍ଣ    ପାପ ଯୋନିରେ ଲଭ ଜନ୍ମ

ସନକାଦିଙ୍କର କଠୋର    ବଚନ ଶୁଣି ଏ ପ୍ରକାର
ବ୍ରାହ୍ମଣ ଅଭିଶାପ ଏତ    ଶସ୍ତ୍ରରେ ନୁହେଁ ନିବାରିତ
ସ୍ୱୟଂ ଶ୍ରୀହରି ବିଶ୍ୱପତି    ବ୍ରାହ୍ମଣ ଶାପକୁ ଡରନ୍ତି
ଜାଣି ଅତି ଦିନ ଭାବରେ    ପଡ଼ିଲେ ମୁନିଙ୍କ ପୟରେ

ବିନୟେ ଏପରି କହିଲେ    ଭୋ ମୁନି କ୍ଷମାକର ବାରେ
ହେ ମହାମୁନି ମହାଶୟ    ନ ଜାଣି ତବ ଅଭିପ୍ରାୟ
ଆଜ୍ଞା କରିଅଛୁ ଲଙ୍ଘନ    ହେ ମୁନିବର ଦୀନେ କ୍ଷମ
ପାପ ଏହି ଅପରାରେ    ତବ ଦଣ୍ଡରେ ହେବ ଦୂର

ଅଧମ ଯୋନିରେ ଜନମ    ଲାଭ କରିଲେ ମଧ୍ୟ ଆମ
ଭଗବତ ସ୍ମୃତି ନାଶକାରୀ    ମୋହ ନ ଜନ୍ମିବ ଯେପରି
ସୁଦୟା କରନ୍ତୁ ଆପଣ    ଆହେ ଦୟାଳୁ ମୁନିଗଣ
ସେହି ସମୟେ ସନ୍ଥଜନ    ହୃଦୟନିଧି ଭଗବାନ

ଜାଣି ପାରିଲେ ଯେ ତାଙ୍କର    ଦ୍ୱାରପାଳ ଯେ ସାଧୁଙ୍କର
କରିଅଛନ୍ତି ଅନାଦର    ପ୍ରଭୁ ଏହା କରି ବିଚାର
ପରମ ହଂସ ମୁନିଗଣ    ଯାହାକୁ କରି ଅନ୍ୱେଷଣ
ଲଭି ନ ପାରେ ସହଜରେ    ଚାଲି ଚାଲି ସେହି ପାଦରେ

ଲକ୍ଷ୍ମୀ ସହିତ ସେ ସ୍ଥାନରେ    ପ୍ରବେଶ କରିଲେ ସତ୍ୱରେ
ସନକାଦି ସେ ସମୟରେ    ସମ୍ମୁଖେ ହରିଙ୍କୁ ଦେଖିଲେ
ମୁନିଏ ଧ୍ୟାନ ସମାଧିରେ    ଯାହାଙ୍କୁ ଦେଖନ୍ତି ହୃଦରେ
ସେ ସ୍ୱୟଂ ବୈକୁଣ୍ଠ ଈଶ୍ୱର    ହୋଇଛନ୍ତି ନେତ୍ର ଗୋଚର

ଛତ୍ର ଚାମର ହସ୍ତେ ଧରି    ପାର୍ଷଦେ ଆସୁଛନ୍ତି ଚଳି
ଉଭୟ ପାର୍ଶ୍ୱେ ପ୍ରଭୁଙ୍କର    ରାଜହଂସ ପକ୍ଷ ପ୍ରକାର
ଦୁଇଗୋଟି ଶ୍ୱେତ ଚାମର    ପଡୁଅଛି ଯେ ନିରନ୍ତର
ଶୀତଳ ବାୟୁରେ ତାହାର    ମୋତିଝରା ଶ୍ୱେତ ଛତ୍ରର

ଅପରୂପ ଶୋଭା ଧରିଛି    ଧୀରେ ଧୀରେ ଦୋହଲୁଅଛି
ସକଳ ସୁଗୁଣ ଆଳୟ    ବୈକୁଣ୍ଠ ପତି ଦୟାମୟ
ସୌମ୍ୟ ବଦନ ଦର୍ଶନରେ    ପ୍ରତୀତ ହୁଏ ଏ ପ୍ରକାରେ
ସ୍ନେହ ପ୍ରେମମୟ ଦୃଷ୍ଟିରେ    ସକଳ ପ୍ରାଣୀଙ୍କ ଉପରେ

ବର୍ଷୁଛନ୍ତି କି ଦୟା ମୃତ    ସ୍ପର୍ଶ କରି ଭକତ ଚିତ୍ତ
ସୁବିଶାଳ ଶ୍ୟାମ ବକ୍ଷରେ    ସୁବର୍ଣ୍ଣର ରେଖା ରୂପରେ
ଲକ୍ଷ୍ମୀଯେ ଶୋଭା ପାଉଥିଲେ    ସେହି କାରଣରୁ ବିଶ୍ୱରେ
ସର୍ବ ଦିବ୍ୟ ଲୋକ ମଧ୍ୟରେ    ବୈକୁଣ୍ଠ ସର୍ବ ଶୋଭାଧରେ

ବିମଣ୍ଡିତ ପୀତ ଅମ୍ବରେ    ତାଙ୍କ ବିଶାଳ ନିତମ୍ବରେ
କାଞ୍ଚଲ ଝିଲିମିଲି କରେ    ପ୍ରଭୁଙ୍କ ଉନ୍ନତି ଗଳାରେ
ବିଲମ୍ବିତ ପୁଷ୍ପମାଳାରେ    ଭ୍ରମର ଗୁଞ୍ଜରଣ କରେ
ସ୍ୱର୍ଣ୍ଣକଙ୍କଣ ସୁଶୋଭିତ    ଗରୁଡ଼ ପୃଷ୍ଠେ ରଖି ହସ୍ତ

ଲୀଳା ପଦ୍ମ ଏକ ହସ୍ତରେ    ଧରି ଚଳନ୍ତି ସେ ପ୍ରେମରେ
ମକର କୁଣ୍ଡଳୁ ବିଜୁଳି    ପରି ତେଜ ଉଠେ ଉଚ୍ଛୁଳି
ଅତି ସୁନ୍ଦର ଗଣ୍ଡସ୍ଥଳ    ଦୋଳାଇ ମକର କୁଣ୍ଡଳ
ଉନ୍ନତ ନାସା ମନୋରମ    ଚନ୍ଦ୍ରମା ଜିଣଇ ବଦନ

ମଣି ମୁକୁଟ ମସ୍ତକରେ    ଦର୍ଶକ ମନ ମୁଗ୍ଧକରେ
ମହାର୍ଘ ରତ୍ନମୟ ହାର    ଚତୁର୍ଭୁଜେ ବିଶେ ସୁନ୍ଦର
କଉସ୍ତୁଭମଣି ଗଳାରେ    ଅପୂର୍ବ ସୁଷମା ବିସ୍ତାରେ
ହରିଙ୍କ ଲାବଣ୍ୟ ମୁରତି    ବିଲୋକି ଭକ୍ତେ ବିଚାରନ୍ତି

ଲକ୍ଷ୍ମୀଙ୍କ ସସମା ଗରବ    ଏ ମୂର୍ତ୍ତୀ କରି ଦିଏ ଖର୍ବ
ଯେଉଁ ମୂର୍ତ୍ତୀକୁ ପଞ୍ଚାନନ    ସର୍ବଦା କରନ୍ତି ଧିଆନ
ସେ ସୁନ୍ଦର ବିଗ୍ରହ ଧର    ହରିଙ୍କ ରୂପ ମନୋହର
ଯେତେ କରିଲେ ବି ଦର୍ଶନ    ସନକାଦିଙ୍କର ନୟନ

କେବେ ହେ ନୋହିଲା ତୃପତ ଭକ୍ତିରେ ଶିର ଅବନତ
ବିହିଲେ ସାଷ୍ଟାଙ୍ଗ ପ୍ରଣାମ ସେତ ସୁସମାର ନିଧାନ
ସେ କନକାଦି ମୁନିଗଣ ବ୍ରହ୍ମାନନ୍ଦେ ହେଲେ ନିମଗ୍ନ
ପଦ୍ମନୟନ ହରିଙ୍କର ପାଦ ପଦ୍ମର ସୁମଧୁର

ମକରନ୍ଦ ସୁଧା ମିଶ୍ରିତ ତୁଳସୀ ଜଳ ସୁବାସିତ
ବାୟୁ ନାସାରନ୍ଧ୍ର ପଥରେ ପ୍ରବେଶନ୍ତେ ହୃଦ ମଧ୍ୟରେ
ସେମାନେ ପ୍ରେମ କଲ୍ଲୋଳରେ ଦେହ ସମ୍ଭାଳି ନପାରିଲେ
ସେ ଦିବ୍ୟ ସୁବାସେ ତାଙ୍କର ଦ୍ରବିଭୂତ ହେଲା ଅନ୍ତର

ହରିଙ୍କ ବଦନ ମଣ୍ଡଳ ସୁନୀଳ କମଳ କୋମଳ
ରଙ୍ଗିମ ମଧୁର ଅଧର କୁନ୍ଦ କଳିକା ମନୋହର
ମନ୍ଦସ୍ମିତ ଶୋଭା ଦରଶନ ଅଙ୍ଗ କାନ୍ତିକରେ ବର୍ଦ୍ଧନ
ସେ ଦିବ୍ୟ ଶୋଭା ଦର୍ଶନରେ ମୁନିଏ କୃତ କୃତ୍ୟ ହେଲେ

ପଦ୍ମ ରାଗ ସମ ଆରକ୍ତ ନଖ ରାଜିରେ ସୁଶୋଭିତ
କମଳ କୋମଳ ଚରଣ ମୁନିଏ ଚିତ୍ତେ କଲେ ଧ୍ୟାନ
ନିତ୍ୟ ଅଷ୍ଟୈଶ୍ୱର୍ଯ୍ୟ ପ୍ରସନ୍ନ ମନ ନୟନ ଅଭିରାମ
ହରିଙ୍କ ଏ ପୌରୁଷ ମୂର୍ତ୍ତି ଯୋଗୀଗଣ ଧ୍ୟାନ କରନ୍ତି

### ସନକାଦୟଃ ଉବାଚ

ହେ ପ୍ରଭୋ ନିତ୍ୟ ନିରଞ୍ଜନ ଅନନ୍ତ ଅବ୍ୟକ୍ତ ଆପଣ
ଅନ୍ତର୍ଯ୍ୟାମୀ ରୂପେ ଦୁଷ୍କର ହୃଦରେ କରିଲେ ବିହାର
ସେମାନେ ଜାଣି ନ ପାରିନ୍ତି ପାପ ପଙ୍କରେ ବୁଡିଥାନ୍ତି
ଆଜି ଆପଣ ସାକ୍ଷାତରେ ବିରାଜିତ ନେତ୍ର ପଥରେ

ତବ ନାଭି କମଳୁ ଜନ୍ମ ଆମ ପିତା ଚତୁରାନନ
ତୁମ ରହସ୍ୟ ଯେତେବେଳେ ବର୍ଣ୍ଣିଲେ ଆମ ସମ୍ମୁଖରେ
ସେବେଠୁ ଆମ ହୃଦରେ ସଦା ବିରାଜୁଛ ବୁଦ୍ଧିରେ
ଆଜି ପ୍ରତ୍ୟକ୍ଷ ଦରଶନ ସାର୍ଥକ ହୋଇଲା ଜୀବନ

ଆମେ ଆପଣଙ୍କୁ ସାକ୍ଷାତ ଜାଣିଛୁ ପରମାତ୍ମା ତତ୍ତ୍ୱ
ବର୍ତ୍ତମାନ ତୁମେ ଏଠାରେ ଶୁଦ୍ଧ ସତ୍ତ୍ୱ ଶ୍ରୀବିଗ୍ରହରେ
ଭକ୍ତେ କରୁଛ ସୁଖ ଦାନ ଆପଣଙ୍କ ଏହି ସଗୁଣ
ମୂର୍ତ୍ତିକୁ ରାଗଦ୍ୱେଷ ମୁକ୍ତ ମୁନିରଷି ଅନନ୍ୟ ଭକ୍ତ

ଆପଣଙ୍କ କୃପା ବଳରେ ଦୃଢ଼ ଭକ୍ତିରେ ହୃଦୟରେ
ସର୍ବଦା ଦର୍ଶନ କରନ୍ତି ହେ ଦୟାମୟ ବିଶ୍ୱପତି
ଆପଣଙ୍କ ଲୀଳା କୀର୍ତ୍ତନ ସଂସାର ଦୁଃଖ ନିବାରଣ
ଆପଣଙ୍କ କଥା ଅମୃତ ରସ ରସିକ ସାଧୁ ଭକ୍ତ

ମହାତ୍ମାଗଣ ତୋ ପ୍ରସାଦ ଆତ୍ୟନ୍ତିକ ଯେ ମୋକ୍ଷପଦ
ସର୍ବଦା ଅସାର ମଣନ୍ତି ଇନ୍ଦ୍ରାଦି ପଦ ନ ଇଛନ୍ତି
ଭ୍ରମର ସମ ଆମମନ ତୋ ପାଦରେ କରୁ ରମଣ
ଆମ ମାନଙ୍କ ଏହି କର୍ଣ୍ଣ ଶୁଣୁ ଯଶ ସୁଧା ସଂପୂର୍ଣ୍ଣ

ତୁଳସୀ ପରି ବାଣୀ ଆମ ଲାଗିରହୁ ତୋର ଚରଣ
ଆମେ ପୂର୍ବ ପାପ ଫଳରେ ଜନ୍ମିଲେ ବି ପାପ ଯୋନିରେ
ଆମର ତିଳେ ଚିନ୍ତା ନାହିଁ ହେ ଦୟାମୟ ଭାବଗ୍ରାହୀ
ଆପଣ ଆମ ସମ୍ମୁଖରେ ପ୍ରକଟ ମନୋଜ୍ଞ ରୂପରେ

ନେତ୍ର ଆମ ସୁଖ ଲଭଇ ହେ ପ୍ରଭୋ ଜଗତ ସାଇଁ
ଅଜିତେନ୍ଦ୍ରିୟ ମନ୍ଦମତି ଏ ରୂପ ଦେଖି ନ ପାରନ୍ତି
ଆପଣ ନିଜ ସ୍ୱରୂପରେ ପ୍ରକାଶ ଆମ ସମ୍ମୁଖରେ
ଆପଣଙ୍କ ପଦ୍ମ ଚରଣ ଆମେ କରୁଅଛୁ ପ୍ରଣାମ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଜୟ ବିଜୟ ଉପାଖ୍ୟାନେ ପଞ୍ଚଦର୍ଶୋଽଧ୍ୟାୟ ।

********

## ଷୋଡଶ ଅଧ୍ୟାୟ

### ବ୍ରହ୍ମୋବାଚ

ବୋଲନ୍ତି କମଳ ଆସନ ହେ ଦେବଗଣ ଏବେ ଶୁଣ
ସକଳ ଆଦି ମୁନିବର ସ୍ତୁତି କରନ୍ତେ ଏ ପ୍ରକାର
ବୈକୁଣ୍ଠ ବିହାରି ଶ୍ରୀହରି ପ୍ରଶଂସି ବୋଇଲେ ଏପରି

### ଶ୍ରୀଭଗବାନ ଉବାଚ

କହିଲେ ପ୍ରଭୁ ଭଗବାନ ମୋର ପାର୍ଷଦ ଦୁଇଜଣ
ଜୟ ବିଜୟ ଯାଙ୍କ ନାମ ମୋ ଆଦେଶ କରି ଲଙ୍ଘନ
ତୁମକୁ ଅପମାନ ଦେଲେ କର୍ତ୍ତବ୍ୟେ ଅବହେଳା କଲେ
ଆପଣ ମୋର ଅନୁଗତ ଭକ୍ତ ପ୍ରବର ଶୁଦ୍ଧ ଚିତ୍ତ

ମତେ ଏ ଅବଜ୍ଞା କରିଲେ ବ୍ରାହ୍ମଣେ ଦ୍ରୋହ ଆଚରିଲେ
ଏ ଯେଉଁ ଦଣ୍ଡ ପାଇଛନ୍ତି ତହିଁରେ ଅଛି ମୋ ସମ୍ମତି
ବ୍ରାହ୍ମଣ ପୂଜ୍ୟ ମୋ ଅଟଇ ଏ ଦୁଇ ମୋର ଭୃତ୍ୟ ହୋଇ
ତୁମକୁ ଅପମାନ ଦେଲେ ବୈକୁଣ୍ଠ ମର୍ଯ୍ୟାଦା ଲଙ୍ଘିଲେ

ଏଥିରେ ଦାୟୀ ମୁଁ ଅଟଇ ଆପଣଙ୍କୁ ଭିକ୍ଷା ମାଗଇ
ଆନନ୍ଦେ ପ୍ରସନ୍ନ ହୁଅନ୍ତୁ ଶାପ ପ୍ରତିକାର କରନ୍ତୁ
ସେ ବକର ଅପରାଧରେ ସ୍ୱାମୀ ଅପରାଧୀ ସଂସାରେ
ଚର୍ମର ଯେ ରୋଗ ଯେମନ୍ତ ତ୍ୱଚାକୁ କରଇ ଦୂଷିତ

ସେବକ ଅପରାଧ ଜାତ ଅଯଶ ସ୍ୱାମୀର ସମସ୍ତ
କୀରତି ଦୂଷିତ କରଇ ନୀତି ଶାସ୍ତ୍ରର ମତ ଏହି
ନିର୍ମଳ ଯଶ ସୁଧା ମୋର କର୍ଣ୍ଣେ ପ୍ରବେଶିଲେ ଶ୍ରେତାର
ଚଣ୍ଡାଳ ପର୍ଯ୍ୟନ୍ତ ଜଗତ କ୍ଷଣକେ ହୁଅନ୍ତି ପବିତ୍ର

ଏହି କାରଣରୁ ଯେ ମତେ ବୈକୁଣ୍ଠ କହନ୍ତି ଜଗତେ
ଏହି ପବିତ୍ର କୀର୍ତ୍ତୀ ମୁହି ବିପ୍ରସେବାରୁ ଲଭି ଛଇ
ତେଣୁ ସଂସାରେ ଯେଉଁ ଜୀବ ବ୍ରାହ୍ମଣ ଦ୍ରୋହ ଆଚରିବ
ସେ ହେଲେ ମଧ୍ୟେ ମୋର ଭକ୍ତ ତା ଶିରଚ୍ଛେଦିବି ତୁରିତ

ଯାହାଙ୍କୁ ନିତ୍ୟ ସେବାକରି ପବିତ୍ର ମୋ ଚରଣ ଧୂଳି
ଜଗତର ପାପ ସମସ୍ତ ବିନାଶ କରେ ତତ୍କ୍ଷଣାତ
ମୁହିଁ ଉଦାସୀନ ଅଟଇ ମାତ୍ର ଲକ୍ଷ୍ମୀକୁ ନ ତେଜଇ
ଯଦ୍ୟପି ଲକ୍ଷ୍ମୀଙ୍କର ସେହି କୃପା କଟାକ୍ଷ ଲାଭପାଇଁ

ଦେବ ଗଣ ବ୍ରହ୍ମା ପ୍ରଭୃତି ବ୍ରତ ନିୟମ ପାଳିଥାନ୍ତି
ଯେଉଁ ବ୍ରାହ୍ମଣ ଯେ ସଂପୂର୍ଣ୍ଣ କର୍ମ ଫଳ କରି ଅର୍ପଣ
କରେ ମୋ ସନ୍ତୋଷ ବିଧାନ ସେପରି ନିଷ୍କାମ ବ୍ରାହ୍ମଣ
ଘୃତପକ୍ୱାନ୍ନ ଭୋଜନରେ ତୃପ୍ତ ହେଲେ ପ୍ରତି ଗ୍ରାସରେ

ମୁଁ ତାଙ୍କୁ ମୁଖରେ ଯେପରି ତୁଷ୍ଟ ହୁଅଇ ସେହିପରି
ଯଜ୍ଞରେ ଅନଳ ମୁଖରେ ଚରୁ ଘୃତ ଆଦି ସଙ୍ଗରେ
ଯଜମାନ ଦତ୍ତ ଆହୁତି ଗ୍ରହଣେ ନ ଲଭଇ ଶାନ୍ତି
ଯୋଗ ମାୟାଙ୍କର ଅସୀମ ଅଖଣ୍ଡ ଭୂତି ମୋ ଅଧୀନ

ମୋ ପାଦ ଉଦକ ରୂପିଣୀ ଏ ଗଙ୍ଗା ସୁର ତରଙ୍ଗିଣୀ
ଚନ୍ଦ୍ର ଚୂଡ଼ ଶିବ ସହିତ ଜଗତ କରଇ ପବିତ୍ର
ଏପରି ପରମ ପାବନ ମୁଁ ଜଗଦୀଶ ଭଗବାନ
କିନ୍ତୁ ବ୍ରାହ୍ମଣ ପାଦଧୂଳି ମୁକୁଟରେ ମୁଁ ଅଛି ଧରି

ବ୍ରାହ୍ମଣ କଲେ ଅପରାଧ ବେଗେ ମଣ୍ଡିବ ତାଙ୍କ ପାଦ
ଦୁଗ୍ଧବତୀ ଧେନୁ ବ୍ରାହ୍ମଣ ଅନାଥ ଦୀନ ଦେହ ମମ
ଯେ ପାପୀ ବିବେକ ହରାଇ ଏମାନଙ୍କୁ ଭିନ୍ନ ମଣଇ
କ୍ରୋଧେ ସର୍ପ ସମ ଭୀଷଣ ଗୃଧ୍ରାଦି ଯମ ଦୂତ ଗଣ

ଚଞ୍ଚୁ ମୋର ପ୍ରେରଣାରେ କାଟି ପେଶନ୍ତି ଯମ ପୁରେ
କ୍ରୁଦ୍ଧ ପିତାଙ୍କୁ ଯେ ପ୍ରକାର ସୁପୁତ୍ର କରଇ ଆଦର
ତିରସ୍କାର କରି ବ୍ରାହ୍ମଣ କହିଲେ ବି କଟୁ ବଚନ
ଯେ ଜନ ହରଷ ମୁଖରେ ବ୍ରାହ୍ମଣକୁ ଆଦର କରେ

ମୋ ଭାବନାରେ ବ୍ରାହ୍ମଣରେ ଯେ ସଦା ପ୍ରସନ୍ନ ଚିତ୍ତରେ
ଅମୃତ ପ୍ରେମ ବଚନରେ ପ୍ରାର୍ଥନାରେ ଯେ ଶାନ୍ତ କରେ
ସେପରି ଲୋକ ସହଜରେ ମତେ ବଶ କରେ ସଂସାରେ
ମୋର ଏ ଦୁଇ ସେବାକାରୀ ମୋର ଇଛା ଜାଣି ନପାରି

କରିଲେ ଘୋର ଅପରାଧ ତେଣୁ ମୁଁ କରେ ଅନୁଭବ
ଏତିକି ମାତ୍ର ଦୟାକର ଯେପରି ଏ ଦୁହିଙ୍କର
ନିର୍ବାସନର କାଳ ଶୀଘ୍ର ଶେଷ ହୋଇବ ହେ ଅନଘ
ଅଧମଗତି ଭୋଗକରି ଆସିବେ ମୋ ସମୀପେ ଫେରି

### ବ୍ରହ୍ମୋବାଚ

ପିତାମହ ବ୍ରହ୍ମା କହିଲେ କ୍ରୋଧ ଭୁଜଙ୍ଗ ଦଂଶନରେ
ଅଜ୍ଞାନ ସନକାଦି ଗଣ ବୈକୁଣ୍ଠ ପତି ଭଗବାନ
ହରିଙ୍କ ଋଷିକୁଳ ଯୋଗ୍ୟ ମଧୁରବାଣୀ ଶୁଣି ମଧ
ତିଳେ ହେ ନ ହୋଇଲେ ଶାନ୍ତ କ୍ରୋଧ ଶକତି ଅପ୍ରମିତ

ଶ୍ରୀଭଗବାନଙ୍କ ବଚନ  ସ୍ୱଳ୍ପ ହେଲେ ବି ଅର୍ଥ ପୂର୍ଣ୍ଣ
ସାର ଦୁର୍ବିଜ୍ଞେୟ ଗମ୍ଭୀର  ମନୋହର ମଙ୍ଗଳ କର
ଶୁଣି ବିଚାରି ହୃଦୟରେ  କିଛି ହିଁ ଜାଣି ନ ପାରିଲେ
ମାତ୍ର ହରିଙ୍କ ଅଦଭୂତ  ଉଦାହରଣେ ଆନନ୍ଦିତ

ସନକାଦି ଯେ ପୁଲକିତ  ପ୍ରଶାନ୍ତ ସୁସଂଯତ ଚିତ୍ତ
ପ୍ରଭାବରେ ଯୋଗମାୟାର  ଐଶ୍ୱର୍ଯ୍ୟ ଶାଳୀ ହରିଙ୍କର
ପାଦ ପଦ୍ମରେ ବିନୟରେ  କୃତାଞ୍ଜଳି ହୋଇ କହିଲେ
ହେ ସ୍ୱପ୍ରକାଶ ଭଗବାନ  ସର୍ବେଶ ପ୍ରଭୁ ନିରଞ୍ଜନ

ଅନୁଗ୍ରହ ବୋଲି ଆମର  ଯାହା କହୁଛ ହେ ଶ୍ରୀଧର
ଏଥିରେ କି ଅଭିପ୍ରାୟ ଅଛି  ଆମେ ବୁଝିନପାରୁ କିଛି
ଲୋକ ଶିକ୍ଷା ପାଇଁ ଆପଣ  ବ୍ରାହ୍ମଣଙ୍କୁ ଦେବ ସମାନ
ସର୍ବଦା ଦିଅନ୍ତି ସମ୍ମାନ  କିନ୍ତୁ ପ୍ରକୃତରେ ଆପଣ

ଲୋକପାଳାଦି ଦେବଗଣ  ଇନ୍ଦ୍ର ବିରଞ୍ଚି ପଞ୍ଚାନନ
ଅଖିଳ ଜଗତର ମଧ  ଆପଣ ଅଟନ୍ତି ଆରାଧ୍ୟ
ସନାତନ ମାନବ ଧର୍ମ  ଆପଣଙ୍କଠାରୁ ଉତ୍ପନ୍ନ
ଧର୍ମର ଧାରା ରକ୍ଷା ପାଇଁ  ଧରାରେ ଅବତୀର୍ଣ୍ଣ ହୋଇ

ନିର୍ବିକାର ଭାବେ ଆପଣ  ଧର୍ମ ରହସ୍ୟ ଗୁହ୍ୟତମ
କରନ୍ତି ସଂସାରେ ପ୍ରଚାର  ହେ ପ୍ରଭୁ ଜଗତ ଈଶ୍ୱର
ତୁମର କୃପା ପ୍ରଭାବରେ  ଯୋଗୀଏ ନିବୃତ୍ତି ମାର୍ଗରେ
ମୃତ୍ୟୁମୟ ଭବସାଗର  ଅକ୍ଲେଶେ ହୋଇଯାନ୍ତି ପାର

ଅର୍ଥାର୍ଥୀ କର୍ମୀ ଜନଗଣ  ଯେଉଁ ଲକ୍ଷ୍ମୀଙ୍କ ଶ୍ରୀଚରଣ
ରଜକୁ ନିଜ ମସ୍ତକରେ  ସର୍ବଦା ଧରନ୍ତି ଆଦରେ
ସେହି କମଳା ନିରନ୍ତରେ  ସେବନ୍ତି ତୋ ପାଦ ପଦ୍ମରେ
ଭାଗ୍ୟବନ୍ତ ଭକ୍ତ ଭକ୍ତିରେ  ଆପଣଙ୍କ ଶ୍ରୀଚରଣରେ

ଯେ ନବ ତୁଳସୀ ମଞ୍ଜରୀ  ମାଳା ଥାଏ ଅର୍ପଣ କରି
ତହିଁ କରୁଥିବା ଗୁଞ୍ଜନ  ମଧୁମତ୍ତ ଭ୍ରମର ସମ
ଲକ୍ଷ୍ମୀ ତବ ପାଦ ପଦ୍ମରେ  ବାସ ନିମିତ୍ତ ଇଚ୍ଛାକରେ
ମାତ୍ର ମାତା ଲକ୍ଷ୍ମୀ ନିଷ୍ଠାରେ  ସେବିଲେ ବି ତୋର ପୟରେ

ତାଠାରେ ଭକତଙ୍କ ପରି  ନଥାଏ ଆଦର ତୁମରି
ଆପଣ ସ୍ୱୟଂ ଅର୍ଚ୍ଚନୀୟ  ଗୁଣ ଆଶ୍ରୟ ମହନୀୟ
ହେ ଦେବ ଦେବ ଆଦିମୂଳ  ଆମର ଏ ବ୍ରାହ୍ମଣ କୁଳ
ରକ୍ଷକ ପାଳକ ଆପଣ  ସାକ୍ଷାତ ଦେହଧାରୀ ଧର୍ମ

ଆପଣ ମଧୁର ଜାଣୀରେ  ପୂଜ୍ୟ ପୂଜାଦି ସୁପଥରେ
ଏ ବ୍ରାହ୍ମଣ କୁଳକୁ ଆପଣ  ଯଦି ନ କରିବେ ପାଳନ
ତେବେ ତୁମର ପ୍ରବର୍ତ୍ତିତ  କଲ୍ୟାଣର ମାର୍ଗ ସମସ୍ତ
ସମୂଳେ ହୋଇଯିବ ଧ୍ୱଂସ  ହେ ପ୍ରଭୋ କମଳା ବିଳାସ

ଶ୍ରେଷ୍ଠ ପୁରୁଷ ଯାହାକରେ  ସାଧାରଣ ଜନ ସଂସାରେ
ତାହା ମନେ କରି ପ୍ରମାଣ  କରଇ ସଦା ଆଚରଣ
ହେ ପ୍ରଭୋ ସର୍ବ ଗୁଣ ଧର  ଜୀବ କଲ୍ୟାଣରେ ତତ୍ପର
ଏଥିପାଇଁ ଧରାବକ୍ଷରେ  ଐଶୀଶକ୍ତି ରାଜ ଶକ୍ତିରେ

ଧର୍ମ ଦ୍ରୋହୀଙ୍କୁ ସଂହାରନ୍ତି  ବେଦ ମାର୍ଗ ରକ୍ଷା କରନ୍ତି
ହେ ବିଶ୍ୱପାଳ ବିଶ୍ୱପତି  ଆପଣ ବ୍ରାହ୍ମଣଙ୍କ ପ୍ରତି
କରନ୍ତି ନମ୍ର ବ୍ୟବହାର  ଆହେ ବିନୟ ଅବତାର
ଆପଣଙ୍କ ମାନ ଏଥିରେ  ହାନି ନ ହୁଅଇ ସଂସାରେ

ଏହାତ ତବ ଲୀଳାମାତ୍ର  କେବା ବୁଝିବାକୁ ସମର୍ଥ
ହେ ବିଶ୍ୱେଶ୍ୱର ବିଶ୍ୱସାଇଁ  ଏହି ଯେ ଦ୍ୱାରପାଳ ଦୁଇ
ଆପଣ ଭାବନ୍ତି ଯେପରି  ଦଣ୍ଡଦିଅନ୍ତୁ ସେହିପରି
କି ଅବା ପୁରସ୍କାର ଦେଇ  ବୃତ୍ତିକୁ ଦିଅନ୍ତୁ ବଢ଼ାଇ
ଆମେ ନିଷ୍କପଟ ଚିତ୍ତରେ  ସମ୍ମତ ଅଟୁ ସବୁଥିରେ

## ଭଗବାନ ଉବାଚ

ହସି କହନ୍ତି ଭଗବାନ  ଶୁଣନ୍ତୁ ସନକାଦିଗଣ
ମୋହର ପ୍ରେରଣାରେ ଜାଣ  ଅଭିଶାପ ଦେଲେ ଆପଣ
ଏହା ନିଶ୍ଚିତ ସତ୍ୟ ସତ୍ୟ  ଏ ଦୁହେ ଦୈତ୍ୟ ଯୋନି ପ୍ରାପ୍ତ
କ୍ରୋଧବଶେ ଏକାଗ୍ରତାରେ  ଅରିଭାବ ପୋଷି ମୋଠାରେ
ସୁଦୃଢ଼ ଭକତି ଯୋଗରେ  ଶୀଘ୍ର ଫେରିବେ ମୋର ପୁରେ

### ବ୍ରହ୍ମୋବାଚ

ଏ ଅନ୍ତେ ମୁନୀଶ୍ୱର ଗଣ ମନ ନୟନ ଅଭିରାମ
ଶ୍ରୀଭଗବାନ ବିଷ୍ଣୁଙ୍କୁ ସ୍ୱୟଂ ପ୍ରକାଶ ବୈକୁଣ୍ଠକୁ
ଦର୍ଶନ କରି ଆନନ୍ଦରେ ପରିକ୍ରମା ପ୍ରଣାମ ପରେ
ଶ୍ରୀହରିଙ୍କର ଆଦେଶରେ ବୈକୁଣ୍ଠ ପୁରରୁ ଫେରିଲେ

ଶ୍ରୀଭଗବାନ ଏହାପରେ ନିଜର ଭୃତ୍ୟଙ୍କୁ କହିଲେ
ତୁମେ ଦୁହେଁ ଯାଅ ମର୍ତ୍ତ୍ୟରେ ଭୟକର ନାହିଁ ବିତ୍ତରେ
ତୁମର ହେବ ସୁକଲ୍ୟାଣ ମୁଁ ସର୍ବ କରିବାକୁ କ୍ଷମ
ମାତ୍ର ବ୍ରାହ୍ମଣ ତେଜ ହାନି କରିବାକ ଇଛା କରେନି

ମୋ ସମ୍ମତି ଅଛି ସେଥିରେ ସବୁ ଘଟେ ମୋର ଇଛାରେ
ଥରେ ମୁହିଁ ଯୋଗନିଦ୍ରାରେ ଶୟନ କରିଥିବା ବେଳେ
ଲକ୍ଷ୍ମୀ ପ୍ରବେଶନ୍ତେ ଦ୍ୱାରରେ ତୁମେ ନିରୋଧିଲ କ୍ରୋଧରେ
ଜନ୍ମ ପାଇଁ ଦୈତ୍ୟ ଯୋନିରେ ସେ କୋପେ ଶାପ ଦେଇଥିଲେ

ବିପ୍ରଶାପରେ ବର୍ତ୍ତମାନ ମର୍ତ୍ତ୍ୟ ଧାମରେ ଲଭି ଜନ୍ମ
କ୍ରୋଧ ଭାବ ବହି ମୋଠାରେ ମମାଂ ରୂପ ଧ୍ୟାଇ ଏକାଗ୍ରତାରେ
ବିପ୍ର ଅବହେଳା ଜନିତ ଅଭିଶାପରୁ ହୋଇ ମୁକ୍ତ
ଅଳପ ସମୟରେ ପୁନ ଫେରିବ ବୈକୁଣ୍ଠ ଭୁବନ

ଦ୍ୱାରପାଳଙ୍କୁ ଏହିପରି ଆଦେଶ ଦେଇ ସାରି ହରି
ବିମାନ ଶ୍ରେଣୀ ସୁଶୋଭିତ ମଣି ମାଣିକ୍ୟ ସୁସଜ୍ଜିତ
ପୁରରେ କରିଲେ ପ୍ରବେଶ ଦୟାମୟ ଶ୍ରୀ ଜଗଦୀଶ
ବିପ୍ରର ଅଭିଶାପ ପାଇ ଜୟ ବିଜୟ ଦୁଇ ଭାଇ

ତେଜିଲେ ବୈକୁଣ୍ଠ ଭୁବନ ତକ୍ଷଣେ ହୋଇ ଶ୍ରୀବିହୀନ
ହେ ବତ୍ସ ସେ ଦୁଇ ଯେବେଳେ ବୈକୁଣ୍ଠରୁ ପଡିଲେ ତଳେ
ବୈକୁଣ୍ଠବାସୀ ଦୁଃଖଭରେ ହାହାକାର କଲେ ଆତୁରେ
ଏବେଳେ ଦିତିଙ୍କ ଗର୍ଭରେ କଶ୍ୟପଙ୍କ ଉଗ୍ର ତେଜରେ

ସେ ଦୁହେଁ କରିଲେ ପ୍ରବେଶ ଜଗତ ଅଟେ କର୍ମ ବଶ
ତେଜେ ଦୈତ୍ୟ ଦୁହିଙ୍କର ଆହେ ଦେବଗଣ ତୁମର
ତେଜ ମଳିନ ବର୍ତ୍ତମାନ ସକଳ ହରି ଇଛାଧୀନ
ଲୋକ ସ୍ଥିତ ନାଶ କାରଣ ଆଦି ପୁରୁଷ ଭଗବାନ

ଯାହାଙ୍କ ଯୋଗ ମାୟା ଶକ୍ତି ଅଟଇ ଅତି ବଳବତୀ
ମୟା ଶକ୍ତିକୁ ଯାହାଙ୍କର ଯୋଗୀଏ ନ ହୁଅନ୍ତି ପାର
ସତ୍ତ୍ୱାଦି ତ୍ରିଗୁଣ ନିୟନ୍ତା ଅଖିଳ ବ୍ରହ୍ମାଣ୍ଡ କରତା
ସେହି ଶ୍ରୀହରି ବର୍ତ୍ତମାନ କରନ୍ତୁ ଆମର କଲ୍ୟାଣ

ଏ ଭାଗବତ ପୁଣ୍ୟ କଥା ଶ୍ରବଣ କ୍ଷଣେ ଭବ ବ୍ୟଥା
ଭଣଇ ଦାଶ ଧନେଶ୍ୱର ସୁଜନେ ଶ୍ରୀହରି ସୁମର

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଜୟ ବିଜୟ ଉପାଖ୍ୟାନେ ଷୋଡଶୋଽଧ୍ୟାୟ ।

*******

## ସପ୍ତଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣି ବ୍ରହ୍ମାଙ୍କର ବଚନ ଜାଣି ଅନ୍ଧକାର କାରଣ
ଆଶଙ୍କା ହୋଇବାରୁ ଦୂର ଦେବେ ଫେରିଲେ ସ୍ୱର୍ଗପୁର
ପତିଙ୍କ କଥା ଅନୁସାରେ ନିଜ ପୁତ୍ରମାନେ ସଂସାରେ
ଆଚରିବେ ନାନା ଅନୀତି ଆଶଙ୍କା କରିଥିଲେ ଦିତି

ହୁଅନ୍ତେ ପୂର୍ଣ୍ଣ ବର୍ଷଶତ ଜାତ ଦୁଇ ଯମଜ ପୁତ୍ର
ସେମାନଙ୍କ ଜନ୍ମ ବେଳରେ ପୃଥିବୀ ସ୍ୱର୍ଗ ଆକାଶରେ
ଦେଖାଗଲା ନାନା ଉତ୍ପାତ ପ୍ରାଣୀଏ ହେଲେ ଭୀତ ତ୍ରସ୍ତ
ପୃଥିବୀ ପର୍ବତ କମ୍ପିଲା ସର୍ବତ୍ର ଅଗ୍ନ୍ୟପାତ ହେଲା

ଉଲ୍କା ସହ ବଜ୍ର ପଡିଲା ମୂଷଳଧାରା ବୃଷ୍ଟି ହେଲା
ଅତି ଅଶୁଭ ଲଞ୍ଜା ତାରା ଆକାଶ ମଧ୍ୟେ ଦେଖାଗଲା ।
ଅସହ୍ୟ ଭୀଷଣ ପବନ ସାଇଁ ସାଇଁ ଶବ୍ଦ କରିଣ
ବେଗରେ ପ୍ରବାହିତ ହେଲା ମହାମହା ବୃକ୍ଷ ଟଳିଲା

ଚତୁର୍ଦ୍ଦଶ ଦିଗେ ଧୂଳିଆ  ୨ଦିନ ହୋଇଲେ ଗୋଳିଆ
ବେଗେ ବିଜୁଳି ଚମକିଲା  ତ୍ରିଭୁବନେ ଭୀତି ଖେଳିଲା
ମେଘାଚ୍ଛନ୍ନ ହେଲା ଗଗନ  ଘୋଟିଲା ଘୋର ଅନ୍ଧତମ
ସୂର୍ଯ୍ୟ ଚନ୍ଦ୍ରାଦି ଗ୍ରହଗଣ  ଅଦୃଶ୍ୟ ହୋଇଲେ ତତ୍କ୍ଷଣ

ସାଗର ବିକ୍ଷୋଭିତ ହେଲା  ଉର୍ମିମାଳା ବେଳା ଲଙ୍ଘିଲା
ସମୁଦ୍ର ଜୀବ ନାନ ଜାତି  ହୋଇଲେ ଉତ୍ପୀଡିତ ଅତି
ସରିତ ସର ଉଚ୍ଛୁଳିଲା  ପଦ୍ମ କୁମୁଦ ମଉଳିଲା
ସୂର୍ଯ୍ୟ ଚନ୍ଦ୍ରଙ୍କୁ ପୁନ ପୁନ  ଗ୍ରାସିଲା ପରାଗ ଗ୍ରହଣ

ତା ଚାରିପାଖେ ଅମଙ୍ଗଳ  ଦେଖାଗଲା ନାନ ମଣ୍ଡଳ
ବିନା ମେଘରେ ଘଡଘଡି  ପଡିଲା କାନରେ ଅତଡି
ଶ୍ୱାପଦେ ଅରଣ୍ୟ ମଧରେ  ଭୟଙ୍କର ରଡି ଛାଡିଲେ
ଗୁମ୍ଫା ମାନଙ୍କରୁ ଇଥର  ବାହାରିଲା ଶବ୍ଦ ଘର୍ଘର

ପେଚାମାନେ ଗ୍ରାମ ମଧରେ  ବାର ବାର ରାବ କରିଲେ
ଶୃଗାଳ ବଦନ ବ୍ୟାଦାନ  ଘରିଲା ଅଗ୍ନି ଉଦ୍‌ଗୀରଣ
ଶୁଭିଲା ଅମଙ୍ଗଳ ଶବ୍ଦ  ପ୍ରାଣୀଏ ବ୍ୟାକୁଳ ସ୍ତବ୍ଧ
ଶ୍ୱାନ ଶୃଗାଳ ହୋଇ ମେଳି  ଛାଡିଲେ ଉଚ୍ଚରେ ବୋବାଳି

ଶ୍ୱାନ ଶୃଗାଳ ହୋଇ ମେଳି  କାନ୍ଦିଲେ ଉର୍ଦ୍ଧ୍ୱେ ମୁଖ ଟେକି
ଗର୍ଦ୍ଦଭ ଦଳ ଯେ ଖୁରାରେ  ଭୂମି ତାଡି ଉଚ୍ଚେ ରାବିଲେ
ବୃକ୍ଷୁ ପତିତ ପକ୍ଷୀଗଣ  ଅରଣ୍ୟ ପଶୁ ଘୋର ସ୍ୱନ
ଧେନୁ ଦୋହନେ ରକ୍ତ ସ୍ରବେ  ସର୍ବତ୍ର ଘୋର ନାଦ ଶୁଭେ

ଶନି ରାହୁ ପ୍ରଭୃତି କ୍ରୁର  ଗ୍ରହଗଣ ହେଲେ ପ୍ରବଳ
ନୟନରୁ ଦେବ ମୂର୍ତ୍ତୀର  ବହିଲା ରକ୍ତ ଧାର ଧାର
ଗ୍ରହେ ରଚିଲେ ଘୋର ରଣ  ପ୍ରଖର ଦିଶେ ଅଗ୍ନିକୋଣ
ଦେଖି ଭୟଙ୍କର ବିତ୍ପାଦ  ସନକାଦି ମୁନି ବ୍ୟତୀତ

ହୋଇ ଅତି ଶୟ ବ୍ୟାକୁଳ  ପ୍ରମାଦ ଗଣିଲେ ସକଳ
ଭାବିଲେ ପ୍ରଳୟ କି ହେବ  ଏ ବିଶ୍ୱ କିବା ନାଶ ଯିବ
ଏହି ଅଦି ଦୁଇ ଦଇତେ  ଜନମ ଲଭିବାର ମାତ୍ରେ
ଅତିଶୀଘ୍ର ବଢ଼ି ଉଠିଲେ  ପର୍ବତ ପରାଏ ଦିଶିଲେ

ସେ ଦୁହିଙ୍କର ଶରୀର  ସୁଦୃଢ଼ ପଥରେ ପ୍ରକାର
ଶିର ମୁକୁଟ ଆଗ୍ରଭାଗ  ସ୍ପରଶ କରଇ ସ୍ୱରଗ
ପୃଥୁଳ ସୁବିଶାଳ ଦେହ  ଆଛାଦିଲା ଦିଗ ସମୂହ
ସ୍ୱର୍ଣ୍ଣ ବାଜୁବନ୍ଧ ବାହୁରେ  ବିଦ୍ୟୁତ ସୁସମା ଧିକ୍କାରେ

ରକ୍ତ ବସନ କଟି ସାଜେ  ରତନ ମେଖଳା ବିରାଜେ
ପୃଥ୍ୱୀରେ ପାଦ ଦେଲ ଥୋଇ  ଭୂକମ୍ପ ପରି ଜଣାଯାଇ
ଅଙ୍ଗର ନାନା ଆଭୂଷଣ  ନିନ୍ଦଇ ତପନ କିରଣ
ପ୍ରଚଣ୍ଡ ଗଦାଧରି ହସ୍ତେ  ସଦା ଭ୍ରମନ୍ତି ରାଜ ପଥେ

କଶ୍ୟପ ଦେଖି ଶୁଭ ଦିନ  କଲେ ପୁତ୍ର ନାମ କରଣ
ସେହି ବାଳକ ଦୁଇ ଜଣ  ଥିବାରୁ ଯମଜ ସନ୍ତାନ
କଶ୍ୟପ ବୀର୍ଯ୍ୟ ପ୍ରଥମରେ  ଯେ ଥିଲା ଦିତିଙ୍କ ଗର୍ଭରେ
ହରିଣ୍ୟ କଶିପୁ ତା ନାମ  ବିଦୁର ମନଦେଇ ଶୁଣ

ଯେ ଗର୍ଭୁ ପ୍ରଥମେ ବାହାର  ହିରଣାକ୍ଷ ଯେ ନାମ ତାର
ଏମନ୍ତେ ଗଲା କେତେଦିନ  ଦୁହେଁ ହୋଇଲେ ବଳ ବାନ
ବ୍ରହ୍ମାଙ୍କଠାରୁ ବରପାଇ  ମୃତ୍ୟୁ ଭୟରୁ ମୁକ୍ତ ହୋଇ
ହିରଣ୍ୟ କଶିପୁ ଏପରେ  ଉଦ୍ଧତ ହୋଇଲେ ବିଶ୍ୱରେ

ବାହୁବଳେ ହୋଇ ଗର୍ବିତ  ଲୋକପାଳ ଗଣ ସହିତ
ଭୂଆଦି ଚଉଦ ଭୁବନ  କରିଲ ନିଜର ଅଧୀନ
ସେ ଦୁଇ ଭାଇ ପରସ୍ପର  କରୁଥିଲେ ସ୍ନେହ ଆଦର
ଦିନେ ହିରଣାକ୍ଷ ହସ୍ତରେ  ଗଦାଧରି ଯୁଦ୍ଧ ଆଶାରେ

ଖୋଜି ଖୋଜି ମହା ବୀରଙ୍କୁ  ଚଳିଲା ସ୍ୱର୍ଗ ଭୁବନକୁ
ଚରଣରେ ସ୍ୱର୍ଣ୍ଣ ନୂପୁର  କରେ ରୁଣଝୁଣ ଝଙ୍କାର
ଗଳାରେ ବିଜୟର ମାଳ  କରେ ଶୋଭେ ଗଦା ବିଶାଳ
ବିଧାତା ବରେ ମତୁଆଳ  ଦେହ ମନୋବଳ ପ୍ରବଳ

ଭ୍ରମଣ କଲେ ନିର୍ଭୟରେ  ଚାହିଁ ଦେବଗଣ ଆକୁଳେ
ଗରୁଡ ଭୟେ ସର୍ପପରି  ଲୁଚିଲେ ଯାଇଁ ବନଗିରି
ଇନ୍ଦ୍ର ସହିତ ଦେବଗଣ  ଭୟେ କରନ୍ତେ ପଳାୟନ
କଲା ଭୟଙ୍କର ଗର୍ଜନ  କମ୍ପି ହେଲଣ ତ୍ରିଭୁବନ

ସ୍ୱର୍ଗୁ କରି ପ୍ରତ୍ୟାଗମନ ମଦମତ୍ତ ଗଜ ସମାନ
ସମୁଦ୍ର ଗର୍ଭରେ ପଶିଲା ଉତ୍ତାଳ ତରଙ୍ଗ ଉଠିଲା
ସେ ପ୍ରବେଶନ୍ତେ ଜଳରେ ଭୟ ପାଇ ତାର ତେଜରେ
ବରୁଣ ସେନା ବିକଳରେ ପଳାଇଗଲେ ବହୁଦୂରେ

ସେ ମହାବଳଶାଳୀ ଦୈତ୍ୟ ଅନେକ ବରଷ ପର୍ଯ୍ୟନ୍ତ
ଭ୍ରମି ଭ୍ରମି ଅଛି ଗର୍ଭରେ ପ୍ରତିପକ୍ଷ ନ ପାଇଣ ଆଗରେ
ବାର ବାର ବାୟୁ ବେଗରେ ଉଠି ଆସି ଜଳ ଉପରେ
ପ୍ରବଳ ଲହରୀ ମାଳାରେ ଗଦା ପ୍ରହାରିଲ କୋପରେ

ପ୍ରବେଶ ବିଭାବରୀ ପୁରୀ ଅତି ବିକଟ ରୂପଧରି
ତହିଁ ପାତାଳ ଲୋକପତି ଜଳ ଜନ୍ତୁଙ୍କ ଅଧିପତି
ବରୁଣଙ୍କୁ ହୀନ ବ୍ୟକ୍ତିପରି ନ ନମି ଉପହାସ କରି
ବ୍ୟଙ୍ଗ ବିଦ୍ରୁପ ଯେ କରିଲା ଯୁଦ୍ଧ ଦିଅ ଆରେ ବୋଇଲ

ହେ ବରୁଣ ତ ଅତୀତରେ ବଡ ବୀରଥିଲୁ ସଂସାରେ
ତୁ ପରା ତାଙ୍କ ବୀରଗର୍ବ ବାହୁବଳରେ କରି ଖର୍ବ
ସେ ଦୈତ୍ୟବୀରଙ୍କୁ ଜିଣିଲୁ ରାଜସୂୟ ଯଜ୍ଞ କରିଲୁ
ପ୍ରମତ୍ତର ଉପହାସରେ ବରୁଣ ଅତି କ୍ରୁଦ୍ଧ ହେଲେ

ମାତ୍ର ନିଜ ବୁଦ୍ଧି ବଳରେ କୋପ ଶାନ୍ତ କରି କହିଲେ
ବୟସ ଗଲାଣି ତ ମୋର ସଂଗ୍ରାମ ପାଇଁ ନାହିଁ ବଳ
ରେ ବୀର ମାନ ମୋ ବଚନ ପୁରାଣ ପୁରୁଷ ଉତ୍ତମ
ହରି ବ୍ୟତୀତ ଅନ୍ୟ କେହି ତୋ ସମକକ୍ଷ ବୀର ନାହିଁ

ସେ ବୀର କେବଳ ଯୁଦ୍ଧରେ ସନ୍ତୋଷ କରିବେ ଅଚିରେ
ମହାବୀର ସେ ଭଗବାନ ଅମିତ ତେଜ ପରାକ୍ରମ
ତୋର ଗର୍ବ କରିବେ ଚୂର୍ଣ୍ଣ ଯାଅ ତୁ ତାଙ୍କ ସନ୍ନିଧାନ
ତୁ ଶ୍ୱାନ ଶୃଗାଳ ମେଳରେ ଶୋଇବୁ ସମର ଭୂମିରେ

ସାଧୁ ସଜ୍ଜନ ପରିତ୍ରାଣ ଧର୍ମ ରକ୍ଷକ ଭଗବାନ
ନାନାରୂପ ନାମ ଧରିଣ ବିଶ୍ୱେ ହୁଅନ୍ତି ଅବତୀର୍ଣ୍ଣ
ସୁଜନେ ଗୋବିନ୍ଦ ସୁମର ପାର ହେବୁ ଭବସାଗର

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ତୃତୀୟ ସ୍କନ୍ଧେ ଜୟ ବିଜୟ ଉପାଖ୍ୟାନେ ସପ୍ତଦଶୋଽଧ୍ୟାୟ ।

*******

## ଅଷ୍ଟାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ବରୁଣ ବାକ୍ୟେ ମଦୋଦ୍ଧତ ସେ ଦୈତ୍ୟ ହୋଇ ଆନନ୍ଦିତ
ହରିଙ୍କ ହସ୍ତରେ ମରଣ ହୋଇବ ନଭାବି ଅଜ୍ଞାନ
ନାରଦଙ୍କ ଠାରୁ ଶ୍ରୀହରି କେଉଁଠିଛନ୍ତି ବିଜ୍ଞେକରି
ବୁଝି ଅତି ଶିଘ୍ର କ୍ରୋଧରେ ପ୍ରବେଶିଲେ, ରସାତଳରେ

ସେଠାରେ କରିଲ ଦର୍ଶନ ବରାହ ମୂର୍ତ୍ତୀ ଭଗବାନ
ଦନ୍ତ ଅଗ୍ରେ ଧରି ପୃଥ୍ୱୀକୁ ଉଠି ଆସନ୍ତି ଉପରକୁ
ଚହିଁବା ମାତ୍ରେ ଭଗବାନ ତା ତେଜ କରିଲେ ହରଣ
ଦୈତ୍ୟ ମନେ ହସି କହିଲା ଏହି ଅରଣ୍ୟ ପଶୁ ଭଲ

ଏଠାକୁ କିପରି ଆସିଲେ ଏତ ଅସମ୍ଭବ ଘଟିଲା
ଆମେ ମୂଢ଼ ଛାଡ ପୃଥ୍ୱୀକୀ ବିଧାତା ପାତାଳ ବାସୀଙ୍କୁ
ଏହା କରିଛି ସମର୍ପଣ ଆରେରେ ଶୂକର ଅଧମ
ତୁଟା ମୋହର ସମ୍ମୁଖରେ ନେଇନ ପାରୁ ସହଜରେ

ଆରେ ବର୍ବର ତୁ ମାୟାରେ ଲୁଚି ଛପି ଏ ସଂସାରରେ
ଦୈତ୍ୟବଂଶକରୁ ନିଧନ କ୍ଷଣେ ରହ ଆରେ ଅଧମ
ସେଥିପାଇଁ କିବା ଆମର ଦୁଷ୍ଟ ବିମାତା ମାନଙ୍କର
ପୁତ୍ରମାନେ ତତେ ସ୍ନେହରେ ପାଳି ରଖିଛନ୍ତି ଏଠାରେ

ତୋର ବଳ ତ ଯୋଗମାୟା ନାହିଁ ତୋ ପୁରୁଷ ପଣିଆ
ମୁଁ ତତେ ଆଜି ଶେଷକରି ବନ୍ଧୁ ଦୁଃଖ ଦେବି ପାଶୋରି
ମୋ ହସ୍ତରେ ଗଦାଘାତରେ ନିଶ୍ଚେତୁ ମରିବୁ ଏଠାରେ
ଯେଉଁ ଦେବତା ଋଷିଗଣ ପୂଜୁଛନ୍ତି ତୋର ଚରଣ

ଛିନ୍ନମୂଳ ବୃକ୍ଷ ସଦୃଶ    ସକଳେ ଲଭିଲେ ବିନାଶ
ହିରଣାକ୍ଷର କୁ ବଚନ    ବାଣ ଆହତ ଭଗବାନ
ପୃଥିବୀକୁ ଦନ୍ତ ଅଗ୍ରରେ    ଥରିଥିବା ହେତୁ ଭୟରେ
ଦୈତ୍ୟ କଟୁବାକ୍ୟ ସହିଲେ    କେତେ କ୍ଷଣ ମୌନ ରହିଲେ

କୁମ୍ଭୀର ଦଂଶନେ ଆହତ    କରୀ କରଣୀର ସହିତ
ଜଳରୁ ବାହାରେ ଯେପରି    ଜଳୁ ବାହରିଲେ ସେପରି
ଗଜ ରାଜକୁ ଅନୁସରି    କୁମ୍ଭୀର ଉଠଇ ଯେପରି
ହରିଣାକ୍ଷ ସେହି ପ୍ରକାରେ    ଉଠି ଆସିଲେ ଯେ ଉପରେ

ଦଇତ କେଶ ସ୍ୱର୍ଣ୍ଣବର୍ଣ୍ଣ    ଦଶନ ସୁତୀକ୍ଷ୍ଣ ଭୀଷଣ
ଜଳ ମଧ୍ୟରୁ ବାହରକୁ    ଯାଉଥିବା ଦେଖି ହରିଙ୍କୁ
ବୋଇଲାସେ ବଜ୍ର ସ୍ୱରରେ    ଲାଜ ନାହିଁକି ତୋ ମୁଖରେ
ପଳାଉଛୁ କେଉଁ ସ୍ଥାନରେ    ରହ ରହ କ୍ଷଣେ ଏଠାରେ

ପୃଥ୍ୱୀକୁ ସଲୀଳ ଉପରେ    ବ୍ୟବହାରଯୋଗ୍ୟ ସ୍ଥାନରେ
ସ୍ଥାପନ୍ତେ ନେଇ ଭଗବାନ    ସ୍ତୁତି କରିଲେ ଦେବଗଣ
ଆନନ୍ଦେ ଦୁନ୍ଦୁଭି ବଜାଇଲେ    କୁସୁମ ବରଷା କରିଲେ
ବରାହ ଶ୍ରୀହରି ଦେଖିଲେ    ଦଇତ ଆସଇ ପଛରେ

କବଚ ରତ୍ନ ଅଳଙ୍କାର    କୁଣ୍ଡଳରେ ଦିଶେ ସୁନ୍ଦର
ଅତି କଟୁ କୁ ବଚନରେ    ଆଘାତ ଦିଅଇ ମର୍ମରେ
ତହୁଁ ଶ୍ରୀହରି ଗଦାଧରି    କ୍ରୋଧରେ ଉପହାସ କରି
କହିଲେ ରହ ଦୈତ୍ୟାଧମ    ତୋ ପାଞ୍ଜି ପୋଛିଲାଣି ଯମ

## ଭଗବାନୁବାଚ

ରେ ଦୁଷ୍ଟ ମୁହିଁ ପ୍ରକୃତରେ    ଜଙ୍ଗଲି ଜୀବ ଏ ସଂସାରେ
ତୋ ପରି କୁକୁରକୁ ମୁହିଁ    ଖୋଜି ଖୋଜି ବୁଲୁଅଛଇ
ଯେ ବୀର ପୁରୁଷ ତୋସମ    ମରଣ ରଜ୍ଜୁରେ ବନ୍ଧନ
ଭାଗ୍ୟହୀନ ଆତ୍ମ ବଡିମା    କୁବାକ୍ୟେ ମୁଁ ଧ୍ୟାନ ଦିଏନା

ବରାହ ଭଗବାନ ଧୀରେ    ଦୈତ୍ୟେ ବ୍ୟଙ୍ଗ କରି କହିଲେ
ରସାତଳ ନିବାସୀଙ୍କର    ପୃଥ୍ୱୀକୁ ଚୋରି କରି ତୋର
ଭୟରେ ଆସିଛ ପଳାଇ    ମୋର ଏପରି ଶକ୍ତି ନାହିଁ
ତୋପରି ବୀର ସମ୍ମୁଖରେ    ତିଷ୍ଠି ପାରିବି ସଂଗ୍ରାମରେ

ଏଠାକୁ ଆସିଛି ପ୍ରକୃତ    ତୋ ପରି ବୀରର ସହିତ
ଶତ୍ରୁତା ଆଚରିଣ ମୁହିଁ    କେଉଁଠିକି ଯିବି ପଳାଇ
ପଦାତିକ ଯୋଦ୍ଧା ଗଣର    ତୁ ଅଟୁ ପରା ସରଦାର
ବିତର୍କ ତେଜି ବର୍ତ୍ତମାନ    ମୋ ପରାଭବେ କର ଯତ୍ନ

ଶୀଘ୍ର କରି ବିନାଶ ମୋର    ଲୁହ ପୋଛ ଭାଇ ବନ୍ଧୁର
ଯେ ପ୍ରତିଜ୍ଞା ପାଳି ନପାରେ    ଯୋଗ୍ୟ ସେ ନୁହଉ ସଭାରେ

## ମୈତ୍ରେୟ ଉବାଚ

ରୋଷରେ ବରାହ ଶ୍ରୀହରି    ଦୈତ୍ୟକୁ କହନ୍ତେ ଏପରି
କ୍ରୀଡା ସର୍ପ ପରି କ୍ରୋଧରେ    ଉତ୍ତେଜିତ ହେଲା ସତ୍ୱରେ
କ୍ରୋଧରେ ବିଚଳିତ ଚିତ୍ତ    ସେ ଦୁଷ୍ଟ ତୁରନ୍ତ ଦଇତ
ବରାହ ହରିଙ୍କ ଶିରରେ    ପ୍ରହାର କରିଲା ଗଦାରେ

ଯୋଗାରୂଢ଼ ବ୍ୟକ୍ତି ଯେପରି    ମୃତ୍ୟୁ ମୁଖୁ ତରେ ସେପରି
ଅଳପ ଦୂର ହଟିଯାଇ    ଗଦାଘାତ ଦେଲେ ଏଡାଇ
ଅଧରକୁ ଚାପି କ୍ରୋଧରେ    ନିଜ ଗଦାଧରି ହସରେ
ବୁଲାଇଣ ଚକ୍ର ପ୍ରକାରେ    ହରି ଅତିଶୟ ବେଗରେ

ଦଇତ ଆଡକୁ ଧାଇଁଲେ    ପ୍ରହାର କଲେ ଭ୍ରୂ ଲତାରେ
ଗଦା ଯୁଦ୍ଧରେ ଅତି ଦକ୍ଷ    ସେ ମହାବୀର ହିରଣାକ୍ଷ
ସେ ଗଦାକୁ ଅର୍ଦ୍ଧପଥରେ    ନିବାରିଲା ନିଜ ଗଦାରେ
ହରି ହିରଣାକ୍ଷ ଏପରି    ଯୁଦ୍ଧ ବିଜୟ ଇଚ୍ଛା କରି

ନିଜ ନିଜ ଦୃଢ଼ ଗଦାରେ    ପରସ୍ପରରେ ପ୍ରହାରିଲେ
ପରସ୍ପର ଜୟ ସ୍ପର୍ଦ୍ଧାରେ    ଗଦା ପ୍ରହାରନ୍ତେ କ୍ରୋଧରେ
ଶରୀରୁ ଶୋଣିତ ବହିଲା    ବେଲୁବେଳ କୋପ ବଢ଼ିଲା
ଉଭୟେ ବିଚିତ୍ର ଗତିରେ    ହସ୍ତରେ ଗଦା ବୁଲାଇଲେ

ଏକ ଧେନୁ ପାଇଁ ଯେସନ    ଦୁଇ ବୃଷଭର ସଂଗ୍ରାମ
ମାୟା ବରାହ ରୂପ ଧାରଣ    ସ୍ୱୟଂ ଯଜ୍ଞ ମୂର୍ତ୍ତି ଶ୍ରୀହରି
ଦୈତ୍ୟ ହିରଣାକ୍ଷ ସଂଗ୍ରାମ    ଦେଖିବାପାଇଁ ଦେବଗଣ
ଋଷି ସହ ଧାତା ସେଠାରେ    ଉପସ୍ଥିତ ହେଲେ ସତ୍ୱରେ

ଋଷିଙ୍କ ସହସ୍ର ମେଳରେ ପିତାମହ ଥାଇ ଦେଖିଲେ
ଦୈତ୍ୟ ବର୍ବର ମହାବୀର ନିର୍ଭୟ ଦୁରନ୍ତ ନିଷ୍ଠୁର
ହରିଙ୍କ ସଙ୍ଗେ ଯୁଦ୍ଧ ପାଇଁ ତାହାର ସାମର୍ଥ୍ୟ ଅଛଇ
ତା ବଳ ପରାକ୍ରମ ଚୂର୍ଣ୍ଣ କରିବା ଅଟଇ କଠିନ

ତେଣୁ ବରାହ ରୂପ ଧାରୀ ହରିଙ୍କୁ କହିଲେ ଏପରି
ଏ ଦୈତ୍ୟ ମୋର ବରପାଇ ପ୍ରବଳ ବଳ ଅଛି ବହି
ଆପଣଙ୍କ ପଦ ଆଶ୍ରିତ ଗୋ ବ୍ରାହ୍ମଣ ସାଧୁ ଦୈବତ
ନିରପରାଧ ପ୍ରାଣୀ ଗଣେ ପୀଡା ଦିଅଇ ତ୍ରିଭୁବନେ

ଅନିଷ୍ଟ କର ଦୁଃଖଦାୟୀ ଏ ଭୟପ୍ରଦ ଅଛି ହୋଇ
ଏହା ସମାନ ଯୋଦ୍ଧା ନାହିଁ ଏଣୁ ନିଷ୍ଟଙ୍କ ଅଟଇ
ସମାନ ଯୋଦ୍ଧା ଅନ୍ୱେଷଣେ ଭ୍ରମଣ କରେ ତ୍ରିଭୁବନେ
ମାୟାବୀ ମଦମତ୍ତ ଏହି ନିର୍ଭୟେ ସଦା ବିଚରଇ

ଯେପରି ବାଳକ କ୍ରୋଧରେ ଖେଳେ ଅହିରାଜ ସଙ୍ଗରେ
ଏ ଦୁଷ୍ଟ ସହିତ ଆପଣ ନ କରନ୍ତୁ ହେଳ ସଂଗ୍ରାମ
ହେ ଦେବ ଦେବ ହେ ଅଚ୍ୟୁତ ଅତି ଦାରୁଣ ଏହି ଦୈତ୍ୟ
ବେଳ ପାଇ ବଳ ବଢ଼ିବ ଅତି ପ୍ରବଳ ଏ ହୋଇବ

ଯୋଗ ମାୟା ବଳେ ଆପଣ ତୁରନ୍ତ କରନ୍ତୁ ନିଧନ
ହେ ଦେବ ଦେଖନ୍ତୁ ଆପଣ ସଂହାରକାରୀ ସାୟନ୍ତନ
ସମୟ କରେ ଆଗମନ ସେ ସନ୍ଧ୍ୟା ପୂର୍ବରୁ ଆପଣ
ଏହାକୁ କରନ୍ତୁ ନିଧନ ଆହେ ବରାହ ଭଗବାନ

ବର୍ତ୍ତମାନ ତ ଅଭିଜିତ ଶୁଭ ମୁହୂର୍ତ୍ତ ଉପସ୍ଥିତ
ଶେଷ ପୂର୍ବରୁ ଏ ମୂହୁର୍ତ୍ତ ହେ ଆର୍ତ୍ତବନ୍ଧୁ ଜଗନ୍ନାଥ
ଆମର କଲ୍ୟାଣ ନିମିତ୍ତ ଏ ଦୈତ୍ୟ କରନ୍ତୁ ନିପାତ
ହେ ପ୍ରଭୋ ଜଗତ ଈଶ୍ୱର ଆପଣଙ୍କ ହସ୍ତେ ଏହାର

ନିଶ୍ଚୟ ମରଣ ହୋଇବ ଆମ ଭାଗ୍ୟ ଚକ୍ର ଉଇଁବ
କାଳରୂପୀ ତୁମ ପାଖରେ ପ୍ରବେଶ କରିଛି ସ୍ୱେଚ୍ଛାରେ
ଆପଣ ଯୁଦ୍ଧେ ବର୍ତ୍ତମାନ ଏହା କରନ୍ତୁ ନିଧନ
ବରାହ ଶ୍ରୀହରି ଲୀଳା ସଂସାର ସାଗରର ଭେଳା

ସୁଜନେ ପ୍ରଭାତ ସନ୍ଧ୍ୟାରେ ଏହା ପାଠ କର ଭକ୍ତିରେ
ନିଶ୍ଚୟ ଲଭିବ ସୁଗତି ଦୟା କରିବେ ବିଶ୍ୱପତି

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ହିରଣାକ୍ଷ ବଧ ଉଦ୍ୟମେ ଅଷ୍ଟାଦଶୋଽଧ୍ୟାୟ ।

*******

## ଏକୋନବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ ବୋଲେ ହେ ବିଦୁର ବିଧାତା ସୁଧାମୟ ଗିର
ଶୁଣି ହରି ମନ୍ଦେ ହସିଲେ ପ୍ରେମ କଟାକ୍ଷରେ ଚାହିଁଲେ
ବ୍ରହ୍ମାଙ୍କ ପ୍ରାର୍ଥନା ସ୍ୱୀକାର କରି ବରାହ ମୂର୍ତ୍ତୀଧର
ଧାତାଙ୍କ ନାସିକରୁ ଜନ୍ମ ଯଜ୍ଞ ଶୂକର ଭଗବାନ

ହରଣାକ୍ଷର କପାଳରେ ପ୍ରହାର କରିଲେ ଗଦାରେ
ହିରଣା ଗଦା ଘାତରେ ଗଦା ପଡିଲା ହସ୍ତୁ ତଳେ
ଏବେଳେ ଏକ ଅଦ୍‌ଭୂତ ଘଟଣା ଘଟିଲା ହଠାତ
କରିବାକୁ ଶତ୍ରୁ ସଂହାର ପାଇଛି ଯୋଗ୍ୟ ଅବସର

ହରିଙ୍କୁ ଦେଖି ଅସ୍ତ୍ରହୀନ କରି ଯୁଦ୍ଧ ଧର୍ମ ପାଳନ
ଦୈତ୍ୟା ନକରି ଆକ୍ରମଣ ସ୍ଥିର ରହିଲା କିଛି କ୍ଷଣ
ଜାଣି ତାହାର ଧର୍ମଜ୍ଞାନ ପ୍ରଶଂସା କଲେ ଭଗବାନ
ଏହିବେଳେ ସିଦ୍ଧ ଚାରଣ ଦେବ ଗନ୍ଧର୍ବ ସାଧ୍ୟ ଗଣ

ଭୟରେ ହୋଇଣ କାତର ଦୁଃଖେ କରିଲେ ହାହାକାର
ତା ଶୁଣି ପ୍ରଭୁ ଭଗବାନ କରିବାରୁ ହୃଦେ ସ୍ମରଣ
ତା ଜାଣି ଚକ୍ର ସୁଦର୍ଶନ ପ୍ରବେଶ କରିଲା ତକ୍ଷଣ
ହରିଙ୍କ ହସ୍ତରେ ଘୁରିଲା ଅଖଣ୍ଡ ଜ୍ୟୋତି ପ୍ରକାଶିଲା

ମାତ୍ର ବରାହ ଭଗବାନ ନିଜ ପାର୍ଷଦ ଦୈତ୍ୟାଧମ
ସେ ହିରଣାକ୍ଷର ସଙ୍ଗରେ କ୍ରୀଡାକଲେ ନାନା ରଙ୍ଗରେ
ନ ଜାଣି ଶ୍ରୀହରି ପ୍ରଭାବ ଦେବଗଣ ସିଦ୍ଧ ଗନ୍ଧର୍ବ
କହିଲେ ପ୍ରଭୋ ହେଉ ଜୟ ଏହାକୁ ଆଉ ନ ଖେଳାଅ

ଅତି ଶୀଘ୍ର ନିଧନ କର ବିଶ୍ୱ ସନ୍ତାପ ହେଉ ଦୂର
ଦୈତ୍ୟ ଦେଖଇ ସେବେଳରେ ହରି ଚକ୍ରଧରି ହସ୍ତରେ
ବିଜେ ଅଛନ୍ତି ସମ୍ମୁଖରେ ସ୍ୱୟଂ କାଳ ଯମ ପ୍ରକାରେ
କ୍ରୋଧରେ ବିଚଳିତ ଚିତ୍ତ ହୋଇ ଅତ୍ୟନ୍ତ ଉତ୍ତେଜିତ

ଦୀର୍ଘ ରଡି ଛାଡି କ୍ରୋଧରେ ଓଷ୍ଠକୁ ଚାପିଣ ଦାନ୍ତରେ
ଦେଖାଇ ଭୀଷଣ ଦଶନ ନେତ୍ରଦ୍ୱୟ କଲା ଘୂର୍ଣ୍ଣନ
ଜଣାଗଲା ସତେ ଯେପରି ହରିଙ୍କୁ ଦେବ ଭସ୍ମ କରି
ଏଥର ମଲୁରେ ପାମର କହି ସେ ଦୈତ୍ୟ ବାରବାର

ବରାହ ହରିଙ୍କୁ ଗଦାରେ ପ୍ରହାର କରିଲା କ୍ରୋଧରେ
ଏ ଅନ୍ତେ ଶୁଣ ହେ ବିଦୁର ଭଗବାନ ଯଜ୍ଞ ଶୂକର
ପ୍ରଚଣ୍ଡ ପବନ ସମାନ ସେହି ଗଦାକୁ ସେହି କ୍ଷଣ
ନିକ୍ଷେପିଲେ ଭୂମି ଉପରେ ହିରଣାକ୍ଷର ସମ୍ମୁଖରେ

କ୍ରୋଧେ କହିଲେ ରେ ଅସୁର ଯଦି ଜିଣିବାକୁ ଇଚ୍ଛାତୋର
ତୁ ଶସ୍ତ୍ର କରି ଉତ୍ତୋଳନ କରରେ ମତେ ଆକ୍ରମଣ
ଏହା କହନ୍ତେ ଭଗବାନ ସେ ଦୈତ୍ୟ ଗଦାଧରି ପୁନ
ବାୟୁ ଗତିରେ ବୁଲାଇଲା ଭୀଷଣ ଗର୍ଜନ କରିଲା

ସେହି ଗଦା ଆସୁଥିବାର ଦେଖି ଭଗବାନ ଶୂକର
ସ୍ଥିର ରହି ନିଜ ସ୍ଥାନରେ ଗରୁଡ ସର୍ପିଣୀ ପ୍ରକାରେ
ସେ ଗଦାକୁ ନିଜ ହସ୍ତରେ ଧରି ଫିଙ୍ଗିଲେ ଭୂମି ପରେ
ନିଜ ପୌରୁଷ ଏ ପ୍ରକାର ବ୍ୟର୍ଥ ହେବା ଦେଖି ଦୈତ୍ୟର

ବୀରତ୍ୱ ଗର୍ବ ଖର୍ବ ହେଲା ତେଜ ଧୀରେ ଧୀରେ କମିଲା
କରିଲେ ବି ମଧ୍ୟ ଆହ୍ୱାନ ନକଲା ସେ ଗଦା ଧାରଣ
ବ୍ରାହ୍ମଣେ ଅଭିଚାର ପରି ଦୈତ୍ୟ ବରାହ ଶ୍ରୀହରି
ଯଜ୍ଞ ପୁରୁଷଙ୍କୁ ପ୍ରହାର କରିବାକୁ ଭାବି ମନର

ପ୍ରଜ୍ୱଳିତ ଅଗ୍ନି ସମାନ ତ୍ରିଶୂଳ କରିଲା ଧାରଣ
ମହାବଳୀ ହିରଣାକ୍ଷର ହସ୍ତରୁ ସେହି ତୀକ୍ଷ୍ଣ ଧାର
ବିଦ୍ୟୁତ ବେଗରେ ଆସିଲେ ତେଜେ ଆକାଶ ଚମକିଲା
ଗରୁଡ ତ୍ୟକ୍ତ ତେଜିୟାନ ପକ୍ଷକୁ ଦେବେନ୍ଦ୍ର ସମାନ

ଶ୍ରୀଭଗବାନ ବିଶ୍ୱେଶ୍ୱର ନିଜର ଅତି ତୀକ୍ଷ୍ଣ ଧାର
ଚକ୍ରରେ ପଲକେ ଛେଦିଲେ ଦେବତା ଆନନ୍ଦିତ ହେଲେ
ନିଜ ତ୍ରିଶୂଳ ଖଣ୍ଡ ଖଣ୍ଡ ଦେଖି ସେ ଦଇତ ଉଦଣ୍ଡ
ଅତି ରୋଷ କ୍ଷୋଭ ବଶରେ ପ୍ରବେଶି ଶ୍ରୀହରି ପାଶରେ

ତାହାଙ୍କ ବିଶାଳ ବକ୍ଷରେ ମୁଷ୍ଟି ଘାତ କରି କୋପରେ
ଭୀଷଣ ଗର୍ଜନ କରିଲା ଆସୁରୀ ମାୟା ପ୍ରକାଶିଲା
କୁସୁମ ମାଳା ହସ୍ତୀ ପରି ଦୈତ୍ୟ ମୁଷ୍ଟି ଘାତେ ଶ୍ରୀହରି
ତିଳେ ବିଚଳିତ ନହେଲେ ନିଜ ସ୍ଥାନେ ସ୍ଥିର ରହିଲେ

ମାୟାବୀ ଦୈତ୍ୟ ଏହାପରେ ମାୟାଧୀଶ ଶ୍ରୀହରି ଉପରେ
ମାୟା ପ୍ରୟୋଗ ଯେ କରିଲା ପ୍ରାଣୀ ହୃଦେ ଭୟ ଜନ୍ମିଲା
ଏ ବିଶ୍ୱ ହେବ କି ପ୍ରଳୟ ସର୍ବେ ଭୟେ ହେଲେ ଅଥୟ
ପ୍ରଚଣ୍ଡ ପବନ ବହିଲା ଚଉଦିଶ ଅନ୍ଧକାର ଘୋଟିଲା

ପଥର ହୋଇଲା ଯେ ବୃଷ୍ଟି ନାଶ ଯିବ ସାରା ସୃଷ୍ଟି
କ୍ଷେପଣ ଯନ୍ତେ ଆବ କେହି ପାଷାଣ କ୍ଷେପଣ କରଇ
ଚମକି ଉଠିଲା ବିଦ୍ୟୁତ ଗଗନ ମୋଘ ଆଚ୍ଛାଦିତ
ପ୍ରଚଣ୍ଡ ଘଡ ଘଡି ନାଦ ଅଦୃଶ୍ୟ ହେଲେ ସୂର୍ଯ୍ୟଚନ୍ଦ୍ର

ଆକାଶ ପଥୁ ନିରନ୍ତର ପୂଜ ମୂତ୍ର ବିଷ୍ଠା ରୁଧିର
ଅସ୍ଥି କଙ୍କାଳ ବରଷିଲା ଭୟରେ ଧରଣୀ କମ୍ପିଲା
ସର୍ବତ୍ର ଦିଶଇ ପର୍ବତ ତହୁଁ ବର୍ଷିଲା ଅସ୍ତ୍ର ଶସ୍ତ୍ର
ରକ୍ଷସୀ ଏ କେଶ ଫିଟାଇ ତ୍ରିଶୂଳ ଧରି ନଗ୍ନ ହୋଇ

ଚାରିଆଡେ ନୃତ୍ୟ କରିଲେ ଟହ ଟହ ନାଦେ ହସିଲେ
ବହୁ ପଦାତି ଅଶ୍ୱାରୌହୀ ରଥା ରୋହୀ ଯେ ଆତତାୟୀ
ରାକ୍ଷାସ ପକ୍ଷ ସେନାଗଣ କାଟ କାଟରେ ହାଣ ହାଣ
ହିଂସ୍ର ଶବଦ ଅତି କ୍ରୁର ଶବ୍ଦ ଶୁଭିଲା ନିରନ୍ତର

ଏହିପରି ନାନା ପ୍ରକାରେ ଆସୁରିକ ମାୟା ଜାଲରେ
ବିନାଶ ପାଇଁ ଭଗବାନ କଲେ ସୁଦର୍ଶନ କ୍ଷେପଣ
ଏବେଳେ ନିଜ ସ୍ୱାମୀଙ୍କର ବାକ୍ୟ ସୁମରି ଦିତିଙ୍କର
ହୃଦୟ ହୋଇଲା କମ୍ପିତ ସ୍ତନରୁ ବହିଲା ରକତ

ଭଗ୍ନ ହେବାରୁ ମାୟାଜାଲ ପୁଣି ସେ ମୂଢ଼ ଦୈତ୍ୟଛାର
ହରିଙ୍କ ସମୀପେ ମିଳିଲା କ୍ରୋଧେ ହସ୍ତେ ଚାପି ଧରିଲା
ମାତ୍ର ହରି ଅନାୟାସରେ ବାହାରି ଆସିଲେ ବାହାରେ
ତହୁଁ ଦୈତ୍ୟ ଅତି କ୍ରୋଧରେ ମୁଷ୍ଟି ଘାତ କଲା ବକ୍ଷରେ

ବୃତ୍ରାସୁରକୁ ଇନ୍ଦ୍ରପରି ବରାହ ଭଗବାନ ହରି
ଦୈତ୍ୟାଧାମ କର୍ଣ୍ଣ ମୂଳରେ ଦୃଢ଼ ବଜ୍ର ମୁଷ୍ଟି ମାରିଲେ
ସେ ଆଘାତରେ ଦୈତ୍ୟର ଦେହ ଭ୍ରମିଲା ଚକ୍ରାକାର
ବାହାରି ପଡ଼ିଲା ନୟନ କେଶ ହୋଇଲା ଛିନ୍ନ ଭିନ୍ନ

ଛିନ୍ନ ହେଲା କର ଚରଣ ଦୈତ୍ୟର ଘଟିଲା ମରଣ
ବାୟୁରେ ଉଚ୍ଚ ବୃକ୍ଷ ସମ ଭୂମି ପତିତ ଦୈତ୍ୟାଧମ
ତଥାପି ସେହି ବଳବାନ ଦୈତ୍ୟ ନହୋଇ ତେଜହୀନ
ଅଧରକୁ ଚାପି ଦନ୍ତରେ ଅଗ୍ରସର ହେଲା ଯୁଦ୍ଧରେ

ବ୍ରହ୍ମାଦି ଦେବତା ଏ ବେଳେ ଦୈତ୍ୟକୁ ପ୍ରଶଂସି କହିଲେ
ଏପରି ମରଣ ବା କାହିଁ କାହାକୁ କେବେ ମିଳେ ନାହିଁ
ମିଥ୍ୟା ଉପାଧି ମୁକ୍ତିପାଇଁ ଯୋଗୀଏ ସମାଧିସ୍ଥ ହୋଇ
ଯାହାଙ୍କୁ ହୃଦୟ ପଦ୍ମରେ ଧ୍ୟାନ କରନ୍ତି ଏକାଗ୍ରରେ

ତାଙ୍କ ଚରଣ ପ୍ରହାରରେ ମୁଖ ଦେଖୁ ଦେଖୁ ନେତ୍ରରେ
ଏ ଦୈତ୍ୟ ତେଜିଲା ଶରୀର ପାର ହେଲା ଭବସାଗର
ହରିଙ୍କ ପାର୍ଷଦ ଏ ଦୁଇ ଶାପରେ ଅଧୋଗତି ପାଇ
କିଛି ଦିବସ ପରେ ପୁନ କରିବେ ଗମନ ସ୍ୱସ୍ଥାନ

### ଦେବ ଉବାଚ

ହେ ପ୍ରଭୋ ଦେବ ଦାମୋଦରତବ ଚରଣେ ନମସ୍କାର
ସଂପୂର୍ଣ୍ଣ ଯଜ୍ଞର ବିସ୍ତାର ପାଳନ ନିମିତ୍ତ ବିଶ୍ୱର
ଶୁଦ୍ଧ ସତ୍ତ୍ୱ ଶୁଭ ମୂର୍ତ୍ତିରେ ଆପଣ ପ୍ରକଟ ସଂସାରେ
ଜଗତ ପୀଡ଼କ ଏ ଦୈତ୍ୟ ବର୍ତ୍ତମାନ ହେଲା ନିହତ

ତୋ ପାଦେ ସ୍ଥାପି ଦୃଢ଼ ଭକ୍ତି ଆମେ ଲଭିଲୁ ଚିର ଶାନ୍ତି
ଆହେ ବିଦୁର ଏହିପରି ସେ ମହା ବରାହ ଶ୍ରୀହରି
ହିରଣାକ୍ଷ କରି ନିଧନ ଗମିଲେ ନିଜ ନିତ୍ୟଧାମ

### ମୈତ୍ରେୟ ଉବାଚ

ଆହେ ବିଦୁର ଏବେ ଶୁଣ ଆଦି ଶୂକର ଭଗବାନ
ହିରଣାକ୍ଷ କରି ନିଧନ ନିତ୍ୟ ଆନନ୍ଦ ପରିପୂର୍ଣ୍ଣ
ସ୍ୱଧାମ କରନ୍ତେ ଗମନ ସ୍ତୁତି କରିଲେ ଦେବଗଣ
ହରି ଧରାରେ ଅବତରି ଲୀଳା କରନ୍ତି କେଉଁପରି

ଭୀଷଣ ଯୁଦ୍ଧେ ସେହିପରି ବାଳକର ଖେଳନା ପରି
ହିରଣାକ୍ଷ କଲେ ନିପାତ ହରିଙ୍କର ଏ ପୁଣ୍ୟ ଚରିତ ।
ଗୁରୁଠାରୁ ଯା ଶୁଣିଥିଲି ତୋ ଆଗେ ବର୍ଣ୍ଣନା କରିଲି

### ସୂତ ଉବାଚ

ସୂତ କହିଲେ ହେ ଶୌନକ ମୈତ୍ରେୟ ଠାରୁ ଶ୍ରୀହରିଙ୍କ
ପବିତ୍ର ବିଚିତ୍ର ଚରିତ ଶୁଣି ପରମ ଭାଗବତ
ବିଦୁର ହେଲେ ଆନନ୍ଦିତ ଶ୍ରୀହରି ଲୀଳା ତ ଅଦ୍ଭୁତ
ପରମ ଶ୍ଳୋକ ମହୟାନ ପରମ ଯଶସ୍ୱୀ ଅନ୍ୟାନ୍ୟ

ମହାପୁରୁଷଙ୍କ ଚରିତ ଶ୍ରବଣ କରିଲେ କିଞ୍ଚିତ
ପୂର୍ଣ୍ଣ ଦିବ୍ୟାନନ୍ଦ ମିଳଇ ଶ୍ରୀବତ୍ସ ଚିହ୍ନ ବିଶ୍ୱସାଇଁ
ଗଜ କୁମ୍ଭୀର ଗ୍ରାସ ବେଳେ ହରିଙ୍କୁ ଡାକିଲା ବିକଳେ
ଦୁଃଖରେ ଯେ ହସ୍ତୀନି ଗଣ କାତରେ କରିଲେ ରୋଦନ

ଶ୍ରୀଭଗବାନ ସୁଦୟାରେ ଗଜର ଦୁଃଖ ନିବାରଣ
ଯେ ଭକ୍ତି ସରଳ ଚିତ୍ତରେ ଆଶ୍ରୟ ନିଏ ଶ୍ରୀହରିରେ
ଶ୍ରୀ ଭଗବାନ ସହଜରେ ପ୍ରସନ୍ନ ହୁଅନ୍ତି ତାଠାରେ
ମାତ୍ର ଦୁଷ୍ଟମତି ଅଧମ ଜୀବରେ ନୁହନ୍ତି ପ୍ରସନ୍ନ

ଜାଣି ଏମନ୍ତ ଉପକାର କେବା ନ ସେବିବ ପୟର
ଯେବା ହିରଣାକ୍ଷ ନିଧନ ମହା ଅଦ୍ଭୁତ ଲୀଳାମାନ
କରଇ ଶ୍ରବଣ ଗାୟନ କିବାକରେ ଅନୁମୋଦନ
ପୁଣ୍ୟ ମୟ ଏହି ଚରିତ ପରମ ମଙ୍ଗଳ ପବିତ୍ର

ଯେ ପ୍ରାତ ସନ୍ଧ୍ୟାରେ ଶୁଣଇ  ସମ୍ପଦ କିରତି ଲଭଇ
ସର୍ବ କାମନା ହୁଏ ପୂର୍ଣ୍ଣ  ଅନ୍ତେ ପାଏ ହରି ଚରଣ
ଇନ୍ଦ୍ରିୟ ପ୍ରାଣର ଶକତି  ବୃଦ୍ଧି ହୁଅଇ ତାର ନିତି

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ହିରଣାକ୍ଷ ବଧୋନାମ ଏକୋବିଂଶୋଽଧ୍ୟାୟ ।

*******

## ବିଂଶୋଽଧ୍ୟାୟ

### ଶୌନକ ଉବାଚ

ଶୌନକ କହିଲେ ହେ ସୂତ  ସ୍ୱାୟମ୍ଭୁବ-ମନୁ କେମନ୍ତ
ଶ୍ରୀହରି ଉଦରେ ବିଲୀନ  ପୃଥିବୀ ଉଦ୍ଧାର କାରଣ
ଜୀବ ସର୍ଜନା ଉଦ୍ଦେଶ୍ୟରେ  କି କି ଉପାୟମାନ କଲେ
ବିଦୁର ପରମ ଭକତ  ଶ୍ରୀକୃଷ୍ଣଙ୍କ ଅନନ୍ୟ ମିତ୍ର

ଧୃତରାଷ୍ଟ୍ର ଯେ ଜ୍ୟେଷ୍ଠ ଭ୍ରାତ  ପୁତ୍ର ଦୁର୍ଯ୍ୟୋଧନ ସହିତ
କୃଷ୍ଣେ କରନ୍ତେ ଅନାଦର  ତାହାଙ୍କୁ ତେଜିଲେ ସତ୍ୱର
ମହର୍ଷି ଦ୍ୱୈପାୟନ ସୁତ  ମହାମହିମ ଅପ୍ରମତ୍ତ
ଯେ କାୟ ମନ ବଚନରେ  ଆଶ୍ରିତ ସଦା ଶ୍ରୀକୃଷ୍ଣରେ

ନାନା ପୁଣ୍ୟ ତୀର୍ଥେ ଭ୍ରମିଣ  ସୁବିଶୁଦ୍ଧ ଅନ୍ତ କରଣ
କୁଶାବର୍ତ୍ତରେ ସମାସୀନ  ସର୍ବତତ୍ତ୍ୱ କି ଅଗ୍ରଗଣ୍ୟ
ମୈତ୍ରେୟ ସୀମପକୁ ଗଲେ  କି କି ପ୍ରଶ୍ନମାନ ପୁଚ୍ଛିଲେ
ଶ୍ରୀହରି ପବିତ୍ର ଆଖ୍ୟାନ  ଦୁହିଙ୍କ କଥୋପ କଥନ

ହରି ଚରଣ ବିନି ସୃତ  ଗଙ୍ଗାସମ ଅତି ପବିତ୍ର
ଯେ ସର୍ବ ପାପ ନିବାରଇ  ସେ ସୂତ ବାରେ ଦୟାବହି
କହସେ ପୁତ ସମାଚାର  ସମଙ୍ଗଳ ହେଉ ତୁମର
ପ୍ରଭୁଙ୍କ ଉଦାର ଚରିତ  ଗାନ କରନ୍ତି ସାଧୁ ସନ୍ତୁ

ରସିକ କେ ଅଛି ଏମନ୍ତ  ଯେ ଶ୍ରୀହରି ଲୀଳା ଅମୃତ
ପାନକରି ତୃପ୍ତି ଲଭିବ  ପୁଣି ଶୁଣିବା ନ ଚାହିଁବ
ନୈମିଷାରଣ୍ୟ ମୁନିଗଣ  ପୁଛନ୍ତେ ଏହିପରି ପ୍ରଶ୍ନ
ସେ ଉଗ୍ରଶ୍ରବା ପୁତ୍ର ସୂତ  ହରି ଚରଣେ ଅର୍ପିଚିତ୍ତ
କହିଲେ ଆହେ ମୁନିଗଣ  ଏବେ ମୁଁ କହୁଅଛି ଶୁଣ

### ସୂତ ଉବାଚ

ନିଜ ମାୟାରେ ନାରାୟଣ  ବରାହ ସ୍ୱରୂପ ଧରିଣ
ରସାତଳୁ ପୃଥ୍ୱୀ ଉଦ୍ଧାରି  ହିରଣାକ୍ଷ ଦୈତ୍ୟ ସଂହାରି
ଏହିଲୀଳା କରି ଶ୍ରବଣ  ହୋଇଣ ଆନନ୍ଦିତ ମନ
ମୈତ୍ରେୟଙ୍କୁ ପୁନର୍ବାର  ପୁଚ୍ଛିଲେ ଭକତ ବିଦୁର

### ବିଦୁର ଉବାଚ

ବିଦୁର ପୁଛେ ହେ ବ୍ରାହ୍ମଣ୍ୟ  ପରୋକ୍ଷ ବିଜ୍ଞାନୀ ଆପଣ
ପ୍ରଜାପତି – ପତି ବିଧାତ  ପ୍ରଜାପତିଙ୍କୁ କରି ଜାତ
ଏ ସୃଷ୍ଟି ବୃଦ୍ଧିପାଇଁ ପୁନ  କରିଲେ କେଉଁ କେଉଁ କର୍ମ
ମରୀଚି ଆଦି ମୁନୀଶ୍ୱର  ସ୍ୱାୟମ୍ଭୁବ ମନୁ ଆବର

ବ୍ରହ୍ମା ଆଜ୍ଞାରେ କି ପ୍ରକାରେ  ପ୍ରଜାମାନଙ୍କୁ ବୃଦ୍ଧିକଲେ
ସେମାନେ ପତ୍ନୀ ସହିତରେ  କିଅବା ସ୍ୱାଧୀନ ଭାବରେ
କିବା ସମସ୍ତେ ଏକତ୍ରରେ  ମିଳି ଏ ଜଗତ ସୃଜିଲେ

### ମୈତ୍ରେୟ ଉବାଚ

ବୋଲେ ବିଦୁର ଯାହାଙ୍କର  ଗତି ଜାଣିବା ସୁଦୁଷ୍କର
ପ୍ରକୃତି ନିୟନ୍ତା ପୁରୁଷ  ଜୀବର ପ୍ରାରବ୍ଧ ବିଶେଷ
କାଳ ଏହି ତିନି ହେତୁରେ  ଭଗବାନଙ୍କ ସନ୍ନିଧିରେ
ତ୍ରିଗୁଣା ପ୍ରକୃତି କ୍ଷୋଭିତ  ହେବାରୁ ମହତତ୍ତ୍ୱ ଜାତ

ଦଇବ ପ୍ରେରଣା ବଶତ  ରଜ ପ୍ରଧାନ ମହତତ୍ତ୍ୱ
ମଧ୍ୟରୁ ସତ୍ତ୍ୱିକା ହଙ୍କାର  ରାଜ ତାମସ ଅହଙ୍କାର
ଏ ତିନି ହୋଇଲେ ସମ୍ଭୂତ  ଆକାଶ ଆଦି ପଞ୍ଚ ତତ୍ତ୍ୱ
ପଞ୍ଚ ତନ୍ମାତ୍ରାର ସହିତ  ଜ୍ଞାନ କର୍ମ ଇନ୍ଦ୍ରିୟ ଜାତ

ଇନ୍ଦ୍ରିୟ ଗଣ ଅଧିଷ୍ଠାତା
ପ୍ରକଟ ହୋଇଲେ ଦେବତା
ସେମାନେ ଭିନ୍ନ ଭିନ୍ନ ଥିଲେ
ବ୍ରହ୍ମାଣ୍ଡ ରଚି ନ ପାରିଲେ
ଭଗବାନଙ୍କ ଶକ୍ତି ପାଇ
ସକଳେ ସଂଗଠିତ ହୋଇ
ସ୍ୱର୍ଣ୍ଣ ଅଣ୍ଡ କଲେ ରଚନ
ତାହାଥିଲା ଯେ ଅଚେତନ

କାରଣାବ୍ଧି ଜଳେ ରହିଲା
ସହସ୍ରାଧିକ ବର୍ଷ ଗଲା
ଭଗବାନ ପୁଣି ତହିଁରେ
ପ୍ରବେଶ କରିଲେ ସ୍ୱେଚ୍ଛାରେ
ସେ କାରଣାବ୍ଧି ପୁରୁଷର
ନାଭିରୁ ସୂର୍ଯ୍ୟ ସହସ୍ରର
ଦୀପ୍ତିମନ୍ତ ପଦ୍ମ ଜନମ
ଏହା ସମ୍ପୂର୍ଣ୍ଣ ଜୀବଗଣ

ଆଶ୍ରୟ ତାରଣ ଆସ୍ଥାନ
ତହିଁରୁ ଧାତା ହେଲେ ଜନ୍ମ
ଗର୍ଭ ଉଦକରେ ଶୟାନ
ସୃଷ୍ଟି ପାଳକ ନାରାୟଣ
ବ୍ରହ୍ମାଙ୍କ ଅନ୍ତଃକରଣରେ
ପ୍ରବେଶ କରିଲେ ଯେ ବେଳେ
ସେ ବେଳରେ ପୂର୍ବ କଳ୍ପରେ
ନିଜ ନିଶ୍ଚିତ ବ୍ୟବସ୍ଥାରେ

ରୂପ ନାନାଦି ଅନୁସାରେ
ବିଧାତା ବ୍ରହ୍ମାଣ୍ଡ ରଚିଲେ
ପ୍ରଥମରେ ନିଜ ଛାୟାରୁ
ସେ ପିତାମହ ବିଶ୍ୱଗୁରୁ
ଅନ୍ଧ ତାମିସ୍ର ମହାମୋହ
ତାମିସ୍ର ତମ ପୁଣି ମୋହ
ଏ ପଞ୍ଚ ପ୍ରକାର ଅଜ୍ଞାନ
କ୍ରମଶ କରିଲେ ଜନମ

ସୃଷ୍ଟିକୁ ଦେଖି ତମୋମୟ
ଦେହ ତେଜିଲେ ପିତାମହ
ତହୁଁ କ୍ଷୁଧା ତୃଷା ଜନନ
ଆବର ଯକ୍ଷ ରକ୍ଷଗଣ
କରିଲେ ସେ ଦେହ ଗ୍ରହଣ
ବିଦୁର ମନଦେଇ ଶୁଣ
ଅତିଶୟ କ୍ଷୁଧା ତୃଷାରେ
ଧାତାଙ୍କୁ ଭକ୍ଷିବା ଧାଇଁରେ

ଆରେ ଏହାକୁ ଯାଅ ଖାଇ
ଏହାର ଆଉ ରକ୍ଷା ନାହିଁ
ବୋଲି ବାରମ୍ବାର କହିଲେ
ବ୍ରହ୍ମା ବିଚଳିତ ଚିତ୍ତରେ
ସେମାନଙ୍କୁ ଡାକି ପାଖରେ
ଏ ପରି ବୁଝାଇ କହିଲେ
ଆରେରେ ଯକ୍ଷ ରକ୍ଷଗଣ
ତୁମେ ପରା ମୋର ସନ୍ତାନ

ପିତାଙ୍କ ପାଳନ ରକ୍ଷଣ
ସନ୍ତାନର ଶ୍ରେଷ୍ଠ ଧରମ
ଯେ ଭକ୍ଷ ବୋଲି କହିଥିଲେ
ସେମାନେ ଯକ୍ଷ ବୋଲାଇଲେ
ଯେ ଯକ୍ଷ ରକ୍ଷ କହିଲେ
ସେମାନେ ରାକ୍ଷସ ହୋଇଲେ
ବ୍ରହ୍ମା ସାତ୍ତ୍ୱିକ ପ୍ରଭାବରେ
ତେଜିୟାନ ହୋଇଣ ଧୀରେ

ସାତ୍ତ୍ୱିକ ଗୁଣ ଆଧାରରେ
ଦେବତା ମାନଙ୍କୁ ରଚିଲେ
ବିଧାତାଙ୍କର ପରିତ୍ୟକ୍ତ
ଉଜ୍ଜ୍ୱଳ ଦିବସ ସ୍ୱରୂପ
ଶରୀରକୁ ଦେବତାଗଣ
କ୍ରୀଡାଛଳେ କଲେ ଗ୍ରହଣ
ଜଘନ ମଧ୍ୟରୁ ଅସୁର
ସୃଷ୍ଟି କରିଲେ ବେଦବର

ସେମାନେ କାମାତୁର ହୋଇ
ମୈଥୁନ କରିବାର ପାଇଁ
ବ୍ରହ୍ମାଙ୍କ ଆଡକୁ ଧାଇଲେ
ବ୍ରହ୍ମାତାଙ୍କୁ ଦେଖି ହସିଲେ
ମାତ୍ର ସେ ନିର୍ଲଜ୍ଜ ଅସୁରେ
ତାଙ୍କ ପଛେ ପଛେ ଧାଇଁଲେ
ତହୁଁ ବ୍ରହ୍ମା ଅତି ଭୟରେ
ଗମିଲେ ବଇକୁଣ୍ଠ ପୁରେ

କର ଅଞ୍ଜଳି ଦେଇ ଶିରେ
ସ୍ତୁତି କରିଲେ ଭକ୍ତି ଭରେ
ଦୀନ ବତ୍ସଳ ଭଗବାନ
ଭକତ ଭାବର ଅଧୀନ
ଶରଣାଗତ ରକ୍ଷାକରୀ
ବରାଭୟ ଦାତା ଶ୍ରୀହରି
ହେ ପରମାତ୍ମା ଦାମୋଦର
ଏ ଘୋର ଶଙ୍କଟୁ ଉଦ୍ଧାର

ମୁଁ ଆପଣଙ୍କ ଆଜ୍ଞାରେ
ଲାଗିଅଛି ପ୍ରଜା ସୃଷ୍ଟିରେ
ମାତ୍ର ପାପିଷ୍ଠ ଏ ଦୁରନ୍ତ
କରୁଛନ୍ତି ବ୍ୟସ୍ତ ବି ବ୍ରତ
ହେ ନାଥ ଜଗତ ଠାକୁର
ଦୀନ ଆରତ ଦୁଃଖ ହର
ଯେଣିଏ ଚରଣେ ଶରଣ
ଆପଣ କରନ୍ତି ରକ୍ଷଣ

ଭାବଗ୍ରାହୀ ଶ୍ରୀଭଗବାନ
ବ୍ରହ୍ମାଙ୍କୁ ଆତୁର ଦେଖିତ
ବୋଇଲେ ଆହେ ବେଦବର
ତେଜ ଏହି ପାପ ଶରୀର
ଶ୍ରୀହରିଙ୍କର ଆଦେଶରେ
ବ୍ରହ୍ମା ସେ ଶରୀର ତେଜିଲେ
ସେ ତ୍ୟକ୍ତ ଶରୀରୁ ତକ୍ଷଣି
ଜନ୍ମିଲା ସୁନ୍ଦରୀ ରମଣୀ

ବହିଲା ସନ୍ଧ୍ୟାଦେବୀ ନାମ
ମୋହିଲା ଅସୁରଙ୍କ ମନ
ପାଦେ ନୂପୁର ରୁଣ ଝୁଣ
ମଦ ବିହ୍ୱଳିତ ନୟନ
ସରୁ ମଧ୍ୟମା ମନୋରମା
ସୁକୁନ୍ତଳା କୁନ୍ଦ ଦଶନା
ଉତ୍ତୁଙ୍ଗ ଘନ ଦୁଇ ସ୍ତନ
ଯୋଗୀ ଋଷି ମନମୋହନ

ଉନ୍ନତ ନାସା ମନ୍ଦ ହାସୀ
ପୀନ ଜଘନୀ ମଦାଳସୀ
ଭାବ ହାବ ବକ୍ର ଦୃଷ୍ଟିରେ
ବିମୋହିତ ହେଲେ ଅସୁରେ
ସେହି ସୁକୁମାରୀ ଲଜ୍ଜାରେ
ନିଜ ଚେଳାଞ୍ଚଳ ମଧ୍ୟରେ
ଲୁଚି ଲୁଚି ବକ୍ରେ ଅନାଇ
ଅସୁର ଚିତ୍ତ ନେଲା ମୋହି

ସକଳେ କରିଲେ ବିଚାର ବିଚିତ୍ର ଏହି ରାମାବର
ନବିନ ବୟସୀ ଏ ବାଳା ଯୁବାମନ କରେ ବାଉଳା
ଏହାର ଧୈର୍ଯ୍ୟ ତ ବିଚିତ୍ର ଆମେ ହେଲୁ କାମ ମୋହିତ
ଏହିପରି ଦୁଷ୍ଟ ଅସୁରେ ସ୍ତ୍ରୀରୂପା ସନ୍ଧ୍ୟା ବିଷୟରେ

ନାନାଦି ବିତର୍କ କରିଲେ ପ୍ରେମ ଆଦରରେ ପୁଛିଲେ
କିଏ ତୁ ଆରେ ରାମାରେ ଦୁହିତା ଅଟୁ ତୁ କାହାର
ହେ ଭାମିନୀ କି କାରଣରେ ଆସିଅଛୁ ଏହି ସ୍ଥାନରେ
ସୌନ୍ଦର୍ଯ୍ୟ ବିପୁଣି ମେଳାଇ ଅଭାଗାମାନଙ୍କୁ କିମ୍ପାଇ

ପୀଡା ଦେଉଛୁ ଅକାରଣ କହ ବାଳେ କିବା ତୋ ମନ
ଯେ କିବା ହୋଇ ଥାଅ ତୁମେ ଭାଗ୍ୟବଳେ ଦେଖିଲୁ ଆମେ
ତୋ କନ୍ଦୁକ କ୍ରୀଡା ଦର୍ଶନ କରେ ଆମ ହୃଦ ମନ୍ଥନ
ରେ ସୁନ୍ଦରୀ ତୁ ହସ୍ତରେ କନ୍ଦୁକକ୍ରୀଡା ସ ମୟରେ

ଏକ ସ୍ଥାନେ ପାଦ ତୁମର କେବେହେଁ ନ ହୁଅ ସ୍ଥିର
ସଗୁରୁକଟି ସ୍ତନ ଭାରରେ ପ୍ରତୀତ ସ୍ତକିତ ପ୍ରକାରେ
ତୋର ଦୃଷ୍ଟିପାତ ନିର୍ମଳ ଅଙ୍ଗକାନ୍ତି ଦିଶେ ଉଜ୍ଜ୍ୱଳ
ତୋ କେଶପାଶ କି ସୁନ୍ଦର ଦେବତାଙ୍କୁ କରେ ଆତୁର

ସନ୍ଧ୍ୟାଦେବୀ ନାରୀ ରୂପରେ ଦୈତ୍ୟଙ୍କୁ କାମାତୁର କଲେ
ତାହାଙ୍କୁ ସେ ମୂଢ଼ ଅସୁରେ ସାଧାରଣ ନାରୀ ଭାବିଲେ
ଏହାପରେ ବ୍ରହ୍ମା ଗମ୍ଭୀର ଭାବରେ ହସିଣ ନିଜର
ମନୋଜ୍ଞ କାନ୍ତିମୟୀ ମୂର୍ତ୍ତୀ ଚାହିଁଲେ ଆନନ୍ଦରେ ଅତି

ନିଜର କାନ୍ତିରୁ ସେ ପୁନ ଗନ୍ଧର୍ବ ଅପସରା ଗଣ
ତକ୍ଷଣେ କରିଲେ ଉତ୍ପନ୍ନ ଆଶ୍ଚର୍ଯ୍ୟ ଏ ସୃଷ୍ଟି ରଚନ
ଏହାପରେ ସେ ବ୍ରହ୍ମାଙ୍କର ତ୍ୟକ୍ତଯେ ଚନ୍ଦ୍ରିକା ଶରୀର
ବସୁ ବିଶ୍ୱାବସୁ ପ୍ରଭୃତି ଗନ୍ଧର୍ବ ଗଣ ବହି ପ୍ରୀତି

କରିଲେ ତକ୍ଷଣେ ଗ୍ରହଣ କେ ବର୍ଣ୍ଣିବ ସୃଷ୍ଟି ନିର୍ମାଣ
ତନ୍ଦ୍ରାରୁ ଚତୁର ଆନନ ଭୂତ ପିଶାଚ କଲେ ଜନ୍ମ
ବିମୁକ୍ତ କେଶ ଦିଗମ୍ବର ତାହାଙ୍କୁ ଦେଖି ବେଦବର
ମୁଦ୍ରିତ କରିଲେ ନୟନ ଜୃମ୍ଭଣ ଶରୀଙ୍କୁ ପୁନ

ଭୂତ ପିଶାଚ ରକ୍ଷଗଣ ଆଦରେ କରିଲେ ଗ୍ରହଣ
ଏହା ନିଦ୍ରା ନାମେ କଥିତ ଶୁଣହେ ବିଦୁର ଧୀମନ୍ତ
ଏହା ପ୍ରାଣିର ଇନ୍ଦ୍ରିୟରେ ଶିଥିଳତା ଜନମ କରେ
ଉଚ୍ଛିଷ୍ଟ ମୁଖେ ଯେ ରହଇ ଭୂତ ପିଶାଚ ଆକ୍ରମଇ

ନିଜକୁ ମଣି ତେଜୋମୟ ଧାତା ନିଜ ଅଦୃଶ୍ୟ ଦେହ
ମଧ୍ୟରୁ ସାଧ୍ୟ ପିତୃଗଣ ତକ୍ଷଣେ କରିଲେ ଉତ୍ପନ୍ନ
ସେମାନେ ନିଜ ଜନ୍ମ ସ୍ଥାନ ଅଦୃଶ୍ୟ ଶରୀର ଗ୍ରହଣ
ଶ୍ରାଦ୍ଧାଦି ବୈଦିକ କର୍ମରେ ପିତର ସାଧ୍ୟଙ୍କୁ କ୍ରମରେ

କରନ୍ତି ହବ୍ୟ କବ୍ୟ ଦାନ ଏହା ଅଟେ ବେଦ ବିଧାନ
ନିଜର ତିରୋଧାନ ଶକ୍ତି ପ୍ରଭାବରୁ ସେ ପ୍ରଜାପତି
ସିଦ୍ଧ ବିଦ୍ୟାଧର ସୃଜିଲେ ଅନ୍ତର୍ଦ୍ଧାନ ଶକ୍ତି ଅର୍ପିଲେ
ପ୍ରତିବିମ୍ବ ଦେଖି ନିଜର ନିଜକୁ ଭାବିଣ ସୁନ୍ଦର

ତହିଁରୁ ପୁରୁଷ କିନ୍ନର ସୃଷ୍ଟି କରିଲେ ବେଦବର
ପିତାମହ ଏହାପରେ ପ୍ରତିମ୍ବ ଦେହ ତେଜିଲେ
ତାହାକୁ କିଂନ୍ନରାଦିନେଲେ ମନୋରମ ଦେହ ଧରିଲେ
ସେମାନେ ଉଷା ସମୟରେ ନିଜ ନିଜ ପତ୍ନୀ ମେଳରେ

ବିଧାତାଙ୍କର ଗୁଣ କର୍ମ ଆନନ୍ଦେ କରନ୍ତି ଗାୟନ
ବୃଦ୍ଧି ନ ହୋଇବାରୁ ସୃଷ୍ଟି ଚିନ୍ତିତ ହୋଇ ପରମେଷ୍ଠୀ
ଚରଣ ପ୍ରସାରି ଶୋଇଲେ କ୍ରୋଧେଭୋଗ୍ୟଦେହ ତେଜିଲେ
ତହୁଁ ଝଡିଲା ଲୋମ ମାନ ସେମାନେ ହେଲେ ଭୁଜଙ୍ଗମ

କର ଚରଣ ସଂକୋଚନେ ଗମନ କରିବା କରଣେ
କ୍ରୂର ସ୍ୱଭାବ ନାଗହେଲେ ବିସ୍ତାରିତ ଫଣା ଧରିଲେ
ମନ ମଧ୍ୟରୁ ଚତୁର୍ବଦନ ସୃଷ୍ଟି କରିଲେ ମନୁଗଣ
ମନୁଗଣ ବ୍ରହ୍ମା ଆଜ୍ଞାରେ ପ୍ରଜାମାନଙ୍କୁ ସୃଷ୍ଟିକଲେ

ସେ ମନୁ ଗଣଙ୍କୁ ଦେଖିଣ ପୂର୍ବଜ ଗନ୍ଧର୍ବ ଚାରଣ
ଅତି ଆନନ୍ଦିତ ଚିତ୍ତରେ ବ୍ରହ୍ମାଙ୍କର ସ୍ତୁତି ଗାଇଲେ
କହିଲେ ହେ ସ୍ରଷ୍ଟା ତୁମର ମନୁ ସୃଷ୍ଟି ଅତି ସୁନ୍ଦର
ଅଗ୍ନିହୋତ୍ର ଆଦି ସମସ୍ତ କର୍ମ ଏଥିରେ ପ୍ରତିଷ୍ଠିତ

ଏ ଅନ୍ତେ ଆଦିଧାତା ପୁନ ସଂଯମ କରି ଇନ୍ଦ୍ରିଗଣ
ତପ ବିଦ୍ୟା ସମାଧିରେ ଯେ ପ୍ରିୟ ସନ୍ତାନ ସୃଜିଲେ
ସେମାନେ ଋଷି ବୋଲାଇଲେ ସଂସାର ହିତେ କର୍ମ କଲେ
ନିଜ ସମାଧି ତପଯୋଗ ଐଶ୍ୱର୍ଯ୍ୟ ବିଦ୍ୟା ବଇରାଗ୍ୟ

ଦିବ୍ୟ ଶରୀର ଲାଭ କଲେ ବିଶ୍ୱେ ମହୀୟାନ ହୋଇଲେ
ମହାପୁରାଣ ଭାଗବତ ବିଂଶ ଅଧ୍ୟାୟ ସମାପିତ
ଏହି ସମାଚାର ପବିତ୍ର ସୁଜନେ ଶୁଣ ଦେଇ ଚିତ୍ତ
ତୁଟିବ ଏଭବ ବନ୍ଧନ ମିଳିବ ବଇକୁଣ୍ଠ ସ୍ଥାନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବେୟାସିକ୍ୟାଂ ତୃତୀୟ ସ୍କନ୍ଧେ ବିଂଶୋଽଧ୍ୟାୟ ।

********

## ଏକବିଂଶୋଽଧ୍ୟାୟ

### ବିଦୁର ଉବାଚ

ପୁଛିଲେ ବିଦୁର ଧୀମାନ ଆହେ ଶୌନକ ଭଗବାନ
ସେ ସ୍ୱାୟମ୍ଭୁବ ମନୁ ବଂଶ ପୃଥିବୀ ମଧରେ ପ୍ରଶଂସ୍ୟ
ରହି ମୈଥୁନାଦି ଧର୍ମରେ ପ୍ରଜା ସୃଷ୍ଟିକଲେ ସଂସାରେ
ଏବେ ଦୟାବହି ଆପଣ ସେ ବିଷୟ କର ବର୍ଣ୍ଣନ

ସେ ସ୍ୱାୟମ୍ଭୁବ ମନୁପୁତ୍ର ଉତ୍ତାନପାଦ ପ୍ରିୟବ୍ରତ
ଏହି ସପ୍ତଦ୍ୱିପା ଧରଣୀ ଧର୍ମରେ ପାଳିଥିଲେ ପୁଣି
ସେ ଦେବହୂତି ତାଙ୍କ କନ୍ୟା ଯମାଦି ଯୋଗ ସୁନିପୁଣା
କର୍ଦ୍ଦମନାମ ପ୍ରଜାପତି ହୋଇଲେ ତାଙ୍କ ପ୍ରାଣପତି

ସେ କନ୍ୟା ଗର୍ଭରେ କର୍ଦ୍ଦମ ଜନ୍ମାଇଲେ କେତେ ସନ୍ତାନ
ସେ ପରି ରୁଚି ଭଗବାନ ବିଧାତା ସୁତ ଦକ୍ଷନାମ
ମନୁ କନ୍ୟାଙ୍କୁ ବିଭାହେଲେ କେତେ ସନ୍ତାନ ତାଙ୍କ ହେଲେ
ତାହାଙ୍କ ଅମୃତ ଚରିତ ଶ୍ରବଣ ବଳାଇ ମୋ ଚିତ୍ତ

### ମୈତ୍ରେୟ ଉବାଚ

ବିଦୁରଙ୍କର ପ୍ରଶ୍ନଶୁଣି କହିଲେ ମୈତ୍ରେୟ ମୁନି
ବିଧାତାଙ୍କ ଆଜ୍ଞାପାଇ ସନ୍ତାନ ଜନ୍ମାଇବା ପାଇଁ
କର୍ଦ୍ଦମ ସରସ୍ୱତୀ ତୀରେ ସଂଯତ ଏକାଗ୍ର ଚିତ୍ତରେ
ଦଶସହସ୍ର ବର୍ଷ ପର୍ଯ୍ୟନ୍ତ ଘୋର ତପେ ହେଲେ ନିରତ

ପ୍ରେମ ଭକ୍ତି ପୂର୍ଣ୍ଣ ହୃଦରେ ନାନା ବିଧ ଉପଚାରରେ
ବରାଭୟ ଦାତା ଶରଣ୍ୟ ଭକ୍ତ ବତ୍ସଳ ଭଗବାନ
ଶ୍ରୀହରିଙ୍କୁ କଲେ ଅର୍ଚ୍ଚନ ସେହି ପ୍ରଜାପତି କର୍ଦ୍ଦମ
ତପସ୍ୟାରେ ହୋଇ ପ୍ରସନ୍ନ ନାରାୟଣ ପଦ୍ମଲୋଚନ

ସତ୍ୟ ଯୁଗର ପ୍ରାରମ୍ଭରେ କର୍ଦ୍ଦଙ୍କୁ ବ୍ରହ୍ମ ରୂପରେ
ତକ୍ଷଣ ହୋଇ ମୂର୍ତ୍ତିମାନ ତାହାଙ୍କୁ ଦେଲେ ଦରଶନ
ଶ୍ରୀହରିଙ୍କର ରମ୍ୟ ମୂର୍ତ୍ତି କୋଟି ସୂର୍ଯ୍ୟର ରୂପକାନ୍ତି
ଶ୍ୱେତ ପଦ୍ମ କୁମୁଦ ମାଳ ପରିଶୋଭିତ କଣ୍ଠ ସ୍ଥଳ

କୁଟିଳ ସୁନୀଳ କୁନ୍ତଳ ମଣ୍ଡିତ ଶ୍ରୀମୁଖ କପୋଳ
ପରିଧାନ ପୀତ ବସନ ଶିର କିରୀଟ ସୁଶୋଭନ
ଶ୍ରବଣେ ମକର କୁଣ୍ଡଳ କରେ ଶଙ୍ଖ ଚକ୍ର ନଳୀନ
ମନ ନୟନ ଅଭିରାମ ମନ୍ଦ ସ୍ମିତ ଶୁଭ ଦର୍ଶନ

ଏ ମନୋଜ୍ଞ ମୂର୍ତ୍ତି ଦର୍ଶନ ସର୍ମ କାମନା ହେଲା ପୂର୍ଣ୍ଣ
କର୍ଦ୍ଦମ ଅତି ଆନନ୍ଦରେ ସାଷ୍ଟାଙ୍ଗ ପ୍ରଣାମ କରିଲେ
ପ୍ରେମ ବିହ୍ୱଳିତ ଚିତ୍ତରେ ହାତଯୋଡି ମଧୁ ବାଣୀରେ
ବିନୟ ବିନମ୍ର ଭାବରେ ସ୍ତୁତି କରିଲେ ଭକ୍ତି ଭରେ

### କର୍ଦ୍ଦମ ଉବାଚ

ହେ ପ୍ରଭୋ ସତ୍ତ୍ୱଗୁଣାଧାର ଆରାଧ୍ୟ ପରମ ଈଶ୍ୱର
ଯୋଗୀଗଣ ତୋ ପ୍ରସାଦରେ ଜନ୍ମଲଭି ଶୁଭ ଯୋନିରେ
ଶେଷରେ ଯୋଗରୂଢ଼ ହୋଇ ତୋ ପଦ ଦର୍ଶନ କରଇ
ଆଜି ପାଇ ତୋର ଦର୍ଶନ ସାର୍ଥକ ହେଲା ମୋ ଜୀବନ

ହେ ପ୍ରଭୋ ପାଦ ପଦ୍ମ ତୋର ପୋତ ଏ ଭବ ସାଗରର
ତୋ ମାୟାରେ ହେ ଦୟାନିଧି ନଷ୍ଟ ହୋଇଛି ମୋର ବୁଦ୍ଧି
ତୁଚ୍ଛ ବିଷୟ ସୁଖ ପାଇଁ ଯାହା ନର୍କେ ମଧ୍ୟ ମିଳଇ
ଯେ ତବ ପାଦ ପଦ୍ମରେ ଆଶ୍ରୟ ନିଅଇ ନିଷ୍ଠାରେ

ସେମାନଙ୍କୁ ମଧ୍ୟ ଆପଣ କର ବିଷୟ ସୁଖ ଦାନ
ପ୍ରଭୋ କଳ୍ପବୃକ୍ଷ ଆପଣ ପୂର୍ଣ୍ଣକରନ୍ତି ମନସ୍କାମ
କାମ କଳୁଷିତ ମୋ ଚିତ୍ତ ତେଣୁ ନିଜର ଉପଯୁକ୍ତ
ସ୍ୱଭାବ ଶାଳିନୀ ସୁକନ୍ୟା ସୁଶୀଳା ରୂପ ଗୁଣ ଧନ୍ୟା

କରିବା ନିମିତ୍ତ ବିବାହ ନେଉଛି ତୋ ପଦ ଆଶ୍ରୟ
ଯେ ଗୃହ ଧର୍ମର ପାଳନ ସହଧର୍ମିଣୀ ହେବ ମମ
ହେ କାଳରୂପୀ ବିଶ୍ୱପତି ହେ ସର୍ବେଶ୍ୱର ଧର୍ମ ମୂର୍ତ୍ତି
କାମନା ପରାୟଣ ନରେ ନିୟନ୍ତ୍ରିତ ବେଦ ବାଣୀରେ

ଫଳ ଲାଭରେ ଦେଇମତି ନାନା କାମ୍ୟ କର୍ମ କରନ୍ତି
ତାହା କରି ଅନୁ ସରଣ କରି ତୋ ଆଦେଶ ପାଳନ
ପ୍ରଜାତି ଉପହାର ମାନ ମୁହିଁ କରୁଛି ସମର୍ପଣ
କାମନା ବାସନା ମୋହିତ ପଶୁପରି ବିଷୟାସକ୍ତ

ଲୋକଙ୍କର ମାର୍ଗ ଗ୍ରହଣ ନ କରନ୍ତି ଭକତ ଗଣ
ସର୍ବଦା ତୋର ଶ୍ରୀଚରଣ ଛତ୍ରଛାୟା ଆଶ୍ରା କରିଣ
ତୋ ଲୀଳା ସୁଧା କରିପାନ କ୍ଷୁଧା ତୃଷାଦି ଦେହଧର୍ମ
ପାଶୋରି ଏହି ସଂସାରରେ ବାସ କରନ୍ତି ଆନନ୍ଦରେ

ହେ ପ୍ରଭୋ ଆପଣଙ୍କ କାଳ ଚକ୍ର ଗତି ଅତି ପ୍ରବଳ
ବ୍ରହ୍ମ ଅଖ ସେହି ଚକ୍ରରେ ଅଧିମାସାଦି ମାସତେର
ଅର ଅଟଇଟି ତାହାର ହେ ଦେବଦେବ ବିଶ୍ୱେଶ୍ୱର
ତିନିଶହ ଷାଠିଏ ଦିନ ପବ ଅଟଇ ତାର ଜାଣ

ବସନ୍ତାଦି ଛ ଋତୁନେମି ଆବର ଚତୁର୍ମାସ୍ୟା ତିନି
ଆଧାର ଭୂତ ନାଭି ଜାଣ ଅଟଇ ଅତି ବେଗବାନ
ସମ୍ବତ୍ସର ରୂପ କରାଳ ଏ କାଳ ଚକ୍ର ଚରାଚର
ମାତ୍ରତୋ ଭକ୍ତର ଆୟୁଷ ଏ କରିନ ପାରଇ ହ୍ରାସ

ହେ ଜଗଦୀଶ ଭଗବାନ ଊର୍ଣ୍ଣନାଭ ସମ ଆପଣ
ଏକାକୀ ଏ ବିଶ୍ୱ ସର୍ଜନ ନିମିତ୍ତ ନିଜଠୁଁ ଅଭିନ୍ନ
ଯୋଗମାୟା ଶକ୍ତି ସ୍ୱୀକାର କରିଣ ତହିଁରେ ନିଜର
ବ୍ୟକ୍ତ ସତ୍ତ୍ୱାଦି ଶକତିରେ ଆପଣ ସ୍ୱୟଂ ସ୍ୱଇଚ୍ଛାରେ

ନିର୍ମାଣ ପାଳନ ସଂହାର କରନ୍ତି ଏହି ଜଗତର
ତୁଳସୀ ମାଳା ବିମଣ୍ଡିତ ସଗୁଣ ମୂରତି ପ୍ରଶାନ୍ତ
ମତେ ଦେଇଛନ୍ତି ଦର୍ଶନ ହେ ପ୍ରଭୋ ଭକ୍ତ ଭାବାଧୀନ
ଯେଉଁ ବିଷୟ ସୁଖମାନ ଭକ୍ତଙ୍କୁ ଦିଅନ୍ତି ଆପଣ

ମାୟିକ କ୍ଷଣିକ ଅଟଇ ତାହା ତୋ ପସନ୍ଦ ନୁହଁଇ
ତଥାପି ଆହେ ପଦ୍ମ ମୁଖ ପ୍ରଦାନ କର ସେହି ସୁଖ
ମୋ ପକ୍ଷେ ହେଉଁ ଶୁଭଙ୍କର ହେ ପ୍ରଭୋ କରୁଣା ସାଗର
ହେ ପ୍ରଭୁ ନିଷ୍କ୍ରିୟ ନିର୍ଗୁଣ ମାୟା ସଂଯୋଗରେ ଆପଣ

ଏ ବିଶ୍ୱ କରନ୍ତି ଚାଳନା ଯେ କରେ ତବ ଆରାଧନା
ଆପଣ ହୋଇ ସୁ ପ୍ରସନ୍ନ ଦିଅନ୍ତି କାମ୍ୟ ବସ୍ତୁମାନ
ହେ ପ୍ରଭୋ ତୋ ପଦ୍ମ ଚରଣ ତଳେ ମୁ କରଇ ପ୍ରଣାମ

**ଋଷି ଉବାଚ**

ଗରୁଡ ପୃଷ୍ଠେ ଶୋଭମାନ ମୁରତି ନୟନାଭିରାମ
ମନ୍ଦ ସ୍ମିତ ପୂର୍ଣ୍ଣ ବଦନ ବକ୍ର ଭ୍ରୂଲତା ପ୍ରେମପୂର୍ଣ୍ଣ
ଚଞ୍ଚଳ କୋମଳ ଦୃଷ୍ଟିରେ ଚାହିଁ କର୍ଦ୍ଦମଙ୍କ ସ୍ତୁତିରେ
ତୋଷେ ଅମୃତ ବଚନରେ ଶ୍ରୀହରି ଏପରି କହିଲେ

**ଭଗବାନ ଉବାଚ**

ହସି କହିଲେ ଭଗବାନ ଶୁଣ ଋଷିବର କର୍ଦ୍ଦମ
ପୂର୍ଣ୍ଣ ପାଇଁ ଯେଉଁ କାମନା ମତେ କରିଲ ଆରାଧନା
ଜାଣି ମନୋଭାବ ତୁମର କରିଛି ବ୍ୟବସ୍ଥା ତାହାର
ହେ ପ୍ରଜାପତି ମୋ ଅର୍ଚ୍ଚନା କେବେହେଁ ନିଷ୍ଫଳ ହୁଏନା

ମୋର ଚରଣେ ଯାର ଚିତ୍ତ ମଜ୍ଜି ରହିଥାଏ ସତତ
ତାହାଙ୍କର ଭକ୍ତି ଅର୍ଚ୍ଚନା ଅଧିକ ଫଳବତୀ ସିନା
ଯଶସ୍ୱୀ ସମ୍ରାଟ ବିଖ୍ୟାତ ସ୍ୱାୟମ୍ଭୁମନୁ ବ୍ରହ୍ମାସୁତ
ସୁଖେ କରୁଛନ୍ତି ଶାସନ ସେ ଧର୍ମ ନ୍ୟାୟ ପରାୟଣ

ମହାରଣୀ ଶତରୂପା ସହ ମହାରାଜ ମନୁ ମହାଶୟ
ପରିଦିନ ତୁମ୍ ସହିତ ସାକ୍ଷାତ କରିବା ନିମିତ୍ତ
ଏଠାକୁ ଆସିବେ ନିଶ୍ଚୟ କର୍ଦ୍ଦମ ଅଧୀର ନ ହୁଅ
ରୂପବତୀ ନବ ଯୌବନା ସୁଶୀଳା ସର୍ବ ଗୁଣପୂର୍ଣ୍ଣା

ଶ୍ୟାମଳ ନେତ୍ରୀ ଅଭିରାମା ବିବାହ ଯୋଗ୍ୟା ଏକ କନ୍ୟା
ବର୍ତ୍ତମାନ ସେ ଅଛି ରହି ତୁମେ ଯୋଗ୍ୟ ପତି ତା ପାଇଁ
ହେ ବ୍ରାହ୍ମଣ୍ୟ ଯେ ଭର୍ଯ୍ୟାପାଇଁ ତୁମେ ଚିନ୍ତିତ ଥିଲା ହୋଇ
ସେ ରାଜକନ୍ୟା ବର୍ତ୍ତମାନ ସୁଯୋଗ୍ୟ ପତ୍ନୀ ହୋଇ ତୁମ

ତୁମ ବୀର୍ଯ୍ୟ ଗର୍ଭେ ଧରିଣ ନଅ କନ୍ୟା କରିବ ଜନ୍ମ
ସେ କନ୍ୟା ଗର୍ଭୁ ଲୋକରୀତି ଅନୁସରି ମରୀଚି ଅତ୍ରି
ଋଷି ତନୟ ସ୍ୱରୂପରେ ଜନମ ଲଭିବେ ସଂସାରେ
ତୁମେ ମୋ ଆଦେଶ ପାଳନ ବିଶୁଦ୍ଧ କାୟ ବାକ୍ୟ ମନ

କର୍ମଫଳ ମତେ ଅର୍ପିଣ ଅନ୍ତେ ଯିବ ମୋର ଭୁବନ
ପ୍ରାଣୀରେ ରଖି ଦୟାଭାବ ଆତ୍ମଜ୍ଞାନ ଲାଭ କରିବ
ସକଳେ ଅଭୟ ପ୍ରଦାନ ନିଜ ସହିତ ଏ ସମ୍ପୂର୍ଣ୍ଣ
ଜଗତକୁ ମୋର ମଧ୍ୟରେ ମତେ ମଧ୍ୟ ନିଜ ହୃଦରେ

ଅବସ୍ଥିତ ହେବା ଦେଖିବ ଜଗତକୁ ସମ ମଣିବ
ମୁ ମଧ୍ୟ ନିଜାଂଶ କଳାରେ ପ୍ରତ୍ୟକ୍ଷ ଅବତୀର୍ଣ୍ଣ ହେବି
ପତ୍ନୀଦେବ ହୁତି ଗର୍ଭରେ ଜନ୍ମ ଲଭିବ ପ୍ରତ୍ୟକ୍ଷରେ
ସାଖ୍ୟ ଶାସ୍ତ୍ରକୁ ବିରଚିବ ସଂସାରେ କିରତି ସ୍ଥାପିବି

### ମୈତ୍ରେୟ ଉବାଚ

କର୍ଦ୍ଦମ ଋଷିଙ୍କୁ ଏପରି ସଂଭାଷଣ କରି ଶ୍ରୀହରି
ସରସ୍ୱତୀ ନଦୀ ବେଷ୍ଟିତ ବିନ୍ଦୁସର ନାମେ ବିଖ୍ୟାତ
ତୀର୍ଥରୁ ପ୍ରତ୍ୟକ୍ଷ ଭାବରେ ନିଜ ଭୁବନେ ଯାତ୍ରା କଲେ
ଏହି ସମୟେ ଗରୁଡର ପକ୍ଷମଧ୍ୟୁ ସାମ ବେଦର

ମନ୍ତ୍ର ହୋଇଲା ଉଚାରିତ ଶୁଣି କର୍ଦ୍ଦମ ଆନନ୍ଦିତ
ହରିଙ୍କୁ ଗମନ ପଥରେ ଅପଲକ ନେତ୍ରେ ଚାହିଲେ
ଶ୍ରୀହରି କରନ୍ତେ ଗମନ ଋଷି କର୍ଦ୍ଦମ ଭଗବାନ
କିଞ୍ଚିତ କାଳ ଅପେକ୍ଷାରେ ରହିଲେ ବିନ୍ଦୁ ସର ତୀରେ

ସ୍ୱାୟମ୍ଭୁବ ମନୁ ଏବେଳେ ରାଣୀ ଶତରୂପା ସଙ୍ଗରେ
ସୁବର୍ଣ୍ଣ ମାଣିକ୍ୟ ଖଚିତ ହରିକ ଝଲେରି ଲମ୍ବିତ
ସ୍ୟନ୍ଦନ କରି ଆରୋହଣ କନ୍ୟକୁ ସଙ୍ଗରେ ଘେନିଣ
କରି କରି ତୀର୍ଥେ ଭ୍ରମଣ ଧ୍ୟାଇ ଶ୍ରୀହରି ଶ୍ରୀଚରଣ

ଶ୍ରୀହରି କଥିତ ଦିନରେ ପ୍ରବେଶ କର୍ଦ୍ଦମା ଶ୍ରମରେ
ବିସ୍ତୀର୍ଣ୍ଣ ବିନ୍ଦୁ ସରୋବର ପୁରିତ ସରସ୍ୱତୀ ନିର
ସେଠାରେ ପଦାଶ୍ରିତ ଭକ୍ତ ଋଷି କର୍ଦ୍ଦମ ଠାରେ ପ୍ରୀତ
ଦୟା ସାଗର ଦୀନ ବନ୍ଧୁ ନେତ୍ରୁ ପତିତ ଅଶ୍ରୁବିନ୍ଦୁ

ତେଣୁ ସେ ସରୋବରର ନାମ ହୋଇଲା ବିନ୍ଦୁସର
ଅତି ପବିତ୍ର ଏହି ତୀର୍ଥ ସଲିଳ ମଧୁର ଅମୃତ
ଯୋଗସିଦ୍ଧ ଯେ ଋଷିଗଣ ଏଜଳ କରିଥାନ୍ତି ପାନ
ଏହି ସ୍ଥାନ ଶୁଦ୍ଧ ପବିତ୍ର ବୃକ୍ଷ ଲତା ପରିବେଷ୍ଟିତ

ବିହଙ୍ଗ କରନ୍ତି କୂଜନ ଭ୍ରମନ୍ତି ମୃଗ ଗଜଗଣ
ସବର୍ତ୍ତୁ ଫଳ ପରିପୂର୍ଣ୍ଣ ଶ୍ୟାମଳ ବନ ମନୋରମ
ମଧୁ ପ୍ରମତ୍ତ ଭୃଙ୍ଗଗଣ କରନ୍ତି ମଧୁର ଗୁଞ୍ଜନ
ମୟୂର ନର୍ତ୍ତକ ସମାନ ପୁଚ୍ଛ ଟେକି କରେ ନର୍ତ୍ତନ

କୋକିଳ କଳ କୁହୁ ନାଦ ହୃଦୟେ ଜନ୍ମାଏ ମୁଦ
କରଞ୍ଜ ବକୁଳ ଅଶୋକ ମନ୍ଦାର କଦମ୍ବ ଚଂପକ
ଅସନ ବନମଲ୍ଲି ଯାଇ ଆମ୍ରକାନନ କରାଜଇ
ଜଳ କୁକୁଟ ଜଳକାକ ସାରସ କକୋର ବତକ

ଜଳଚର ବିହଙ୍ଗମ ଗଣ ଆନନ୍ଦେ କରନ୍ତି କୂଜନ
ହରିଣ ଶୃଗାଳ ଶୂକର ହସ୍ତୀ ସିଂହ ନାନା ପ୍ରକାର
ନକୁଳ ମର୍କଟ ମାର୍ଜାର ଜଳ ସ୍ଥଳ କୁର ବିହାର
କସ୍ତୁରୀ ମୃଗ ନୀଳ ଗାଈ ଆଶ୍ରମେ ଘେରିଛନ୍ତି ରହି

ଆଦିରାଜ ସେହି ତୀର୍ଥରେ ପ୍ରବେଶିଲେ କନ୍ୟା ସଙ୍ଗରେ
ଅଗ୍ନିହୋତ୍ର ଶେଷେ କର୍ଦ୍ଦମ ବସିଛନ୍ତି ହୋଇ ମଉନ
କରି କୃଚ୍ଛ୍ରତପସା ଧନ ଶରୀର ଦିଶେ ତେଜୀୟାନ
ଭଗବାନଙ୍କ ସ୍ନେହପୂର୍ଣ୍ଣ ଦୃଷ୍ଟିକୁ କରିଣ ଦର୍ଶନ

ମଧୁର ବଚନ ଶ୍ରବଣ ସେହି ଋଷିବର କର୍ଦ୍ଦମ
ତପ କଲେ ବହୁଦିନ ଦିଶନ୍ତି ଅତି ବଳବାନ
ଏକତ୍ର ପଦ୍ମଜଳ ସୁନ୍ଦର ଜଟା ଯୁଟ ଶୋଭିତ ଶିର
ରୁଚିର ଚୀର ପରିଧାନ ଅସଂସ୍କୃତ ମଣି ସମାନ

ମହାରାଜ ଆସି କୁଟୀରେ ପ୍ରଣାମ କରନ୍ତେ ଭକ୍ତିରେ
ଶୁଭାଶୀର୍ବାଦରେ କର୍ଦ୍ଦମ ତାହାଙ୍କୁ କରାଇ ପ୍ରସନ୍ନ
ଯାହା ଯୋଗ୍ୟ ଆତିଥ୍ୟରେ ସ୍ୱାଗତ ସତ୍କାର କହିଲେ
ମହାରାଜ ସୁସ୍ଥ ଚିତ୍ତରେ ବସନ୍ତେ ଯୋଗ୍ୟ ଆସନରେ

ସେହି ମୁନିବର କର୍ଦ୍ଦମ ଶ୍ରୀହରି ଆଦେଶ ସ୍ମରିଣ
ମଧୁର ବିନୟ ବାଣୀରେ ପ୍ରସନ୍ନ କରାଇ କହିଲେ
ଶ୍ରୀବିଷ୍ଣୁ ପାଳନ ଶକତି ସ୍ୱରୂପ ଆପଣ ଅଟନ୍ତି
ସାଧୁ ରକ୍ଷା ଦୁଷ୍ଟ ଦଳନ କାରଣେ ଲଭିଛନ୍ତି ଜନ୍ମ

ଏ ବିଶ୍ୱ ସ୍ୱରୂପ ଆପଣ ଚନ୍ଦ୍ରମା ସୂର୍ଯ୍ୟ ବାୟୁସମ
ଧର୍ମ ଆଦି ରୂପ ଧରନ୍ତି ଭିନ୍ନ ଭିନ୍ନ କର୍ମ କରନ୍ତି
ମଣିମୟ ଜୈତ୍ର ସ୍ୟନ୍ଦନ କରି ଆରୋହଣ ଆପଣ
ପ୍ରଚଣ୍ଡ ଧନୁ ଟଙ୍କାରରେ ରଥର ଘର୍ଘର ନାଦରେ

ପାପୀଙ୍କୁ କରନ୍ତି ତରସ୍ତ ଆପଣ ତ ଧର୍ମ ସାକ୍ଷାତ
ବିଶାଳ ସେନା ସଙ୍ଗେ ଧରି ଧରାରେ ସୂର୍ଯ୍ୟଙ୍କ ପରି
କରିଥାନ୍ତି ପରି ଭ୍ରମଣ କେବା ହୋଇବ ତୁମ ସମ
ଯଦି ଏହି ପରି ଆପଣ ଦସ୍ୟୁ ନ କରିବେ ନିଧନ

ବିଷୟ କୀଟ ଏ ଅଧମ ନାଶିବେ ବର୍ଣ୍ଣାଶ୍ରମ ଧର୍ମ
ନିଶ୍ଚିତ ଚିତ୍ତରେ ଆପଣ ଯଦିବା କରିବେ ଶୟନ
ଦୁରାଚାର ଗଣ ଜଗତ ନିଶ୍ଚୟ କରିବେ ନିପାତ
ଆହେ ମହାବୀର ଆପଣ କେଉଁ କାରଣେ ବର୍ତ୍ତମାନ

ବିଜେ କରିଛନ୍ତି ଆଶ୍ରମ ପ୍ରକାଶନ୍ତୁ ସତ୍ୟ ବଚନ
ତବ ଆଦେଶ ଆନନ୍ଦରେ କପଟ ଶୂନ୍ୟ ହୃଦୟରେ
ନିଶ୍ଚୟ କରିବି ପାଳନ ହେ ମହାତ୍ମା ମନୁରାଣ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ସ୍ୱାୟମ୍ଭୁବ-ମନୁ କର୍ଦ୍ଦମ ସଂବାଦେ ନାମ ଏକବିଂଶୋଽଧ୍ୟାୟ ।

*******

## ଦ୍ୱାବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ ବୋଲେ ହେ ବିଦୁର ଶୁଣନ୍ତୁ ଆନ ସମାଚାର
କର୍ଦ୍ଦମ ଋଷି ଏ ପ୍ରକାର ମନୁଙ୍କ ସୁଗୁଣ କର୍ମର
ରାଜଧର୍ମ ପ୍ରଜା ପାଳନ ଶ୍ରେଷ୍ଠତା କରନ୍ତେ ବର୍ଣ୍ଣନ
ସେ ମନୁ ଲଜ୍ଜା ସଙ୍କୋଚରେ କର୍ଦ୍ଦମଙ୍କୁ ପୁଣି କହିଲେ

### ମନୁଉବାଚ

ମନୁ କହିଲେ ହେ କର୍ଦ୍ଦମ ବେଦ ମୂରତି ଭଗବାନ
ବିଧାତା ନିଜ ବେଦରୂପ ବିଗ୍ରହର ରକ୍ଷା ନିମିତ୍ତ
ତପ ବିଦ୍ୟା ଯୋଗ ସଂଯୁକ୍ତ ବିଷୟ ଭୋଗ ଅନାସକ୍ତ
ସେ ସହସ୍ର ପାଦ ପୁରୁଷ ନିଜର ଶ୍ରୀଭୁଜ ସହସ୍ର

ମଧ୍ୟରୁ କ୍ଷତ୍ରି ସୃଷ୍ଟିକଲେ ବ୍ରାହ୍ମଣ ରକ୍ଷା ଉଦ୍ଦେଶ୍ୟରେ
ବ୍ରାହ୍ମଣ ତାଙ୍କର ହୃଦୟ କ୍ଷତ୍ରିୟ ଜାତି ଯେ ଶରୀର
ଗୋଟିଏ ଶରୀର ସହିତ ସମ୍ବନ୍ଧ ହେବାରୁ ସ୍ଥାପିତ
ଏ ବ୍ରାହ୍ମଣ କ୍ଷତ୍ରିୟ ଜାତି ପରସ୍ପର ରକ୍ଷା କରନ୍ତି

ମାତ୍ର ପ୍ରକୃତରେ ଶ୍ରୀହରି ବ୍ରାହ୍ମଣ କ୍ଷତ୍ରି ରକ୍ଷକାରୀ
ସର୍ବ କାରଣ କର୍ମ ରୂପ ହୋଇମଧ୍ୟ ହରି ନିର୍ଲିପ୍ତ
ଦର୍ଶନ ମାତ୍ରକେ ତୁମର ମୋର ସନ୍ଦେହ ହେଲାଦୂର
ପ୍ରଶଂସା ଛଳନାରେ ମୋର ପ୍ରଜାପାଳନାର୍ଥୀ ରାଜାର

ଧର୍ମକୁ ସ୍ୱୟଂ ହି ଆପଣ କରିଅଛନ୍ତି ନିରୂପଣ
ମୁଁ ଅଟେ ମହାଭାଗ୍ୟବାନ ଲଭିଲି ତବ ଦରଶନ
ମଙ୍ଗଳମୟ ପାଦ ଧୂଳି ଶିରରେ ପାରିଲି ମୁଁ ବୋଳି
ମାତ୍ର ଅଜିତେନ୍ଦ୍ରିୟ ଜନ ନଲଭେ ତୁମର ଦର୍ଶନ

ହେବାରୁ ମୋର ଭାଗ୍ୟୋଦୟ ମୋ ପ୍ରତି କରି ଅନୁଗ୍ରହ
ଶିକ୍ଷା ଦେଲେ ରାଜ ଧରମ ଆହେ ମୁନିବର କର୍ଦ୍ଦମ
ଆଜି ମୋ ଶୁଭ ପ୍ରାରବ୍ଧରେ ଶୁଭବାଣୀ କର୍ଣ୍ଣପୁଟରେ
କରିପାରିଲି ସୁଶ୍ରବଣ ଧନ୍ୟ ହେଲା ମୋର ଜୀବନ

କନ୍ୟା ପ୍ରତି ସ୍ନେହ ବଶତଃ ଚିନ୍ତିତ ଅତି ମୋର ଚିତ୍ତ
ଏ ଦୀନ ପ୍ରାର୍ଥନା ଆପଣ କୃପାବହି କର ଗ୍ରହଣ
ପ୍ରିୟବ୍ରତ ଉତ୍ତାନ ପାଦର ଭଗିନୀ ଏହି କନ୍ୟା ମୋର
ଅବସ୍ଥା ଗୁଣ ଶୀଳାଦିରେ ଆପଣଙ୍କୁ ପତି ରୂପରେ

ଲଭିବାକୁ ଇଛା କରଇ ସ୍ୱାଧୀ ପତିବ୍ରତା ଅଟଇ
ତବ ଶୀଳତା ରୂପ ଗୁଣ ନାରଦଙ୍କଠାରୁ ଶୁଣିଣ
ଆପଣଙ୍କୁ ପତି ରୂପରେ ବରଣ କରିଛି ସ୍ୱେଛାରେ
ଆହେ ଦ୍ୱିଜବର କର୍ଦ୍ଦମ ଏ କନ୍ୟା କରନ୍ତୁ ଗ୍ରହଣ

ଶ୍ରଦ୍ଧା ଭକ୍ତିରେ ଏ କନ୍ୟାକୁ ସମର୍ପୁ ଅଛି ଆପଣଙ୍କୁ
ଗୃହସ୍ଥୋଚିତ କର୍ମ ପାଇଁ ଆପଣଙ୍କ ଯୋଗ୍ୟ ଅଟଇ
ଯେଉଁ ଭୋଗ ସ୍ୱୟଂ ଆସଇ ବିଜ୍ଞଜନ ତା ନ ତେଜଇ
ନିବୃତ୍ତି ପରାୟଣ ଜନ ନକରଇ କେବେ ବାରଣ

ଯେଉଁ ପୁରୁଷ ସ୍ୱୟଂ ପ୍ରାପ୍ତ ଭୋଗକୁ କରେ ଅନାଦୃତ
ସେପୁଣି କୃପଣ ପାଖରେ ହସ୍ତ ପ୍ରସାରେ ପଶ୍ଚାତରେ
ବହୁ କାଳ ସଞ୍ଚିତ ଯଶ ତା ହାର ହୁଅଇ ବିନାଶ
ଅନ୍ୟଠୁ ପାଇ ତିରସ୍କାର ସମ୍ମାନ ହରାଏ ସେ ନର

ଶୁଣିଅଛି ମୁହିଁ ତୁମର ସୀମା ଅଛି ବ୍ରହ୍ମଚର୍ଯ୍ୟର
ହେ ବିଜ୍ଞବର ମହୀୟାନ ବିବାହେ ବଳାଇଛ ମନ
ଏ କନ୍ୟା କରନ୍ତୁ ଗ୍ରହଣ ସମର୍ପୁ ଅଛି ବର୍ତ୍ତମାନ

### ଋଷିଉବାଚ

ଆନନ୍ଦେ କହିଲେ କର୍ଦ୍ଦମ ବିବାହ ପାଇଁ ଇଛାମନ
କନ୍ୟାର ବିବାହ ନିମିତ୍ତ ଏବେ ମଧ୍ୟ କାହା ସହିତ
ହୋଇ ନାହିଁ ବାଗଦାନ କର୍ମ ତେଣୁ ବ୍ରାହ୍ମ ବିଧିରେ ଆମ
ଦୁହିଁଙ୍କ ବିବାହ ସମ୍ପନ୍ନ ହୋଇବା ସିନା ସମିଚୀନ

ବୈଦିକ ବିଧି ଅନୁସାରେ ଗୃହ୍ଣାମି ଇତିତେ ମନ୍ତ୍ରରେ
ଅଭିବ୍ୟକ୍ତ ହୋଇଥିବା କାମ ଉତ୍ତମ ସନ୍ତାନ ଜନମ
ଇଛାରେ ଏ କନ୍ୟା ସହିତ ବିବାହ ସଫଳ ନିଶ୍ଚିତ
ଯେଉଁ କନ୍ୟା ଅଙ୍ଗ କାନ୍ତିରେ ଆଭୂଷଣ ଶୋଭା ଧିକ୍କାରେ

ତ୍ରିଲୋକ ରୂପ ଗୁଣ ଧନ୍ୟା ଆପଣଙ୍କର ସେହି କନ୍ୟା
କେବା ନକରିବ ଆଦର ହେ ସାଧୁ ମନୁ ନୃପବର
ଏକନ୍ୟା ପ୍ରାସାଦ ଉପରେ କନ୍ଦୁକ କ୍ରୀଡାବେଳେ ଥରେ
କନ୍ଦୁକର ଗତି ସହିତ ଚଞ୍ଚଳ ହେଉଥାଏ ନେତ୍ର

ଚରଣ ବାଜେଣି ନୁପୁର କରୁଥାଏ ମଧୁ ଝଙ୍କାର
ବିଶ୍ୱାବସୁ ଦେଖି ନେତ୍ରରେ ମୋହରେ ଚେତା ହରାଇଲେ
ବର୍ତ୍ତମାନ ଯେ ସେହି କନ୍ୟା ଆସି ନିଜେ କରେ ପ୍ରାର୍ଥନା
କେଉଁ ପୁରୁଷ ବୁଦ୍ଧିମାନ ନ କରିବ ଅବା ଗ୍ରହଣ

ଉତ୍ତାନ ପାଦଙ୍କ ଭଗିନୀ ସ୍ୱାୟମ୍ଭୁବ ମନୁ କନ୍ୟା ପୁଣି
ଯେ ମହାଲକ୍ଷ୍ମୀ ଶ୍ରୀଚରଣ କରିଣ ନଥାଏ ଅର୍ଚ୍ଚନ
ସେ ଏକନ୍ୟା ପାଣି ଗ୍ରହଣ ଲାଭ ନକରେ କଦାଚନ
ଯେ ପର୍ଯ୍ୟନ୍ତ ଯୋଗ୍ୟ ସନ୍ତାନ ଏହା ଗର୍ଭୁ ନୋହିଛି ଜନ୍ମ

ସେ ଯାଏ ଧର୍ମ ଅନୁସାରେ ମୁ ରହିବି ଏହାଙ୍କ ସଙ୍ଗରେ
ଏପରେ ହରିଙ୍କ ନିର୍ଦ୍ଦେଶ ମାନି ମୁହିଁ ହୋଇ ସନ୍ୟାସ
ଅହିଂସା ଶାସ୍ତ୍ର-ନୀତି ଧର୍ମ ନିଶ୍ଚୟ କରିବି ପାଳନ
ଯା ଠାରୁ ଏ ବିଶ୍ୱ ଜନମ ଯହିଁ ଶେଷରେ ହୁଏ ଲୀନ

ଯାର ଆଶ୍ରୟେ ଅବସ୍ଥିତ ସେ ପ୍ରଜାପତିଙ୍କର ପତି
ଶ୍ରୀ ଅନନ୍ତ ଭଗବାନ ଚରଣ ଲାଭ ମୋର କାମ୍ୟ

### ମୈତ୍ରେୟ ଉବାଚ

କର୍ଦ୍ଦମ ମୁନି ଏହା କହି ଶ୍ରୀହରି ଶ୍ରୀଚରଣ ଧ୍ୟାଇ
ତକ୍ଷଣେ ହୋଇଲେ ମଉନ ତାଙ୍କ ସ୍ମିତ ମୁଖ ଦର୍ଶନ
ସାଧବୀ ଦେବ ହୁତି ଚିତ୍ତ ତକ୍ଷଣେ ହୋଇଲା ମୋହିତ
ମହାରାଣୀ ଶତ ରୂପାର ରାଜକନ୍ୟା ଦେବହୁତିର

ଏ ବିଷୟେ ସ୍ୱଷ୍ଟ ସମ୍ମତି ଜାଣି ସେ ମନୁ ନରପତି
ଋଷି କର୍ଦ୍ଦମଙ୍କ ହସ୍ତରେ ଦୁହିତା ସମର୍ପଣ କଲେ
ମହାର୍ଘ ସେନ ଭୂଷଣ ବିପୁଳ ଗୃହୋପକରଣ
ମହାରାଣୀ ଅତି ଆଦରେ ଝିଅ ଜୋଇଁଙ୍କୁ ସମର୍ପିଲେ

ଯୋଗ୍ୟ ପାତ୍ରରେ କନ୍ୟାଦାନ ମନୁ ହୋଇଲେ ଚିନ୍ତାଶୂନ୍ୟ
କନ୍ୟା ବିଦାୟ ସମୟରେ ଉତକଣ୍ଠା ବିହ୍ୱଳ ଚିତ୍ତରେ
କନ୍ୟାକୁ ଚାପିଣ ବକ୍ଷରେ କ୍ରନ୍ଦନ କଲେ ବିକଳରେ
ଅଶ୍ରୁଧାର ବହି ନୟନୁ ତିନ୍ତିଲା ଦେବହୂତି ତନୁ

କର୍ଦ୍ଦମେ କରି ସମ୍ଭାଷଣ ରାଣୀ ସହିତ ମନୁରାଣ
ଅନୁଚରଣଗଣ ସହିତ ଋଷିମୁନି କୁଳ ସେବିତ
ସରସ୍ୱତୀ ତୀର ଆଶ୍ରମ ଶୋଭା କରି କରି ଦର୍ଶନ
ଦିବ୍ୟ ସୁରମ୍ୟ ସ୍ୟନ୍ଦନରେ ନିଜର ରାଜ୍ୟକୁ ଫେରିଲେ

ପ୍ରଜାଗଣ ବ୍ରହ୍ମାବର୍ତ୍ତର ସେ ମହାରାଜ ମନୁଙ୍କର
ପ୍ରତ୍ୟାଗମନ ସମାଚାର ଶୁଣି ଆନନ୍ଦରେ ଅଧୀର
ନୃତ୍ୟ ଗୀତ ବାଦ୍ୟ ସହିତ ସକଳେ ହୋଇ ସମ୍ମିଳିତ
ସ୍ୱାଗତ କରିବା ଇଛାରେ ରାଜଧାନୀରୁ ବାହରିଲେ

ଶୋଭା ସଂପଦ ପରିପୂର୍ଣ୍ଣ ଭାସ୍କର୍ଯ୍ୟ ଚାରୁକଳା ରମ୍ୟ
ସେ ରାଜଧାନୀ ବର୍ହିଷ୍ମତୀ ଜନ୍ମାଏ ଇନ୍ଦ୍ରପୁର ଭ୍ରାନ୍ତି
ରସାତଳୁ ପୃଥ୍ୱୀ ଉଦ୍ଧାର କରିବାପରେ ଚକ୍ରଧର
ସେ ଭଗବାନ ଶ୍ରୀ ବରାହ ଝାଡିବା ବେଳେ ନିଜ ଦେହ

ଏଠି ଯେଉଁ ରୋମ ଝଡିଲା ତହୁଁ କୁଶକାଶ ଜନ୍ମିଲା
ଏଥିରେ ମୁନି ଋଷିଗଣ ଯଜ୍ଞେ ଘଟାଉଥିବା ବିଘ୍ନ
ଦୈତ୍ୟଙ୍କୁ ଦେଇ ପରାଭବ ଅର୍ଚ୍ଚନ୍ତି ପ୍ରଭୁ ବାସୁଦେବ
ମହାରାଜ ମନୁ ଏଠାରେ ବରାହ ହରିଙ୍କ କୃପାରେ

ଲଭି ଭୂରୂପ ବାସସ୍ଥାନ ବିଛାଇ କୁଶ ଆସ୍ତରଣ
ଯଜ୍ଞ ପୁରୁଷ ଭଗବାନ ହରିଙ୍କୁ କରନ୍ତି ଅର୍ଚ୍ଚନ
ନିଜ ବର୍ହିଷ୍ମତି ପୁରୀରେ ସେ ମନୁ ପ୍ରବେଶ କରିଲେ
ତ୍ରିତାପ ବାରକ ଗୃହରେ ଆନନ୍ଦରେ ବାସ କରିଲେ

ଭାର୍ଯ୍ୟା ପୁତ୍ର ପୌତ ସହିତ ଧର୍ମ ଅର୍ଥ କାମ ଯେ ମୋକ୍ଷ
ଅନୁକୂଳ ଅନ୍ୟ ଧରମ ଅବିରୋଧୀ ପଦାର୍ଥ ମାନ
ନିତ୍ୟ ଉପଭୋଗ କରିଲେ ଗନ୍ଧର୍ବଗଣ ପ୍ରଭାତରେ
ଗନ୍ଧର୍ବୀ ମାନଙ୍କ ସଙ୍ଗରେ ତାଙ୍କ ଯଶ କୀର୍ତ୍ତି ଗାଇଲେ

ମନୁ ଅନାସକ୍ତ ଭାବରେ ପ୍ରେମ ପ୍ରୀତି ପୂର୍ଣ୍ଣ ଚିତ୍ତରେ
ଶ୍ରୀହରିଙ୍କ ଲୀଳା ଶ୍ରବଣ କୀର୍ତ୍ତନେ ନିବେଶିଲେ ମନ
ସ୍ୱେଚ୍ଛାରେ ଭୋଗ୍ୟ ବସ୍ତୁମାନ ସେ କରୁଥିଲେ ଉଦ୍ ଭାବନ
ହରି ଚରଣ ପରାୟଣ ଚିନ୍ତାଶୀଳ ସେ ମନୁରାଣ

ଭୋଗ୍ୟ ଅଭାବରେ କିଞ୍ଚିତ ହେଉ ନଥିଲେ ବିଚଳିତ
ଭାଗବତ ଲୀଳା ଶ୍ରବଣ ଧ୍ୟାନ ଭଜନ ସଂକୀର୍ତ୍ତନ
ସର୍ବଦା ରହି ସେ ନିରତ ମନ୍ୱନ୍ତରକୁ କ୍ଷଣେ ମାତ୍ର
ବୃଥାରେ ନ କରି ଯାପନ ନିଃସଙ୍ଗ ସଫଳ ଜୀବନ

ଜାଗ୍ରତ ଆଦି ଅବସ୍ଥାରେ ଶ୍ରୀହରି ଲୀଳା ପ୍ରସଙ୍ଗରେ
ମନ୍ୱନ୍ତରର ଏକ ସ୍ତରି ଯାପନ କଲେ ଯୁଗଚାରି
ଯେ ନୋହି ତ୍ରିଗୁଣ ଅଧୀନ ଆଶ୍ରାକରେ ହରି ଚରଣ
ତାକୁ ଦୈହିକ ମାନସିକ ନବାଧଇ ଦୁଃଖଭୌତିକ

ମନୁ ନୃପ ସଦା ସମସ୍ତ ଜୀବ ଗଣ ହିତ ନିରତ
ମୁନି ମାନଙ୍କର ପ୍ରଶ୍ନରେ ବର୍ଣ୍ଣ ଆଶ୍ରମ ବିଷୟରେ
ଧର୍ମର ରୀତି ନୀତି ମାନ ସେ ମନୁ କରିଲେ ବର୍ଣ୍ଣନ
ଯେଉଁ କଥା ଆଜି ପର୍ଯ୍ୟନ୍ତ ମନୁସଂହିତା ନାମେ ଖ୍ୟାତ

ତାଙ୍କ ଅଦ୍‌ଭୂତ କୀର୍ତ୍ତିଗୁଣ ସମସ୍ତ ମୁଁ କଲି ବର୍ଣ୍ଣନ
ସେ କନ୍ୟା ଦେବହୂତି ଙ୍କର ପ୍ରଭାବ ଶୁଣ ହେ ବିଦୁର

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈସୟାକ୍ୟାଂ ତୃତୀୟ ସ୍କନ୍ଧେ ଦେବହୂତି କର୍ଦ୍ଦମ ପରିଣୟେ ନାମ ଦ୍ୱାବିଂଶୋଽଧ୍ୟାୟ ।

*******

## ତ୍ରୟୋବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ପିତାମାତାଙ୍କ ଯିବାପରେ ପତି ଅଭିପ୍ରାୟ ଜ୍ଞାନରେ
କୁଶଳା ସତୀ ଦେବହୂତି ସାକ୍ଷାତ ଶଙ୍କର ପାର୍ବତୀ
ଅତି ପ୍ରେମରେ ପ୍ରତି ଦିନ ସେବିଲେ କର୍ଦ୍ଦମ ଚରଣ
କାମ ବାସନା ଦମ୍ଭ ଲୋଭ ବରଜି ପ୍ରାଣୀ ହିଂସା ଗର୍ବ

ମନଦେଇ ସାବଧାନରେ ତତ୍‌ପର ହୋଇଲେ ସେବାରେ
ଶୁଶ୍ରୂଷା ଗୌରବ ସଂଯମ ସପ୍ରେମ ମଧୁର ବଚନ
ଗୁଣରେ ଅତ୍ୟନ୍ତ ନିଷ୍ଠାରେ ପତି ଦେବତାଙ୍କୁ ତୋଷିଲେ
ନିଜର ସ୍ୱାମୀ ସେ କର୍ଦ୍ଦମ ଦଇବଠାରୁ ବଳୀୟାନ

ଜାଣି ସଦା ଉଚ୍ଚ ଆଶାରେ ଦେବହୂତି ସେବା କରିଲେ
ଏହି ପ୍ରକାରେ ବହୁଦିନ କରିବାରୁ ବ୍ରତ ପାଳନ
ଦୁର୍ବଳା ହେଲେ ମନୁପୁତ୍ରୀ ସେ କର୍ଦ୍ଦମ ଦୁଃଖିତ ମତି
କୃପା ଆକୁଳ ହୃଦୟରେ ସେ ଦେବ ହୂତିଙ୍କୁ କହିଲେ

### କର୍ଦ୍ଦମ ଉବାଚ

ମୁଁ ତୁମ ଉତ୍ତମ ସେବାରେ ସନ୍ତୁଷ୍ଟ ପ୍ରେମ ଭକତିରେ
ସକଳ ଶରୀର ଧାରୀର ପରମ ପ୍ରିୟ ଏ ଶରୀର
ମାତ୍ର ମୋ ସେବାରେ ତୁମର କ୍ଷୀଣ ହେଲେ ବି କଳେବର
ଚିନ୍ତିତ ନୁହେଁ ତୁମମନ କରିଣ ସ୍ୱଧର୍ମ ପାଳନ

ତପସ୍ୟା ସମାଧି ଯୋଗରେ ଶ୍ରୀହରିଙ୍କ ଉପାସନାରେ
ଯେଉଁ ଭୟ ଶୋକ ରହିତ ଭଗବତ ପ୍ରସାଦ ରୂପ
ବିଭୂତି ମତେ ମିଳିଅଛି ତହିଁ ତୋ ଅଧିକାର ଅଛି
କରୁଛି ଦିବ୍ୟ ଦୃଷ୍ଟି ଦାନ ପ୍ରିୟେ ସବୁକର ଦର୍ଶନ

ସଂପଦ ସମସ୍ତ ପ୍ରକାର ଭ୍ରୂଭଙ୍ଗୀ ମାତ୍ରେ ହରିଙ୍କର
ବିନାଶ ହୁଏ କ୍ଷଣ କରେ ଏହି ଅନିତ୍ୟ ସଂସାରରେ
ତୁମେ ତ ମୋର ସେବାକରି କୃତାର୍ଥ ହେଲ ହେ ସୁନ୍ଦରୀ
ପବିତ୍ରତା ଧର୍ମ ପାଳନ ପ୍ରାପତ ଦିବ୍ୟ ସୁଖମାନ

ଭୋଗ କର ତୁ ବର୍ତ୍ତମାନ ଯାହା ନମିଳେ ତ୍ରିଭୁବନ
ମୁଁ ରାଜା ସବୁଅଛି ମୋର ଏ ଅଭିମାନ ଥାଏ ଯାର
ସେ ଏହି ଦିବ୍ୟ ସୁଖମାନ ପାଇବା ଅଟଇ କଠିନ

### ମୈତ୍ରେୟ ଉବାଚ

ଋଷି କୁଳର ଅଗ୍ରଗଣ୍ୟ ନିଜ ସ୍ୱାମୀ ଋଷି କର୍ଦ୍ଦମ
ଯୋଗମାୟା ଆରାଧନାରେ ନିପୁଣ ସକଳ ବିଦ୍ୟାରେ
ଜାଣିପାରି ଦେବହୂତିର ସର୍ବସଂଶୟ ହେଲା ଦୂର
ସଙ୍କେତ ପୂର୍ଣ୍ଣ କଟାକ୍ଷରେ ସୁମଧୁର ମନ୍ଦ ହାସରେ
ପ୍ରେମ ଗଦ ଗଦ ବାଣୀରେ ସ୍ୱାମୀଙ୍କୁ ଏପରି କହିଲେ

### ଦେବହୂତି ଉବାଚ

ହେ ପ୍ରାଣେଶ୍ୱର ଦ୍ୱିଜବର ମୁଁ ଜାଣିଛି ଆପଣଙ୍କର
ଗୁଣ ତ୍ରୟମୟୀ ମାୟାରେ ଅମୋଘ ଯୌଗିକ ଶକ୍ତିରେ
ଅଧିକାର ଅଛି ସଂପୂର୍ଣ୍ଣ କିନ୍ତୁ ବିବାହ ଗର୍ଭାଧାନ
ହୋଇବା ପର୍ଯ୍ୟନ୍ତ ଗାହସ୍ଥ୍ୟ ସୁଖ ଉପଭୋଗ ନିମିତ୍ତ

ଯେ ପ୍ରତିଜ୍ଞା କଲେ ଆପଣ ପୂର୍ଣ୍ଣ କରନ୍ତୁ ବର୍ତ୍ତମାନ
ଯୋଗ୍ୟ ଦୁହିଙ୍କ ସଙ୍ଗମରେ କାମ ଶାସ୍ତ୍ରର ଅନୁସାରେ
ରହିଛି ଯେ ବିଧିବିଧାନ ତା ଉପଦେଶନ୍ତୁ ଆପଣ
ତା ପାଇଁ ଯୋଗ୍ୟ ବସ୍ତୁମାନ ସଂଗ୍ରହ କରନ୍ତୁ ଆପଣ

ମିଳନ ଇଚ୍ଛାରେ ଦୁର୍ବଳ କୃଶ କଳେବର ମୋର
ଯୋଗ୍ୟ ହେବ ଅଙ୍ଗସଙ୍ଗରେ ପୀଡିତା କାମ ବେଦନାରେ
ଆହେ ସ୍ୱାମୀ ଏଥି ନିମିତ୍ତ ଏକଇ ଗୃହ ଉପଯୁକ୍ତ
କିପରି ହୋଇବ ନିର୍ମାଣ ବିଚାର କରନ୍ତୁ ଆପଣ

### ମୈତ୍ରେୟ ଉବାଚ

ମୈତ୍ରେୟ ବୋଲନ୍ତି ବିଦୁର ସେ କର୍ଦ୍ଦମ ନିଜ ପ୍ରିୟାର
କାମନା ପୂରଣ ନିମିତ୍ତ ହୋଇଲେ ତକ୍ଷଣ ଯୋଗସ୍ଥ
ଗୋଟିଏ ବିମାନ ରଚିଲେ ଯାହା ନିଜ ଇଚ୍ଛା ଅନୁସାରେ
ସର୍ବତ୍ର କରିବ ଗମନ ମନ ନୟନ ଅଭିରାମ

ନାନା ପ୍ରକାର ରତ୍ନ ଯୁକ୍ତ
ଯହିଁ ସର୍ବବିଧ ଉପସ୍ଥିତ
ସକଳ ଋତୁ ସୁଖ କର
ବିଚିତ୍ର ଚିତ୍ର ପତାକାରେ

ମଣିମୟ ଖମ୍ଭ ଶୋଭିତ
ସୁଖ ସମ୍ଭୋଗ ହେବ ପ୍ରାପ୍ତ
ପରିପୂର୍ଣ୍ଣ ଦିବ୍ୟ ସମ୍ଭାର
ସଜ୍ଜିତ ଜନମନ ହରେ

ବିଭିନ୍ନ ବର୍ଣ୍ଣନ ପୁଷ୍ପମାଳ
ରେଶମୀ ବସନ ଶୋଭନ
ପ୍ରବାଳ ବେଦିସ୍ୱର୍ଣ୍ଣାସନ
ପ୍ରତି କୋଠରୀରେ ସ୍ୱତନ୍ତ୍ର

ମଧୁପ ଗୁଞ୍ଜନ ମଞ୍ଜୁଳ
ମର୍କତମଣି ଶଯ୍ୟାସନ
ବହୁତଳ ପ୍ରସାଦମାନ
ରହିଅଛି ଶଯ୍ୟା ପଲଙ୍କ

ବୈଦ୍ୟୁତିକ ପଙ୍ଖା ଚାମର
ହିରକ ନିର୍ମିତ କାନ୍ଥିନୀ
ଶିଳ୍ପ ଚାତୁରୀ ପରିପୂର୍ଣ୍ଣ
ହିରାର କବାଟ ଦ୍ୱାରରେ

ପ୍ରସାଦ ଭିତ୍ତି ମନୋହର
ଖଚିତ ପଦ୍ମ ରାଗମଣି
ଉନ୍ନତ ବିଦ୍ରୁମ ତୋରଣ
ସ୍ୱର୍ଣ୍ଣ କଳସ ମନହର

ତାହା ବିମାନର ନୟନ
ବିଚିତ୍ର ଚାନ୍ଦିନୀ ସଜ୍ଜିତ
ବିଚିତ୍ର ହଂସ ପନ୍ତି ପନ୍ତି
ସ୍ୱଜାତୀୟ ପକ୍ଷୀ ଭ୍ରମରେ

ପରି ଆକର୍ଷେ ନେତ୍ରମନ
ସ୍ୱର୍ଣ୍ଣ ତୋରଣ ଅପ୍ରମିତ
ସଜୀବ ପରି ଜଣାଯାନ୍ତି
ହଂସ ପାରା ଏହା ପାଖରେ

କରନ୍ତି ରହି କଳରବ
ବିହାର ବିଶ୍ରାମର ସ୍ଥାନ
ଏ ବିମାନ କରି ଦର୍ଶନ
ଶରୀର ଅତ୍ୟନ୍ତ ମଳିନ

ପରସ୍ପରେ ମିତ୍ରଭାବ
ଶୟନର କକ୍ଷ ପ୍ରାଙ୍ଗଣ
ବିସ୍ମିତ ହୋଇଲେ କର୍ଦ୍ଦମ
ଅଭାବେ ପରିଚାରୀ ଗଣ

ଦେବହୂତି ହୃଷ୍ଟ ଚିତ୍ତରେ
ସର୍ବ ଅନ୍ତର୍ଯ୍ୟାମୀ କର୍ଦ୍ଦମ
କହିଲେ ଭୀରୁ ବର୍ତ୍ତମାନ
ବିମାନ କର ଆରୋହଣ

ସେ ଗୃହଆଡେ ନ ଚାହିଁଲେ
ଜାଣିଣ ଦେବହୂତି ମନ
ଏ ବିନ୍ଦୁ ସରେ କରିସ୍ନାନ
ହେ ପ୍ରିୟେ ନ ହୁଅ ବିମନ

ଏସବୁ ବିଷ୍ଣୁ ବିରଚିତ
କରେ ସର୍ବ କାମ ପୂରଣ
ଦେବହୂତି ପଦ୍ମ ନୟନୀ
ସରସ୍ୱତୀ ପୁତ ଜଳରେ

ତୀର୍ଥରାଜ ନାମେ ବିଖ୍ୟାତ
ହେ ଭୀରୁ ମାନ ମୋ ବଚନ
ଗତି ଦେବତା କଥା ମାନି
ପରିପୂର୍ଣ୍ଣ ବିନ୍ଦୁ ସରରେ

ପ୍ରବେଶ କରିଲେ ସତ୍ତ୍ୱରେ
କାନ୍ତି ହୀନ ସ୍ତନ ଯୁଗଳ
ଜୀର୍ଣ୍ଣ ବସନ ପରିଧାନ
ବୁଡନ୍ତେ ସେହି ସରୋବର

ଶ୍ରୀହରିଙ୍କୁ ଚିନ୍ତି ଚିତ୍ତରେ
ଶରୀର ମଳୀନ ଦୁର୍ବଳ
ଦିଶୁଥିଲେ ଅତି ବିବର୍ଣ୍ଣ
ଭିତରେ ଏକ କୋଠରୀର

ଦେଖିଲେ ଏକ ସସ୍ର କନ୍ୟା
ଦେହରୁ ତାଙ୍କ ପଦ୍ମଗନ୍ଧ
ଦେବହୂତିଙ୍କୁ ସମ୍ମୁଖରେ
ବିନମ୍ର ଭକତି ଭାବରେ

ନବ କିଶୋରୀ ସୁମଧ୍ୟମା
ପ୍ରସରୁ ଅଛି ମନ୍ଦ ମନ୍ଦ
ବିଲୋକ ସହସା ଉଠିଲେ
ପରିଚାରୀ ତାଙ୍କୁ କହିଲେ

କି ସେବା ତବ ପ୍ରୟୋଜନ
ଦେବହୂତିଙ୍କ ଆଦରରେ
ଶୁଦ୍ଧ ସୁବାସିତ ଜଳରେ
ଯୁଗଳ ଅମ୍ଳାନ ବସନ

ଆଦେଶ ଦିଅ ବର୍ତ୍ତମାନ
ସ୍ନାନ ଉପଯୋଗୀ ତୈଳରେ
ସ୍ନାନ କରାଇ କୌତୁହଳେ
କରାଇଲେ ସେ ପରିଧାନ

ଦିବ୍ୟ ମହାର୍ଘ ମନୋରମ
ସୁସ୍ୱାଦୁ ଅମୃତ ସମାନ
ପରିଚାରୀଏ ଆନନ୍ଦରେ
ସେ ଦେବହୂତି ଦର୍ପଣରେ

ଉଜ୍ଜ୍ୱଳ ନାନା ଆଭୂଷଣ
ଭୁଞ୍ଜାଇଲେ ଅନ୍ନ ବ୍ୟଞ୍ଜନ
ମଦିରା ପ୍ରସ୍ତୁତ କରିଲେ
ପ୍ରତିବିମ୍ବ ଦେଖି ଜାଣିଲେ

ନାନା ରଙ୍ଗର ସୁବାସିତ
ଅଙ୍ଗର କାନ୍ତି ମନୋରମ
କନ୍ୟାଏ ଆଦରେ ତାଙ୍କର
ପ୍ରତି ଅଙ୍ଗେ ନାନା ଭୂଷଣ

ପୁଷ୍ପମାଳାରେ ସୁଶୋଭିତ
ମହାର୍ଘ ବସ୍ତ୍ର ପରିଧାନ
କରିଛନ୍ତି ଶୁଭ ଶୃଙ୍ଗାର
ଆକର୍ଷଇ ନୟନ ମନ

ସୁବର୍ଣ୍ଣ ମାଳିକା ଗଳାରେ
ପାଦେ ନୂପୁର ରୁଣୁଝୁଣ
ସୁବର୍ଣ୍ଣ ରତନ ଖଚିତ
ମହାର୍ଘ ମଣିମୟ ହାର

କଙ୍କଣ ବିରାଜେ କରରେ
ସୁବର୍ଣ୍ଣ ପାଉଞ୍ଜି ଶୋଭନ
କାଞ୍ଚିଲା କଟି ସୁଶୋଭିତ
କଙ୍କୁମାଦି ଶୁଭ ସମ୍ଭାର

ଶୋଭା ବଢ଼ାଏ ଶତଗୁଣ
ମନୋରମ କୁନ୍ଦ ଦଶନ
ସୁନୀଳ ଅଳକା ଆବଳି
କମଳ କଳିକା ସମାନ

ଭ୍ରୂଲତା କାମ ଶରାସନ
ମନ୍ଦ ସ୍ମିତ ଶୋଭୀ ବଦନ
ମୁଖ ଚନ୍ଦ୍ରମା ଦିଶେ ଝଳି
ପ୍ରେମ କଟାକ୍ଷ ପରିପୂର୍ଣ୍ଣ

ନୟନ ସୁନ୍ଦର ଦିଶଇ ସଂସାରେ ପଟାନ୍ତର ନାହିଁ ।
ଦେବହୂତି ନିଜ ହୃଦରେ ସ୍ମରଣ କରନ୍ତେ ପ୍ରେମରେ
କର୍ଦ୍ଦମ ଆସି ସେ ସ୍ଥାନରେ ପ୍ରବେଶ କରିଲେ ସତ୍ୱରେ
ସହସ୍ର ପରିଚାରି ମେଳେ ପତିଙ୍କୁ ଦେଖି ସମ୍ମୁଖରେ

ଯୋଗ ପ୍ରଭାବ ତାହାଙ୍କର ଜାଣି ସଂଶୟ ହେଲା ଦୂର
ଆହେ ଶତ୍ରୁ ଜୟୀ ବିଦୁର ଶୁଣ ଅପୂର୍ବ ସମାଚାର
ସ୍ନାନାଦିରେ ଦେବହୂତିର ନିର୍ମଳ ସୁନ୍ଦର ଶରୀର
ବିବାହ ପୂର୍ବରୁ ଯେପରି ଥିବା ତାଙ୍କ ରୂପ ମାଧୁରୀ

ସେପରି ଅତି ମନୋରମ ତାଙ୍କ ସୁମ୍ପନ୍ନତବେନି ସ୍ତନ
ସୁବର୍ଣ୍ଣ ଚୋଲିରେ ଆବୃତ୍ତ ବାସ ଭୂଷଣ ସୁଶୋଭିତ
କର୍ଦ୍ଦମ ପ୍ରେମ ଆଦରରେ ତାଙ୍କ ବସାଇ ବିମାନରେ
ପ୍ରଣୟନୀ ପ୍ରତି ଅତ୍ୟନ୍ତ ହୋଇଲେ ମଧ ଅନୁରକ୍ତ

କର୍ଦ୍ଦମଙ୍କ ଯୋଗ ମହିମା ତିଳେ ହେଁ ନ ହୋଇଲା ଊଣା
ସିଦ୍ଧ ବିଦ୍ୟାଧର କିନ୍ନର ସେବା କରନ୍ତି ନିରନ୍ତର
ଫୁଲ୍ଲ କୁମୁଦ କୁସୁମରେ ମଣ୍ଡିତ ବିମାନ ମଧରେ
ତାରକା ମଧରେ ଚନ୍ଦ୍ରମା ସମାନ ବିରାଜେ ସୁଷମା

ଆରୋହି ସେହି ବିମାନରେ ବିହରି ମେରୁ ଉପରେ
ଏଠାରେ ଅଷ୍ଟ ଲୋକପାଳ ସର୍ବଦା କରନ୍ତି ବିହାର
କାମ ଭାବ ଏଠି ବଢ଼ଇ ସୁଗନ୍ଧ ପବନ ବହଇ
ଗଙ୍ଗା ସ୍ୱର୍ଗୁ ଅବତରଣ କରିବାର ଶୁଭ ନିସ୍ୱନ

ସର୍ବଦା ହୁଏ ଗୁଞ୍ଜରଣ ଦେବ ଭୋ ଯୋଗ୍ୟ ସେ ସ୍ଥାନ
ଦିବ୍ୟ ବିଦ୍ୟାଧର ଏବେଳେ ଉପସ୍ଥିତ ହେଲେ ସେବାରେ
ସିଦ୍ଧ ସାଧ୍ୟ ଗଣ ତାଙ୍କର ବନ୍ଦନା କରିଲେ ପୟର
ପ୍ରାଣ ପ୍ରିୟା ସଙ୍ଗେ କର୍ଦ୍ଦମ ବୈଶ୍ରମ୍ଭକ ଯେ ସୁରସେନ

ଚୈତ୍ରରଥ ନନ୍ଦନବନ ପୁଷ୍ପଭଦ୍ରାଦି ଦେବୋଦ୍ୟାନ
ମାନସ ନାମ ସରୋବରେ ବିହରିଲେ ଅନୁରାଗରେ
କାମଗ୍ରାହୀ ସେହି ବିମାନ ଆନନ୍ଦେ କରି ଆରୋହଣ
ସର୍ବ ଲୋକରେ ବାୟୁସମ ବିହାର କରନ୍ତି ସେ କର୍ଦ୍ଦମ

ଆହେ ବିଦୁର ଯେଉଁ ବ୍ୟକ୍ତି ଭବ ଭୟହାରୀ ଶ୍ରୀପତି
ଚରଣରେ ସଦା ଆଶ୍ରିତ ତା ପକ୍ଷରେ କେଉଁ ପଦାର୍ଥ
ଶକ୍ତି ବା ଦୁର୍ଲ୍ଲଭ ହୁଅଇ ହରିଯାକୁ ଦୟା କରଇ
ସେହି ମହା ଯୋଗୀ କର୍ଦ୍ଦମ ବିମାନରେ କରି ଭ୍ରମଣ

ଦ୍ୱୀପ ବର୍ଷାଦି ମନୋରମ ଭୂମଣ୍ଡଳର ନାନା ସ୍ଥାନ
ପ୍ରିୟ ତମାକୁ ଦେଖାଇଲେ ନିଜ ଆଶ୍ରମକୁ ଫେରିଲେ
ନିଜକୁ ନ ଗୋଟି ରୂପରେ ବିଭାଗ କରି ଯୋଗବଳେ
ରତି ଉତ୍ସୁକ ସୁକୁମାରୀ ଦେବହୂତିଙ୍କୁ ସଙ୍ଗେ ବିହରି

ମୁହୂର୍ତ୍ତ ପରି ବସୁକାଳ ଯାପିଲେ ରତି ରସେ ଭୋଳ
ଦେବହୂତି ସେ ବିମାନରେ ରତି ସୁଖକର ଶଯ୍ୟାରେ
ପ୍ରିୟତମ ସଙ୍ଗେ ରଙ୍ଗରେ ମଜ୍ଜିଲେ ସୁରତି କେଳିରେ
ଯୋଗବଳେ ଏହି ପ୍ରକାରେ ଶତ ବରଷ ବିହରିଲେ

ମାତ୍ର ସେ କାମୁକ ଦଂପତି ନ ଜାଣିଲେ ପ୍ରେମରେ ମାତି
କର୍ଦ୍ଦମ ଆତ୍ମ ଜ୍ଞାନ ବଳେ ସର୍ବସଂକଳ୍ପ ଜାଣୁଥିଲେ
ପ୍ରିୟାର ସନ୍ତାନ କାମନା ଜାଣିପାରି ସେ ମହାମନା
ଶ୍ରୀହରିଙ୍କର ଆଦେଶକୁ ସ୍ମରି ନିଜର ସ୍ୱରୂପକୁ

ନବଧା ବିଭକ୍ତ କରିଲେ ଦୁହିତା ଉତ୍ପତ୍ତି ଇଚ୍ଛାରେ .
ପତ୍ନୀକୁ ଅର୍ଦ୍ଧାଙ୍ଗୀ ଭାବିଣ ଗର୍ଭେ କଲେ କାର୍ଯ୍ୟ ସ୍ଥାପନ
ଦେବହୂତି ଏକ ସଙ୍ଗରେ ନଅଟି କନ୍ୟା ପ୍ରସବିଲେ
ସକଳେ ସର୍ବାଙ୍ଗ ସୁନ୍ଦରୀ ସୁକୋମଳାଙ୍ଗୀ ସୁକୁମାରୀ

ରକ୍ତ କମଳର ସୁବାସ ଶରୀରୁ ହୁଅଇ ପ୍ରକାଶ
ସୁଶୀଳା ସତୀ ଦେବହୂତି ଦେଖିଲେ ନିଜ ପ୍ରାଣପତି
ପୂର୍ବ ପ୍ରତିଜ୍ଞା ଅନୁସାରେ ସନ୍ୟାସ ଗ୍ରହଣ ଇଚ୍ଛାରେ
ବନ ଗମନରେ ଉଦ୍ୟତ ତେଣୁ ସେ ବ୍ୟାକୁଳିତ ଚିତ୍ତ
ସ୍ମିତ ହାସରେ ଧୀରେ ଧୀରେ ସ୍ୱାମୀଙ୍କୁ ଏପରି କହିଲେ

**ଦେବହୂତି ଉବାଚ**

ଆହେ ଭଗବାନ ଆପଣ ସର୍ବ ପ୍ରତିଜ୍ଞା କଲେ ପୂର୍ଣ୍ଣ
ହେ ପ୍ରଭୋ ଶରଣ ରକ୍ଷଣ ମତେ ଅଭୟ ବରଦାନ
ଏ କନ୍ୟା ମାନଙ୍କ ନିମିତ୍ତ ବର ଖୋଜିବାକୁ ହେବତ
ଆପଣ ଚାଲିଗଲେ ବନ ମୋର ଏହି ଜନ୍ମ ମରଣ

ଶୋକ ଦୂର କରିବା ପାଇଁ ମୋର ସହାୟ ନାହିଁ କେହି
ଆହେ ପ୍ରଭୋ ଆଜି ପର୍ଯ୍ୟନ୍ତ ଶ୍ରୀହରି ସେବାରୁ ବିରତ
ମୋ ଜୀବନ କାଳ ବୃଥାରେ ବିତିଲା ଇନ୍ଦ୍ରିୟ ସୁଖରେ
ଯୋଗ ପ୍ରଭାବ ନ ଜାଣିଲି ସ୍ୱର୍ଣମଣି କାଚ ମଣିଲି

ତଥାପି ତୋସଂସର୍ଗେ ମୋର ଏ ଭବ ଦୁଃଖ ହେଲା ଦୂର
ଅଜ୍ଞାନେ ଅସତ୍ ପୁରୁଷର ସଙ୍ଗ କାରଣ ବନ୍ଧନର
ମାତ୍ର ସୁପୁରୁଷ ସଙ୍ଗମ ନିଃସଙ୍ଗତା କରେ ପ୍ରଦାନ
ସଂସାରେ ନର ଦେହ ବହି ଯେ ଧର୍ମ କର୍ମ ନ କରଇ

ହୃଦେ ବିରାଗ ଭାବ ବହି ଶ୍ରୀହରି ପାଦ ନ ସେବଇ
ସେହି କୁ ପୁରୁଷର ଜନ୍ମ ମରଣ ସହିତ ସମାନ
ମୁଁ ଭଗବାନଙ୍କ ମାୟାରେ ପ୍ରତାରିତ ଏହି ସଂସାରେ
ଯେହେତୁ ଆପଣଙ୍କ ପରି ମୁକ୍ତିଦ ପତି ଲାଭକରି

ଭବବନ୍ଧନକୁ ମୁକ୍ତି ପାଇଁ କେବେହେଁ ଇଛା କରି ନାହିଁ
ପୂର୍ବ ପ୍ରତିଶ୍ରୁତି ପାଳିଣ ମତେ ଅଭୟ କର ଦାନ
ଏବେ ଉପାୟ କହମତେ ଏ ମାୟା ତରିବି କେମନ୍ତ
ଏପରି କର୍ଦ୍ଦମ ସମ୍ମୁଖେ ସେ ଦେବହୂତି ମନ ଦୁଃଖେ

ଯାହା କହିଲେ ଆତ୍ମଜ୍ଞାନ ସେ ରସରେ ରସ ସୁଜନ
ତୁଟିବ ସଂସାର ବନ୍ଧନ ଦଣ୍ଡ ନେବ କାଳଯମ
ତ୍ରିତାପ ହୋଇଯିବ ଦୂର ସଦୟ ହେବେ ଦାମୋଦର
ତୃତୀୟ ସ୍କନ୍ଧ ଭାଗବତ ତ୍ରିବିଂଶ ଅଧ୍ୟାୟ ସମାପ୍ତ

ନୀଳ କମଳ ଶ୍ୟାମ ଅଙ୍ଗ ବୈଦେହୀ ସ୍ଥିତ ବାମ ଭାଗ
ମହାଶାୟକ ଚାପପାଣି ଦୟା କରହେ ରଘୁମଣି
ସ୍ମରି ତୋ କମଳ ଚରଣ ଯାଉ ଏ ଦୀନର ଜୀବନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ କର୍ଦ୍ଦମ ଦେବହୂତି ସମ୍ବାଦେ ତୃତୀୟ ସ୍କନ୍ଧେ ନାମ ତ୍ରୟୋବିଂଶୋଽଧ୍ୟାୟ ।

* * * * * *

## ଚତୁର୍ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ସୁଶୀଳା ସର୍ବ ଗୁଣବତୀ ମନୁ କୁମାରୀ ଦେବହୂତି
ଏହିପରି ବୈରାଗ୍ୟ ପୂର୍ଣ୍ଣ ବଚନରେ ଋଷି କର୍ଦ୍ଦମ
ଶ୍ରୀହରି କଥିତ ବଚନ ତକ୍ଷଣେ କରିଲେ ସ୍ମରଣ

### ଋଷିଉବାଚ

ହେ ମନୁ ନୃପତି ନନ୍ଦନା ନ କରରେ ଅନୁଶୋଚନା
ନିଜକୁ ମଣି ଭାଗ୍ୟହୀନା ଏପରି ଦୁଃଖ ତୁ କରନା
ଅବିନାଶୀ ଶ୍ରୀଭଗବାନ ଅବିଳମ୍ବେ ଗର୍ଭରେ ତୁମ
ନିଶ୍ଚେ କରିବେ ଅବସ୍ଥାନ ସଫଳ ହେବ ତୋ ଜୀବନ

କରିଛୁ ତୁ ବ୍ରତ ପାଳନ ନିଶ୍ଚେ ତୋର ହେବ କଲ୍ୟାଣ
ବର୍ତ୍ତମାନ ତମେ ସଂଯମ ନିୟମ ତପ ବ୍ରତ ଦାନ
ଶ୍ରଦ୍ଧାରେ କରି ଅନୁଷ୍ଠାନ ଭଜ ଭଗବାନ ଚରଣ
ଏପରି ଆରାଧନା କଲେ ଶ୍ରୀହରି ତୁମର ଗର୍ଭରେ

ଅଚିରେ ଅବତୀର୍ଣ୍ଣ ହେବେ ମୋର ସୁଯଶ ବିସ୍ତାରିବେ
ବ୍ରହ୍ମଜ୍ଞାନ ଉପଦେଶିବେ ତୋ ହୃଦୟ ଗ୍ରନ୍ଥି ଛେଦିବେ

### ମୈତ୍ରେୟ ଉବାଚ

ମୈତ୍ରେୟ ବୋଲେ ହେ ବିଦୁର ଦେବହୂତି କର୍ଦ୍ଦମଙ୍କର
ଉପଦେଶ ତତ୍ତ୍ୱ ବୁଝିଲେ ସଂପୂର୍ଣ୍ଣ ବିଶ୍ୱାସ କରିଲେ
ଜଗତ ଗୁରୁ ନିର୍ବିକାର ପୁରୁଷୋତ୍ତମ ହରିଙ୍କର
ବିଧିରେ କଲେ ଆରାଧନା ଭକ୍ତିରେ ତଦ ଜଗତ ମନା

ବହୁକାଳ ଗଲା ଏପରି କାଷ୍ଠ ମଧ୍ୟରେ ଅଗ୍ନିପରି
ଶ୍ରୀଭଗବାନ ମଧୁହାରି କର୍ଦ୍ଦମ ବୀର୍ଯ୍ୟ ଆଶ୍ରାକରି
ଦେବହୂତିଙ୍କ ଗର୍ଭରେ ପ୍ରକାଶିତ ହେଲେ ସ୍ୱେଚ୍ଛାରେ
ଆକାଶେ ମେଘ ବରିଷିଲା ଗର୍ଜନ ବାଦ୍ୟ ବଜାଇଲା

ଗନ୍ଧର୍ବେ ଗାୟନ କରିଲେ ଅପସରା ପ୍ରେମେ ନାଚିଲେ
ଦେବତା ରହି ଆକାଶରେ କୁସୁମ ବରଷା କରିଲେ
ଦିଗ ବଦିଗ ମାନଙ୍କରେ ଆନନ୍ଦ ବ୍ୟାପିଗଲା ଧୀରେ
ସରିତ ସରୋବର ନିଳ ହୋଇଲା ନିର୍ମଳ ଶୀତଳ

ସକଳ ଜୀବ ଜନ୍ତୁଗଣ ବଦନ ହୋଇଲା ପ୍ରସନ୍ନ
ସରସ୍ୱତୀ ନଦୀ ବେଷ୍ଟିତ କର୍ଦ୍ଦମ ଆଶ୍ରମେ ତୁରିତ
ମରୀଚ୍ୟାଦି ମୁନି ସଙ୍ଗରେ ବିଧାତା ଆଗମନ କଲେ
ସ୍ୱୟଂ ସିଦ୍ଧ ଜ୍ଞାନ ସଂପନ୍ନ ଅଜନ୍ମା ଚତୁର ଆନନ

ଜାଣିପାରିଲେ ଯୋଗବଳେ ସ୍ୱୟଂ ପରଂବ୍ରହ୍ମ ସ୍ୱେଚ୍ଛାରେ
ସାଂଖ୍ୟ ଶାସ୍ତ୍ର ପ୍ରଚାରପାଇଁ ବିଶୁଦ୍ଧ ସତ୍ତ୍ୱଅଂଶ ବହି
ହେଲେ ଧରାରେ ଅବତୀର୍ଣ୍ଣ ତାଙ୍କ ମହିମାତ ଅସୀମ
ଶ୍ରୀହରିଙ୍କ ଦିବ୍ୟ ସଂକଳ୍ପ କଦାପି ନୁହଇଁ ବିକଳ୍ପ

ତେଣୁ ଧାତା ଶୁଦ୍ଧ ଚିତ୍ତରେ ସମ୍ମତି ପ୍ରକାଶି ଆଦରେ
ଅତି ପ୍ରସନ୍ନ ହୃଦୟରେ କର୍ଦ୍ଦମଙ୍କୁ ଏହା କହିଲେ

### ବ୍ରହ୍ମୋବାଚ

ହେ ମୋ ପ୍ରାଣପ୍ରିୟ କର୍ଦ୍ଦମ ତୁ କରୁ ସକଳେ ସମ୍ମାନ
ତୁହି ମତେ ଦେଇ ସମ୍ମାନ ମୋ ଆଦେଶ କରୁ ପାଳନ
ନିଷ୍କପଟ ସେବାରେ ତୋର ସନ୍ତୁଷ୍ଟ ହେଲା ଚିତ୍ତ ମୋର
ପିତାଙ୍କ-ଆଦେଶ ପାଳିବା ଅଟେ ଉତ୍ତମ ପିତୃ ସେବା

ତୁତ ଉତ୍ତମ ଗୁଣେ ପୂର୍ଣ୍ଣ ତୋର ସୁନ୍ଦରୀ କନ୍ୟାଗଣ
ଧରା ବକ୍ଷରେ ନିଜ ବଂଶ ଶ୍ରୀବୃଦ୍ଧି କରିବେ ଅବଶ୍ୟ
ସ୍ୱଭାବେ ନିଜର ନିଜର ରୁଚି ଅନୁସାରେ ତୁମର
ବର୍ତ୍ତମାନ କନ୍ୟା ମାନଙ୍କୁ ମରୀଚି ପ୍ରସ୍ତୁତ ଋଷିଙ୍କୁ

ସମର୍ପି ବୈଦିକ ବିଧିରେ ସୁ ଯଶ ବିସ୍ତାର ସଂସାରେ
ସକଳ ପ୍ରାଣୀଙ୍କର ବିଧି ଅଭିଷ୍ଟ ଦାତା ଦୟାନିଧି
ଆଦି ପୁରୁଷ ନାରାୟଣ ଅନାଦି ପୁରୁଷ ଉତ୍ତମ
ନିଜେ ଯୋଗମାୟା ବଳରେ ଜନ୍ମିବେ କପିଳ ରୂପରେ

ହେ ରାଜପୁତ୍ରୀ ଦେବହୂତି ନକର କିଛି ଚିତ୍ତେ ଭ୍ରାନ୍ତି
କେଶ ପାଶ ଶୁଦ୍ଧ ସୁବର୍ଣ୍ଣ ବିଶାଳ କମଳ ନୟନ
କମଳ ଚିହ୍ନିତ ଚରଣ କୈଟଭ ଅରି ନାରାୟଣ
ସୁକୁମାର ଶିଶୁ ରୂପରେ ବିଜୟ ତୋର ଉଦରରେ

ଆତ୍ମଜ୍ଞାନ ଉପଦେଶିବେ ଦୁର୍ବାସନା ମୂଳ ଛେଦିବେ ।
ମୋହ ଗ୍ରନ୍ଥି କାଟି ଧରାରେ ବିହାର କରିବେ ସ୍ୱେଚ୍ଛାରେ
ସେ ସିଦ୍ଧଗତା ସ୍ୱାମୀ ହେବେ ତାଙ୍କୁ ସଂଖ୍ୟାଗୁରୁ ମାନିବେ
ବିଖ୍ୟାତ କପିଳ ନାମରେ ଯଶ ସ୍ଥାପିବେ ତ୍ରିଲୋକରେ

### ମୈତ୍ରେୟ ଉବାଚ

ଏ ଜଗତର ସ୍ରଷ୍ଟା ବ୍ରହ୍ମା ବ୍ରହ୍ମା ଦେଇ ଏପରି ଆଶ୍ୱାସନା
ନାରଦ ସନକ ସଙ୍ଗରେ ଆରୋହି ହଂସ ବାହନରେ
ଚଳିଗଲେ ବ୍ରହ୍ମଲୋକରେ କର୍ଦ୍ଦମ ଋଷି ଏହାପରେ
ବ୍ରହ୍ମାଙ୍କ ଆଜ୍ଞା ଅନୁସାରେ ମରୀଚି ଆଦିଙ୍କ ସଙ୍ଗରେ

କନ୍ୟାଙ୍କୁ ବିଧି ଅନୁସାରେ ବିବାହ କରାଇଲେ ଧୀରେ
କଳା ନାମକ ଦୁହିତାଙ୍କୁ ପ୍ରଦାନ କଲେ ମରୀଚିଙ୍କୁ
ଅତ୍ରିଙ୍କୁ ଅନସୂୟା ଦେଲେ ଅଙ୍ଗିରାଙ୍କୁ ଶ୍ରଦ୍ଧା ଅର୍ପିଲେ
ହିବିର୍ଭ୍ୟ ନାମ୍ନୀ ଦୁହିତାଙ୍କୁ ସମର୍ପି ଦେଲେ ପୁଲସ୍ତ୍ୟଙ୍କୁ

ଗତି କନ୍ୟାକୁ ପୁଲହଙ୍କୁ ଅର୍ପିଲେ ଧ୍ୟାୟି ଶ୍ରୀହରିଙ୍କୁ
କ୍ରିୟାକୁ କ୍ରତୁଙ୍କ ସଙ୍ଗରେ ଖ୍ୟାତିକୁ ଭୃଗୁଙ୍କୁ ଅର୍ପିଲେ
ବଶିଷ୍ଠେ ଦେଲେ ଅରୁନ୍ଧତୀ ଅଥର୍ବଙ୍କ ସହ ପ୍ରଶାନ୍ତି
ନିଜପତ୍ନୀ ସହ କର୍ଦ୍ଦମ ଋଷିଙ୍କୁ ବିହିଲେ ସମ୍ମାନ

ଏପରି ବିବାହ ଶେଷରେ ଋଷିଏ ଆନନ୍ଦ ମନରେ
କର୍ଦ୍ଦମଙ୍କ ଅନୁମତିରେ ନିଜ ଆଶ୍ରମକୁ ଗମିଲେ
ଦେବାଧିଦେବ ଦାମୋଦର ହୋଇ ଅଛନ୍ତି ଅବତାର
ଦେଖି କର୍ଦ୍ଦମ ଗୋପନରେ ତାଙ୍କ ନିକଟକୁ ଗମିଲେ

ପ୍ରଣାମ କରି ଭକ୍ତିଭରେ କରଯୋଡି ଏହା କହିଲେ
ଯୋଗୀଏ ବହୁଜନ୍ମପରେ ସାଧନା ସିଦ୍ଧ ସମାଧିରେ
ଯାହାଙ୍କ ଆତ୍ମ ସ୍ୱରୂପକୁ ଯତ୍ନ କରନ୍ତି ଦେଖିବାକୁ
ସେ ଭକ୍ତ ରକ୍ଷକ ଶ୍ରୀହରି ଆତ୍ମ ଅବଜ୍ଞାକୁ ନଧରି

ଆମ ଗୃହରେ ଅବତୀର୍ଣ୍ଣ    ସେତ ବଢ଼ାନ୍ତି ଭକ୍ତ ମନ
ନିଜର ସତ୍ୟ ରକ୍ଷାପାଇଁ    ସଂଖ୍ୟୋପଦେଶ ଦେବାପାଇଁ
ହେ ପ୍ରଭୋ ଶ୍ରୀହରି ଆପଣ    ଆଜି ମୋ ଗୃହେ-ଅବତୀର୍ଣ୍ଣ
ହେ ନାରାୟଣ ଭାବଗ୍ରାହୀ    ତୋର ପ୍ରାକୃତି ରୂପ ନାହିଁ

ଚତୁର୍ଭୁଜାଦି ଅପ୍ରାକୃତ    ରୂପରେ ହୁଅ ପ୍ରକାଶିତ
ଭକ୍ତର ପ୍ରୀତି ବୃଦ୍ଧିପାଇଁ    ଆପଣ ନର ଦେହ ବହି
ନିଜର ରୁଚି ଅନୁସାରେ    ଅବତାର ହୁଅ ସଂସାରେ
ତତ୍ତ୍ୱ ଜିଜ୍ଞାସୁ ବିଜ୍ଞଜନ    କରନ୍ତି ତୋ ପାଦ ବନ୍ଦନ

ଐଶ୍ୱର୍ଯ୍ୟ ବୀର୍ଯ୍ୟ ଯଶ ଜ୍ଞାନ    ଶ୍ରୀଷଡ ଐଶ୍ୱର୍ଯ୍ୟ ସଂପନ୍ନ
ଆପଣ ସ୍ୱୟଂ ପରଂବ୍ରହ୍ମ    ସକଳ ଶକ୍ତି ତୋ ଅଧୀନ
ପୁରୁଷ ମହତତ୍ତ୍ୱ କାଳ    ପ୍ରକୃତି ତ୍ରୟ ଅହଙ୍କାର
ସର୍ବ ଲୋକପାଳ ରୂପରେ    ଆପଣ ଜନ୍ମନ୍ତି ସଂସାରେ

ଆପଣ ଚିତ୍ ଶକ୍ତି ବଳରେ    ନିଜର ଉଦର ମଧ୍ୟରେ
ପ୍ରପଞ୍ଚ ବିଲୀନ କରନ୍ତି    ମାତ୍ର ପ୍ରପଞ୍ଚ ଉର୍ଦ୍ଧ୍ୱେ ଥାନ୍ତି
ହେ କପିଳ ଭଗବାନ    ମୁଁ ମାଗେ ତୋ ପାଦେ ଶରଣ
ମୋର ସକଳ ମନସ୍କାମ    ପୂରଣ ହୋଇଛି ସମ୍ପୂର୍ଣ୍ଣ

ମୁଁ ରହି ସନ୍ୟାସ ମାର୍ଗରେ    ଧ୍ୟାୟି ତୋ ପଦ କମଳରେ
ତାପ ଶୋକହୀନ ହୃଦରେ    ଭ୍ରମଣ କରିବି ସଂସାରେ
ହେ ସକଳ ପ୍ରଜାସାଇଁ    ମୁଁ ଆଜ୍ଞା ପ୍ରାର୍ଥନା କରଇ

### ଭଗବାନୁବାଚ

କହିଲେ ପ୍ରଭୁ ଭଗବାନ    ଆହେ ମୁନିବର କର୍ଦ୍ଦମ
ବୈଦିକ ଲୌକିକ କରମ    ସାଧନ ମୋ ବାକ୍ୟ ପ୍ରମାଣ
ମୋ ବାକ୍ୟ ସତ୍ୟ ରକ୍ଷାପାଇଁ    ଏ ଅବତାର ଅଛି ହୋଇ
ଲିଙ୍ଗ ଶରୀରରୁ ମୁକତି    ଇଛନ୍ତି ଯେଉଁ ମୁନିଯତୀ

ଉପଯୋଗୀ ଆତ୍ମ ଦର୍ଶନ    ପ୍ରକୃତି ଆଦି ତତ୍ତ୍ୱମାନ
କରିପାରିବେ ବିବେଚନ    ସେ ପାଇଁ ମୋହର ଜନମ
ଆତ୍ମଜ୍ଞାନର ସୂକ୍ଷ୍ମପଥ    ବହୁକାଳୁ ହୋଇଛି ଲୋପ
ପୁନ ତାହାର ପ୍ରବର୍ତ୍ତନ    ପାଇଁ ମୋ ଏ ଦେହ ଗ୍ରହଣ

ହେ ମୁନି ମୋର ଆଦେଶରେ    ତୁମେ ଯାଅ ନିଜ ଇଚ୍ଛାରେ
ନିଜର ସକଳ କରମ    ମୋଠାରେ କରି ସମର୍ପଣ
ଜିଣି ଦୁର୍ଜ୍ଜୟ ମୃତ୍ୟୁପଥ    ମୋକ୍ଷପଦ ଲାଭ ନିମିତ୍ତ ।
କର ମୋ ଭଜନ କୀର୍ତ୍ତନ    ମୁଁ ସ୍ୱୟଂ ପ୍ରକାଶିତ ଜାଣ

ଜୀବର ଅନ୍ତଃ କରଣରେ    ବିଜେ ପରମାତ୍ମା ରୂପରେ
ତୁମେ ସୁବିଶୁଦ୍ଧ ବୁଦ୍ଧିରେ    ନିଜର ହୃଦୟ ମଧ୍ୟରେ
ଯେତେବେଳେ ମତେ ଦେଖିବ    ଶୋକରୁ ମୁକତି ଲଭିବ
ବରାଭୟ ପଦ ପାଇବ    ତୋ ଜନ୍ମ ସଫଳ

କର୍ମ ବନ୍ଧନ ଛେଦିବାକୁ    ମୁଁ ଦେବହୂତି ଜନନୀଙ୍କୁ
ଆତ୍ମଜ୍ଞାନ ଦାନ କରିବି    ଭବ ସିନ୍ଧୁରୁ ଉଦ୍ଧାରିବି

### ମୈତ୍ରେୟ ଉବାଚ

ଶୁଣି କପିଳଙ୍କ ବଚନ    ସେହି ପ୍ରଜାପତି କର୍ଦ୍ଦମ
ଭକ୍ତିରେ ପରିକ୍ରମା କଲେ    ଆନନ୍ଦେ ବନକୁ ଗମିଲେ
ସନ୍ୟାସ ଧରମ ପାଳିଲେ    ଶ୍ରୀହରି ପଦେ ଆଶ୍ରା ନେଲେ
ଅଗ୍ନି ଓ ଆଶ୍ରମ ତେଜିଲେ    ନିଃସଙ୍ଗେ ପୃଥିବୀ ଭ୍ରମିଲେ

ଯେ ଅତୀତ କାର୍ଯ୍ୟକାରଣ    ବୋଲାଏ ନିର୍ଗୁଣ ସଗୁଣ
ଅନନ୍ୟ ଭକ୍ତିରେ ଭକ୍ତର    ଯେ ହୁଏ ପ୍ରତ୍ୟକ୍ଷ ଗୋଚର
ସେହି ପରମ ବ୍ରହ୍ମଠାରେ    କର୍ଦ୍ଦମ ମନ ସମର୍ପିଲେ
ତେଜି ଅହଙ୍କାର ମମତ୍ୱ    ସୁଖ ଦୁଃଖ ଦ୍ୱନ୍ଦ ମୁକତ

ସେ ସମଦରଶୀ ହୋଇଲେ    ସର୍ବଘଟେ ଆତ୍ମା ଦେଖିଲେ
ଅନ୍ତର୍ମୁଖୀ ପ୍ରଶାନ୍ତ ଚିତ୍ତ    ହରିପଦେ ହୋଇ ଅର୍ପିତ
ଏ ସମୟରେ କର୍ଦ୍ଦମ    ତରଙ୍ଗ ହୀନ ଅବ୍ଧି ସମ
ଗମ୍ଭୀର ଶାନ୍ତ ଜଣାଗଲେ    ସର୍ବବନ୍ଧନୁ ମୁକ୍ତ ହେଲେ

ନିଜ ଆତ୍ମା ସର୍ବ ଭୂତରେ    ସର୍ବ ଭୂତକୁ ହରିଠାରେ
ଅବସ୍ଥିତ ହେବା ଦେଖିଲେ    ଇଚ୍ଛା ବିଦ୍ୱେଷ ବରଜିଲେ
ସମବୁଦ୍ଧି ସମଦର୍ଶନ    କର୍ଦ୍ଦମ ସର୍ବ ଶକ୍ତିମାନ
ଶ୍ରୀହରିଙ୍କ ପରମ ପଦ    ଲଭିଲେ ଶାନ୍ତିର ଆସ୍ୱାଦ

ଏମନ୍ତ ବିଦୁର ଆଗେ ମୈତ୍ରେୟ କହି ପ୍ରିୟଭାବେ
ନିର୍ମଳ ଭାଗବତ ବାଣୀ ଶୁଣି ସଂସାରୁ ତର ପ୍ରାଣୀ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ବୈୟାସିକ୍ୟାଂ ମୈତ୍ରେୟ ବିଦୁର ସଂବାଦେ କାପିଳୟୋପାଖ୍ୟାନ ନାମ ଚତୁର୍ବିଂଶୋଽଧ୍ୟାୟ ।

*******

## ପଞ୍ଚବିଂଶ ଅଧ୍ୟାୟ

### ଶୌନକ ଉବାଚ

ଅଜ ଅବ୍ୟୟ ନାରାୟଣ ଦେବାକୁ ଆତ୍ମ ତତ୍ତ୍ୱ ଜ୍ଞାନ
ମାୟାଶକ୍ତି କରି ସ୍ୱୀକାର ହେଲେ କପିଳ ଅବତାର
ସଂଖ୍ୟ ଶାସ୍ତ୍ର କଲେ ପ୍ରଚାର ଚରିତ ମାନ ହରିଙ୍କର
ମୁଁ ଶୁଣିଅଛି ବହୁବାର ତଥାପି ହେ ଯୋଗୀ ପ୍ରବର

କପିଳ ଭଗବାନଙ୍କର କୀରତି ଶୁଣି ମଧ ମୋର
ତୃପ୍ତ ନହୁଏ ମନ ପ୍ରାଣ ଶ୍ରୀହରି ସର୍ବଥା ସ୍ୱାଧୀନ
ସେ ଯୋଗମାୟା ଆଶ୍ରୟରେ ଭକ୍ତର ଇଛା ଅନୁସାରେ
ମାନବ ଶରୀର ଧାରଣ କରନ୍ତି ଯେଉଁ ଲୀଳାମାନ
ତା ସବୁ କରନ୍ତୁ ବର୍ଣ୍ଣନ ଶୁଣିବା ପାଇଁ ଶ୍ରଦ୍ଧା ମମ

### ସୂତ ଉବାଚ

ହେ ଶୌନକ ମୁନି ଆପଣ ପଚାରୁଛନ୍ତି ଯେଉଁ ପ୍ରଶ୍ନ
ବିଦୁର ସେହି ଆତ୍ମଜ୍ଞାନ ବିଷୟ ପୁଛିଥିଲେ ଜାଣ
ବ୍ୟାସଙ୍କ ସଖା ସେ ମୈତ୍ରେୟ ବିଦୁର ଠାରେ ବହି ସ୍ନେହ
ପୂର୍ବେ କହିତା ଥିଲେ ଯାହା ଏବେ କହୁଛି ଶୁଣ ତାହା

### ମୈତ୍ରେୟ ଉବାଚ

ପିତା ବନକୁ ଯିବା ପରେ ମାତାଙ୍କ ଶୁଭ କାମନାରେ
ବିନ୍ଦୁ ସରୋବର ତୀର୍ଥରେ କପିଳ ମୁନି ବାସ କଲେ

ତତ୍ତ୍ୱ ମାର୍ଗରେ ପାରଙ୍ଗମ ସେହି କପିଳ ଭଗବାନ
ଦିନେ ନିତ୍ୟ କର୍ମ ଶେଷରେ ବସିଥିଲେ କୁଶାସନରେ
ଏ କାଳେ ବ୍ରହ୍ମାଙ୍କ ବଚନ ଦେବହୂତି କରି ସ୍ମରଣ
କପିଳଙ୍କୁ ଅତି ସ୍ନେହରେ ଏହିପ୍ରକାର ପୁଛାକଲେ

ଇନ୍ଦ୍ରିୟ ଲାଳସାରେ ମୁହିଁ ଅତ୍ୟନ୍ତ ଶ୍ରାନ୍ତ ଅଛି ହୋଇ
ଇନ୍ଦ୍ରି ଅଭିଳାଷ ପୂରଣ କରି କରି ମୁଁ ବର୍ତ୍ତମାନ
ପଡି ଅଜ୍ଞାନ ଅନ୍ଧକାରେ ଦୁଃଖଭୋଗୁ ଅଛି ସଂସାରେ
ଆପଣଙ୍କ କୃପାରୁ ମମ ଏ ଜନ୍ମ ହେଉ ଶେଷ ଜନ୍ମ

ଜୀବଗଣ ସ୍ୱାମୀ ଆପଣ ଆଦି ପୁରୁଷ ଭଗବାନ
ଅଜ୍ଞାନ ଅନ୍ଧର ନୟନ ତୁମେ ଉଦିତ ସୂର୍ଯ୍ୟସମ
ହେ ଦେବ ଏ ଦେହ ଗୃହର ମୁଁ ମୋର ଯେଉଁ ଅହଙ୍କାର
ସେ ମହାମୋହକୁ ଆପଣ ବର୍ତ୍ତମାନ କର ଛେଦନ

ସ୍ୱଭକ୍ତ ସଂସାର ବୃକ୍ଷର ଛେଦନେ ଆପଣ କୁଠାର
ହେ ପ୍ରଭୋ ଶରଣ ବତ୍ସଳ ଆପଣ ଧର୍ମଜ୍ଞ ପ୍ରବର
ପ୍ରକୃତି ପୁରୁଷ ସମ୍ବନ୍ଧରେ ଜ୍ଞାନ ଲଭିବା ଉଦ୍ଦେଶ୍ୟରେ
ଚରଣେ ନେଉଛି ଶରଣ ହେ ପ୍ରଭୁ ଘେନନ୍ତୁ ପ୍ରଣାମ ।

### ମୈତ୍ରେୟ ଉବାଚ

ମଙ୍ଗଳ ପରମ ପାବନ ମୋକ୍ଷ ମାର୍ଗର ବିବର୍ଦ୍ଧନ
ସାଧୁପୁରୁଷ ଶେଷଗତି ଭକ୍ତର ହୃଦୟ ସଂପତି
ମାତାଙ୍କ ଅଭିଳାଷ ବାଣୀ ଶୁଣି କପିଳ ମହାମୁନି
ମନେ ମନେ ପ୍ରଶଂସା କଲେ ମନ୍ଦେ ହସି ଏହା କହିଲେ

### ଭଗବାନୁବାଚ

ଆଧ୍ୟାତ୍ମିକ ଯୋଗ ସାଧନ କରଇ ମାନବ କଲ୍ୟାଣ
ଦୁଃଖ ସୁଖ ହୁଏ ବିବୃତ୍ତି ହୃଦୟେ ଜନ୍ମଇ ପ୍ରଶାନ୍ତି
ଚିତ୍ତ ସଂଯମର କାରଣ ପୂର୍ବେ ମହର୍ଷି ମୁନିଗଣ
ଏହି ବିଷୟ ଶୁଣିବାକୁ ଇଛା କରିବାରୁ ତାହାଙ୍କୁ

ମୁଁ ଏହା କହିଥିଲି ଜାଣ ହେ ସ୍ୱାଧୀ ବର୍ତ୍ତମାନ ଶୁଣ
ମନ ହିଁ ଜୀବର ବନ୍ଧନ ମୁକ୍ତିର ଅଟଇ କାରଣ
ବିଷୟ ଆସକ୍ତି ବନ୍ଧନ ହରିଭକ୍ତ ମୁକ୍ତି କାରଣ
ମୁହିଁ ମୋହର ଅଭିମାନ କାମନା ଲୋଭରୁ ଏ ମନ

ବିମୁକ୍ତ ବିଶୁଦ୍ଧ ହୋଇଲେ ଦୁଃଖ ସୁଖରୁ ମୁକ୍ତି ମିଳେ
ଏହା ମନର ସମାବସ୍ଥା ଶୁଣ ଆହେ ମନୁ ଦୁହିତା
ସେତେ ବେଳରେ ଏହି ଜୀବ ଜ୍ଞାନ ବୈରାଗ୍ୟ ଭକ୍ତି ଭାବ
ହୃଦୟରେ ନିଜର ଆତ୍ମନ ନିଜ ପ୍ରକୃତି ଠାରୁ ଭିନ୍ନ

ସ୍ୱୟଂ ପ୍ରକାଶ ଉଦାସୀନ ଅଖଣ୍ଡ ଏକ ସୁକ୍ଷ୍ମତମ
ରୂପେ ଅନୁଭବ କରଇ ପ୍ରକୃତି ଶକ୍ତିହୀନ ହୋଇ
ଯୋଗୀର ଭଗବତ ପ୍ରାପ୍ତି ପାଇଁ ଶ୍ରୀହରି ଠାରେ ପ୍ରୀତି
କରିବା ଉଚିତ୍ ଅଟଇ ଏ ବିନା ଅନ୍ୟ ପଥ ନାହିଁ

ଅସାଧୁ ସହିତ ସଙ୍ଗମ ଆତ୍ମାର ବନ୍ଧନ କାରଣ
ସଙ୍ଗତି ସାଧୁ ସନ୍ଥଙ୍କର ଉନ୍ମୁକ୍ତ କରେ ମୁକ୍ତି ଦ୍ୱାର
ଯେ ଶାନ୍ତ ସରଳ ସ୍ୱଭାବ ଯାହୃଦେ ନାହିଁ ଶତ୍ରୁଭାବ
ଦୟାଳୁ କ୍ଷମା ପରାୟଣ ଚଳେ ମାନି ଶାସ୍ତ୍ର ନିୟମ

ସାଧୁ ସନ୍ଥେ କରେ ସମ୍ମାନ ସହିଷ୍ଣୁ ସୁଶୀଳ ଉତ୍ତମ
ଶତ୍ରୁ ମିତ୍ର ସମ ମତାଇ ମତେ ସର୍ବକର୍ମ ଅର୍ପଇ
ମୋ ପଦେ ଅନନ୍ୟ ଭାବରେ ଯେ ଦୃଢ଼ ପ୍ରେମ ଭକ୍ତିକରେ
ସକଳ ବନ୍ଧନ ତେଜଇ ମୋ ପବିତ୍ର ଲୀଳା ଶୁଣଇ

ମୋ ନାମ ଭଜନ କରଇ ମୋ ପ୍ରେମ ଜୀବରେ ମଜ୍ଜଇ
ସେ ଭକ୍ତ ଏ ସଂସାରର ଦୁଃଖ ତାପରୁ ହୁଏ ପାର
ସକଳ ସଙ୍ଗ ବିବର୍ଜିତ ପୁରୁଷ ସାଧୁନାମେ ଖ୍ୟାତ
ତାହାଙ୍କ ସହିତ ମିଳନ ବିଷୟା ଶକ୍ତିର କାରଣ

ସର୍ବଦୋଷ କରେ ହରଣ ହେ ମାତଃ ମନଦେଇ ଶୁଣ
ସତ୍‌ପୁରୁଷ ସମାଗମରେ ମୋ ପରାକ୍ରମ ବିଷୟରେ
ଚର୍ଚ୍ଚା ହୁଅଇ ନିରନ୍ତର ମାନସ କର୍ଣ୍ଣ ରୁଚିକର
ତା ନିତ୍ୟ ସେବନ କରିଲେ ନିବୃତ୍ତି ଦାତା ହରିଠାରେ

ଶ୍ରଦ୍ଧାଭାବ ଭକତି ପ୍ରେମ କ୍ରମେ କ୍ରମେ ହୁଏ ଜନମ
ବିଶ୍ୱର ସୃଷ୍ଟି ନିରନ୍ତରେ ଭକତି ଜନ୍ମେ ହୃଦୟରେ
ଇହ ପରଲୋକ ସୁଖରେ ବୈରାଗ୍ୟ ଆସେ ଧୀରେ ଧୀରେ
ଭକ୍ତି ଯୋଗେ ଅନାୟାସରେ ମନ ସମାହିତ ହରିଠାରେ

ମୁହିଁ ଅନ୍ତରାତ୍ମା ରୂପରେ ବିରାଜିତ ସର୍ବ ଘଟରେ
ପ୍ରକୃତି ଗୁଣରୁ ଜନମ ଶବ୍ଦାଦି ବିଷୟ ବର୍ଜନ
ବଇରାଗ୍ୟ ଜ୍ଞାନ ଯୋଗରେ ଦୃଢ଼ଭକ୍ତି କଲେ ମୋଠାରେ
ମାନବ ନିଜ ଶରୀରରେ ମତେ ଦର୍ଶନ କରିପାରେ

### ଦେବହୂତି ଉବାଚ

ଆହେ କପିଳ ଭଗବାନ କିପରି ଭକ୍ତିର ଲକ୍ଷଣ
ମୋପରି ସାଧାରଣ ନାରୀ କେଉଁ ପ୍ରକାର ଭକ୍ତି କରି
ଲଭି ପାରିବ ଯେ ନିର୍ବାଣ ନିର୍ବାଣତ ସ୍ୱୟଂ ଆପଣ
ଯଦ୍ଦ୍ୱାରା ଜନ୍ମେ ତତ୍ତ୍ୱଜ୍ଞାନ ଯା ଲକ୍ଷ୍ୟ ଭେଦୀ ବାଣ ସମ

ଭଗବତ୍ ପ୍ରାପ୍ତିକରେ ଦାନ ସେ ଯୋଗର କି ଲକ୍ଷଣ
କେତେ ଗୋଟି ଅଙ୍ଗ ତାହାର ଆହେ କପିଳ ଦାମୋଦର
ସେସବୁ ବିଷୟ ଆପଣ ବୁଝାଇ ଦିଅ ବିସ୍ତାରିଣ
ଯଦ୍ଦ୍ୱାରା ମୁହିଁ ମନ୍ଦ ମତି ସେସବୁ ବିଷୟ ଝଟତି

ଆପଣଙ୍କ ଅନୁଗ୍ରହରେ ଦୁର୍ବୋଧ୍ୟ ଯୋଗ ସହଜରେ
ବୁଝିବା ପାଇଁ ହେବିକ୍ଷମ ସଫଳ ହେବ ନାରୀ ଜନ୍ମ

### ମୈତ୍ରେୟ ଉବାଚ

ମାତାଙ୍କର ମନୋ ଭାବନା ଜାଣି କପିଳ ମହାମନା
ଜନନୀଙ୍କୁ ଅତି ସ୍ନେହରେ ସଂଖ୍ୟାତତ୍ତ୍ୱ ଜ୍ଞାନ କହିଲେ

### ଭଗବାନୁବାଚ

ଇନ୍ଦ୍ରିୟଗଣ ଅଧିଷ୍ଠାତା ପ୍ରକାଶ ଶୀଳ ଯେ ଦେବତା
ସଂଯୋଗରୁ ବିଷୟ ଜ୍ଞାନ ହୃଦୟେ ହୁଅଇ ଜନମ
ସେହି ବିଷୟର ଜ୍ଞାନରେ ବିହିତ କର୍ମ ଆଚରିଲେ
ଶ୍ରୀହରି ଶୁଦ୍ଧ ସତ୍ତ୍ୱ ମୂର୍ତ୍ତି କର୍ମ ଅନୁଗାମୀ ହୁଅନ୍ତି

ହରିରେ ନିଷ୍କାମ ପ୍ରବୃତ୍ତି ତାହା ହିଁ ଭଗବତ ଭକ୍ତି
ସାଧନା ସିଦ୍ଧି କିବା ମୁକ୍ତି ଠାରୁ ତା ଗରିୟସୀ ଅତି
ଜଠର ଅଗ୍ନି ଯେଉଁପରି ଖାଦ୍ୟ ଜୀର୍ଣ୍ଣକରେ ସେପରି
ସେ ଭକ୍ତି କର୍ମ ସଂସ୍କାରର ଆଧାର ଯେ ଲିଙ୍ଗ ଶରୀର

ଭସ୍ମ କରଇ କ୍ଷଣକରେ ଜୀବକୁ ସଂସାରୁ ଉଦ୍ଧାରେ
କେତେକ ଭାଗ୍ୟବାନ ଭକ୍ତ ପ୍ରେମି ମୋ ପାଦେ ରଖି ଚିତ୍ତ
ମୋର ପ୍ରସନ୍ନତା ନିମିତ୍ତ କରିଥାନ୍ତି କର୍ମ ସମସ୍ତ
ସେମାନେ ହୋଇ ଏକତ୍ରିତ ମୋ ଲୀଳା ପରାକ୍ରମ ନିତ୍ୟ

ଭକ୍ତିରେ ଚରଚା କରନ୍ତି ସାଯୁଜ୍ୟ ମୁକ୍ତ ନଇଛନ୍ତି
ଅରୁଣ ନଳୀନ ନୟନ ମନ ବଚନ ଅଭିରାମ
ପଦ୍ମ ବଦନ ମନୋହର ବରଦ ପରମ ସୁନ୍ଦର
ମୋର ଦିବ୍ୟ ରୂପ ଦେଖନ୍ତି ପ୍ରେମରେ ଆଳାପ କରନ୍ତି

ଏ ପ୍ରେମ ଭକ୍ତି ଆସ୍ୱାଦନ ନିମିତ୍ତ ମହଯୋଗୀ ଗଣ
ସର୍ବଦା ସ୍ପୃହା କରିଥାନ୍ତି ଇନ୍ଦ୍ରପଦ ତୁଚ୍ଛ ମଣନ୍ତି
ମନୋଜ୍ଞ ଅବୟବ ମୋର ମୋ ହାସବିଳାସ ମଧୁର
କୃପାଦୃଷ୍ଟି ମଧୁ ବଚନ ମୋ ଦିବ୍ୟ ସ୍ୱରୂପ ଉତ୍ତମ

ସେମାନଙ୍କ ଇନ୍ଦ୍ରିୟ ପ୍ରାଣ ମାନସ କରଇ ହରଣ
ମାୟାରେ ମୋହିତ ନୁହନ୍ତି ମୋର ଯେ ମାୟିକ ବିଭୂତି
ସତ୍ୟାଦି ଲୋକର ସଂପତ୍ତି ଏମାନେ ଇଛା ନକରନ୍ତି
ସିଦ୍ଧ ଯେ ଅଣିମା ପ୍ରଭୃତି ଅକ୍ଳେଶେ ହେଲେ ମଧ ପ୍ରାପ୍ତି

ତହିଁରେ ସ୍ପୃହା ନକରନ୍ତି ନ ଇଛେ ବୈକୁଣ୍ଠ ବିଭୂତି
ତଥାପି ପରମ ଧାମରେ ପ୍ରବେଶିଲେ ମୋର ଦୟାରେ
ସର୍ବସିଦ୍ଧ ଭୋଗ ସଂପତ୍ତି ଐଶ୍ୱର୍ଯ୍ୟ ସ୍ୱୟଂ ହୁଏ ପ୍ରାପ୍ତି
ଯେ ଭକ୍ତ ମୋ ଆଶ୍ରୟେ ରହି ମୋ ଚରଣ ସେବା କରଇ

ମତେ କେବଳ ଏକମାତ୍ର ପ୍ରିୟ ଆତ୍ମା ପୁତ୍ର ମଇତ୍ର
ଗୁରୁ ଇଷ୍ଟ ବୋଲି ଭାବଇ ବୈକୁଣ୍ଠ ପୁରେ ପ୍ରବେଶଇ
ସକଳ ଐଶ୍ୱର୍ଯ୍ୟ ଭୋଗଇ କାଳଚକ୍ର ଗ୍ରାସୁ ତରଇ
ଇହଲୋକ ପରଲୋକରେ ପୁଣି ଏ ଉଭୟ ଲୋକରେ

ସଦା ରହୁଥିବା ସଙ୍ଗରେ ବାସନାର ଲିଙ୍ଗ ଦେହରେ
ସଂପଦ ପଶୁ ଗୃହାଦିରେ ସର୍ବଦା ଧନ ସଂଗ୍ରହରେ
ସର୍ବଦା ଆସକ୍ତି ତେଜଇ ଭକ୍ତିରେ ମୋପାଦ ସେବଇ
ତାକୁ ମୁଁ ଏ ମୃତ୍ୟୁ ସାଗର ସଂସାରୁ କରିଦିଏ ପାର

ମୁଁ ପ୍ରକୃତି ପୁରୁଷ ଈଶ୍ୱର ଆତ୍ମା ସକଳ ପ୍ରାଣୀଙ୍କର
ମୁଁ ସାକ୍ଷାତ ଭଗବାନ ସର୍ବ ଦେବତା ମୋ ଅଧୀନ
ମୋ ବିନା ଅନ୍ୟ ଆଶ୍ରୟରେ ମରଣରୁ ମୁକ୍ତି ନ ମିଳେ
ମୋ ଭୟେ ବହଇ ପବନ ସୂର୍ଯ୍ୟ ବିତରଇ କିରଣ

ଇନ୍ଦ୍ର ଦେବ ବର୍ଷା କରଇ ଅଗ୍ନି ପ୍ରଜ୍ୱଳିତ ହୁଅଇ
ମୃତ୍ୟୁ ଦେବତା ମୋ ଭୟରେ ପ୍ରବର୍ତ୍ତଇ ନିଜ କାର୍ଯ୍ୟରେ
ଜ୍ଞାନ ବୈରାଗ୍ୟ ଭକତିରେ ପ୍ରଶାନ୍ତି ଲଭିବା ଆଶାରେ
ଯୋଗୀ ମୋର ପାଦ ପଦ୍ମରେ ଆଶ୍ରୟ ନିଏ ନିର୍ଭୟରେ

ଅନନ୍ୟ ତୀବ୍ର ଭକତିରେ ମୋ ପାଦେ ଚିତ୍ତ ସ୍ଥିର ହେଲେ
ତାହା ସଂସାରୀ ମାନବର ଅଟେ ଅତି କଲ୍ୟାଣ କର
କହଇ ଧନେଶ୍ୱର ଦାଶ କପିଳଙ୍କ ଉପଦେଶ
ମାନିଚିତ୍ତ କରି ସଂଯମ ଧ୍ୟାନ କରି ହରି ଚରଣ
ଦୁସ୍ତର ଏ ଭବସାଗର ନିଶ୍ଚୟ ହୋଇ ଯିବ ପାର

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ କାପିଳୟୋପାଖ୍ୟାନେ ନାମ ପଞ୍ଚବିଂଶୋଽଧ୍ୟାୟଂ ।

*******

## ଷଡବିଂଶ ଅଧ୍ୟାୟ

### ଶ୍ରୀଭଗବାନୁବାଚ

ପ୍ରକୃତି ପୁରୁଷ ଲକ୍ଷଣ ହେମାତଃ ଶୁଣ ବର୍ତ୍ତମାନ
ଏହା ଜାଣିଲେ ପ୍ରକୃତିର ଗୁଣରୁ ମୁକ୍ତ ହୁଏ ନର
ଛିଡଇ ସକଳ ବନ୍ଧନ ପ୍ରକାଶ ବିବେକ ବିଜ୍ଞାନ
ପୁରୁଷର ମୁକ୍ତି କାରଣ ଜନନୀ ମନଦେଇ ଶୁଣ

ଏହା ଜୀବର ଅହଙ୍କାର ଗ୍ରନ୍ଥିକୁ ଛେଦଇ ସତ୍ୱର
ଏ ବିଶ୍ୱ ଯାହାଠାରେ ବ୍ୟାପ୍ତ ଯହୁଁ ହୁଅଇ ପ୍ରକାଶିତ
ଯେ ପ୍ରକୃତିର ଊର୍ଦ୍ଧ୍ୱେସ୍ଥିତ ଅନାଦି ନିର୍ଗୁଣ ଅବ୍ୟକ୍ତ
ଯେ ସ୍ୱୟଂ ପ୍ରକାଶିତ ନିତ୍ୟ ଅନ୍ତକରଣରେ ସ୍ଫୁରିତ

ଆତ୍ମାହିଁ ପୁରୁଷ ଅଟଇ    ସେ ସର୍ବତ୍ର ବ୍ୟାପି ରହଇ
ସଂସାରରେ ବିଳାସ ନିମିତ୍ତ    ଆଗତ ଅବ୍ୟକ୍ତ ଅମିତ୍ୟ
ତ୍ରିଗୁଣା ବୈଷ୍ଣବୀ ମାୟାକୁ    ସ୍ୱେଚ୍ଛାରେ କରେ ସ୍ୱିକାରକୁ
ତ୍ରିଗୁଣାତ୍ମିକା ପ୍ରକୃତି ହିଁ    ଅନୁରୂପ ପ୍ରଜା ସୃଜଇ

ପୁରୁଷ ଏ ମାୟା ରଚିତ    ବିଶ୍ୱ ଦେଖି ହୁଏ ମୋହିତ
ଅଜ୍ଞାନେ ବିଷୟେ ମଜ୍ଜଇ    ନିଜ ସ୍ୱରୂପନ ହେଜଇ
ଏପରି ନିଜଠାରୁ ଭିନ୍ନ    ପ୍ରକୃତି କରେ ଯେଉଁ କର୍ମ
ତାକୁ ପୁରୁଷ ନିଜ କର୍ମ    ଭାବି ତହିଁ ହୁଏ ନିମଗ୍ନ

ଏହି କର୍ତ୍ତୁତ୍ୱ ଅଭିମାନ    ହେତୁର ଅକର୍ତ୍ତା ସ୍ୱାଧୀନ
ସାକ୍ଷୀ ସ୍ୱରୂପ ଭଗବାନ    ପୁରୁଷ ମରଣ ଜନମ
ବନ୍ଧନର ହୁ ଏ ଅଧୀନ    ହେ ମାତ ମନଦେଇ ଶୁଣ
କାର୍ଯ୍ୟ ସ୍ୱରୂପ ଏହି ଦେହ    କାରଣ ସ୍ୱରୂପ ଇନ୍ଦ୍ରିୟ

କର୍ତ୍ତା ଇନ୍ଦ୍ରିୟ ଅଧିଷ୍ଠାତା    ବାୟୁ ସୂର୍ଯ୍ୟ ଆଦି ଦେବତା
ଯେଉଁ ପାପ ପୁଣ୍ୟ କରଇ    ପୁରୁଷ ତାହାକୁ ଭୁଞ୍ଜାଇ
ପ୍ରକୃତିରୁ ଭିନ୍ନ ବୋଲାଏ    ମାତ୍ର ପ୍ରକୃତି ମଧ୍ୟେ ରହେ
ତାହା ହିଁ ଏ ସୁଖ ଦୁଃଖର    କାରଣ ଅଟେ ପୁରୁଷର

### ଦେବହୂତି ଉବାଚ

ଶୁଣ ହେ ପୁରୁଷ ଉତ୍ତମ    ଏହି ବିଶ୍ୱର ସ୍ଥୁଳ ସୂକ୍ଷ୍ମ
କାର୍ଯ୍ୟ ସ୍ୱରୂପ ଯେ ଅଟଇ    ଯେ ସର୍ବକାରଣ ବୋଲାଇ
ସେ ପ୍ରକୃତି ପୁରୁଷ ଲକ୍ଷଣ    ମତେ କହନ୍ତୁ ବର୍ତ୍ତମାନ

### ଭଗବାନୁବାଚ

ଯେ ନିତ୍ୟ ଅବ୍ୟକ୍ତ ତ୍ରିଗୁଣ    ସ୍ୱରୂପ କାର୍ଯ୍ୟ ଓ କାରଣ
ଯେ ସ୍ୱୟଂ ଅଟେ ନିର୍ବିଶେଷ    ତଥାପି ସମସ୍ତ ବିଶେଷ
ଧର୍ମର ଆଶ୍ରୟ ଅଟଇ    ପ୍ରଧାନ ନାମ ତତ୍ତ୍ୱ ସେହି
ମୂଳ ପ୍ରକୃତି ବୋଲି ଜାଣ    ଏହାକରେ ବିଶ୍ୱ ନିର୍ମାଣ

ପଞ୍ଚ ମହାଭୂତ ତନ୍ମାତ୍ର    ଚାରି ଅନ୍ତକରଣ ସହିତ
ଦଶେନ୍ଦ୍ରିୟ ଏଚବିଶ    ତତ୍ତ୍ୱକୁ ବିଜ୍ଞାନୀ ପୁରୁଷ
ପ୍ରକୃତିର କର୍ମ କହନ୍ତି    ଶୁଣହେ ମାତା ଦେବହୂତି
ପୃଥ୍ୱୀ ସଲିଳ ତେଜବାତ    ଗଗନ ପଞ୍ଚ ମହାଭୂତ

ଗନ୍ଧ ରୂପ ରସ ଶବଦ    ସ୍ପର୍ଶ ଏ ତନ୍ମାତ୍ରାର ଭେଦ
କର୍ଣ୍ଣ ତ୍ୱଚା ଜିହ୍ୱା ନୟନ    ନାସିକା ରସନା ବଚନ
ଉପସ୍ଥ ପାୟୁ ଯେ ଚରଣ    ହସ୍ତ ଏ ଦଶେନ୍ଦ୍ରିୟ ଜାଣ
ବୁଦ୍ଧି ଚିତ୍ତ ଅହଙ୍କାର ମନ    ଏହା ଚାରି ଅନ୍ତକରଣ

ଏ ମନ ଯାହା ସଂକଳ୍ପଇ    ବୁଦ୍ଧି ତା ନିଶ୍ଚୟ କରଇ
ଚିନ୍ତା ଚିତ୍ତର ଅଟେ ଧର୍ମ    ଅହଙ୍କାରର ଅଭିମାନ
ଏପରି ତତ୍ତ୍ୱ ଜ୍ଞାନୀଗଣ    ସଗୁଣ ବ୍ରହ୍ମର ଲକ୍ଷଣ
ସ୍ୱରୂପ ଏ ଚବିଶ ତତ୍ତ୍ୱ    କରି ଅଛନ୍ତି ନରୂପିତ

କାଳକୁ ପଞ୍ଚବିଂଶ ତତ୍ତ୍ୱ    ବୋଲି କହିଥାନ୍ତି ପଣ୍ଡିତ
ପୁଣି କେତେକ ଜ୍ଞାନୀ ଜନ    କାଳକୁ ପୁରୁଷରୁ ଭିନ୍ନ
ହରିଙ୍କ ସଂହାରିଣୀ ଶକ୍ତି    ବୋଲି ହୃଦରେ ବିଚାରନ୍ତି
ମାୟିକ ଦେହ ଗୃହାଦିରେ    ମୋହିତ ହୋଇ ଅହଙ୍କାରେ

ନିଜକୁ କରତା ଭାବଇ    ଏ ଜୀବ କାଳକୁ ଡରଇ
ଯଥା ସରସୀ ସ୍ଥିର ଜଳେ    ରୂପ ପ୍ରକାଶେ ବାୟୁବଳେ
ସେପରି ପ୍ରେରଣାରେ ଯାର    ନିଃବିଶେଷ ଯେ ପ୍ରକୃତିର
ତ୍ରିଗୁଣ ସାମ୍ୟ ଅବସ୍ଥାରେ    ଗତି ଜନ୍ମଇ ଧୀରେ ଧୀରେ

ତାକୁ କାଳବୋଲି କହନ୍ତି    ହେ ମନୁ କନ୍ୟା ଦେବହୂତି
ଏ ପତି ସେ ନିଜ ମାୟାରେ    ପ୍ରାଣୀର ବାହ୍ୟ ଆଭ୍ୟନ୍ତରେ
ଅନ୍ତର୍ଯ୍ୟାମୀ ପୁରୁଷ ରୂପେ    ବ୍ୟାପି ରହିଛି କାଳକଳ୍ପେ
କେବଳ ଭଗବାନ ସେହି    ପଚିଶ ତତ୍ତ୍ୱଯେ ବୋଲାଇ

ସେ ପରମାତ୍ମା ଯେବେକରେ    ଜଗତ ସର୍ଜନା ଇଛାରେ
ଜୀବର ଅଦୃଷ୍ଟ ବଶରେ    ବିକ୍ଷୋଭିତ ନିଜ ମାୟାରେ
ଚିତ୍ ଶକ୍ତି ବୀର୍ଯ୍ୟକୁ ସ୍ଥାପିଲେ    ପ୍ରକୃତି ମଧ୍ୟରୁ ସେବେଳେ
ଲୟ ବିକ୍ଷେପାଦି ରହିତ    ସଂସାର ଅଙ୍କୁର ସ୍ୱରୂପ

ହିରଣ୍ୟ ମୟ ମହତତ୍ତ୍ୱ    ଲଭିଲା ଜନମ ସାକ୍ଷାତ
ନିଜର ପ୍ରକାଶ ନିମିତ୍ତ    ନିଜ ସ୍ୱରୂପ ଆଚ୍ଛାଦିତ
କରୁଥିବା ଲୟ କାଳର    ଭୀଷଣ ଘୋର ଅନ୍ଧକାର
ମହତତ୍ତ୍ୱ ନିଜ ତେଜରେ    ପାନ କରିଦେଲା ସତ୍ତ୍ୱରେ

ସତ୍ତ୍ୱମୟ ସ୍ୱଚ୍ଛ ପ୍ରଶାନ୍ତ
ହରିଙ୍କ ଉପଲବ୍ଧି ସ୍ଥାନ
ଭୂମି ପ୍ରଭୃତି ପଦାର୍ଥର
ତଥା ଏହି ଚିତ୍ତ ନିର୍ମଳ
ଚିତ୍ତ ଅଟଇ ମହତତ୍ତ୍ୱ
ଶ୍ରୀବାସୁ ଦେବ ତାର ନାମ
ସ୍ପର୍ଶ ପୂର୍ବରୁ ଯଥା ନୀର
ନିର୍ବିକାର ଶାନ୍ତ ଶୀତଳ

ଭଗବାନଙ୍କ ବୀର୍ଯ୍ୟରୂପ
ଏହା କ୍ରିୟା ଶକ୍ତି ପ୍ରଧାନ
ସାତ୍ତ୍ୱିକ ରାଜସ ତାମସ
ତହୁଁ କ୍ରମେ ଇନ୍ଦ୍ରିୟ ମନ
ଚିତ୍ଶକ୍ତି ଜାତ ମହତତ୍ତ୍ୱ
ତହିଁରୁ ତ୍ରି ଅହଙ୍କାର ଜନ୍ମ
ଭେଦରେ ହୁଅଇ ପ୍ରକାଶ
ମହା ପଞ୍ଚଭୂତ ଜନମ

ଇନ୍ଦ୍ରିୟ ମନ ପଞ୍ଚଭୂତ
ସହସ୍ରଶିର ସୁଶୋଭିତ
କର୍ତ୍ତାରୂପେ ଏ ଦେବଗଣ
କାର୍ଯ୍ୟ ସ୍ୱରୂପେ ପଞ୍ଚଭୂତ
ଅହଙ୍କାର ତତ୍ତ୍ୱ ସହିତ
ସଙ୍କର୍ଷଣଦେବ ଅନନ୍ତ
ଇନ୍ଦ୍ରିୟ ସ୍ୱରୂପେ କରଣ
ତ୍ରିଗୁଣେ ପ୍ରାଣୀକୁ ବିମୋହିତ

ସତ୍ତ୍ୱାଦି ଗୁଣେ ଯୁକ୍ତ ହୋଇ
ବୈକାରିକ ଅହଙ୍କାରର
ସଂକଳ୍ପ ବିକଳ୍ପ କାମନା
କେବଳ ଏହି ମନତତ୍ତ୍ୱ
ଶାନ୍ତ ଘୋର ମୂଢ଼ ବୋଲାଇ
ବିକୃତିରୁ ଜନ୍ମ ମନର
ମନର ଧର୍ମ ଅଟେ ସିନା
ଉଦ୍ରୀଶ ଅନିରୁଦ୍ଧ ଖ୍ୟାତ

ଶାରଦ ସୁନୀଳ କମଳ
ଏହି ଅନିରୁଦ୍ଧଙ୍କୁ ଯୋଗୀ
ସଦା ଆରାଧନା କରନ୍ତି
ତୈଜସା ହଙ୍କାର ବିକୃତ
ବର୍ଣ୍ଣ ମନୋରମ ଶ୍ୟାମଳ
ମନକୁ କ୍ରମଶ ନିରୋଧି
ଶୁଣ ଜନନୀ ଦେବହୂତି
ତହିଁରୁ ଜାତ ବୁଦ୍ଧି ତତ୍ତ୍ୱ

ଇନ୍ଦ୍ରିୟ ଗଣଙ୍କୁ ସାହାଯ୍ୟ
ନିଦ୍ରା ସ୍ମରଣ ବିପର୍ଯ୍ୟୟ
ବୁଦ୍ଧିର ଅଟଇ ଲକ୍ଷଣ
ଏ ସର୍ବ ଇନ୍ଦ୍ରିୟ ସମସ୍ତ
ବୁଦ୍ଧିର ଅଟଇ ଯେ କାର୍ଯ୍ୟ
ପୁଣି ଯେ ସଂଶୟ ନିଶ୍ଚୟ
ଏ ବୁଦ୍ଧି ତତ୍ତ୍ୱ ହିଁ ପ୍ରଦ୍ୟୁମ୍ନ
ତୈଜସ ଅହଙ୍କାରୁ ଜାତ

କର୍ମ ଇନ୍ଦ୍ରିୟ ଜ୍ଞାନେନ୍ଦ୍ରିୟ
ପ୍ରାଣର ଶକ୍ତି ଅଟେ କର୍ମ
ଭଗବତ୍ ଚେତନା ଶକ୍ତିର
ବିକୃତିରୁ ଶବ୍ଦ ତନ୍ମାତ୍ର
ଦୁଇ ପ୍ରକାର ଏ ଇନ୍ଦ୍ରିୟ
ବୁଦ୍ଧି ଅଟଇ ଜ୍ଞାନ ଜାଣ
ପ୍ରେରଣେ ତାମସା ହଙ୍କାର
ହୋଇଲା ତକ୍ଷଣେ ସମ୍ଭୂତ

ଶବଦ ଆକାଶର ଗୁଣ
ଆକାଶ ସୂକ୍ଷ୍ମଗୁଣ ସିନା
ଅର୍ଥର ପ୍ରକାଶନ ପୁନ
ପ୍ରାଣୀକୁ ଆଶ୍ରୟ ପ୍ରଦାନ
ଶ୍ରବଣ କରଇ ଗ୍ରହଣ
ଦିଅଇ ବକ୍ତାର ସୂଚନା
ଶବଦ ତନ୍ମାତ୍ରା ଲକ୍ଷଣ
ବାହ୍ୟ ଅନ୍ତରେ ଅବସ୍ଥା

ଆଶ୍ରୟ ପ୍ରଣେନ୍ଦ୍ରିମନ
କାଳର ଗତିରେ ବିକୃତ
ତହୁଁ ବାୟୁତ୍ୱଚା ଜନମ
ମୃଦୁ ଶୀତ ଉଷ୍ଣ କଠିନ
ଆକାଶ ବୃତ୍ତିର ଲକ୍ଷଣ
ଶବଦୁ ସ୍ପର୍ଶ ହୁଏ ଜାତ
ସ୍ପର୍ଶ ସେ କରଇ ଗ୍ରହଣ
ଅଟେ ସ୍ପର୍ଶମାତ୍ରା ଲକ୍ଷଣ

ବୃକ୍ଷ ଶାଖାଦି ସଂଚାଳନ
ନାସିକାରେ ଗନ୍ଧ ଗ୍ରହଣ
ଇନ୍ଦ୍ରିୟେ ଦେବ କର୍ମ ଶକ୍ତି
ଦୈବ ପ୍ରେରଣାରେ ବିକୃତ
କର୍ଣ୍ଣର ଶବଦ ଗ୍ରହଣ
ସବୁ ସ୍ଥାନରେ ଅବସ୍ଥାନ
ଅଟଇ ଯେ ବାୟୁର ବୃତ୍ତି
ବାୟୁରୁ ରୂପ ହୁଏ ଜାତ

ତେଜ ରୂପାନୁଭୂତି ପାଇଁ
ଦ୍ରବ୍ୟାକୃତି ଗୁଣ ସୂଚନ
ତେଜର ସାମାନ୍ୟ ଲକ୍ଷଣ
କ୍ଷୁଧା ତୃଷା ପାନ ଭୋଜନ
ନେତ୍ର ଇନ୍ଦ୍ରିୟ ଜନ୍ମିଛଇ
ଦ୍ରବୀ ବିଷୟେ ଜ୍ଞାନ ଦାନ
ରୂପ ତନ୍ମାତ୍ରା ବୃତ୍ତି ଜାଣ
ପୋଷଣ ଶୈତ୍ର୍ୟ ନିବାରଣ

ଖାଦ୍ୟ ପାଚନ ତେଜ ବୃତ୍ତି
ରସ ତନ୍ମାତ୍ରୁ ରସଗ୍ରାହୀ
ବିଶୁଦ୍ଧ ସୁଶୀତଳ ଜଳ
କଷାୟ ମଧୁ କଟୁ ପିତା
ଶୁଣ ହେ ମାତା ଦେବହୂତି
ରସନା ଇନ୍ଦ୍ରିୟ ଜନ୍ମଇ
ରସର ଆଧାର କେବଳ
ଲବଣ କ୍ଷାର ଓ ଅମ୍ଳତା

ଭୌତିକ ପଦାର୍ଥ ଯୋଗରେ
ତୃଷା ନିବାରଣ ଆର୍ଦ୍ରତା
ତୃଷ୍ଟୀକରଣ ଜୀବ ଦାନ
ଏହି ସକଳ ଜଳ ବୃତ୍ତି
ଜନମ ହୁଅଇ ଜଳରେ
ବସ୍ତୁ ଗଣରେ କୋମଳତା
ତପତି ନିବାରଣ ପୁଣ
ବୁଝ ଜନନୀ ଦେବହୂତି

ରସ ତନମାତ୍ରା ବିକୃତ
ଘ୍ରାଣେନ୍ଦ୍ରିୟ ନାସା ଜନମ
ଗନ୍ଧ ଅଟେ ଏକ ପ୍ରକାର
ମୃଦୁ ତୀବ୍ର ଅମ୍ଳ ଦୁର୍ଗନ୍ଧ
ଗନ୍ଧରୁ ପୃଥ୍ୱୀ ହୁଏ ଜାତ
ଗନ୍ଧକୁ କରଇ ଗ୍ରହଣ
ମାତ୍ର ଯୋଗେ ଅନ୍ୟ ବସ୍ତୁର
ପୁଣି ଗନ୍ଧ ପୁଣି ସୁଗନ୍ଧ

ହୁଅଇ ବିଭିନ୍ନ ପ୍ରକାରେ ଶୁଣ ଜନନୀ ମନ ସ୍ଥିରେ
ସାକାର ପ୍ରତିମା ନିର୍ମାଣ ପରମ ବ୍ରହ୍ମ ଆରାଧନ
ସଲିଳ କରିବା ଧାରଣ ଆକାଶୁ ପୃଥକ୍ ଅବସ୍ଥାନ
ପ୍ରାଣୀର ଗୁଣ ପ୍ରକାଶନ ଏ ସବୁ ପୃଥ୍ୱୀ ତତ୍ତ୍ୱ କର୍ମ

ପୃଥ୍ୱୀ ତତ୍ତ୍ୱର କାର୍ଯ୍ୟ ଏହି ଜ୍ଞାନୀଏ ଯାଇଛନ୍ତି କହି
ଆକାଶର ଶବଦ ଗୁଣ ଶ୍ରବଣ କରଇ ଗ୍ରହଣ
ବାୟୁର ଯେଉଁ ସ୍ପର୍ଶଗୁଣ ତ୍ୱଗିନ୍ଦ୍ରିୟ କରେ ଗ୍ରହଣ
ତେଜର ଗୁଣ ଅଟେ ରୂପ ଗ୍ରହଣ କରଇ ତା ନେତ୍ର

ସଲିଳର ଯେ ରସ ଗୁଣ ରସନା କରେ ଆସ୍ୱାଦନ
ପୃଥିବୀର ଯେ ଗନ୍ଧଗୁଣ ନାସିକା କରଇ ଗ୍ରହଣ
ଏକ ମହାଭୂତ ଗୁଣ ଯେହି ପର ମହାଭୂତେ ରହଇ
ଆକାଶେ ରହେ ଶବ୍ଦଗୁଣ ବାୟୁରେ ଶବ୍ଦ ସ୍ପର୍ଶ ପୁଣ

ତେଜରେ ଶବ୍ଦ ରୂପ ସ୍ପର୍ଶ ଜଳେ ଶବ୍ଦ ରୂପ ସ୍ପର୍ଶ ରସ
ଗନ୍ଧ ଶବ୍ଦ ସ୍ପର୍ଶ ରସ ପୃଥ୍ୱୀରେ ରହଇ ବିଶେଷ
ମହତତ୍ତ୍ୱାଦି ସପ୍ତ ତତ୍ତ୍ୱ ନୋହି ପରସ୍ପର ମିଳିତ
ପୃଥକ-କରନ୍ତେ ଅବସ୍ଥାନ ଆଦି କାରଣ ନାରାୟଣ

କାଳ ସତ୍ତ୍ୱ ଆଦି ସଙ୍ଗରେ ସେ ତତ୍ତ୍ୱେ ପ୍ରବେଶ କରିଲେ
ତେଣୁ ସର୍ବତତ୍ତ୍ୱ କ୍ଷୋଭିତ ପରସ୍ପର ହୋଇ ମିଳିତ
ଏକଇ ମହା ଅଣ୍ଡ ଜାତ ବିରାଟ ତହୁଁ ପ୍ରକାଶିତ
ଏ ଅଣ୍ଡର ନାମ 'ବିଶେଷ' ତହିଁ ଭୁବନ ଚତୁର୍ଦ୍ଦଶ

ଏହି ଚତୁର୍ଦ୍ଦିଗ କ୍ରମଶଃ ଜଳ ଅଗ୍ନି ବାୟୁ ଆକାଶ
ଅହଙ୍କାର ମହତତ୍ତ୍ୱରେ ବେଢ଼ିଗଲେ ଚଉ ପାଶରେ
ପ୍ରତି ତତ୍ତ୍ୱର ପରିମାଣ ପୂର୍ବ ତତ୍ତ୍ୱର ଦଶଗୁଣ
ପ୍ରକୃତିର ତତ୍ତ୍ୱ ସପ୍ତମ ରହିଅଛି ଯେ ଆବରଣ

ସେ ଅଣ୍ଡ ମଧ୍ୟରୁ ଉଠିଲେ ଅଣ୍ଡ ମଧ୍ୟେ ଥିବା ବେଳରେ
ବହୁ ଛିଦ୍ର ଭେଦ କରିଲେ ମୁଖ ପ୍ରକଟ ପ୍ରଥମରେ
ବାଗିନ୍ଦ୍ରିୟ ସହ ବଦନ ପ୍ରକାଶିତ ହେଲା ପ୍ରଥମ
ବାଗିନ୍ଦ୍ରିୟ ବାଗଧିଷ୍ଠାତା ଜନ୍ମିଲେ ଅନଳ ଦେବତା

ନାସା ଛିଦ୍ର ପ୍ରାଣ ସହିତ ଘ୍ରାଣ ଇନ୍ଦ୍ରିୟ ହେଲା ଜାତ
ଘ୍ରାଣରୁ ତାର ଅଧିଷ୍ଠାତା ପ୍ରକଟିଲେ ବାୟୁ ଦେବତା
ଚକ୍ଷୁ ଗୋଲକ ନେତ୍ରେନ୍ଦ୍ରିୟ ଅଧିଷ୍ଠାତା ସୂର୍ଯ୍ୟ ଉଦୟ
କର୍ଣ୍ଣ ଛିଦ୍ର କର୍ଣ୍ଣ ଇନ୍ଦ୍ରିୟ ଅଧିଶ୍ୱର ଦିଗ ସମୂହ

ତଚା ଶ୍ମଶ୍ରୁ ଓ ରୋମମାନ ଶିରରେ କେଶ ହେଲା ଜନ୍ମ
ତ୍ୱଗିନ୍ଦ୍ରିୟର ଅଧିଷ୍ଠାତା ପ୍ରକଟ ଅନ୍ନାଦି ଦେବତା
ଲିଙ୍ଗ ଚକ୍ର ବୀର୍ଯ୍ୟ ପୁନ ଆପୋଦେବ ହେଲେ ଜନମ
ଗୁହ୍ୟ ଚକ୍ର ତହୁଁ ଅପାନ ମୃତ୍ୟୁ ଦେବତା ହେଲେ ଜନ୍ମ

ଏ ମୃତ୍ୟୁ ଦେବ ସବୁ କାଳେ ପ୍ରାଣୀଙ୍କୁ ଭୀତ ତ୍ରସ୍ତ କରେ
ହସ୍ତ ହସ୍ତରୁ ବଳ ପୁନ ହସ୍ତ ଦେବତା ଇନ୍ଦ୍ର ଜନ୍ମ
ଚରଣ ଗମନର ଶକ୍ତି ଚରଣେନ୍ଦ୍ରିୟ ଅଧିପତି
ବିଷ୍ଣୁ ଯେ ଲଭିଲେ ଜନମ ଶୁଣ ଜନନୀ ଦେଇମନ

ବିରାଟର ନାଡ଼ି ପ୍ରକଟ ତହିଁରେ ଜନମ ରକତ
ସରିତ ହେଲା ପ୍ରବାହିତ ତହୁଁ ଉଦରେ ହେଲା ଜାତ
କ୍ଷୁଧା ପିପାସା ପାରାବାର ଜନମ ହୋଇଲା ଆବର
ହୃଦୟ ହୃଦୟରୁ ମନ ମନ ଦେବତା ଚନ୍ଦ୍ର ଜନ୍ମ

ବୁଦ୍ଧି ବୁଦ୍ଧିର ଅଧିପତି ବିଧାତା ହୋଇଲେ ଉତ୍ପତ୍ତି
ରୁଦ୍ର ଦେବତା ଅହଂକାର ଚିତ୍ତ ଚିତ୍ତର ଅଧିଶ୍ୱର
କ୍ଷେତ୍ରଜ୍ଞ ହେଲେ ପ୍ରକାଶିତ ଶୁଣ ହେ ଦେବହୂତି ମାତ
ସର୍ବ ଦେବତା ଜନ୍ମ ହୋଇ ତାଙ୍କୁ ନ ପାରିଲେ ଉଠାଇ

ତେଣୁ ଉଠାଇବା ନିମିତ୍ତ ଇନ୍ଦ୍ରିୟ ମାନଙ୍କ ସହିତ
ଦେବତା ନିଜ ଜନ୍ମ ସ୍ଥାନେ ପ୍ରବେଶ କରିଲେ ତକ୍ଷଣେ
ଅଗ୍ନି ଦେବ ବାଣୀ ସଙ୍ଗରେ ପ୍ରବେଶ କଲେ ବଦନରେ
ଘ୍ରାଣ ସହ ଦେବ ପବନ ନାସା ଛିଦ୍ରେ କରେ ଗମନ

ସୂର୍ଯ୍ୟ ଦୃଷ୍ଟି ସହ ନେତ୍ରରେ ଦିଗ ସଙ୍ଗେ କର୍ଣ୍ଣ ଶ୍ରୋତରେ
ଔଷଧିଏ ରୋମ ସଙ୍ଗରେ ପ୍ରବେଶ କରିଲେ ତ୍ୱଚାରେ
ଆପ୍‌ଦେବତା ବୀର୍ଯ୍ୟ ଘେନି ଲିଙ୍ଗରେ ପ୍ରବେଶିଲେ ପୁଣି
ମୃତ୍ୟୁ ଯେ ଆପାନ ବାୟୁରେ ଆପ ବୀର୍ଯ୍ୟ ସ ହ ଲିଙ୍ଗରେ

ବଳ ସହ ଉନ୍ଦ୍ର ହସ୍ତରେ ଗତି ସଙ୍ଗେ ବିଷ୍ଣୁ ପାଦରେପ୍ସ
ନଦୀଏ ରୁଧିର ସଙ୍ଗରେ ପ୍ରବେଶ କରିଲେ ନାଡିରେ
କ୍ଷୁଧା ତୃଷା ଘେନି ସାଙ୍ଗରେ ପ୍ରବେଶ କରିଲେ ସାଗରେ
ମନ ସଙ୍ଗେ ଚନ୍ଦ୍ର ହୃଦରେ ବୁଦ୍ଧି ଘେନି ବ୍ରହ୍ମା ଚିତ୍ତରେ

ଅହଙ୍କାର ସହିତ ରୁଦ୍ରେ ପ୍ରବେଶ କରିଲେ ଯେ ହୃଦେ
ତଥାପି ପୁରୁଷ ବିରାଟ କେବେ ହେ ନୋହିଲେ ପ୍ରକଟ
କ୍ଷେତ୍ରଜ୍ଞ ଚିତ୍ତ ସାଙ୍ଗରେ ପ୍ରବେଶ କରନ୍ତେ ହୃଦରେ
ବିରାଟ ପୁରୁଷ ସତ୍ୱରେ ସଲିଳ ମଧ୍ୟରୁ ଉଠିଲେ

କ୍ଷେତ୍ରଜ୍ଞ ଯେ ପରମ୍ଭାର ବିନା ସାହାଯ୍ୟେ ଯେ ପ୍ରକାର
ସୁପ୍ତ ପ୍ରାଣୀକୁ ବୁଦ୍ଧି ମନ ଉଠାଉବା ଯାଇ ଅକ୍ଷମ
ବିରାଟ ପୁରୁଷକୁ ତେସନ ହେ ମାତ ମନଦେଇ ଶୁଣ
ସେପରି କ୍ଷେତ୍ରଜ୍ଞ ବ୍ୟତୀତ ଜଳରୁ ନ ହେଲେ ଉତ୍ଥିତ

କ୍ଷେତ୍ରଜ୍ଞ ରୂପେ ଆତ୍ମାଥାଇ ସାକ୍ଷୀ ସ୍ୱରୂପରେ ଦେଖଇ
କାର୍ଯ୍ୟ କାରଣ ଇନ୍ଦ୍ରିଗଣ ଆତ୍ମାକୁ କରାନ୍ତି ଭ୍ରମଣ
ହେତୁ ବଇରାଗ୍ୟ ଭକ୍ତିରେ ଜ୍ଞାନ ଚିତ୍ତ ଏକାଗ୍ରରେ
ପରମାତ୍ମା ହୁଏ ସାକ୍ଷାତ ଶରୀର ମଧ୍ୟେ ବିରାଜିତ
କ୍ଷେତ୍ରଜ୍ଞଙ୍କୁ ସଦା ଚିନ୍ତକ କରିବା ଅତି ପ୍ରୟୋଜନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ କପିଳ ଦେବହୂତି ସମ୍ବାଦେ ନାମ ଷଡବିଂଶୋଽଧ୍ୟାୟଃ ।

*******

## ସପ୍ତବିଂଶ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

ହସି କହନ୍ତି ଭଗବାନ ଜନନୀ ଶୁଣ ମୋ ବଚନ
କର୍ଗୁଣ ନିତ୍ୟ ନିରଞ୍ଜନ ଅଜ ଅବ୍ୟୟ ନାରାୟଣ
ଦେହ ଧର୍ମରେ ବନ୍ଧି ହୋଇ ଦେହକୁ ଭାବନ୍ତି ମୁଁ ମୁହିଁ
ଏଣୁ ଅଜ୍ଞାନ ଅନ୍ଧକାରେ ଜନମି ନାନାଦି ଯୋନିରେ

ଭ୍ରମନ୍ତି ସଂସାର ଚକ୍ରରେ ନିଜ ମହିମା ନ ସ୍ମରେ
ସ୍ୱପ୍ନ ଦୃଷ୍ଟ ପଦାର୍ଥମାନ ଯଥା ମିଥ୍ୟା ଦୁଃଖ କାରଣ
ସେପରି ଶୋକ ଅହଙ୍କାର ଜନ୍ମ ମରଣ ସଂସାରର
ପ୍ରକୃତ ଅଟଇ ଅସତ୍ୟ ଏ ଜୀବ ଅଜ୍ଞାନ ବଶତ

ବିଷୟ ଚିନ୍ତାରେ ମଜ୍ଜଇ ଏ ଭବ ଚକ୍ରରେ ଘୁରଇ
ତିବ୍ର ବୈରାଗ୍ୟ ଭକତିରେ ଚଞ୍ଚଳ ଚିତ୍ତ ଧୀରେ ଧୀରେ
ସଂଯତ କରିବା ଉଚିତ ଶୁଣ ହେ ଦେବ ହୂତି ମାତ୍ର
ଯମାଦି ଯୋଗ ସାଧନରେ ଅଭ୍ୟାସି ଶ୍ରଦ୍ଧା ସହକାରେ

ଚିତ୍ତକୁ ଏକାଗ୍ର କରିବ ସ୍ଥାପି ମୋ ଠାରେ ପ୍ରେମଭାବ
ମୋର ଦିବ୍ୟ ଲୀଳା ଶ୍ରବଣ ସର୍ବ ଜୀବେ ସମଦର୍ଶନ
ଶତ୍ରୁ ମିତ୍ରଭାବ ତେଜିବ ଦୁର୍ଜନ ସଙ୍ଗ ନ କରିବ
ବ୍ରହ୍ମ ଚର୍ଯ୍ୟ ମୌନ ବ୍ରତରେ କର୍ମ ସମର୍ପି ମୋ ପାଦରେ

ପ୍ରାରବ୍ଧରେ ଯାହା ମିଳିବ ତହିଁରେ ସନ୍ତୁଷ୍ଟି ହୋଇବ
ପରମିତ ପାନ ଭୋଜନ ସର୍ବ ପ୍ରାଣୀ ହିତ ସାଧନ
ଦୟା ମୈତ୍ରିଭାବ ତୋଷଣ ନିର୍ଜନ ସ୍ଥାନେ ଅବସ୍ଥାନ
ପ୍ରକୃତି ପୁରୁଷ ସ୍ୱରୂପ ଅନୁଭବ କଲେ ଯଥାର୍ଥ

ତତ୍ତ୍ୱଜ୍ଞାନ ହେଲେ ଉଦୟ ସ୍ତ୍ରୀପୁତ୍ର ସଂପଦ ଯେ ଦେହ
ମିଥ୍ୟା ମମତା ଅହଙ୍କାର ଅଭିନିବେଶ ହେବ ଦୂର
ଆକାଶେ ଯେପରି ଭାସ୍କର ହୁଅନ୍ତ ପ୍ରତ୍ୟକ୍ଷ ଗୋଚର
ବିଶୁଦ୍ଧ ଅନ୍ତକରଣରେ ଆତ୍ମାର ଦରଶନ ମିଳେ

ଉପାଧି ଶୂନ୍ୟ ପରଂବ୍ରହ୍ମ ସେ ନିର୍ବିକାର ନିରଞ୍ଜନ
ଜଗତ୍ କରଣ ପ୍ରକୃତିର ମହତତ୍ତ୍ୱାଦିର ଆଧାର
କାର୍ଯ୍ୟ ମଧରେ ପ୍ରକାଶିତ କାର୍ଯ୍ୟ କାରଣେ ପରିବ୍ୟାପ୍ତ
ପରମାନନ୍ଦ ପରିପୂର୍ଣ୍ଣ ଏହି ଅଦ୍ୱୟ ପରଂବ୍ରହ୍ମ

ପଦ ଆତ୍ମଜ୍ଞ ମୁନିଗଣ ଲାଭକରନ୍ତି ତତ୍କ୍ଷଣ
ସୂର୍ଯ୍ୟ ଉଇଁଲେ ଆକାଶରେ ପ୍ରତିବିମ୍ବ ପଡେ ଜଳରେ
ତହୁଁ ପ୍ରତିଫଳିତ ହୋଇ ପୁଣି ଗୃହ କାନ୍ଥେ ଦିଶଇ
ଗୃହକୋଣରେ ଥିବା ବ୍ୟକ୍ତି କାନ୍ଥରେ ପ୍ରତିବିମ୍ବ ଦେଖି

ଜଳୁ ଆସୁଛି ବିଚାରଇ ଜଳସ୍ଥ ପ୍ରତିବିମ୍ବ ଯେହି
ତାହା ଆକାଶରୁ ଆସଇ ବୋଲି ଜ୍ଞାନୀ ଜାଣି ପାରଇ
ସେପରି ବ୍ରହ୍ମପଦ ପ୍ରାପ୍ତ ସର୍ବାନ୍ତର୍ଯ୍ୟାମୀ ମୁନି ସନ୍ଥ
ଶରୀର ମନ ଇନ୍ଦ୍ରିୟରେ ପୁଣି ତିନି ଅହଙ୍କାରରେ

ପରମାତ୍ମା ପ୍ରତିବିମ୍ବ ହୃଦୟେ କରେ ଅନୁଭବ
ମହାଭୂତ ସୂକ୍ଷ୍ମ ଶବ୍ଦାଦି ପୁଣି ଇନ୍ଦ୍ରିୟ ମନୋବୁଦ୍ଧି
ପ୍ରଗାଢ଼ ନିଦ୍ରା ସମୟରେ ଲୀନ ହୋଇଲେ ଧୀରେ ଧୀରେ
ସର୍ବ ଅହଙ୍କାର ସହିତ ସ୍ୱୟଂ ଆତ୍ମା ଥାଏ ଜାଗ୍ରତ

ଜାଗ୍ରତ ଅବସ୍ଥାରେ ଏହି ଆତ୍ମା ସର୍ବ ଦୃଶ୍ୟ ଦେଖଇ
ଗାଢ଼ ନିଦ୍ରା ବେଳେ ନିଜର ଉପାଧି ରୂପ ଅହଙ୍କାର
ଯେବେଳେ ବିନାଶ ଲଭଇ ଦ୍ରଷ୍ଟା ନିଜ ନାଶ ଭାବଇ
ଧନହୀନ ଜନ ପ୍ରକାର ଦ୍ରଷ୍ଟା ହୁଏ ଦୁଃଖେ ଆତୁର

ଯେ ପୁରୁଷ ବିବେକ ବନ୍ତ ହୃଦରେ ବିଚାରି ଏମନ୍ତ
ଆତ୍ମା ଅହଙ୍କାର ସହିତ ସର୍ବ ଭୂତରେ ବିରାଜିତ
ସମସ୍ତ ପ୍ରକାଶ କରଇ ବୋଲି ସଦା ଅନୁଭବଇ

### ଦେବହୂତି ଉବାଚ

ଆହେ କପିଳ ଭଗବାନ କହନ୍ତୁ ପରମାର୍ଥ ଜ୍ଞାନ
ପ୍ରକୃତି ପୁରୁଷ ଉଭୟେ ରହେ ପରସ୍ପର ଆଶ୍ରୟେ
ପୁରୁଷଙ୍କୁ ପ୍ରକୃତି ଏହି କେବେ ହେ ତେଜି ନ ପାରଇ
ଯେପରି ଗନ୍ଧ ପୃଥିବୀର ତଥା ରସଗୁଣ ଜଳର

ପୃଥକ ରହି ନ ପାରଇ ପ୍ରକୃତି ପୁରୁଷ ଭିନ୍ନ ନୋହି
ପୁରୁଷ ଅକର୍ତ୍ତା ଅଟଇ ଯାହାର ଆଶ୍ରୟରେ ରହି
କର୍ମ ବନ୍ଧନରେ ପଡଇ ପୁଣି ପ୍ରକୃତି ମଧ୍ୟେ ଥାଇଁ
କିପରି କୈବଲ୍ୟ ଲଭଇ ଏ ବିଷୟ ଦିଅ ବୁଝାଇ

ତତ୍ତ୍ୱ କରୁ କରୁ ବିଚାର ଅଥବା କେବେ ଯେ ତାହାର
ଏହି ସଂସାର ବନ୍ଧନର ତୀବ୍ର ଭୟ ହୁଅଇ ଦୂର
ତଥାପି କେବେ ହେଁ ତାହାର ନିମିତ୍ତ ପ୍ରକୃତି ଗୁଣର
ଅଭାବ କେବେ ନ ହୁଅଇ ଏ ମହାଭୟ ପ୍ରବେଶଇ

### ଭଗବାନୁବାଚ

ଅରଣିରୁ ଅଗ୍ନି ଜନ୍ମଇ ପୁଣି ତାକୁ ଭସ୍ମ କରଇ
ସେପରି ନିଷ୍କାମ ଭାବରେ ସ୍ୱଧର୍ମ ଆଚରଣ କଲେ
ସୁବିଶୁଦ୍ଧ ଅନ୍ତଃ କରଣ ନିତ୍ୟ ହରି କଥା ଶ୍ରବଣ
ମୋର ପାଦେ ତୀବ୍ର ଭକତିରେ ତତ୍ତ୍ୱଜ୍ଞାନ ଉଦେ ହୋଇଲେ

ପ୍ରବଳ ବୈରାଗ୍ୟ ଜନ୍ମିଲେ ବ୍ରତ ନିୟମ ପାଳନରେ
ଧ୍ୟାନ ଅଭ୍ୟାସରେ ଚିତ୍ତରେ ଗାଢ଼ ଏକାଗ୍ରତା ଜନ୍ମିଲେ
ପୁରୁଷର ଅବିଦ୍ୟା ଜାଣ ଧୀରେ ଧୀରେ ହୁଏ ବିଲୀନ
ସ୍ୱପନେ ପ୍ରାଣୀ ଯା ଦେଖଇ ନିଦ୍ରା ବୋଧନେ ମିଥ୍ୟା ହୋଇ

ସେପରି ଉପଭୋଗ ପରେ ଦୋଷ ଦର୍ଶନେ ପ୍ରକୃତିରେ
ସ୍ୱତନ୍ତ୍ର ଅଦ୍ୱୟ ପୁରୁଷରେ ପ୍ରକୃତି ବିଘ୍ନ ନ ଆଚରେ
ଯାର ତତ୍ତ୍ୱଜ୍ଞାନ ଜନ୍ମଇ ଏ ମତେ ଚିତ୍ତ ସମର୍ପିଇ
ସେ ଆତ୍ମାରାମ ମୁନିବରେ ପ୍ରକୃତି ବିଘ୍ନ ନ ଆଚରେ

ଜନ୍ମ ଜନ୍ମାନ୍ତର ପୁଣ୍ୟରେ ଯେ ମଜଇ ଆତ୍ମ ଚିନ୍ତରେ
ବ୍ରହ୍ମଲୋକ ଯାଏ ସମସ୍ତ ଭୋଗ୍ୟ ବୈରାଗ୍ୟ ହୁଏ ଜାତ
ମୋ ଭକ୍ତ ମୋର କୃପାବଳେ ଆତ୍ମ ତତ୍ତ୍ୱକୁ ଲଭେ ହେଳେ
ଆତ୍ମଜ୍ଞାନ ଫଳେ ସମସ୍ତ ସଂଶୟରୁ ହୁଏ ମୁକତ

ଲିଙ୍ଗ ଶରୀର ନାଶ ପରେ ମୋର ଆଶ୍ରୟେ ସହଜରେ
ନିଜର ସର୍ବ ଶୁଭମୟ କୈବଲ୍ୟ ଲଭଇ ନିଶ୍ଚୟ
ଯୋଗୀ ପ୍ରବେଶିଲେ ଏଠାରେ ପୁଣି ସଂସାରକୁ ନ ଫେରେ
ହେ ମାତ ଯେ ଯୋଗ ସାଧଇ ଆଣିମାଦି ସିଦ୍ଧି ଲଭଇ

ସଦା ଅନାସକ୍ତ ଚିତ୍ତରେ ଯେ ଯୋଗ ସାଧଇ ନିଷ୍ଠାରେ
ସେ ପରମ ପଦ ଲଭଇ ଯେଠାରେ ମୃତ୍ୟୁ ଭୟ ନାହିଁ
ଏହି ଭକତି ରସବାଣୀ ଶୁଣି ସଂସାରୁ ତର ପ୍ରାଣୀ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ କାପିଳିୟୋପାଖ୍ୟାନ ନାମ ସପ୍ତବିଂଶୋଽଧ୍ୟାୟଃ ।

*******

## ଅଷ୍ଟାବିଂଶ ଅଧ୍ୟାୟ

### ଭଗବାନ ଉବାଚ

ସବିଜ ଯୋଗର ଲକ୍ଷଣ ହେ ମାତା ଶୁଣ ବର୍ତ୍ତମାନ
ହେଲେ ଚିତ୍ତ ଶୁଦ୍ଧ ପ୍ରସନ୍ନ ପରମାର୍ଥେ ରୁଚି ଜନମ
ସାଧକ ଯଥା ଶକତିରେ ଶାସ୍ତ୍ରୀୟ ବିଧି ଅନୁସାରେ
ସ୍ୱଧର୍ମ କରିବ ପାଳନ ଶାସ୍ତ୍ର ବିରୁଦ୍ଧ ଆଚରଣ

ତେଜି ପ୍ରାରବ୍ଧ ଅନୁସାରେ ଯା କିଛି ମିଳଇ ସେଥିରେ
ସର୍ବଦା ସନ୍ତୁଷ୍ଟ ରହିବ ଆତ୍ମଜ୍ଞାନୀ ପାଦ ସେବିବ
ବିଷୟ ବାସନା ବର୍ଦ୍ଧନ କର୍ମେ ନ ବଳାଇବ ମନ
ମୋକ୍ଷ ଧର୍ମେ ଶ୍ରଦ୍ଧା ସ୍ଥାପିବ ବିଶୁଦ୍ଧ ସ୍ୱଳ୍ପାହାରୀ ହେବ

ସର୍ବଦା ନିର୍ଭୟ ସ୍ଥାନରେ ବାସ କରିବ ଏକାନ୍ତରେ
ମାନସ ବଚନ କର୍ମରେ କଷ୍ଟ ନଦେବ ପ୍ରାଣୀଠାରେ
କହିବ ନିତ୍ୟ ସତ୍ୟ ଭାଷା ଚୌର୍ଯ୍ୟେ ନ ବଳାଇବ ଆଶା
ବ୍ରହ୍ମଚର୍ଯ୍ୟ ବ୍ରତ ପାଳିବ ବହୁ ସଂଗ୍ରହ ବରଜିବ

ହରିଙ୍କୁ କରିବ ଅର୍ଚ୍ଚନ ସର୍ବଦା ରହିବ ମଉନ
ଉତ୍ତମ ଆସନ ପକାଇ ତହିଁ ବସିବ ସ୍ଥିର ହୋଇ
ପ୍ରାଣାୟାମ ଯୋଗ ବଳରେ ଶ୍ୱାସ ନିରୋଧି ଧୀରେ ଧୀରେ
ମନଦ୍ୱାରା ଇନ୍ଦ୍ରି ଜିଣିଣ ହୃଦୟେ କରିବ ସ୍ଥାପନ

ମୂଳାଧାର ଆଦି ମଧ୍ୟରେ ଯେ କୌଣସି ଏକ ଚକ୍ରରେ
ସ୍ଥିର ରଖିଣ ମନ ପ୍ରାଣ କରିବ ଶ୍ରୀହରିଙ୍କୁ ଧ୍ୟାନ
କରିବ ଚିତ୍ତ ସମାହିତ କେବେ ନୋହିବ ବିଚଳିତ
ଏପରି ନାନା ଉପାୟରେ ବ୍ରତ ଦାନ ଆଦି ମାର୍ଗରେ

ଧୀରେ ଧୀରେ ପ୍ରାଣ ପବନ ଜୟ କରିବ ଯୋଗୀ ଜନ
ଯେକୁ ପଥରେ ମତାଗତ କରୁଥିବା ନିଜର ଚିତ୍ତ
ବୁଦ୍ଧିବଳେ ସାବଧାନରେ ସଂଯମ କରି ଏକାଗ୍ରରେ
ମୃଗାଦି ଚର୍ମ ଆସନରେ ବିଶୁଦ୍ଧ ପବିତ୍ର ସ୍ଥାନରେ

ଶରୀରକୁ ସ୍ଥିର ରଖିଣ ଅଭ୍ୟାସ କରିବ ଆସନ
ଏପରି ଜିଣିବ ଆସନ ନ କରିବ ବାହ୍ୟ ଚିନ୍ତନ
ପୁର କୁମ୍ଭକ ରେଚକରେ କିମ୍ବା ବିପରୀତ କ୍ରମରେ
ନିଶ୍ଚଳ ସ୍ଥିର କରି ମନ ପ୍ରାଣ ବାୟୁ ମାର୍ଗ ରୋଧନ

ଯେଉଁ ଜନ ପ୍ରାଣ ପବନ ଜୟ କରଇ ତାର ମନ
ବିଶୁଦ୍ଧ ହୁଅଇ ତକ୍ଷଣ ଅନଳରେ ଯଥା ସୁବର୍ଣ୍ଣ
ବାତ ପୀତ ପ୍ରାଣାୟମରେ ପାପ ତାପ ଯେ ଧାରଣରେ
ବିଷୟା ସକ୍ତି ପ୍ରତ୍ୟାହାରେ ରାଗ ଦ୍ୱେଷ ଯାଏ ଧ୍ୟାନରେ

ନିୟତ ଯୋଗ ଅଭ୍ୟାସରେ ଚିତ୍ତ ଶୁଦ୍ଧ ନିର୍ମଳ ହେଲେ
ନାସକାଗ୍ରରେ ଦୃଷ୍ଟି ସ୍ଥିର ରଖି ଶ୍ରୀଭଗବାନଙ୍କର
ଶ୍ରୀମୂର୍ତ୍ତୀକୁ କରିବ ଧ୍ୟାନ ବରଜିବ ଅନ୍ୟ ଚିନ୍ତନ
ପ୍ରଫୁଲ୍ଲ କମଳ ବଦନ ମନ୍ଦ ସ୍ମିତହାସ ଶୋଭନ

ପଦ୍ମରାଗ ରକ୍ତ ନୟନ ଶଙ୍ଖ ଚକ୍ର ଗଦା ନଳିନ
କର କମଳରେ ଶୋଭନ ପୀତ ବସନ ମନୋରମ
ଶ୍ରୀବତ୍ସ ଚିହ୍ନ ବକ୍ଷ ସ୍ଥଳେ କଉସ୍ତୁଭ ମଣି ଗଳାରେ
ଶ୍ରୀଅଙ୍ଗେ ଅନରଘ ହାର କଙ୍କଳ କିରୀଟ ନୂପୁର

ବାଜୁ ବନ୍ଧାଦି ଆଭୂଷଣ ହରଇ ଭକ୍ତ ମନ ପ୍ରାଣ
ଆଜାନୁ ଲମ୍ବି ବନମାଳ ସୁଗନ୍ଧ ମତ୍ତ ଅଳିକୁଳ
ଚତୁର୍ଦ୍ଦିଗେ କରେ ଗୁଂଜନ ଏପରି କରିବ ଚିନ୍ତନ
କଟି କାଞ୍ଚଳା ମନୋରମ ଭକ୍ତ ହୃଦ ପଦ୍ମେ ଆସୀନ

ଶ୍ୟାମଳ ସୁକୋମଳ ତନୁ କାନ୍ତି ନିନ୍ଦେ କୋଟି ଅତନୁ
ଭକତ ମନ ନୟନରେ ଦିବ୍ୟ ଆନନ୍ଦ ବୃଦ୍ଧି କରେ
ନବିନ ବୟସ କିଶୋର ଯୋଗୀ ଭକତ ଚିତ୍ତଚୋର
କୃପା ବାରି କରେ ବର୍ଷଣ ସର୍ବଲୋକ ବନ୍ଦ୍ୟ ଚରଣ

ମନ ନୟନ ଅଭିରାମ କରଇ ତ୍ରିତାପ ହରଣ
ପବିତ୍ର କିରତି ଭାସ୍ୱର ବନ୍ଦନୀୟ ସତ୍ୟ ସୁନ୍ଦର
ବଳି ପ୍ରଭୃତି ଯଶସ୍ୱିନ ସୁଖ୍ୟାତି କୀର୍ତ୍ତି ବିବର୍ଦ୍ଧନ
ଏପରି ମୁରତି ତାଙ୍କର ସର୍ବଦା ମନ କରି ସ୍ଥିର

ଧ୍ୟାନ କରିବା ପ୍ରୟୋଜନ
ଭଗବାନଙ୍କ ମନୋରମ
ପାନ ଭୋଜନ ଶୟନରେ
ପୁଣି ଅନ୍ତର୍ଯ୍ୟାମୀ ରୂପରେ

ଶୁଣ ଜନନୀ ଦେଇ ମନ
ରୂପ ନୟନ ରସାୟନ
ଗମନ ଉପବେଶନରେ
ନିଜର ରୁଚି ଅନୁସାରେ

ଶୁଦ୍ଧ ଭାବପୂର୍ଣ୍ଣ ଚିତ୍ତରେ
ଏପରି ଧାରଣା ଯୋଗରେ
ଚିତ୍ତ ସୁସ୍ଥିର ହେବାପରେ
କ୍ରମେ ଏକ ଏକ ଅଙ୍ଗରେ

ଧାୟିବ ସବୁ ସମୟରେ
ଶ୍ରୀଭଗବାନ ବିଗ୍ରହରେ
ଚିତ୍ତ ନ ଦେଇ ସର୍ବାଙ୍ଗରେ
ଧ୍ୟାନ କରିବ ଧୀରେ ଧୀରେ

ପ୍ରଥମେ କମଳ ଚରଣ
ବଜ୍ରାଙ୍କୁଶ ଧ୍ୱଜ ନଳୀନ
ଅରୁଣ କଖ-ଚନ୍ଦ୍ରିକାରେ
ଅଜ୍ଞାନ ଘୋର ଅନ୍ଧକାର

ଧ୍ୟାନରେ ଲଗାଇବ ମନ
ସ୍ୱସ୍ତିକାଦି ଚିହ୍ନ ଶୋଭନ
ଧ୍ୟାନ କରିଲେ ନିରନ୍ତରେ
ହୃଦୟରୁ ହୋଇବ ଦୂର

ହରି ଚରଣ ଧୌତ ଜଳ
ଏ ଜଳ ଧରି ମସ୍ତକରେ
ହରିଙ୍କ ଶ୍ରୀଚରଣ ଧ୍ୟାନ
ଧ୍ୟାନକାରୀ ପାପ ପର୍ବତ

ଗଙ୍ଗାର ଆବିର୍ଭାବ ସ୍ଥଳ
ଶିବ ମଙ୍ଗଳ-ମୟ ହେଲେ
ପୁରନ୍ଦର ବଜ୍ର ସମାନ
କ୍ଷଣକେ କରଇ ନିପାତ

ହରିଙ୍କ ପାଦ ଏହାପରେ
ଅଜ ଶ୍ରୀହରି ଶ୍ରୀଚରଣ
ବିଶ୍ୱର ସ୍ରଷ୍ଟା ବ୍ରହ୍ମାଙ୍କର
ଯେ ପାଦସ୍ଥାପି ଜଘନରେ

ଚିନ୍ତା କରିବ ହୃଦୟରେ
ଭବ ଭୟ କରେ ହରଣ
ଜନନୀ ଲକ୍ଷ୍ମୀ ନିରନ୍ତର
ନିଜର କରପଲ୍ଲବରେ

ସେବା କରିଥାନ୍ତି ଭକ୍ତିରେ
ଅତସୀ କୁସୁମ ଶ୍ୟାମଳ
ଗରୁଡ ପୃଷ୍ଠରେ ଶୋଭନ
ଜାନୁ ପର୍ଯ୍ୟନ୍ତ ଲମ୍ୱମାନ

ପ୍ରେମ ପୁଲକିତ ଚିତ୍ତରେ
ସକଳ ଶକ୍ତିର ଆଧାର
ଜଘନ କରିବ ଚିନ୍ତନ
ପରିହିତ ପୀତ ବସନ

କାଞ୍ଚି କଳାପ ବିଶୋଭନ
ଆଶ୍ରୟ ସର୍ବ ଭୁବନର
ଧ୍ୟାୟିବ ନାଭି ସରୋବର
ମରକତ ମଣି ସମାନ

ନିତମ୍ୱ କରିବ ଚିନ୍ତନ
ଭଗବାନଙ୍କର ଉଦର
ଯହୁଁ ଜନମ ବେଦବର
ସ୍ତନକୁ କରିବ ଚିନ୍ତନ

ବକ୍ଷସ୍ଥଳରେ ରତ୍ନହାର
ମହାଲକ୍ଷ୍ମୀଙ୍କ ବାସସ୍ଥାନ
ସୁବିଶାଳ ବକ୍ଷ ସ୍ଥଳରେ
ଅଖିଳ ଜଗତ ବନ୍ଦନ

କିରଣେ ବରନ ଗଭର
ଭକ୍ତ ମନ ନେତ୍ରା ଭିରାମ
ଚିନ୍ତିବି ନିଜ ହୃଦୟରେ
କୌସ୍ତୁଭ ମଣି ବିମଣ୍ଡନ

ଗଳାକୁ କରିବ ଚିନ୍ତନ
ସମୁଦ୍ର ମନ୍ଥନ କାଳରେ
ଯେ ଭୁଜର ମଣି କଙ୍କଣ
ସର୍ବ ଭୂତ ଆଶ୍ରୟ ସ୍ଥାନ

ଶୁଣ ଜନନୀ ଦେଇମନ
ମନ୍ଦର ଅଦ୍ରି ଘର୍ଷଣରେ
ଆଭୂଷଣ ଯେ ତେଜୀୟାନ
ଭୁଜକୁ କରିବ ଚିନ୍ତନ

ତେଜ କୋଟି ସୂର୍ଯ୍ୟସମାନ
ଧବଳ ରାଜ ହଂସ ସମ
ଅରି ଶୋଣିତରେ ଆରକ୍ତ
ସୁଦୃଢ଼ କୌମୋଦକୀ ଗଦା

ସହସ୍ରଧାର ସୁଦର୍ଶନ
ଶଙ୍ଖରେ ଲଗାଇବ ଧ୍ୟାନ
ଶ୍ରୀହରିଙ୍କର ହସ୍ତ ସ୍ଥିତ
ଭକ୍ତିରେ ଚିନ୍ତିବ ସର୍ବଦା

ଅଜାନୁ ଲମ୍ୱି ବନମାଳା
ଭୃଙ୍ଗ ଗୁଂଜନ ମନୋରମ
ହରିଙ୍କ ସାକାର ସଗୁଣ
କରିବ ହୃଦୟେ ଚିନ୍ତନ

ସର୍ବର୍ତ୍ତୁ କୁସୁମ ମଂଜୁଳା
ହୃଦୟରେ କରିବ ଧ୍ୟାନ
ମୂରତି କମଳ ନୟନ
ଯେ ଭକ୍ତଗଣର ଜୀବନ

ଲୋଳିତ ମକର କୁଣ୍ଡଳ
ବିଦ୍ୟୁତ ସମାନ ଆଭାରେ
ପୁଣି ହୃଦୟ କନ୍ଦରରେ
ଶ୍ରୀଭଗବାନଙ୍କ ନୟନ

ଉନ୍ନତ ନାସିକା ସୁଢ଼ଳ
ଯେ ଗଣ୍ଡ ଭକ୍ତ ଚିତ୍ତ ହରେ
ଭକ୍ତିଭାବ ପ୍ରେମ ଶ୍ରଦ୍ଧାରେ
କୃପା ଦୃଷ୍ଟି କରିବ ଧ୍ୟାନ

ଏଦୃଷ୍ଟି ସ୍ନିଗ୍ଧ ସ୍ମିତ ଯୁକ୍ତ
ପ୍ରସାଦ ବର୍ଷଇ ବିପୁଳ
ଶ୍ରୀହରିଙ୍କର ହାସ୍ୟ ଉଦାର
ମଦନ ଶାସିତ କମାଣ

ହରଣ କରଇ ତ୍ରିତାପ
ଦଗ୍ଧଚିତ୍ତ କରେ ଶୀତଳ
ପ୍ରଣତ ଶୋକ ଆର୍ତ୍ତହର
ଭ୍ରୂଲତାକୁ କରିବ ଧ୍ୟାନ

ଶୁଭ୍ର କୁନ୍ଦ କଳି ସମାନ
ଅଧରୋଷ୍ଠ ଅରୁଣିମାରେ
ଏପରି ପ୍ରେମ ଭାବନାରେ
ଏମନ୍ତ ଅଭ୍ୟାସିଲେ ଧ୍ୟାନ

ମୃଦୁ ସ୍ମିତରେ ମନୋରମ
ଆରକ୍ତ ସୁସମାକୁ ଧରେ
ଏକାଗ୍ରଚିତ୍ତେ ଧ୍ୟାନ କଲେ
ଶ୍ରୀହରିଠାରେ ଜନ୍ମେ ପ୍ରେମ

ହୃଦୟ ଭକ୍ତିରେ ଦ୍ରବଇ ଶରୀରେ ରୋମାଞ୍ଚ ଜନ୍ମଇ
ନେତ୍ରରୁ ବହି ଅଶ୍ରୁଧାର ଶିକ୍ତ କରଇ କଳେବର
ଏହିପରି ଧ୍ୟାନ ଫଳରେ ଚିତ୍ତସ୍ଥିର ହୁଏ ହରିରେ
ତୈଳ ସରିଲେ ଯେ ପ୍ରକାରେ ଶିଖାମିଶେ ତେଜ ତତ୍ତ୍ୱର

ସେପରି ସାଧକର ଚିତ୍ତ ହୁଅଇ ପ୍ରଶାନ୍ତ ବିରକ୍ତ
ଏ ଅବସ୍ଥାରେ ସାଧକର ଦେହାଦି ଗୁଣ ଉପାଧିର
ସଂପୂର୍ଣ୍ଣ ନିବୃତ୍ତ ହୁଅଇ ଧ୍ୟାତା ଧ୍ୟେୟ ଭେଦ ନରହି
କେବଳ ସେ ଚତୁର୍ଦ୍ଦିଗରେ ଅତ୍ମସତ୍ତାନୁଭବ କରେ

ଯୋଗ ଅଭ୍ୟାସିଲେ ଏସନ ନାଶ ହୁଏ ତମ ଅଜ୍ଞାନ
ବିଷୟ ବିନିବୃତ୍ତ ଚିତ୍ତ ଯୋଗୀ ସୁଖ ଦୁଃଖ ରହିତ
ସ୍ୱୟଂବ୍ରହ୍ମ ମହିମା ସ୍ଥିତ ପରମାତ୍ମା କରେ ସାକ୍ଷାତ
ଏ ଅନ୍ତେ ଅଜ୍ଞାନ ବଶରେ ନିଜର ଆତ୍ମ ସ୍ୱରୂପରେ

ଦିଶୁଥିଲା ଯେ ସୁଖ ଦୁଃଖ ଅହଙ୍କାରେ ଦିଶେ ପ୍ରତ୍ୟକ୍ଷ
କଟିରେ ବସ୍ତ୍ର ଅଛି ନାହିଁ ଯଥା ମଦ୍ୟପ ଜାଣେ ନାହିଁ
ଚରମ ଅବସ୍ଥାରେ ସ୍ଥିତ ଯୋଗ ସିଦ୍ଧ ବ୍ୟକ୍ତି ତେମନ୍ତ
ଉତ୍ଥାନ ଗମନ ଭୋଜନ ଶୟନ ଯେ ଉପବେଶନ

କୌଣସି କର୍ମ ଜାଣେ ନାହିଁ ପରମ ଆନନ୍ଦରେ ରହି
ପୂର୍ବ ଜନମର ସଂସ୍କାର ଅଧୀନ ଅଟେ କଳେବର
ପ୍ରାରବ୍ଧ କର୍ମ ଯେ ପର୍ଯ୍ୟନ୍ତ ଶେଷ ହୋଇନାହିଁ ତାବତ
ଶରୀର ଇନ୍ଦ୍ରିୟ ସହିତ ଯୋଗୀ ରହିଥାଏ ଜୀବିତ

ମାତ୍ର ସମାଧି ଯୋଗ ପ୍ରାପ୍ତ ଆତ୍ମତତ୍ତ୍ୱଜ୍ଞ ସିଦ୍ଧ ସନ୍ତ
ତନୟ କଳତ୍ର ଶରୀର ସ୍ୱପ୍ନପରି କରେ ବିଚାର
ବୁଦ୍ଧି ବିବେକ ହୀନ ଜନ ହୋଇ ସ୍ନେହ ମୋହ ଅଧୀନ
ଶରୀର ପୁତ୍ର କଳତ୍ରରେ ସର୍ବଦା ଆତ୍ମ ବୁଦ୍ଧି ଧରେ

ମାତ୍ର ବିବେକ ଯାର ଥାଇ ଦେହ ଆତ୍ମା ଭିନ୍ନ ମଣଇ
କାଷ୍ଠ ଜଳୁଥିବା ବେଳରେ ଧୂମ ସ୍ଫୁଲିଙ୍ଗ ଯେ ବାହାରେ
ଅଗ୍ନି ପରି ଜଣା ପଡଇ ମାତ୍ର ଅନଳୁ ଭିନ୍ନ ସେହି
ଭୂତେନ୍ଦ୍ରିୟ ଅନ୍ତକରଣ ସାକ୍ଷୀ ସ୍ୱରୂପ ଆତ୍ମାରୁ ଭିନ୍ନ

ଏ ପରମାତ୍ମା ଜୀବାତ୍ମାରୁ ପୃଥକ ଜଡ ପ୍ରକୃତିରୁ
ଆତ୍ମାକୁ ସକଳ ଭୂତରେ ଭୂତ ଗଣଙ୍କୁ ଆତ୍ମାଠାରେ
ଯୋଗୀ ଯେ ଅନନ୍ୟ ଭାବରେ ସର୍ବଦା ଦରଶନ କରେ
ଯଥା ଏକ ଅଟେ ଅନଳ ନିଜ ଆଶ୍ରୟ କାଷ୍ଠାଦିର

ଭେଦେ ଦିଶେ ନାନା ପ୍ରକାର ବୈଷମ୍ୟରୁ ଦେହ ଗୁଣର
ନାନା ରୂପରେ ଆତ୍ମା ଏହି ଅଜ୍ଞାନେ ପ୍ରତିଭାତ ହୋଇ
ଏହି ଦୈବୀ ମାୟା ଶକତି ଅଚିନ୍ତ୍ୟ ବିଚିତ୍ର ତାଗତି
ଜୀବ ସ୍ୱରୂପ ଲୋପ କରେ ବିବେକ ବୁଦ୍ଧିଜ୍ଞାନ ହରେ

ସିଦ୍ଧ ଯୋଗୀ ହରି କୃପାରେ ମାୟା ପ୍ରଭାବ ଜିଣି ହେଲେ
ନିଜର ବ୍ରହ୍ମ ସ୍ୱରୂପରେ ଦିବ୍ୟ ଆନନ୍ଦରେ ବିହରେ
ହେ ମାତ ସାଧ ଏହିଯୋଗ ହେଲେ କରିବ ଭବଦୁର୍ଗ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ବୈୟାସିକ୍ୟାଂ କପିଳେୟ ସାଧନାନୁଷ୍ଠାନ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।

********

## ଉନତ୍ରିଂଶ ଅଧ୍ୟାୟ

### ଦେବହୂତି ଉବାଚ

ଆହେ କପିଳ ଭଗବାନ କହନ୍ତୁ ପରମାର୍ଥ ଜ୍ଞାନ
ପ୍ରକୃତି ପୁରୁଷ ମହତ ଲକ୍ଷଣ ସାଂଖ୍ୟ ଶାସ୍ତ୍ର ଉକ୍ତ
ଭକତି ଯୋଗ ପ୍ରୟୋଜନ ସକଳ କହିଲେ ଆପଣ
କୃପା କରିଣ ବର୍ତ୍ତମାନ ଭକ୍ତି ମାର୍ଗ କର ବର୍ଣ୍ଣନ

ମରଣ ପରେ ଏହି ଜୀବ କେଉଁ ଗତିକୁ କରେ ଲାଭ
ଯେ ବିଷୟ କଲେ ଶ୍ରବଣ ଭବେ ବୈରାଗ୍ୟ ହୁଏ ଜନ୍ମ
ଯାହା ଭୟରେ ଜୀବ ଏହି ଶୁଭ କର୍ମରେ ପ୍ରବର୍ତ୍ତଇ
ଯେକରେ ବ୍ରହ୍ମାଙ୍କୁ ଶାସନ ଯେହୁସକଳ ଶକ୍ତିମାନ

କହ ସେ କାଳର ଲକ୍ଷଣ ଆହେ କପିଳ ଭଗବାନ
ଯେ ମାନେ ଅଜ୍ଞାନ ବଶରେ ଦେହାଦି ଅଳିକ ବସ୍ତୁରେ
ସଦା କରନ୍ତି ଅଭିମାନ କରନ୍ତି ନାନା କାମ୍ୟ କର୍ମ
ତାଙ୍କ ଅଜ୍ଞାନ ଅନ୍ଧକାର ବିନାଶେ ତୁମେ ଦିବାକର

### ମୈତ୍ରେୟ ଉବାଚ

କହେ ମୈତେୟ ମୁନିବର ଆହେ କୁରୁଶ୍ରେଷ୍ଠ ବିଦୁର
ଜନନୀ ମନୋଜ୍ଞ ବଚନ ଶୁଣି କପିଳ ଭଗବାନ
ତାହାଙ୍କୁ ପ୍ରଶଂସା କରିଲେ ଜୀବଙ୍କ ପ୍ରତି ସୁଦୟାରେ
ଆନନ୍ଦ ବିହ୍ୱଳ ଚିତ୍ତରେ କହିଲେ ଏମନ୍ତ ପ୍ରକାରେ

### ଭଗବାନୁବାଚ

ସାଧକ ଭାବ ଅନୁସାରେ ଭକ୍ତିଯୋଗ ନାନା ପ୍ରକାରେ
ଯେ କ୍ରୋଧ କାମ ବଶ ହୋଇ ଜୀବେ ଭେଦ ଭାବ ପୋଷଇ
ହିଂସା ଦମ୍ଭ ପୋଷି ହୃଦରେ ଭକତି କରେ ମୋ ପୟରେ
ସେ ଭକ୍ତ ଅଟଇ ତାମସ ଯେ ପୁରୁଷ ବିଷୟ ଯଶ

ଐଶ୍ୱର୍ଯ୍ୟ ପ୍ରାପ୍ତି କାମନାରେ ଭେଦ ରଖି ପ୍ରତିମାଦିରେ
ଅର୍ଚ୍ଚଇ ମୋହର ଚରଣ ରାଜସ ଭକ୍ତ ସେହି ଜନ
ଯେ ବ୍ୟକ୍ତି ପାପ କ୍ଷୟ ପାଇଁ ମୋ ପାଦେ କର୍ମ ସମର୍ପଇ
କିଅବା କର୍ତ୍ତବ୍ୟ ବୁଦ୍ଧିରେ ଭକ୍ତି ପ୍ରେମେ ନାନା ପ୍ରକାରେ

ମତେ କରଉ ଆରାଧନା ସେହି ଭକ୍ତ ସାତ୍ତ୍ୱିକ ସିନା
ଗଙ୍ଗାର ଅଖଣ୍ଡିତ ଧାର ଯେମନ୍ତେ ଧାମଇ ସାଗର
ଶ୍ରବଣ ମାତ୍ରେ ମୋର ଗୁଣ ଯେଉଁ ଭକ୍ତର ପ୍ରାଣମନ
ତଇଳ ଧାରା ଦରକାରେ ସଦା ଅବିରାମ ଗତିରେ

ମୋର ସମୀପକୁ ଧାମଇଁ ମତେ ଅନ୍ତର୍ଯ୍ୟାମୀ ମଣଇ
ମତେ ପୁରୁଷୋତ୍ତମ ଭାବରେ ନିଷ୍କାମ ଭକତି ଆଚରେ
ସେ ଭକ୍ତ ଅଟଇ ନିର୍ଗୁଣ ମୁକ୍ତିରେ ନ ବଳାଏ ମନ
ଯେ ସେବା ପାଇଁ ହରିଙ୍କର ମୁକ୍ତିକୁ କରେ ଅନାଦର

ଏହା ଅଟଇ ସାଧ୍ୟ ଭକ୍ତି ଏହାକୁ ପୁରୁଷାର୍ଥ ବୋଲି
ପୁରୁଷ ଏପରି ଭକ୍ତିରେ ତ୍ରିଗୁଣ ଅତିକ୍ରମ କରେ
ସେ ମୋର ପ୍ରେମ ରୂପ ନିତ୍ୟ ଲାଭ କରଉ ଅପ୍ରାକୃତ
ଯେବା ନିତ୍ୟ ନୈମିତ୍ତିକର୍ମ ଶ୍ରଦ୍ଧାରେ କରେ ଅନୁଷ୍ଠାନ

ଜୀବେ ଅହିଂସା ଆଚରଇ ଶୁଦ୍ଧ କର୍ମ ଯୋଗ ସାଧଇ
ମୋର ପ୍ରତିମା ଦରଶନ ପୂଜା ସ୍ତୁତି ପଦବନ୍ଦନ
ଧୌର୍ଯ୍ୟ ବୈରାଗ୍ୟ ଲମ୍ବନ ମହାପୁରୁଷରେ ସମ୍ମାନ
ଜୀବଗଣେ ଦୟା କରିବା ସମାନ ସ୍ଥିତିରେ ରହିବା

ଯମ ନିୟମାଦି ପାଳନ ଅଧ୍ୟାତ୍ମ୍ୟ ଶାସ୍ତ୍ର ଅଧ୍ୟୟନ
ହୃଦୁ ଅହଙ୍କାର ବର୍ଜନ ସରଳତା ଧର୍ମାନୁଷ୍ଠାନ
ମୈତ୍ରୀ ସମତା ଯେ ମୁଦିତା ନିଷ୍କପଟ ସତ୍ୟବାଦିତା
ଏପରି ଭାବେ ଭକ୍ତ ଚିତ୍ତ ହୁଅଇ ବିଶୁଦ୍ଧ ଅତ୍ୟନ୍ତ

ଶ୍ରବଣ ମାତ୍ରେ ମୋର ଗୁଣ ମୋ ଭାବେ ହୁଏ ନିମଗନ
ପୁଷ୍ପ ଗନ୍ଧ ବାୟୁ ଯୋଗରେ ଯଥା ପ୍ରବେଶଇ ନାସାରେ
ତଥା ରାଗ ଦ୍ୱେଷ ରହିତ ଭକ୍ତିଯୋଗ ଆଶ୍ରିତ ଚିତ୍ତ
ଭକ୍ତ ପରମାତ୍ମା ଲଭଇ ସର୍ବ ଜୀବେ ମତେ ଦେଖଇ

ସର୍ବ ଭୂତେ ପରମାତ୍ମାଙ୍କୁ କରିଣ ଯେ ଅନାଦରକୁ
ପ୍ରତିମାରେ ମତେ ପୂଜଇ ସେହି ପୂଜା ବ୍ୟର୍ଥ ହୁଅଇ
ମୁଁ କେବଳ ସର୍ବଭୂତରେ ବସେ ପରମାତ୍ମା ରୂପରେ
ଯେ ବ୍ୟକ୍ତି ମୋହ ବଶ ହୋଇ ମୋଠାରେ ଅବଜ୍ଞା କରଇ

ପ୍ରତିମାକୁ ପୂଜା କରଇ ଭସ୍ମେ ଘୃତାହୁତି ଦିଅଇ
ଯେ ପୁରୁଷ ଅହଙ୍କାରରେ ଶତ୍ରୁତା ଆଚରେ ଜୀବରେ
ହୃଦେ ଭେଦଭାବ ପୋଷଇ ସେ ମୋର ବିଦ୍ୱେଷୀ ଅଟଇ
ସେ କେବେ ନ ଲଭଇ ଶାନ୍ତି ଶୁଣ ଜନନୀ ଦେବହୂତି

ପ୍ରାଣୀଙ୍କୁ ଅସମ୍ମାନ କରେ ନାନା ଉତ୍ତମ ସାମଗ୍ରୀରେ
ଯଥା ବିଧି ମତେ ପୂଜଇ ସୁତାରେ ପ୍ରସନ୍ନ ନୁହଇ
ଯେ ପର୍ଯ୍ୟନ୍ତ ନିଜ ହୃଦରେ ସକଳ ପ୍ରାଣୀଙ୍କ ମଧ୍ୟରେ
ପରମାତ୍ମା ବାସକରନ୍ତି ଏ ଅନୁଭୂତି ନ ଜନ୍ମିଛି

ତାବତ ସ୍ୱଧର୍ମ ପାଳିବ ପ୍ରତିମାରେ ମତେ ପୂଜିବ
ଆତ୍ମା ପରମାତ୍ମା ମଧ୍ୟରେ ଯେ ଭେଦ ରଖଇ ହୃଦରେ
ସେ ଭେଦ-ଦର୍ଶୀ ମୃତ୍ୟୁପରେ ମହାଭୟକୁ ଲାଭକରେ
ମୁଁ ଅନ୍ତର୍ଯ୍ୟାମୀ ସ୍ୱରୂପରେ ବିଜ୍ଞେକରେ ସର୍ବ ଭୂତରେ

ଭାବି ସାମ୍ୟ ମୈତ୍ରୀ ଭାବରେ ମତେ ପୂଜି ସର୍ବ ଭୂତରେ
ପାଷାଣ ଆଦି ଅଚେତନ ବସ୍ତୁ ମଧ୍ୟରେ ଶ୍ରେଷ୍ଠ ଦ୍ରୁମ
ତାଠାରୁ ଶ୍ୱାସ ଗ୍ରାହୀ ପ୍ରାଣୀ ତା ମଧ୍ୟେ ମନଥିବା ପ୍ରାଣୀ
ତହୁଁ ଇନ୍ଦ୍ରିୟ ବୃତ୍ତିଯୁକ୍ତ ଜୀବ ଶ୍ରେଷ୍ଠ ଅଟେ ଅତ୍ୟନ୍ତ

ତହୁ ଯେ ସ୍ପର୍ଶନ୍ତୁ ଭବଇ ସେ ପ୍ରାଣୀ ଉତ୍ତମ ଅଟଇ
ରସଗ୍ରାହୀ ମତ୍ସ୍ୟ ପ୍ରଭୃତି ପ୍ରାଣୀମାନଙ୍କୁ ଶ୍ରେଷ୍ଠ ବୋଲି
ଯେ କରନ୍ତି ଗନ୍ଧ ଗ୍ରହଣ ଭ୍ରମରା ଆଦି ଶ୍ରେଷ୍ଠ ଜାଣ
ଶବ୍ଦ ଗ୍ରାହୀ ଜୀବ ସର୍ପାଦି ରୂପାନୁଭବ୍ୟ କାକ ଆଦି

ତଳ ଉପରେ ଯା ଦଶନ ସେ ପ୍ରାଣୀ ସଂସାରେ ଉତ୍ତମ
ଅପଦ ତହୁଁ ବହୁପଦ ବହୁପଦରୁ ଚତୁଷ୍ପଦ
ତହୁ ମାନବ ଦ୍ୱିଚରଣ ତା ମଧ୍ୟେ ଶ୍ରେଷ୍ଠ ଚାରିବର୍ଣ୍ଣ
ସର୍ବ ବର୍ଣ୍ଣ ଶ୍ରେଷ୍ଠ ବ୍ରାହ୍ମଣ ବେଦଜ୍ଞ ବ୍ରାହ୍ମଣ ଉତ୍ତମ

ସଂଶୟ କରେ ଯେ ଛେଦନ ତତ୍ତ୍ୱଜ୍ଞ ମଧ୍ୟେ ସେ ଉତ୍ତମ
ଯେ ନିଃସଙ୍ଗ ନିଷ୍କାମରେ ବର୍ଣ୍ଣ ଆଶ୍ରମ ଧର୍ମ ପାଳେ
ସେ ମାନବ ଅଟେ ଉତ୍ତମ ଯେ ନିଜର ସମସ୍ତ କର୍ମ
କର୍ମର ଫଳ ଦେହ ପୁନ ମୋ ପାଦେ କରି ସମର୍ପଣ

ଅଭେଦ ଭାବରେ ପୂଜଇ ସେ ବ୍ୟକ୍ତି ସର୍ବ ଶ୍ରେଷ୍ଠ ହୋଇ
ଭଗବାନ ସର୍ବ ଘଟରେ ବସନ୍ତି ଜୀବାତ୍ମା ରୂପରେ
ଏ ଭାବେ ସ୍ଥିର କରିମନ ପ୍ରାଣୀଙ୍କୁ କରିବ ପ୍ରଣାମ
ଭକ୍ତି ଅଷ୍ଟାଙ୍ଗ ଯୋଗମାନ ହେ ମାତ କଲି ମୁଁ ବର୍ଣ୍ଣନ

ଏଥୁ ଯେ ଗୋଟିଏ ସାଧଇ ସେ ପରମାତ୍ମାଙ୍କୁ ଲଭଇ
ପରମାତ୍ମା ଶକ୍ତି ଅସୀମ ସଂସାର ବୈଚିତ୍ର୍ୟ କାରଣ
ସେ ପ୍ରକୃତି ପୁରୁଷ ଅଟଇ ପ୍ରକୃତିର ଉର୍ଦ୍ଧ୍ୱେ ରହଇ
ଦଇବ କାଳ ଅଟେ ସେହି ପ୍ରାଣୀ ଯେ କାଳକୁ ଡରଇ

ସକଳ ଆଶ୍ରୟ ରୂପରେ ପ୍ରବେଶି ପ୍ରାଣୀର ଅନ୍ତରେ
ସାହାଯ୍ୟରେ ମହାଭୂତର ପ୍ରାଣୀଙ୍କୁ କରଇ ସଂହାର
ଯେ କାଳ ଜଗତ ଶାସଇ ବ୍ରହ୍ମାଦିଙ୍କର ପ୍ରଭୁ ଯେହିଁ
ସେ କାଳରୂପୀ ଭଗବାନ ସେ ଅଧିଯଜ୍ଞ ନାରାୟଣ

ତା ଶତ୍ରୁ ମିତ୍ର ସଖା ନାହିଁ ସେ ସ୍ୱୟଂ ଅପ୍ରମତ୍ତ ହୋଇ
ସକଳ ଜୀବଙ୍କୁ ସଂହାରେ ପବନ ବହେ ତା ଭୟରେ
ତପନ ବିତରେ କିରଣ ଇନ୍ଦ୍ର କରେ ଜଳ ବର୍ଷଣ
ନକ୍ଷତ୍ର ଆଲୋକ ବିତରେ ବନସ୍ପତି ଲତା ଭୟରେ

ଔଷଧାଦି ଯଥା କାଳରେ ଫଳ ପୁଷ୍ପାଦି ଦାନ କରେ
ନଦୀ ପ୍ରବାହିତ ହୁଅଇ ସାଗର ବେଳା ନ ଲଙ୍ଘଇ
ଅନଳ ହୁଏ ପ୍ରଜ୍ୱଳିତ ସମଗ୍ର ପୃଥିବୀ ପର୍ବତ
ମଗ୍ନ ନ ହୁଅଇ ଜଳରେ ଆକାଶ ତାହାଙ୍କ ଭୟରେ

ଶ୍ୱାସ ପ୍ରଶ୍ୱାସ ଗ୍ରହଣରେ ଅବକାଶ ଦିଏ ପ୍ରାଣୀରେ
ମହତତ୍ତ୍ୱ ତା ଆଦେଶରେ ସପ୍ତତତ୍ତ୍ୱ ଆବରଣରେ
ସ୍ୱ ଦେହ ଚଉଦ ଭୁବନ ରୂପରେ ହୋଇଛି ବିସ୍ତୀର୍ଣ୍ଣ
ବ୍ରହ୍ମା ପ୍ରଭୃତି ଦେବଗଣେ ନିୟନ୍ତ୍ରଣ କରି ତ୍ରିଗୁଣେ

ସୃଷ୍ଟି କରନ୍ତି ପୁନ ପୁନ ସକଳେ ତା ଆଜ୍ଞା ଅଧୀନ
ସେ ହେତୁ ବିଶ୍ୱ ଚରାଚର ତା ଅଧୀନ ଦେବ କିନ୍ନର
କାଳର ନାହିଁ ଆଦିଅନ୍ତ ସେତ ଅବିନାଶୀ ଅନନ୍ତ
ଜୀବମାନଙ୍କୁ ଜନ୍ମଦେଇ ସେ ପୁଣି ବିନାଶ କରଇ

ଏ କାଳ ରୂପୀ ଭଗବାନ ପିତାରୁ ପୁତ୍ର କରି ଜନ୍ମ
ମୃତ୍ୟୁ ସଂହାର ମୂର୍ତ୍ତିଧରି ଯମକୁ ମଧ୍ୟ ଦିଏ ମାରି
ସୁଜନେ ଏଥି ରଖ ମତି ତୁଟିବ ସଂସାର ଦୁର୍ଗତି

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ତୃତୀୟ ସ୍କନ୍ଧେ ବୈୟାସିକ୍ୟାଂ କପିଳେୟୋପାଖ୍ୟାନ ନାମ ଏକୋନତ୍ରିଂଶୋଽଧ୍ୟାୟ ।

*******

## ତ୍ରିଂଶୋଽଧ୍ୟାୟ

### କପିଳ ଉବାଚ

କହେ କପିଳ ଭଗବାନ ହେ ମାତ ମନଦେଇ ଶୁଣ
ବାୟୁ ନିଏ ମେଘ ଉଡାଇ ମେଘ ତା ବଳ ଜାଣେ ନାହିଁ
ଜୀବ ଗଣ ସେହି ପ୍ରକାରେ ପ୍ରବଳ କାଳପ୍ରଭାବରେ
ନାନା ଅବସ୍ଥାରେ ବିଭିନ୍ନ ଯୋନିରେ ଲଭନ୍ତି ଜନମ

ଜୀବ ନ ହେଜି କାଳବଳ ବିଷୟ ବାସନାରେ ଭୋଳ
ଯା ସବୁ ସଞ୍ଚେ ଦୁଃଖସହି କାଳ ବଳେ ତାହା ହରଇ
ଜୀବ ଅଜ୍ଞାନ ବଶହୋଇ ଦୁଃଖ ଶୋକେ ଘାରି ହୁଅଇ
ଦେହ ଗୃହ ଧନ ଅଚିର ପୁତ୍ର କଳତ୍ର ଯେ ନଶ୍ୱର

ଏହାକୁ ସେ ସତ୍ୟ ମଣଇ ଆନନ୍ଦେ ବିହ୍ୱଳ ହୁଅଇ
ବିଷୟରେ ହୋଇ ଆସକ୍ତ ଦୁଃଖ ଶୋକ ଭୋଗେ ସତତ
ଏଜୀବ ମାୟାରେ ମୋହିତ ପ୍ରାରବ୍ଧ କରମ ବଶତ
ଜନମି ନାରକି ଯୋନିରେ ମଳ ମୂତ୍ର ଭୋଜନ କରେ

ଏ ମୂର୍ଖ ଶରୀର କଳତ୍ର ଗୃହ ସଂପଦ ବନ୍ଧୁ ମିତ୍ର
ବୃତ୍ତିରେ ହୋଇଣ ଆସକ୍ତ ଦୁଃଖ ସନ୍ତାପେ ହୋଇ ବ୍ୟସ୍ତ
କୁଟୁମ୍ବ ପୋଷଣ କରଇ ଚିନ୍ତାନଳ ଚିତ୍ତ ଦହଇ
ଅଜ୍ଞାନରେ ଦୁର୍ବାସନରେ ନାନା ପାପ କର୍ମ ଆଚରେ

ଅସତୀ ରମଣୀ ମାୟାରେ କପଟ ସମ୍ଭୋଗ ପ୍ରେମରେ
ବୁଦ୍ଧି ବିବେକକୁ ହରାଇ ଶିଶୁ ମିଠାକଥା ଶୁଣଇ
କୂଟ ପୂର୍ଣ୍ଣ ଦୁଃଖ ପ୍ରଧାନ ଏହା ନ ବୁଝଇ ଅଜ୍ଞାନ
ଯଦିବା ଦୁଃଖ ପ୍ରତିକାର କରିବାରେ ହୁଏ ସଫଳ

ତେବେ ତାହାକୁ ଅତି ସୁଖ ବୋଲି ମଣଇ ସେହିମୂର୍ଖ
ଧନ ଅର୍ଜି ହିଂସ୍ର ବୃତ୍ତିରେ କୁଟୁମ୍ବ ପୋଷଇ ଦୁଃଖରେ
ଅନ୍ତେ ନରକେ ବାସ କରେ କୁଟୁମ୍ବ ଖାଇବା ଶେଷରେ
ଯା କିଛି ଉଚ୍ଛିଷ୍ଟ ବଳଇ ଖାଇ ଦୁଃଖେ କାଳ କାଟଇ

ଚେଷ୍ଟା କଲେ ବି ବାରମ୍ବାର ଜୀବିକା ନଚଳିଲେ ତାର
ଅଧୀର ହୋଇ ସେ ଲୋଭରେ ପର ସଂପଦ ଅପହରେ
ଦୁର୍ଭାଗ୍ୟ ବଶରେ ତାହାର ସର୍ବଚେଷ୍ଟା ହେଲେ ବିଫଳ
କୁଟୁମ୍ବ ପୋଷି ନ ପାରଇ ଦୁଃଖେ ଦୀର୍ଘ ଶ୍ୱାସ ତେଜଇ

ଗଲେ ବଳଦ ବୁଢ଼ା ହୋଇ ଯେପରି କୃଷକ ତେଜଇ
କୁଟୁମ୍ବ ପାଳନେ ଅକ୍ଷମ ଦେଖି ପୁତ୍ର ସ୍ତ୍ରୀ ପରିଜନ
ତାକୁ ଆଉ ପୂର୍ବ ପ୍ରକାର ନ କରନ୍ତି ସେବା ଆଦର
ମାତ୍ର ବୈରାଗ୍ୟ ନଜନ୍ମଇ ବିଷୟ ଭୋଗରେ ମଜ୍ଜଇ

କ୍ରମେ ଜରାବସ୍ଥା ଆସଇ ଶରୀର ବିରୂପ ଦିଶଇ
ଖାଦ୍ୟ ପରିପାକ ନୁହଇ ନାନାଦି ବ୍ୟାଧି ଉପୁଜଇ
କେବଳ ମୃତ୍ୟୁ ଅପେକ୍ଷାରେ ପଡିରହେ ଗୃହ ମଧ୍ୟରେ
ଅବଜ୍ଞାରେ ଶ୍ୱାନ ପ୍ରକାରେ ସ୍ତ୍ରୀ ପୁତ୍ର ପ୍ରଦତ୍ତ ଖାଦ୍ୟରେ

କଷ୍ଟ ସହି ଧରେ ଜୀବନ ତଥାପି ନ ଆସଇ ଜ୍ଞାନ
ମୃତ୍ୟୁ ବେଳ ଆସେ ପାଖେଇ ସଦା ଉର୍ଦ୍ଧ୍ୱ ବାୟୁ ବହଇ
ବାତ କଫ ଘୋଟି ଆସଇ ଘନ ଘନ କାଶ ଉଠଇ
କଣ୍ଠ ଶୁଭଇ ଘଡ ଘଡ ବିନ୍ଧି ଉଠଇ ହାତ ଗୋଡ

ବନ୍ଧୁ ବାନ୍ଧବ ଶୋକଭରେ ବେଢ଼ିଥାନ୍ତି ଚଉପାଶରେ
ଅଚେତନେ ଶୋଇ ରହଇ ଡାକିଲେ କିଛି ଶୁଣେନାହିଁ
ଶେଷରେ ଲଭଇ ମରଣ ପରିବାର କରେ ରୋଦନ
ଧରିଣ ବିକଟାଳ ମୂର୍ତ୍ତି ଯମଦୂତେ ଧାଇ ଆସନ୍ତି

କୋପେ ନୟନ ବିକଟାଳ ଶରୀର ବିଶାଳ ପୃଥୁଳ
ତା ଦେଖି ଏ ଜୀବ ଭୟରେ ମଳ ଯେ ମୂତ୍ର ତ୍ୟାଗକରେ
ରାଜାଙ୍କ ସିପାହୀ ଯେମିତି ଅପରାଧୀ ବାନ୍ଧି ନିଅନ୍ତି
ଯମଦୂତେ ସେହି ପ୍ରକାରେ ଦଉଡି ବାନ୍ଧି ତା ଗଳାରେ

ଯମପୁରକୁ ବଳାତ କରେ ଘୋଷାରି ନିଅନ୍ତି ପଥରେ
ଗର୍ଜନେ ଯମଦୂତଙ୍କର ସେ ଭୟେ ହୁଏ ଥର ହର
ପଥରେ କୁକୁର ଦଂଶଇ କ୍ଷୁଧାରେ ଉଦର ଜଳଇ
ତୃଷାରେ ଶୁଖେ ତାକୁ ତଣ୍ଟି ପଡଇ ବାରମ୍ବାର ଝୁଣ୍ଟି

ନିଜ ପାପ କରି ସ୍ମରଣ    ହୁଅଇ ବ୍ୟାକୁଳିତ ମନ
ଦବାନଳ ପରି ଭୀଷଣ    ବହଇ ଯେ ଉଷ୍ଣ ପବନ
ଚାଲି ଚାଲି ତପ୍ତ ବାଲିରେ    ସଂନ୍ତାପିତ ହୁଏ ପଥରେ
ପଥେ ନ ମିଳଇ ବିଶ୍ରାମ    ଥକିଯାଏ କର ଚରଣ

କୋରଡା ବସଇ ପିଠିରେ    ଛୋଟେଇ ଚାଲଇ କଷ୍ଟରେ
କଷ୍ଟରେ ମୂର୍ଚ୍ଛିତ ହୁଅଇ    ପୁଣି ଚେତିଉଠି କାନ୍ଦଇ
ଅନେଶ୍ୱତ ସସ୍ର ଯୋଜନ    ପଥ ଅଟେ ଯମ ଭୁବନ
ଏତେ ଦୂର ଦୀର୍ଘ ମାର୍ଗରେ    ଦୁଇ ତିନି ଯେ ମୁହୂର୍ତ୍ତରେ

ନେଇ ଯାଇ ଯମ ଭୁବନ    ଦିଅନ୍ତି ଯାତନ ଭୀଷଣ
ତୀକ୍ଷ୍ଣଧାର ନିଆଁ ଖୁଣ୍ଟାରେ    ଚିଆଁ ଦିଅନ୍ତି ଶରୀରରେ
ତାହାର ଦେହର ମାଉଁସ    ତାକୁ ଖୁଆନ୍ତି ବହି ରୋଷ
ଗଧିଆ ବିଲୁଆ କୁକୁର    ଅନ୍ତବୁଜୁଳା ଟାଣେ ତାର

ବିଛା ଡାଆଁସ ତା ଶରୀର    ଦଂଶନ କରେ ବାରମ୍ବାର
ହସ୍ତୀମାନେ ଦାନ୍ତେ ଭୁଷନ୍ତି    ପର୍ବତରୁ ଖାଡେ ଠେଲନ୍ତି
ତାମିସ୍ର ଯେ ଅନ୍ଧତାମିଶ୍ର    ଗୌରବାଦି ନର୍କ ବିଶେଷ
ଯାତନା ନାରୀ ବା ପୁରୁଷ    ଭୋଗ କରିଥାନ୍ତି ଅବଶ୍ୟ

ସରଗ ନରକ ଏ ଦୁଇ    ଏହି ଲୋକରେ ହିଁ ଅଛଇ
ବୋଲି କହନ୍ତି କେହି କେହି    ଯେ ମାତ ଶୁଣ ମନଦେଇ
ପୁରୁଷ ଅତି କଷ୍ଟ ସହି    ଶରୀର କୁଟୁମ୍ବ ପୋଷଇ
ସକଳେ ରହନ୍ତି ଏଠାରେ    କେହି ନ ଯାଆନ୍ତି ସଙ୍ଗରେ

ସ୍ୱକର୍ମ ଫଳ ସଙ୍ଗେ ନେଇ    ପ୍ରାଣୀ ମୃତ୍ୟୁପରେ ଭୋଗଇ
ଯେ ପ୍ରାଣୀ ଦ୍ରୋହ ପାପ କରେ    ସେ ନର୍କେ ପଡେ ଦେହାନ୍ତରେ
ଦଇବ ବିଧି ଅନୁସାରେ    ନର୍କେ ଯାତନା ଭୋଗ କରେ
ଯନ୍ତ୍ରଣାରେ ହୁଏ ଅସ୍ଥିର    ସେ ସର୍ବହରା ପରକାର

ଯେ କରି ନାନା ପାପକର୍ମ    କୁଟୁମ୍ବ କରଇ ପୋଷଣ
ଅନ୍ଧ ତାମିତ୍ର ନର୍କେ ଯାଇ    ଶେଷ ଯନ୍ତ୍ରଣା ସ୍ଥାନ ଏହି
ଅନେକ ଯୋନି ଜନ୍ମପରେ    ଲଭଇ ମାନବ ଶରୀରେ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ କାପିଳେୟୋପାଖ୍ୟାନ ନାମ ତ୍ରିଂଶୋଽଧ୍ୟାୟଃ ।

*******

## ଏକତ୍ରିଂଶ ଅଧ୍ୟାୟ

### ଭଗବାନୁବାଚ

ଏ ଜୀବ ମାନବ ଦେହରେ    ଜନମ ଲଭିବା ବେଳରେ
ଭଗବାନଙ୍କ ପ୍ରେରଣାରେ    ନିଜ ପୂର୍ବ କର୍ମାନୁସାରେ
ପୁରୁଷ ବୀର୍ଯ୍ୟ ସାହାଯ୍ୟରେ    ପ୍ରବେଶେ ରମଣୀ ଗର୍ଭରେ
ଶୁକ୍ର ଶୋଣିତ ସମ୍ମିଶ୍ରଣ    କଲ୍ଲଳ ଅଟେ ଯାର ନାମ

ପଞ୍ଚମ ରାତ୍ରରେ ବର୍ତ୍ତୁଳ    ଦଶମେ ବଦରି ଆକାର
ମୁଣ୍ଡ ଜନ୍ମେ ଏକମାସରେ    ହସ୍ତପାଦାଦି ଦ୍ୱିମାସରେ
ନଖ ଲୋମ ଯେ ଅସ୍ଥି ଚର୍ମ    ନାରୀ ପୁରୁଷ ଚିହ୍ନ ପୁନ
ଅନ୍ୟଛିଦ୍ର ତିନି ମାସରେ    ଶୁଣ ଜନନୀ ମନ ସ୍ଥିରେ

ମାଂସ ପ୍ରଭୃତି ଧାତୁ ସପକ୍ତ    ଚତୁର୍ଥ ମାସେ ହୁଏ ଜାତ
କ୍ଷୁଧା ପିପାସା ପଞ୍ଚମରେ    ଷଷ୍ଠେ ଲୋଟିଣ ଜରାୟୁରେ
ଉଦର ମଧ୍ୟରେ ବୁଲଇ    ଜନନୀ ଖାଦ୍ୟ ରସ ପାଇ
ସପତ ଧାତୁ ପରିପୁଷ୍ଟ    ହେଲେ ଲଭଇ ବହୁକଷ୍ଟ

କୃମି ପ୍ରଭୃତି ଜନ୍ମ ସ୍ଥାନ    ମଳ ମୂତ୍ରରେ ପରି ପୂର୍ଣ୍ଣ
ପଡିରହେ ଗର୍ଭ ମଧ୍ୟରେ    ସେବେଳେ କୋମଳ ଦେହରେ
କ୍ଷୁଧାର୍ତ୍ତ କୃମି ଦଂଶନରେ    କଷ୍ଟ ପାଇଣ ଚେତା ହରେ
ଜନନୀ ଖାଦ୍ୟ କଟୁ ଅମ୍ଳ    କ୍ଷାର ଲବଣାକ୍ତ ଗରମ

ନାନା ଉଗ୍ର ରସ ସ୍ପର୍ଶରେ    ପୀଡା ଲଭଇ ସର୍ବାଙ୍ଗରେ
ଅନ୍ଧାର ଜରାୟୁ ମଧ୍ୟରେ    ଛନ୍ଦି ହୋଇ ଅନ୍ତ ନାଡିରେ
ଲେପଟି ଏ ଜୀବ ରହଇ    ମସ୍ତକ ଉଦରରେ ପୁରାଇ
ଗ୍ରୀବା ପୃଷ୍ଠ କୁଣ୍ଡଳାକାରେ    ମୋଡି ରହିଥାଏ ସେଠାରେ

ପିଞ୍ଜରା ବଦ୍ଧ ପକ୍ଷୀ ସମ ଜୀବଥାଏ ପର ଅଧୀନ
ଅଦୃଷ୍ଟ ପ୍ରେରଣାରେ ତହିଁ ସ୍ମରଣ ଶକତି ଜନ୍ମଇ
ଶତ ଶତ ପୂର୍ବ ଜନମ କର୍ମମାନ କରି ସ୍ମରଣ
ଅତ୍ୟନ୍ତ ବ୍ୟାକୁଳିତ ହୋଇ ଦୁଃଖେ ଦୀର୍ଘ ଶ୍ୱାସ ଛାଡଇ

ଆରମ୍ଭ ହେଲେ ମାସ ସାତ ଜ୍ଞାନ ଶକ୍ତି ହୁଏ ଜାଗ୍ରତ
ପ୍ରସୂତି ପବନ ବହଇ ଜନନୀ ଉଦରରେ ରହି
ବିଷ୍ଠା କୃମି କୀଟ ପ୍ରକାରେ ଏକ ସ୍ଥାନେ ରହି ନପାରେ
ସ୍ଥୂଳ ଶରୀରେ ଆବଦ୍ଧ ସେହି ଦେହାତ୍ମ ଦର୍ଶୀ ଜୀବ

ଅତି ଭୟେ ମାତୃଗର୍ଭରେ ଯେ ପ୍ରଭୁ ତାକୁ ସ୍ଥାନ ଦେଲେ
ସେ ପ୍ରଭୁଙ୍କ ଯୋଡହସ୍ତରେ କୃପାପାଇଁ ସେ ସ୍ତୁତି କରେ

### ଜନ୍ତୁ ଉବାଚ

ବୋଲେ ମୁଁ ଅଧମ ଅଜ୍ଞାନ ଏଣୁ ଅନନ୍ତ ଭଗବାନ
ମାତୃ ଗର୍ଭରେ ମତେ ରଖି ନାନା ଯାତନା ଦେଉଛନ୍ତି
ଏ କଷ୍ଟ ମୋର କର୍ମ ଫଳ ରକ୍ଷାକର ହେ ଆଦିମୂଳ
ଜଗତ ଉଦ୍ଧାର ନିମିତ୍ତ ଯେ ହରି ଧରି ନାନାରୂପ

ଧରାରେ ହୁଏ ଅବତୀର୍ଣ୍ଣ ସେ ସର୍ବାଶ୍ରୟ ନାରାୟଣ
ସେ କୃଷ୍ଣ ଅଭୟ ଚରଣ ତଳେ ମୁଁ ନେଉଛି ଶରଣ
ଦେହେନ୍ଦ୍ରିୟ ଅନ୍ତରଣ ଆଶ୍ରୟେ ଯେ କରାଇ କର୍ମ
ମତେ ବଦ୍ଧ ଜୀବ ରୂପରେ ସ୍ଥିପିଲା ଜନନୀ ଉଦରେ

ସନ୍ତପ୍ତ ହୃଦୟରେ ମୋର ସ୍ଫୁରିତ ଶୁଦ୍ଧ ନିର୍ବିକାର
ସ୍ୱରୂପ ଅଖଣ୍ଡ ଜ୍ଞାନର ପରମାତ୍ମାଙ୍କୁ ନମସ୍କାର
ମୋର ପ୍ରାକୃତ ଦେହ ନାହିଁ ମାତ୍ର ଭୌତିକ ଦେହେରହି
ଶବଦ ତ୍ରିଗୁଣ ଇନ୍ଦ୍ରିୟ ପୁଣି ଅହଙ୍କାର ବିଷୟ

ରୂପ ପରି ଜଣାପଡଇ ମାୟାରେ ପ୍ରଭାବିତ ହୋଇ
ଦେହ ଆଦି ଆବରଣରେ ଯାହାର ମହିମା ବିଚରେ
ନିୟନ୍ତା ପ୍ରକୃତି ପୁସର ପରମାତ୍ମାଙ୍କୁ ନମସ୍କାର
ମାୟା ପ୍ରଭାବରେ ତାଙ୍କରି ନିଜର ସ୍ୱରୂପ ବିସ୍ମରି

ଜୀବ ତ୍ରିଗୁଣ ବନ୍ଧନରେ ଯାତନା ଭୋଗଇ ସଂସାରେ
ଯାହାଙ୍କର ବିନା କୃପାରେ ଅନ୍ୟାନ୍ୟ କୌଣସି ଯୁକ୍ତିରେ
ଯାହାଙ୍କର ସ୍ୱରୂପ ଜ୍ଞାନ ଲଭେ ନାହିଁ ଜୀବ ଅଧମ
ଚରାରେ ପ୍ରାଣୀ ମଧରେ ଯେ ଏକମାତ୍ର ସବୁଠାରେ

ବସେ ଅନ୍ତର୍ଯ୍ୟାମୀ ରୂପରେ ମୁ ସଦା ଜୀବ ସ୍ୱରୂପରେ
ସୁଖ ଦୁଃଖ ଭୋଗ ବେଳରେ ଜାଣଇ ତ୍ରିକାଳ ଜ୍ଞାନରେ
ତେଣୁ ତ୍ରିତାପ ଶାନ୍ତିପାଇଁ ତା ନାମ ଭଜନ କରଇ
ଶରୀରଧାରୀ ଜୀବ ମୁହିଁ ଅନ୍ୟ ଜୀବ ଉଦରେ ରହି

ମଳ ମୂତ୍ର ରକ୍ତ କୁଣ୍ଡରେ ପଡି ତିବ୍ର ଜଠରାଗ୍ନିରେ
ସଂନ୍ତାପିତ ହୋଇ ରହଇ ବାହରିବା ମାସ ଗଣଇ
ହେ ଶ୍ରୀହରି ଦୀନ ବାନ୍ଧବ କେବେ ଏ ଜୀବେ ଉଦ୍ଧାରିବ
ହେ ସ୍ୱାମୀ ଦୟାଳୁ ଉଦାର ମାତ୍ର ଏହି ଦଶ ମାସର

ଏ ଅଜ୍ଞ ଜୀବକୁ ଆପଣ ଦେଇ ଅଛନ୍ତି ଦିବ୍ୟ ଜ୍ଞାନ
ଆହେ ଦୀନବନ୍ଧୁ ସୁମର ଏ ଅକୃତ୍ରିମ ଉପକାର
ବାରେକ ସୁପ୍ରସନ୍ନ ହୁଅ ହେ ମହାପ୍ରଭୁ ଦୟାମୟ
ଏ ଜୀବ ହୋଇ କୃତାଞ୍ଜଳି ଶ୍ରୀପଦେ କରୁଅଛି ଅଳି

ପଶୁପକ୍ଷୀ ଆଦି ସଂସାରେ ଜ୍ଞାନ ବିବେକ ଅଭାବରେ
ନିଜ ଦୈହିକ ସୁଖ ଦୁଃଖ ଅନୁଭବ କରାନ୍ତି ମାତ୍ର
କିନ୍ତୁ ମୁ ତୁମର ଦୟାରେ ଏହି ଅନିତ୍ୟ ସଂସାରରେ
ଶମ ଦମ ଆଦି ସାଧନ ଯୋଗ୍ୟ ଦେହ କରି ଧାରଣ

ନିଜର ବିବେକ ବୁଦ୍ଧିରେ ସର୍ବତ୍ର ବାହ୍ୟ ଆଭ୍ୟନ୍ତରେ
ଆପଣଙ୍କୁ ହି ପ୍ରତ୍ୟକ୍ଷରେ ସର୍ବଦା ଅନୁଭବ କରେ
ଦୁଃଖ ପୂର୍ଣ୍ଣ ଗର୍ଭ ମଧରେ ରହିଛି ମୁଁ ଅତି କଷ୍ଟରେ
ଏଥୁ ବାହରି ସଂସାରର ଅନ୍ଧକୂପେ ପଡିବା ମୋର

ମୁଁ କେବେ ଇଛା କରେନାହିଁ ହେ ଦୟାମୟ କର ତ୍ରାହି
ଆପଣଙ୍କ ମାୟା ସେଠାରେ ଜୀବକୁ ପୂର୍ଣ୍ଣ ଗ୍ରାସ କରେ
ତେଣୁ ଜୀବ ପରିଣାମରେ ଭ୍ରମେ ଜନ୍ମ ମୃତ୍ୟୁ ଚକ୍ରରେ
ମୁହିଁ ବ୍ୟାକୁଳିତ ନ ହୋଇ ହୃଦୟେ ତବ ପଦ ଧ୍ୟାଇ

ବୁଦ୍ଧି ବିବେକ ବିଚାରରେ ତରିବି ଭବ ସାଗରରେ
ନାନାଦି ଦୁଃଖ ପରିପୂର୍ଣ୍ଣ ଭବେନା ଲଭିବି ଜନମ

### କପିଳ ଉବାଚ

ଦଶ ମାସ ଜୀବ ଗର୍ଭରେ ସ୍ତୁତି କରୁଥିବା ବେଳରେ
ସେହି ଅଧୋମୁଖ ଶିଶୁକୁ ପ୍ରସୂତି ବାୟୁ ବାହରକୁ
ଆଣିବା ନିମିତ୍ତ ଠେଲଇ ତହିଁ ବ୍ୟାକୁଳିତ ହୋଇ
କଷ୍ଟରେ ଅଧୋମୁଖ ହୋଇ ଉଦର ମଧ୍ୟୁ ବାହାରଇ

ଏ ବେଳେ ରୁଦ୍ଧ ଶ୍ୱାସ ଗତି ନଷ୍ଟ ହୁଅଇ ପୂର୍ବସ୍ମୃତି
ଶିଶୁପଡେ ଭୂମି ଉପରେ ମାତା ମୂତ୍ର ରକ୍ତ ମଧ୍ୟରେ
ଲୋଟି ବିଷ୍ଠା କିଟ ପ୍ରକାରେ ଛଟପଟ ହୁଏ କଷ୍ଟରେ
ଗର୍ଭବାସ ବେଳର ଜ୍ଞାନ ଲୋପ ହୋଇ ସଂପୂର୍ଣ୍ଣ

କୁଆଁ କୁଆଁ ହୋଇ କାନ୍ଦଇ ଅଙ୍ଗ ଚାଳି ଯେ ନ ପାରଇ
ସେ ସେବେଳରେ ଯାଇଛଇ ନଜାଣି ପାରନ୍ତି ତା କେହି
କେବଳ ଶେଯେ ଶୋଇରହି ନ ପାରେ କଡ ଲେଉଟାଇ
ମଶକ ଆଦି ଦଂଶନରେ ପୀଡା କୋମଳ ଶରୀରରେ

ଗର୍ଭ ନିବାସ ସମୟର ଜ୍ଞାନ ନଥାଏଟି ତାହାର
ଉଠିବା ଶକ୍ତି ଅଭାବରେ କେବଳ କାନ୍ଦେ ଉଚ୍ଚସ୍ୱରେ
ବାଲ୍ୟ ପୌଗଣ୍ଡ ଅବସ୍ଥାରେ ଦୁଃଖ ଭୋଗୀ ନାନା ପ୍ରକାରେ
କ୍ରମେ ପ୍ରବେଶଇ ଯୌବନ ଭୋଗ ବିଳାସେ ବଳେ ମନ

ଇପ୍ସିତ ବସ୍ତୁ ଅଭାବରେ କ୍ରୋଧ ପ୍ରକାଶେ ଅଜ୍ଞାନରେ
ବୁଦ୍ଧି ବିବେକ ହରାଇଣ ବିଷୟ ଭୋଗେ ହୁଏ ମଗ୍ନ
ଶରୀର ସହ ଅଭିମାନ କ୍ରୋଧ ବଢ଼ଇ ଦିନୁ ଦିନ
କାମ ଭାବେ ହୋଇ ଉଚ୍ଛନ୍ନ ଇଚ୍ଛଇ ରମଣୀ ସଙ୍ଗମ

ବିଷୟ ଉପଭୋଗ ପାଇଁ ବଳେ ପର ଧନ ହରଇ
ପଞ୍ଚ ଭୌତିକ ଶରୀରରେ ମୁଁ ମୋର ଅଭିମାନ କରେ
ଯେଉଁ ଦେହାତ୍ମ ବୋଧ ପାଇଁ ଜୀବ ନାନା ଦୁଃଖ ଭୋଗଇ
ଯେଉଁ ଦେହ ଅଭିମାନରେ ଜୀବ ଭ୍ରମେ ନାନା ଯୋନିରେ

ସେହି ଶରୀର ସୁଖ ପାଇଁ ନାନାଦି କୁ କର୍ମ କରଇ
ରସନା ଉପସ୍ଥ ପ୍ରଭୃତି ଇନ୍ଦ୍ରିୟ ଲାଳସାରେ ମାତି
ଅସତ ଦୁର୍ଜନ ସଙ୍ଗରେ ମଜ୍ଜଇ ଅସତ୍ କର୍ମରେ
ବାଙ୍କ ମନ ଇନ୍ଦ୍ରିୟ ସଂଯମ ସତ୍ୟ ଶଉଚ ଦମ ଶମ

ବୁଦ୍ଧି ଶ୍ରୀଯଶ କ୍ଷମା ଦାନ ଐଶ୍ୱର୍ଯ୍ୟାଦି ସର୍ବ ସଦଗୁଣ
କ୍ରମେ କ୍ରମେ ନଷ୍ଟ ହୁଅଇ ଶୋଚନୀୟ ଦଶା ଘଟଇ
ସେ ମୂଢ଼ ରମଣୀ ଅଧୀନ ସାକ୍ଷାତ କ୍ରୀଡା ମୃଗ ସମ
ସର୍ବଦା ଆଦେଶ ପାଳଇ ଅଜ୍ଞାନେ କିଛି ନ ବୁଝଇ

ସ୍ତ୍ରୀଙ୍କ ସଙ୍ଗ ସ୍ତ୍ରୀ ସଙ୍ଗୀଙ୍କର ସଙ୍ଗରେ ଅଜ୍ଞାନ ଜୀବର
ଯେ ମୋହ ବନ୍ଧନ ଜନ୍ମଇ ଅନ୍ୟ ସଙ୍ଗେ କେବେ ନ ହୋଇ
ବ୍ରହ୍ମାଙ୍କ କନ୍ୟା ସରସ୍ୱତୀ ରୂପ ଲାବଣ୍ୟବତୀ ସତୀ
ତା ରୂପକୁ ଚାହିଁ ବିଧାତ ହେବାରୁ କାମ ବିମୋହିତ

ସରସ୍ୱତୀ ମୃଗୀ ରୂପରେ ସେଠାରୁ ଧାଇଁ ପଳାଇଲେ
ବ୍ରହ୍ମା ବି ନିର୍ଲ୍ଲଜ ଭାବରେ ମୃଗ ରୂପରେ ଗୋଡାଇଲେ
ସେ ବ୍ରହ୍ମା ମରୀଚି ପ୍ରଭୃତି ପ୍ରଜାପତିଙ୍କୁ କଲେ ସୃଷ୍ଟି
ସେମାନେ କଶ୍ୟପ ଆଦିଙ୍କୁ କଶ୍ୟପାଦି ଦେବ ନରଙ୍କୁ

ସରଜନା କଲେ କ୍ରମରେ ସୃଷ୍ଟିରେ ସକଳ ମଧ୍ୟରେ
କେବଳ ଋଷି ନାରାୟଣ ଅଟନ୍ତି ପୁରୁଷ ଉତ୍ତମ
ତାଙ୍କ ଭିନ୍ନ ନାରୀ ମାୟାରେ ସରବେ ମୋହିତ ସଂସାରେ
ଯେ ଯୋଗୀ ଶ୍ରେଷ୍ଠ ହେବାପାଇଁ ସଦା ହୃଦୟରେ ଭାବଇ

ଯେ ଯୋଗ ଶ୍ରେଷ୍ଠ ସୋପାନରେ ଆରୋହଣକୁ ଇଚ୍ଛାକରେ
ଯେବା ମୋର ସେବା ଇଚ୍ଛଇ ଆତ୍ମାନାତ୍ମ ଭାବ ଜାଣଇ
ତା ପକ୍ଷେ ସ୍ତ୍ରୀ ସଙ୍ଗ ନିତାନ୍ତ ପରିତ୍ୟାଗ ଅଟେ ଉଚିତ
ରମଣୀ ପୁରୁଷ ଜାତିର ନିଶ୍ଚେ ନରକ ମୁକ୍ତ ଦ୍ୱାର

ମୋ ମାୟା ରମଣୀ ମୁରତି ଅଟଇ ଅତି ବଳବତୀ
ନିଜର ଭ୍ରୂଭଙ୍ଗୀ ଛଟାରେ ବିଜୟୀ ବୀରେ ପଲକରେ
ଦଳି ମର୍ଦ୍ଦଇ ଚରଣରେ ତା ଶକ୍ତି କେବା କଳିପାରେ
ସ୍ତ୍ରୀ ରୂପୀ ମାୟା ଧୀରେ ଧୀରେ ଚରଣ ସେବା ଛଳନାରେ

ଯଦି ପ୍ରବେଶ ନିକଟରେ ତେବେ ଆଚ୍ଛାଦିତ ଘାସ ପତ୍ରରେ
କୂପପରି ତାକୁ ନିଜର ମଣିବ ମରଣର ଦ୍ୱାର
ପୂର୍ବ ଜନ୍ମେ ନାରୀ ସଙ୍ଗମ ଅନ୍ତଃ କାଳେ ରମଣୀ ଧ୍ୟାନ
କରିଲେ ସ୍ତ୍ରୀ ଜନ୍ମ ମିଳଇ ମୋର ମୋହିନୀ ମାୟା ଏହି

ବ୍ୟାଧ ମଧୁର ବଂଶୀ ଶୁନ ଶୁଣିଣ ଯଥା ମୃଗଗଣ
ପଡିଥାନ୍ତି ମୃତ୍ୟୁ ମୁଖରେ ସେପରି ପୁରୁଷ ପକ୍ଷରେ
ଗୃହ ଧନ ପୁତ୍ର କଳତ୍ର ଦଇବ ଦ୍ୱାର ନିଯୋଜିତ
ମରଣର ପଥ ସାକ୍ଷାତ ଏଣୁ ସାବଧାନ ଉଚିତ

ଏ ଜୀବ ଲିଙ୍ଗ ଦେହ ନେଇ ଅନ୍ୟ ଶରୀରକୁ ଗମଇ
ପ୍ରାରବ୍ଧ କର୍ମ ଭୋଗପରେ ଅନ୍ୟ ଦେହକୁ ଲାଭକରେ
ସଦା କାମ୍ୟ କର୍ମ କରଇ ଦୁଃଖ ମୂଳ କର୍ମ ଅଟଇ
ଲିଙ୍ଗ ଦେହ ମୁକ୍ତି ପର୍ଯ୍ୟନ୍ତ ରହିଥାଏ ଜୀବ ସହିତ

ପଞ୍ଚଭୂତ ଇନ୍ଦ୍ରି ମନର କାର୍ଯ୍ୟ ରୂପସ୍ଥୂଳ ଶରୀର
ଭୋଗ ଅଧିଷ୍ଠାନ ତାହାର ଯେବେ ଏ ଦୁଇ ପରସ୍ପର
ମିଶିଣ ନ କରନ୍ତି କର୍ମ ପ୍ରାଣୀର ଘଟଇ ମରଣ
ଏଦୁଇ ହୋଇଲେ ମିଳନ ଜୀବ ଲଭଇ ପୁନର୍ଜନ୍ମ

ଏ ଜୀବ ସ୍ଥୂଳ ଶରୀରରେ ସମସ୍ତ ଅନୁଭବ କରେ
ସ୍ଥୂଳ ଦେହ ବସ୍ତୁ ଗ୍ରହଣ କରି ନ ପାରିବା ମରଣ
ସ୍ଥୂଳ ଶରୀର ଅଭିମାନ କରିବା ଜୀବର ଜନମ
ତେଣୁ ମୁମୁକ୍ଷୁ ପୁରୁଷହିଁ ମୃତ୍ୟୁକୁ ଭୟ କରେ ନାହିଁ

ସେ ଜୀବ ସ୍ୱରୂପ ବିଚାରି ନିଃସଙ୍ଗ ଭାବେ ଧୈର୍ଯ୍ୟଧରି
ଏ ମାୟିକ ସଂସାରରେ ଯୋଗ ବୈରାଗ୍ୟ ଚିତ୍ତରେ
ବିଜ୍ଞାନ ମୟୀ ବୁଦ୍ଧି ବଳେ ଆସକ୍ତି ତେଜି ଶରୀରରେ
ବିହାର କରିବା ଉଚିତ୍ ଶୁଣ ଜନନୀ ଦେଇ ଚିତ୍ତ ।

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ତୃତୀୟ ସ୍କନ୍ଧେ ବୈୟାସିକ୍ୟାଂ ଜୀବଗତି ବର୍ଣ୍ଣନେ ନାମ ଏକତ୍ରିଂଶୋଽଧ୍ୟାୟଃ

* * * * * * *

## ଦ୍ୱାତ୍ରିଂଶ ଅଧ୍ୟାୟ

### କପିଳ ଉବାଚ

କପିଳ ରୂପେ ଭଗବାନ ଧରାରେ ହୋଇ ଅବତୀର୍ଣ୍ଣ
ମାତାଙ୍କୁ ଦେଲେ ଦିବ୍ୟଜ୍ଞାନ ଶୁଣ ସୁଜନେ ଦେଇ ମନ
ଯେଉଁ ପୁରୁଷ ଗୃହେ ରହି ସକାମ ଧରମ ପାଳଇ
ଧର୍ମାର୍ଥ ଉପଭୋଗ ପାଇଁ ସକଳ କର୍ମ ଆଚରଇ

ହୋଇ ମୋହିତ କାମନାରେ ଭାଗବତ୍ ଧର୍ମ ନଆଚରେ
ଶ୍ରଦ୍ଧାରେ ଦେବ ପିତୃଗଣ ଯଜ୍ଞେ କରଇ ଆରାଧନ
ଦେବ ପିତୃ ଉପାସନାରେ ବସଇ ସେ ପିତୃଲୋକରେ
ଆନନ୍ଦେ ସୋମ ପାନକରି ଶେଷେ ଫେରଇ ମର୍ତ୍ତ୍ୟପୁରୀ

ମହା ପ୍ରଳୟେ ଭଗବାନ ଶେଷ ଶେଯେ କଲେ ଶୟନ
ସକାମ ଗୃହସ୍ତ୍ରୀ ଗଣ ତାଙ୍କ ଦେହେ ହୁଅନ୍ତି ଲୀନ
ଯେ ବ୍ୟକ୍ତି ଭୋଗ ବିଳାସରେ ଧର୍ମ ଅର୍ଥ ବ୍ୟୟ ନ କରେ
ଈଶ୍ୱରପାଦେ ସମର୍ପଇ ନିବୃତ୍ତି ମାର୍ଗରେ ଗମଇ

ଆସକ୍ତି ଶୂନ୍ୟ ଶୁଦ୍ଧ ଚିତ୍ତ ପ୍ରଶାନ୍ତ ମମତା ରହିତ
ଯା ହୃଦେ ଅହଙ୍କାର ନାହିଁ ଯେ ନିଜ ଧରମ ପାଳଇ
ସେ ଦେବଯାନ ମାର୍ଗେ ଯାଇ ପରମ ବ୍ରହ୍ମଙ୍କୁ ଲଭଇ
ପରମ ବ୍ରହ୍ମ ଭାବେ ଯେହି ହିରଣ୍ୟ ଗର୍ଭଙ୍କୁ ପୂଜଇ

ବ୍ରହ୍ମ ପ୍ରଳୟ ଯାଏ ସେହି ବ୍ରହ୍ମଲୋକରେ ନିବସଇ
ଯେବେଳେ ବ୍ରହ୍ମା ବେଦବର ଦ୍ୱିପରାର୍ଦ୍ଧ କାଳ ଅଧିକାର
ଭୋଗଶେଷେ ପୃଥିବୀ ଜଳ ବାୟୁ ନଭ ମନ ଅନଳ
ଇନ୍ଦ୍ରିୟ ବିଷୟ ସମସ୍ତ ଅହଙ୍କାର ଆଦି ସହିତ

ବିଶ୍ୱର ସଂହାର ଇଚ୍ଛାରେ ତ୍ରିଗୁଣା ପ୍ରକୃତି ସଙ୍ଗରେ
ବିଲୀନ ନିର୍ଗୁଣ ବ୍ରହ୍ମରେ ବିରକ୍ତ ଯୋଗ୍ୟ ସେବକରେ
ସ୍ରଷ୍ଟା ବିଧାତାଙ୍କ ସଙ୍ଗରେ ମିଶନ୍ତି ପରମ ବ୍ରହ୍ମରେ
ଯେ ଧାତା ସ୍ଥାବର ଜଙ୍ଗମ ପ୍ରାଣିଗଣ ଆଦି କାରଣ

ଯେ କରନ୍ତି ନିଷ୍କାମ କର୍ମ ମରୀଚି ଆଦି ଋଷିଗଣ
ସନକ ଆଦି ଯୋଗେଶ୍ୱର ଯୋଗ ପ୍ରବର୍ତ୍ତକ ସିଦ୍ଧଙ୍କର
ସହିତ ସେ ଆଦି ସଗୁଣ ବ୍ରହ୍ମଙ୍କୁ ଲଭିଥାନ୍ତି ଜାଣ
ଥିବାରୁ କର୍ତ୍ତୁତ୍ୱ ଭିମାନ ବିଭେଦ ସୃଷ୍ଟି ହେତୁ ପୁନ

ଈଶ୍ୱର ଇଚ୍ଛା ଅନୁସାରେ ପ୍ରବେଶନ୍ତି ସୃଷ୍ଟି କାଳରେ
କାଳରୂପୀ ହରି ଆଜ୍ଞାରେ ତ୍ରିଗୁଣ ବୈଷମ୍ୟ ଘଟିଲେ
ବ୍ରହ୍ମାପୁଣି ପୂର୍ବ ପ୍ରକାରେ ପ୍ରକଟ ହୁଅନ୍ତି ସଂସାରେ
ହେ ମାତା ତୁ ସ୍ଥିର ଚିତ୍ତରେ ଅନନ୍ୟ ଭକତି ଶ୍ରଦ୍ଧାରେ

ସକଳ ମଙ୍ଗଳ ନିଧାନ ହରିପଦେ ନିଅ ଶରଣ
ପୂର୍ବ ଋଷି ଗଣ ଏପରି ଐଶ୍ୱର୍ଯ୍ୟ ରାଶି ଭୋଗକରି
ପୁଣି ଶ୍ରୀହରି ପ୍ରେରଣାରେ ଫେରି ଅଛନ୍ତି ଏ ସଂସାରେ
ଯେ ସକାମ ବ୍ୟକ୍ତି ଚିତ୍ତ ସଂସାର ବିଷୟେ ଆସକ୍ତ

ଶ୍ରଦ୍ଧାରେ କାମ୍ୟ ନିତ୍ୟ କର୍ମ ବିଧିରେ କରେ ଅନୁଷ୍ଠାନ
ରାଜସ ଗୁଣ ପ୍ରଭାବରେ କାମନା ଜନ୍ମଇ ହୃଦରେ
ଇନ୍ଦ୍ରିୟ ଅଧୀନରେ ରହି ଗୃହ ପୁତ୍ରାଦିରେ ମଜ୍ଜଇ
ପିତୃଙ୍କୁ କରଇ ଅର୍ଚ୍ଚନ ଧର୍ମାର୍ଥ କାମ ପରାୟଣ

ଶ୍ରୀ ହି ଗୁଣ ଲୀଳାମାନ ନ କରଇ କ୍ଷଣେ କୀର୍ତ୍ତନ
ତେଜି ସେ ହରି କଥା ମୃତ ବିଷ୍ଠାଭୋଜୀ ପଶୁ ସାକ୍ଷାତ
ନିତି ଗ୍ରାମ କଥା ଶୁଣଇ ନିଶ୍ଚୟ ଜୀବନ୍ମୃତ ସେହି
ଗର୍ଭାଧାନୁ ମୃତ୍ୟୁ ପର୍ଯ୍ୟନ୍ତ ବୈଦିକ ସଂସ୍କାର ସମସ୍ତ

ବିଧିରେ ଯେ କରେ ପାଳନ ସେ ସକାମ ବ୍ୟକ୍ତିଗଣ
ଦକ୍ଷିଣ ଅୟନ ଗତିରେ ପିତୃ ଯାନଧୂମ ମାର୍ଗରେ
ପିତୃଲୋକ କରେ ଗମନ ହୋଇବା ପରେ ପୁଣ୍ୟ କ୍ଷୀଣ
ଇହ ଲୋକେ ହୁଏ ପତିତ ନିଜ ବଂଶରେ ହୁଏ ଜାତ

ତେଣୁ ହେ ଜନନୀ ଭକ୍ତିରେ କାୟ ମାନସ ବଚନରେ
ଶ୍ରୀବାସୁଦେବ ପରାଭକ୍ତି ଜନ୍ମାଏ ବିଷୟ ବିରକ୍ତି
ବ୍ରହ୍ମ ଦର୍ଶନ୍ନୁ ଦିବ୍ୟ ଜ୍ଞାନ ଅଚିରେ ଚିତ୍ତେ ହୁଏ ଜନ୍ମ
ଏ ଭବ ବିଷୟ ସମସ୍ତ ଭଗବତ ରୂପ ସାକ୍ଷାତ

ଯେବେଳେ ଇନ୍ଦ୍ରିୟ ବୃତ୍ତିରେ ସକଳ ବିଷୟ ଭୋଗରେ
ଭକତ ନିଜ ହୃଦୟରେ ପ୍ରିୟ ଅପ୍ରିୟ ନ ବିଚାରେ
ସକଳ ସମାନ ମଣଇ ସର୍ବତ୍ର ହରିଙ୍କୁ ଦେଖଇ
ସେବଇ ସମଭାବେ ରହି ନିଃସଙ୍ଗ ଜୀବନ ଯାପଇ

ନଧରେ କାର ଦୋଷ ଗୁଣ ନକରେ ତ୍ୟାଗ ବା ଗ୍ରହଣ
ନିଜ ଆତ୍ମାର ବ୍ରହ୍ମ ରୂପ ସେବେଳେ କରାଇ ସାକ୍ଷାତ
ସେ ଜ୍ଞାନ ସ୍ୱରୂପ ଅଟଇ ସ୍ୱୟଂ ପରମ ବ୍ରହ୍ମ ସେହି
ସେହି ପୁରୁଷ ସର୍ବେଶ୍ୱର ଏକ ଅଦ୍ୱୟ ନିରାଧାର

ସେ ସ୍ୱୟଂ ଶରୀର ବିଷୟ ଜୀବାତ୍ମା ସକଳ ଇନ୍ଦ୍ରିୟ
ମଣଇ ଅନେକ ରୂପରେ ଶୁଣ ଜନନୀ ମନ ସ୍ଥିରେ
ସଂସାରେ ତିବ୍ର ଅନାସକ୍ତି ଏକାନ୍ତ ଅବସ୍ଥାରେ ସ୍ଥିତି
ଯୋଗୀର ଏ ସର୍ବପ୍ରକାର ଫଳ ଯେ ଯୋଗ ସାଧନାର

ବ୍ରହ୍ମ ଅଦ୍ୱିତୀୟ ନିର୍ଗୁଣ ଜ୍ଞାନ ସ୍ୱରୂପ ଅଟେ ଜାଣ
ସେ ବ୍ରହ୍ମ ବାହ୍ୟ ବୃତ୍ତିଯୁକ୍ତ ଇନ୍ଦ୍ରିୟରେ ଭ୍ରମ ବଶତଃ
ଶବଦ ସ୍ପର୍ଶ ଆଦି ଧର୍ମ ବିଶିଷ୍ଟ ପଦାର୍ଥ ବିଭିନ୍ନ
ସ୍ୱରୂପେ ହୁଅଇ ପ୍ରତୀତ ଏହା ଜାଣନ୍ତି ଜ୍ଞାନୀ ସନ୍ଥ

ସେ ପରଂବ୍ରହ୍ମ ସ୍ୱପ୍ରାକାଶ ମହତ ଇନ୍ଦ୍ରି ଏକାଦଶ
ତ୍ରି ଅହଙ୍କାର ମହାଭୂତ ଯୋଗେ ହୁଏ ରୂପାନ୍ତରିତ
ବ୍ରହ୍ମ ସଂଯୋଗ ହେଲେ ତହିଁ ତାହାକୁ ଜୀବ ବୋଲି କହି
ଜୀବ ଶରୀର ଅଟେ ବ୍ରହ୍ମ ବ୍ରହ୍ମ ରୂପେ ଏ ଜୀବ ଜନ୍ମ

ଶ୍ରଦ୍ଧା ଭକତି ବୈରାଗ୍ୟରେ ସର୍ବଦା ଯୋଗ ଅଭ୍ୟାସରେ
ଯାହାର ବୁଦ୍ଧି ଅନାସକ୍ତ ଦୃଢ଼ ଏକାଗ୍ର ଯାର ଚିତ୍ତ
ସେହି ବ୍ୟକ୍ତି ଜୀବ ଦେହରେ ବ୍ରହ୍ମ ସତ୍ତାକୁ ଜାଣି ପାରେ
ବ୍ରହ୍ମ ଦର୍ଶନର ସାଧନ ସ୍ୱରୂପ ଅଟେ ଦିବ୍ୟଜ୍ଞାନ

ସମସ୍ତ କଲି ମୁଁ ବର୍ଣ୍ଣନ ହେ ମାତ ଲଭିଲେ ଏ ଜ୍ଞାନ
ପ୍ରକୃତି ପୁରୁଷ ଯଥାର୍ଥ ସ୍ୱରୂପ ହୁଅଇ ପ୍ରତୀତ
ଜ୍ଞାନଯୋଗ ଭକ୍ତି ଯୋଗର ଫଳ ଅଟେ ଏହି ପ୍ରକାର
ଏହାକୁ ଭଗବତ ପ୍ରାପ୍ତି ବୋଲି ଜ୍ଞାନୀ ଜନେ କହନ୍ତି

ଦେଖ ଯେପରି ଗୁଡ କ୍ଷୀର ବହୁତ ଗୁଣର ଆଧାର
ଏକ ହେଲେ ମଧ ପଦାର୍ଥ ବିଭିନ୍ନ ଇନ୍ଦ୍ରିରେ ସାକ୍ଷାତ
ନେତ୍ରକୁ ଦିଶଇ ଧବଳ ଜିହ୍ୱାକୁ ଲାଗଇ ମଧୁର
ତ୍ୱଚାରେ ଶୀତ ଉଷ୍ଣ ଦୁଇ ଏପରି ନାନା ରୂପ ହୋଇ

ସେପରି ବ୍ରହ୍ମ ଅଟେ ଏକ ତ୍ରିଗୁଣେ ହୁଅଇ ଅନେକ
ତାଙ୍କୁ ଯେ ଯେପରି ଭାବଇ ସେ ସେହି ପରି ଦିଶଇ
ଶାସ୍ତ୍ର ମାର୍ଗରେ ଏକ ହୋଇ ନାନା ରୂପ ନାମ ବହଇ
ଯଜ୍ଞ ତପସ୍ୟା କର୍ମ ଦାନ ବେଦ ବିଚାର ଅଧ୍ୟୟନ

ମାନସ ଇନ୍ଦ୍ରିୟ ସଂଯମ ତ୍ୟାଗ ଯୋଗ ସାଧନ
ପ୍ରବୃତ୍ତି ନିବୃତ୍ତି ନିଷ୍କାମ ସକାମ ଧର୍ମ ଆତ୍ମ ଜ୍ଞାନ
ଭକ୍ତି ଶ୍ରଦ୍ଧା ବଇରାଗ୍ୟରେ ଏପରି ନାନ ସାଧନାରେ
ସ୍ୱରାଟ ସଗୁଣ ନିର୍ଗୁଣ ଲାଭ ହୁଅନ୍ତି ନାରାୟଣ

ହେ ମାତ ସାତ୍ତ୍ୱିକ ରାଜସ ନିର୍ଗୁଣ ପୁଣି ଯେ ତାମସ
ଭକ୍ତି ଯୋଗଚାରି ପ୍ରକାର କାରଣ, ଜନ୍ମାଦି ବିକାର
କାଳ ଅବ୍ୟକ୍ତ ଗତି ପୁଣ ସମସ୍ତ କଲି ମୁଁ ବର୍ଣ୍ଣନ
ଅଜ୍ଞାନେ କର୍ମ କରି ନିତି ଜୀବ ଲଭଇ ନାନା ଗତି

ହେ ମାତ ଜୀବ ଏ କାରଣେ ସମର୍ଥ ନୁହଁ ଆତ୍ମ ଜ୍ଞାନେ
ହେ ଜନନୀ ଯେ ବ୍ରହ୍ମଜ୍ଞାନ ତୋ ଆଗେ କଲି ମୁଁ ବର୍ଣ୍ଣନ
ଯେ ଦୁର୍ବିନୀତ ଦୁଚାଚାରୀ ଗର୍ବି ତ ଧର୍ମଧ୍ୱଜା ଧାରୀ
ଦୁଷ୍ଟଙ୍କୁ ଶୁଣାଇବ ନାହିଁ ପୁଣି ଯେ ମତେ ଭଜେ ନାହିଁ

ବିଷୟୀ ଲୋଭୀ ଭକ୍ତ ଦ୍ରୋହୀ ଉପଦେଶ ଯେ ଦେବ ନାହିଁ
ଶ୍ରଦ୍ଧାଳୁ ଶୁଦ୍ଧ ଭକ୍ତିମାନ ବିନୟୀ ରାଗ ଦ୍ୱେଷ ହୀନ
ଯେ ଗୁରୁସେବା ପରାୟଣ ପ୍ରଶାନ୍ତ ବିମତ୍ସ ଦୀନ
ପବିତ୍ର ଚିତ୍ତ ଅନାସକ୍ତ ଭକ୍ତକୁ କହିବା ଉଚିତ୍

ମୋ ଠାରେ ସ୍ଥାପି ସ୍ଥିର ଚିତ୍ତ ଯେ ବା ଶୁଣଇ ଥରେ ମାତ୍ର
ଅନ୍ୟକୁ ଶୁଣାଏ କହଇ ସେ ପରମ ଗତି ଲଭଇ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ତୃତୀୟ ସ୍କନ୍ଧେ ବୈୟାସିକ୍ୟାଂ କପିଳ ଦେବହୂତି ସଂବାଦେ ନାମ ଏକ ଦ୍ୱାତ୍ରିଂଶୋଽଧ୍ୟାୟଃ ।

*******

# ତ୍ରୟତ୍ରିଂଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ବୋଲେ ମୈତ୍ରେୟ ମୁନିବର ଶୁଣ ହେ ଭକତ ବିଦୁର
ମନୁ ପ୍ରଜାପତି ଦୁହିତୀ କର୍ଦ୍ଦମ ପତ୍ନୀ ଦେବହୂତି
କପିଳ ଭଗବାନଙ୍କର ଶୁଣି ବଚନ ଏ ପ୍ରକାର
ସଂସାର ମୋହ କରି ଦୂର ସର୍ବଶାସ୍ତ୍ର ଜ୍ଞାନ ଆଧାର
କପିଳଙ୍କୁ କରି ପ୍ରଣତି ଭକ୍ତିରେ ଆରମ୍ଭିଲେ ସ୍ତୁତି

## ଦେବହୂତି ଉବାଚ

ଆହେ ପ୍ରଭୋ ଅଜ ଅନନ୍ତ ଧାତା ତୋ ନାଭି ପଦ୍ମ ଜାତ
ପଞ୍ଚ ମହାଭୂତ ଇନ୍ଦ୍ରିୟ ଶବ୍ଦ ଆଦି ପଞ୍ଚ ବିଷୟ
ମନ ସମଷ୍ଟି ସତ୍ୟରୂପ ତ୍ରିଗୁଣ ପ୍ରବାହ ସଂଯୁକ୍ତ
ବୀଜ ସର୍ବ କାର୍ଯ୍ୟ କାରଣ ପ୍ରଳୟ ଜଳରେ ଶୟନ

ତୋହର ବିରାଟ ଶରୀର ବ୍ରହ୍ମାଧ୍ୟାୟନ୍ତି ନିରନ୍ତର
ହେ ପ୍ରଭୋ ଅଚିନ୍ତ୍ୟ ଶକତି ତୁ ବିଶ୍ୱରୂପୀ ସର୍ବବ୍ୟାପୀ
ତୁ ସତ୍ୟ ସଂକଳ୍ପ ନିଷ୍କ୍ରିୟ ନିଜ ଶକ୍ତି ଗୁଣ ପ୍ରବାହ
ରୂପରେ ବ୍ରହ୍ମାଦି ଅନନ୍ତ ମୂର୍ତ୍ତିରେ ହୋଇତୁ ବିଭକ୍ତ

ଏ ବିଶ୍ୱ କରୁ ତୁ ସର୍ଜନ ସକଳ ତୋ ଶକ୍ତି ଅଧୀନ
ହେ ନାଥ ମହା ପ୍ରଳୟରେ ବିଶ୍ୱଲୟ କରି ଉଦରେ
କଳ୍ପାନ୍ତେ ଶିଶୁରୂପ ହୋଇ ପଦ ଅଙ୍ଗୁଷ୍ଠି ମୁଖେ ଦେଇ
ବଟ ପତ୍ରରେ ଶୋଉ ତୁହି ଏକଥା ବିଚିତ୍ର ନୁହଇ

ମୁହିଁ ମୋହର ଗର୍ଭେ ପୁନ ଆପଣଙ୍କୁ କଲି ଧାରଣ
ପାପାତ୍ମା ଦୁବୃତ୍ତ ଦମନ ଭକ୍ତର ତାରଣ କାରଣ
ଧର୍ମ ରକ୍ଷା ପାଇଁ ସ୍ୱେଚ୍ଛାରେ ତୁହି ଅବତରୁ ଧରାରେ
ମୁମୁକ୍ଷୁ ଜନେ ମୁକ୍ତି ପଥ ଦର୍ଶାଇବାପାଇଁ ହେ ନାଥ

ଶୂକର ଆଦି ଅବତାର ପରି ଧରି ନର ଶରୀର
କପିଳ ମୁନି ସ୍ୱରୂପରେ ଜାତ ହେଲୁ ମୋର ଗର୍ଭରେ
ଏ ବିଶ୍ୱ ସ୍ଥିତି ଯା ଉଦରେ ତାଙ୍କୁ ମୁଁ କେମନ୍ତେ ଜଠରେ
ଧରିଲି ବୁଝି ନ ପାରଇ କେବଳ ତୋର ମାୟା ଏହି

ଶ୍ୱାନ ମାଂସଭୋଜୀ ଚଣ୍ଡାଳ    ଯଦି ତୋର ନାମ କେବଳ
ଶ୍ରଦ୍ଧାରେ ଅନନ୍ୟ ଭକ୍ତିରେ    ଥରେ ଉଚ୍ଚାରଇ ତୁଣ୍ଡରେ
ତେବେ ସୋମଯାଜୀ ବ୍ରାହ୍ମଣ    ଅପେକ୍ଷା ଅଟେ ସେ ମହାନ
ଯେ ତତେ ଦେଖଇ ସାକ୍ଷାତ    ତା ଜୀବନ ହୁଏ କୃତାର୍ଥ

ଯେଉଁ ପୁରୁଷ ତୋର ନାମ    କରଇ ମୁଖେ ଉଚ୍ଚାରଣ
ସେ ଯଜ୍ଞ ହୋମ ତୀର୍ଥ ସ୍ନାନ    ସତ୍ୟ ସଦାଚାର ପାଳନ
ବେଧ୍ୟାୟନାହି ସକଳ    ଲଭଇ ସର୍ବ ପୁଣ୍ୟଫଳ
ହେ ଦେବ କପିଳ ଆପଣ    ମହାପୁରୁଷ ପରଂବ୍ରହ୍ମ

ଜ୍ଞାନୀଏ ଅନ୍ତ କରଣରେ    ତତେ ଚିନ୍ତନ୍ତି ଏକାନ୍ତରେ
ତୁ ବିଷ୍ଣୁ ସ୍ୱରୂପ ସାକ୍ଷାତ    ବେଦ ତତ୍ତ୍ୱ ତୋ ଗର୍ଭେସ୍ଥିତ
ତୋ ତେଜରେ ହେ ଦୟାମୟ ଶାନ୍ତ ମାୟା ଗୁଣ ପ୍ରବାହ

### ମୈତ୍ରେୟ ଉବାଚ

ମାତୃ ବତ୍ସଳ ଭଗବାନ    କପିଳ ପୁରୁଷ ମହାନ
ମାତାଙ୍କୁ ଗମ୍ଭୀର ସ୍ୱରରେ    କହିଲେ ଏପରି ଭାବରେ

### କପିଳ ଉବାଚ

କପିଳ କହିଲ ହେ ମାତ    ଉପଦେଶ ଦେଲି ଯେ ପଥ
ସେହି ମାର୍ଗର ଆଶ୍ରୟରେ    ପରମ ପଦ ହେଲେ ମିଳେ
ଧାର୍ମିକ ବେଦ ବାଦୀ ଗଣ    ଏମତ କରନ୍ତି ସମ୍ମାନ
ଏ ମତକୁ ଯେ ନ ମାନଇ    ଜନ୍ମ ମୃତ୍ୟୁ ଚକ୍ରେ ଭ୍ରମଇ

### ମୈତ୍ରେୟ ଉବାଚ

ଏପରି ଦେଇ ଆତ୍ମଜ୍ଞାନ    ସେହି କପିଳ ଭଗବାନ
ବ୍ରହ୍ମବାଦିନୀ ଜନନୀର    ଅନୁମତି ନେଇ ସତ୍ୱର
ସେଠାରୁ ଘେନିଲେ ବିଦାୟ    ସେତ ସ୍ୱଭାବେ ବ୍ରହ୍ମମୟ
ଦେବହୂତି ସରସ୍ୱତୀ ତୀରେ    ନିଜପବିତ୍ର ଆଶ୍ରମରେ

ପୁତ୍ର ଉପଦେଶ ରୀତିରେ    ସମାଧି ଯୋଗରେ ରହିଲେ
କରିବାରୁ ସ୍ନାନ ତ୍ରିକାଳ    କେଶ ପାଶ ହେଲା ଜଟିଳ
ଚୀର ବସନ ପରିଧାନ    ଉଗ୍ର ତପସ୍ୟାରେ ମଗନ
ଶରୀର ହୋଇଲା ଦୁର୍ବଳ    ମାତ୍ର ବ୍ରହ୍ମତେଜ ଉଜ୍ଜ୍ୱଳ

ଦେବ ବାଞ୍ଛିତ ଅନୁପମ    ଗାର୍ହସ୍ଥ୍ୟ ନାନା ସୁଖମାନ
କର୍ଦ୍ଦମଙ୍କର ତପୋବଳେ    ଦେବହୂତି ଯାହା ଲଭିଥିଲେ
ଦୁଗ୍ଧଫେନ ପରି ଧବଳ    ଶଯ୍ୟା ମୃଦୁଳ ସୁକୋମଳ
ଗଜଦନ୍ତରେ ବିନିର୍ମିତ    ପଲଙ୍କ ରତ୍ନ ସ୍ୱର୍ଣ୍ଣ ପାତ୍ର

ରତ୍ନ ଖଚିତ ସିଂହାସନ    କୋମଳ ଦିବ୍ୟ ଆସ୍ତରଣ
ସ୍ଫଟିକ ମର୍କତ ଖଚିତ    ଗୃହସ୍ତମ୍ଭ ଅତି ଶୋଭିତ
ରତ୍ନ ପ୍ରଦୀପ ଜଳେ ଯହିଁ    ଦିବା ନିଶା ବାରି ନୁହଇ
ପୁଷ୍ପ ଉଦ୍ୟାନ ଉପବନ    ବିଦ୍ୟ ପୁଷ୍ପ ଦ୍ରୁମେ ଶୋଭନ

ନାନା ବିଧ ପକ୍ଷୀ ଯୁଗଳ    କଳ କାକଳିରେ ମୁଖର
ମଧୁମତ୍ତ ଭ୍ରମର ଗଣ    ଗୁଂଜନ କର୍ଣ୍ଣ ରସାୟନ
କମଳ ଗନ୍ଧ ସୁବାସିତ    ବାଂଫିରେ କର୍ଦ୍ଦମ ସହିତ
ଯେ ଆଶ୍ରମେ ସ୍ନାନ କାଳରେ    ସ୍ତୁତି କରନ୍ତି ସୁର ନରେ

ଯେ ଗୃହ ବିହାର ନିମିତ୍ତ    ଇନ୍ଦ୍ରାଣୀ ମଧ ଲାଳାୟିତ
ପୁତ୍ର ବିରହେ ବ୍ୟାକୁଳିତ    ବଦନ ଉଦାସ କିଞ୍ଚିତ
ଧେନୁ ବତ୍ସର ବିରହରେ    ଅଧୀର ହୋଇବା ପ୍ରକାରେ
ସ୍ୱାମୀ ବନକୁ ଯିବାପରେ    ପୁଣି ପୁତ୍ରର ବିଚ୍ଛେଦରେ

ଆତ୍ମଜ୍ଞା ସତୀ ଦେବହୂତି    ହୋଇଲେ ବିଚଳିତ ମତି
ପୁତ୍ର ସ୍ୱରୂପୀ ଭଗବାନ    କପିଳଙ୍କୁ କରି ଚିନ୍ତନ
ଦେବହୂତି କେତେ ଦିନରେ    ଏକାନ୍ତ ନିସ୍ପୃହ ହୋଇଲେ
ପୁତ୍ର ଉପଦେଶ ରୀତିରେ    ଧ୍ୟାନରେ ନିମଗ୍ନ ହୋଇଲେ

ସୁଦୃଢ଼ ବୈରାଗ୍ୟ ଭକ୍ତିରେ    ଯଥାର୍ଥ କର୍ମାନୁ-ଷ୍ଠାନରେ
ବ୍ରହ୍ମଙ୍କ ସାକ୍ଷାତକାର ଜ୍ଞାନ    ଜନ୍ମି ଚିତ୍ତହେଲା ପ୍ରସନ୍ନ
ସର୍ବ ବ୍ୟାପକ ନାରାୟଣ    ଧ୍ୟାନରେ ହୋଇଲେ ନିମଗ୍ନ
ଯାର ସ୍ୱରୂପ ପ୍ରକାଶରେ    ମାୟା ପଟଳ ଯାଏ ଦୂରେ

ଆଶ୍ରୟ ସକଳ ଜୀବର    ପରମାତ୍ମାରେ ବୁଦ୍ଧି ସ୍ଥିର
ହେବାରୁ ଦେବହୂତିଙ୍କର    ଜୀବାତ୍ମଭାବ ହେଲା ଦୂର
ପରମାନନ୍ଦରେ ମଜ୍ଜିଲେ    ସକଳ କ୍ଳେଶୁ ମୁକ୍ତ ହେଲେ
ସମାଧି ଯୋଗରେ ତାଙ୍କର    ସକଳ ଭ୍ରମ ହେଲା ଦୂର

ସ୍ୱପ୍ନ ଦୃଷ୍ଟ ବସ୍ତୁ ପ୍ରକାର ବିସ୍ମରିଲେ ନିଜ ଶରୀର
ମୁକ୍ତ ହୋଇଲା କେଶପାଶ ଅଙ୍ଗରୁ ଖସିଗଲା ବାସ
ଚିତ୍ତ ନିବେଶି ଶ୍ରୀହରିରେ ଯୋଗମୟ ଦେହ ଧରିଲେ
ବିଲୋପ ହେଲା ବାହ୍ୟ ଜ୍ଞାନ କେବଳ ପ୍ରାରବ୍ଧ କରମ

କାରଣେ ଧରିଲେ ଶରୀର ହେଲେ ସ୍ୱଚ୍ଛନ୍ଦ ନିର୍ବିକାର
କପିଳ ଦର୍ଶିତ ପଥରେ ଅଳପ ସମୟ ମଧ୍ୟରେ
ସଦା ନିତ୍ୟ ମୁକ୍ତ ହୋଇଲେ ପରମାତ୍ମା ପଦ ଲଭିଲେ
ଦେବହୂତି ଯେଉଁ ସ୍ଥାନରେ ପରମା ସିଦ୍ଧି ଲଭିଥିଲେ

ତ୍ରିଲୋକ ପରମ ପବିତ୍ର ସିଦ୍ଧିପଦ ନାମେ ବିଖ୍ୟାତ
ଯୋଗ ସାଧନେ ନିରନ୍ତର ଦୈହିକ ମଳ ହେଲା ଦୂର
ଦେବହୂତି ଏକ ନଦୀରେ ପରିଣତ ହେଲେ ବିଶ୍ୱରେ
ସେ ନଦୀ ସିଦ୍ଧଙ୍କ ସେବିତ ବିତରଇ ସିଦ୍ଧି ସମସ୍ତ

ସେହି କପିଳ ଯୋଗୀବର ଅନୁମତିରେ ଜନନୀର
ପିତୃ ଆଶ୍ରମର ଐଶାନ୍ୟ କୋଣକୁ କରିଲେ ଗମନ
ଅବ୍ଧି ତାଙ୍କୁ କରି ପୂଜନ ପ୍ରଦାନ କଲା ଏକ ସ୍ଥାନ
ସେ ତ୍ରିଲୋକ ଶାନ୍ତି ପାଇଁ ଅଛନ୍ତି ସମାଧିସ୍ଥ ହୋଇ

ଗନ୍ଧର୍ବ ସଂଖ୍ୟାଚାର୍ଯ୍ୟଗଣ ଅପସରା ମୁନି ଚାରଣ
ତାହାଙ୍କୁ ସମସ୍ତ ପ୍ରକାର ସ୍ତୁତି କରନ୍ତି ନିରନ୍ତର
ଶୁଣରେ ନିଷ୍ପାପ ବିଦୁର ପ୍ରଶ୍ନ ଅନୁସାରେ ତୁମର
କପିଳ ଦେବହୂତିଙ୍କର ଅତି ପବିତ୍ର ସମାଚାର

ତୁମକୁ ଶୁଣାଇଲି ମୁହିଁ ଯାହା କାଳ ଭୟ ହରଇ
କପିଳଙ୍କର ଏହି ମତ ଆତ୍ମତ୍ୟାଗର ମୂଢ଼ ତତ୍ତ୍ୱ
ଯେ ଏହା ଶୁଣାଏ ଶୁଣଇ ଶ୍ରୀହରି ଚରଣ ଲଭଇ
ତୃତୀୟ ସ୍କନ୍ଧେ ଭାଗବତ କପିଳ ନାମେ ଖ୍ୟାତ

କହଇ ଧନେଶ୍ୱର ଦାଶ କପିଳ ମୁନି ଉପଦେଶ
ଶୁଣିଣ ଭଗବତ ବାଣୀ ଭବସାଗରୁ ତର ପ୍ରାଣୀ
ଭୀମ ସମାପି ରଣେ ଭଙ୍ଗ ମୁନେରପି ମତି ଭ୍ରମଃ
ଯଦି ଶୁଦ୍ଧ ମଶୁଦ୍ଧଂବା ମନ ଦୋଷୋ ନ ବିଦ୍ୟତେ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ତୃତୀୟ ସ୍କନ୍ଧେ ବୈୟାସିକ୍ୟାଂ କପିଳଯୋପାଖ୍ୟାନେ ମୈତ୍ରେୟ ବିଦୁର ସମ୍ବାଦେ ନାମ ଏକ ତ୍ରୟତ୍ରିଂଶୋଽଧ୍ୟାୟଃ

*******

# ଚତୁର୍ଥ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ନୀଳ ଅମ୍ବୁଜ ଶ୍ୟାମତନୁ ଶୋଭାଜିତ କୋଟି ଅତନୁ
ମହା ଶାୟକ ଚାପପାଣି ନମସ୍ତେ ରଘୁ କୁଳମଣି
ଗୌତମୀ ଅହଲ୍ୟା ତାରଣ ଅଜ୍ଞାନ ତାମସ ଅରୁଣ

ସକଳ ଜଗତ ନିବାସ ନମୋ ନମସ୍ତେ ସୀତାଟିଶ
ଭାଷା ପ୍ରବନ୍ଧେ ଭାଗବତ ଚତୁର୍ଥ ସ୍କନ୍ଧର ଚରିତ
ଲିଖନେ ବଳାଇ ଚିତ୍ତ ଦୟାକରହେ ରଘୁନାଥ

### ମୈତ୍ରେୟ ଉବାଚ

କହନ୍ତି ମୈତ୍ରେୟ ମୁନି ଶୁଣ ହେ ବିଦୁର ବିଜ୍ଞାନୀ
ଉତ୍ତାନ ପାଦ ପ୍ରିୟବ୍ରତ ଏହି ଦୁଇ ପୁତ୍ର ବ୍ୟତୀତ
ସ୍ୱାୟମ୍ଭୁବ ମନୁ ବୀର୍ଯ୍ୟରେ ରାଣୀ ଶତରୂପ ଗର୍ଭରେ
ଆକୂତି ପୁଣି ଦେବହୂତ ପ୍ରସୂତି ବୋଲି ରୂପବତୀ

ତିନୋଟି କନ୍ୟା ଜାତ ହେଲେ ବିଶ୍ୱରେ ଖ୍ୟାତି ଅରଜିଲେ
ଆକୂତିଙ୍କର ଥିଲେ ଭାଇ ତଥାପି ମନୁ ନର ସାଇଁ
ଶତରୂପା ଅନୁମତିରେ ପୁତ୍ରିକା ଧର୍ମ ଅନୁସାରେ
ରୁଚି ପ୍ରଜାପତି ହସ୍ତରେ ଆକୂତି କନ୍ୟାକୁ ଅର୍ପିଲେ

ରୁଚି ପ୍ରଜାପତି ଏକାନ୍ତ ହରି ଶରଣାଗତ ଭକ୍ତ
ସେ ବ୍ରହ୍ମତେଜ ପ୍ରଭାବରେ ଆକୂତି କନ୍ୟାର ଗର୍ଭରେ
ଯମଳ ସନ୍ତାନ ରୂପରେ ପୁତ୍ର ଓ କନ୍ୟା ଜନ୍ମାଇଲେ
ଦୁତୀୟରେ ଯେ ପୁତ୍ର ସନ୍ତାନ ଯଜ୍ଞେଶ ବିଷ୍ଣୁ ଭଗବାନ

କନ୍ୟା ନାମ ଅଟେ ଦକ୍ଷିଣା ଲକ୍ଷ୍ମୀ ସ୍ୱରୂପା ଅନ୍ନପୂର୍ଣ୍ଣା
ମନୁ ଆକୂତିର ପୁତ୍ରକୁ ଆନନ୍ଦେ ଆଣିଲେ ଗୃହକୁ
ଦକ୍ଷିଣାକୁ ନିଜ ପାଖରେ ରୁଚି ପ୍ରଜାପତି ରଖିଲେ
ଏମନ୍ତେ କେତତେ ଦିନ ଗଲା କନ୍ୟା ବିବାହ ଯୋଗ୍ୟା ହେଲା

ମନୁ ରାଜା ବେଦ ବିଧିଲେ ବିଷ୍ଣୁ ହସ୍ତେ କନ୍ୟା ଅର୍ପିଲେ
ଯଜ୍ଞେଶ କନ୍ୟାକୁ ଲଭିଲେ ଗୃହସ୍ଥଧର୍ମ ଆଚରିଲେ
ଦକ୍ଷିଣା ଗର୍ଭେ ମୁନି ସୁତ ଦ୍ୱାଦଶ ପୁତ୍ର କଲା ଜାତ
ତୋଷ, ଭଦ୍ର, ଶାନ୍ତି, ପ୍ରତୋଷ ଇଜ, ସ୍ୱତି, କବି, ସନ୍ତୋଷ

ଇଧ୍ମ ବିଭୁ ସ୍ୱହ୍ନ ରୋଚନ ଏପରି ଅଟେ ତାଙ୍କ ନାମ
ସ୍ୱାୟମ୍ଭୁବ ମନ୍ୱନ୍ତରରେ ଏବାର ତୃଷିତ ନାମରେ
ପ୍ରସିଦ୍ଧ ଦେବତ ହୋଇଲେ ପୁଣି ସେହି ମନ୍ୱନ୍ତରରେ
ମରୀଚ୍ୟାଦି ସପ୍ତ ଋଷି ଥିଲେ ଭଗବାନ ଯଜ୍ଞ ଇନ୍ଦ୍ର ହେଲେ

ଉତ୍ତାନ ପାଦ ପ୍ରିୟ ବ୍ରତ ଥିଲେ ମନୁଙ୍କ ଦୁଇ ପୁତ୍ର
ଏ ମନ୍ୱନ୍ତର ତାହାଙ୍କର ପୁତ୍ର ପୌତ୍ର ନାତି ମାନଙ୍କର
ବଂଶରେ ପରିପୂର୍ଣ୍ଣ ଥିଲା ଶୁଣ ବିଦୁର ପଣ୍ଡୁବଳା
ଦୁହିତା ଯେ ଦେବହୂତିଙ୍କୁ ମନୁ ଅର୍ପିଲେ କର୍ଦ୍ଦମଙ୍କୁ

ମୋ ଠାରୁ ସେହି ବିଷୟରେ ତୁତ ଶୁଣିଛୁ ପ୍ରଥମରେ
ବ୍ରହ୍ମା ପୁତ୍ର ଦକ୍ଷ ହସ୍ତରେ ପ୍ରସୂତି କନ୍ୟା ସମର୍ପିଲେ
ତାହାଙ୍କ ବଂଶ ତ୍ରିଲୋକରେ ପୁରି ରହିଛି ସବୁଠାରେ
କର୍ଦ୍ଦମଙ୍କ ନ କନ୍ୟାମାନେ ବ୍ରହ୍ମର୍ଷି ମାନଙ୍କୁ ବରିଲେ

ତାହାଙ୍କ ବଂଶ ବର୍ତ୍ତମାନ ବର୍ଣ୍ଣନା କରୁଅଛି ଶୁଣ
କର୍ଦ୍ଦମଙ୍କ ଜ୍ୟେଷ୍ଠ ଦୁହିତା ମରୀଚି ଋଷିଙ୍କ ବନୀତା
କଶ୍ୟପ ପୂର୍ଣ୍ଣିମାନ ମାନ ଦୁଇ ପୁତ୍ର କଲେ ଜନମ
ବିରଜ ବିଶ୍ୱଗ ନାମରେ ପୂର୍ଣ୍ଣିମାର ଦ୍ୱି ପୁତ୍ର ହେଲେ

ଦେବ କୁଲ୍ୟା ବୋଲି ପୁନ ଏକ କନ୍ୟା ହେଲା ଜନମ
ହରି ଚରଣ ଧୌତ କରି ସେହି ଦେବକୁଲ୍ୟା ସୁନ୍ଦରୀ
ପୂତ ଗଙ୍ଗା ନଦୀ ନାମରେ ପ୍ରକଟ ହେଲା ଜଗତରେ
ହେ ଶତ୍ରୁ ତାପନ ବଦୁର ଯା ସ୍ପର୍ଶେ ପୂତ ନର ସୁର

ଅତ୍ରି ମୁନିଙ୍କର ରମଣୀ ସତୀ କୁଳର ଶିରୋମଣୀ
ବ୍ରହ୍ମା ବିଷ୍ଣୁ ଶିବ କଳାରେ ଦତ୍ତ ଚନ୍ଦ୍ର ଦୁର୍ବାସା ନାମେ
ତିନୋଟି ପୁତ୍ର କଲେ ଜନ୍ମ ନିୟନ ମନ ଅଭିରାମ

### ବିଦୂର ଉବାଚ

ପୁଛେ ବିଦୂର କର ଯୋଡ଼ି ମୈତ୍ରେୟଙ୍କର ପାଦେ ପଡ଼ି
ସୃଷ୍ଟି ସ୍ଥିତି ପ୍ରଳୟକାରୀ ବିଧାତା ବିଷ୍ଣୁ ତ୍ରିପୁରାରୀ
ଅତ୍ରି ମୁନିଙ୍କର ଗୃହରେ କି କାରଣେ ଅବତରିଲେ

### ମୈତ୍ରେୟ ଉବାଚ

ମୈତ୍ରେୟ ବୋଲେ ହେ ବିଦୂରଶୁଣହେ କାରଣ ଏହାର
ଏ ସୃଷ୍ଟିର ରଚନା ପାଇଁ ବିଧାତା ଠାରୁ ଆଜ୍ଞାପାଇ
ଅତ୍ରି ନିଜ ପତ୍ନୀ ସହିତ ତପ ଆଚରିବା ନିମିତ୍ତ
କୁଳାଚଳ କଲେ ଗମନ ସେଧର୍ମାତ୍ମା ତପୋଧନ

ପଳାଶ ଅଶୋକରେ ପୂର୍ଣ୍ଣ ସେଠାରେ ଥିଲା ଏକ ବନ
ସେ ବନର ଚଉଦିକରେ କଳ କଳ ମଧୁ ଧ୍ୱନିରେ
ନିର୍ବିନ୍ଧ୍ୟା ସରିତ ବହଇ ସେଠରେ ଅତ୍ରି ମୁନି ସାଇଁ
ପ୍ରାଣାୟାମରେ ସଂଯତ ଚିତ୍ତ ଶତ ସମ୍ବସ୍ତର ପର୍ଯ୍ୟନ୍ତ

କେବଳ ବାୟୁ ଆହାରରେ ଠିଆ ହୋଇ ଏକ ପାଦରେ
ଶୀତ ଗ୍ରୀଷ୍ମ ତାପ ସହିଲେ କୃଚ୍ଛ୍ର ତପରେ ମଗ୍ନହେଲେ
ସେବେଳେ ନିଜ ହୃଦୟରେ ଏପରି ପ୍ରାର୍ଥନା କରିଲେ
ଯେ ଅଖିଳ ଜଗତ ଇଶ୍ୱର ମୁଁ ଚରଣାଶ୍ରିତ ତାଙ୍କର

ସେ ମତେ ଶଙ୍କର ସମାନ ଏକ ପୁତ୍ର କରନ୍ତୁ ଦାନ
ପ୍ରାଣାୟମ ତେଜ ବଳରେ ଅଗ୍ନି ଜଳିଲା ମସ୍ତକରେ
ତାର ତେଜରେ ତ୍ରିଭୁବନ କ୍ଷଣକେ ହୋଇଲା ଦହନ
ଦେଖି ବ୍ରହ୍ମା ବିଷ୍ଣୁ ଶଙ୍କରେ ମିଳିଲେ ଅତ୍ରି ଆଶ୍ରମରେ

ଅପ୍ସରା ସିଦ୍ଧ ବିଦ୍ୟାଧର ମନୁ ଗନ୍ଧର୍ବ ନାଗ ନର
ଦେବତା ଦାନବ କିନ୍ନର ଯଶ ଗାନ କଲେ ତାଙ୍କର
ଠିଆ ହୋଇ ଏକ ପାଦରେ ଅତ୍ରି ତ୍ରିଦେବଙ୍କୁ ଦେଖିଲେ
ପ୍ରଦୃଷ୍ଟ ଅନ୍ତ କରଣରେ ସାଷ୍ଟାଙ୍ଗ ପ୍ରଣାମ କରିଲେ

ଅର୍ଘ୍ୟ ପୁରାଦି ସାମଗ୍ରୀରେ ଅନନ୍ୟ ଭକ୍ତିରେ ପୂଜିଲେ
ବୃଷ ହଂସ ଗରୁଡ଼ରେ ସ୍ଥିତ ତ୍ରିଶୂଳାଦି ଚିହ୍ନ ଶୋଭିତ
ସ୍ମିତ ହାସ୍ୟରେ ସୁଶୋଭନ କରୁଣାରେ ପୂର୍ଣ୍ଣ ନୟନ
ତ୍ରିଦେବଙ୍କୁ ଯୋଡ଼ ହସ୍ତରେ ମଧୁର ସୁନ୍ଦର ବାକ୍ୟରେ
ଅତ୍ରି ଅନନ୍ଦିତ ମନରେ ସ୍ତବ କରିବା ଆରମ୍ଭିଲେ

### ଅତ୍ରି ଉବାଚ

ଅତ୍ରି ମୁନି ଭକ୍ତି ଭାବରେ ସେ ତିନି ଦେବଙ୍କୁ କହିଲେ
କଳ୍ପ ଆରମ୍ଭରେ ଆପଣେ ସୃଷ୍ଟି ସ୍ଥିତି ଲୟ କାରଣେ
ସତ୍ତ୍ୱାଦି ଗୁଣ ଆଶୟରେ ବିଷ୍ଣୁ ବ୍ରହ୍ମା ଶିବ ରୂପରେ
ସଂସାରେ ହୁଅ ଅବତୀର୍ଣ୍ଣ ଘେନ ମୋର ନମ୍ର ପ୍ରଣାମ

ମୋ ଅଭୀଷ୍ଟ ଦେବତା ମଧ୍ୟରେ କିଏ ଆପଣ କହ ଦୟାରେ
ସୁ ସନ୍ତାନ ପ୍ରାପ୍ତିର ଇଚ୍ଛାରେ ନାନା ବିଧ ଉପଚାରେ
କେବଳ ହରିଙ୍କର ଚରଣ କରୁଥିଲି ପୂଜା ଅର୍ଚ୍ଚନ
କିନ୍ତୁ ତିନି ଦେବ ଆପଣ କରିଅଛନ୍ତି ଆଗମନ

ଦେହ ଧାରୀ ମନ ଅଗମ୍ୟ ଆପଣଙ୍କୁ କରି ଦର୍ଶନ
ବିସ୍ମୟ ଜନ୍ମେ ମୋ ମନରେ ରହସ୍ୟ ମୁଁ ଜାଣି ନପାରେ
ଆପଣମାନେ ଦୟାକରି ପ୍ରକାଶନ୍ତୁ ସବୁ ବିସ୍ତାରି

### ମୈତ୍ରେୟ ଉବାଚ

ଅତ୍ରି ମୁନିଙ୍କର ବଚନ ଶୁଣି ଦେବତା ତିନି ଜଣ
ହସି ସୁ ମଧୁର ବାଣୀରେ ମୁନିଙ୍କୁ ଏପରି କହିଲେ

### ଦେବା ଊଚୁଃ

ଆହେ ଅତ୍ରି ମୁନି ବ୍ରହ୍ମଣ୍ୟ ସତ୍ୟ ସଂକଳ୍ପ ତ ଆପଣ
ଯେ ଜଗଦୀଙ୍କୁ ଆପଣ ପୁତ୍ରାର୍ଥେ କରୁଥିଲେ ଧ୍ୟାନ
ସେ ତତ୍ତ୍ୱ ତିନି ଜଣ ଆମେ ସଂଶୟ ନକରନ୍ତୁ ମନେ
ଆମ ଅଂଶେ ବିଶ୍ୱ ବିଖ୍ୟାତ ତୁମେ ଲଭିବ ତିନି ପୁତ୍ର

ସେମାନେ ଆପଣଙ୍କ ଯଶ ବିସ୍ତାର କରିବେ ଏ ବିଶ୍ୱ
ଏପରି ପୁତ୍ର ବର ଦେଇ ଯଥା ବିଧିରେ ପୂଜା ପାଇ
ସେହି ଦେବତା ତିନି ଜଣ ଗମନ କଲେ ନିଜ ଧାମ
ଚନ୍ଦ୍ରମା ବିଧାତା ଅଂଶରେ ଦୁର୍ବାସା ମହେଶ କଳାରେ

ଦତ୍ତାତ୍ରେୟ ଯୋଗ ବିଜ୍ଞାନୀ ଶ୍ରୀ ନାରାୟଣ କଳା ଘେନି
ଅତ୍ରିଙ୍କ ତନୟ ରୂପରେ ଜନ୍ମିଲେ କିଛି କାଳ ପରେ
ଅଙ୍ଗିରା ଋଷିଙ୍କ ସନ୍ତାନ ମାନଙ୍କ କଥା ଏବେ ଶୁଣ
ଅନୁ ମତି, ଯେ କୁହୁ, ରକା ଅନୁଜା ଏ ଚରି କନ୍ୟକା

ଶ୍ରୀଭବାନ ଯେ ଉତଥ୍ୟ ବୃହସ୍ପତି ଏ ଦୁଇ ପୁତ୍ର
ଅଙ୍ଗିରା ପତ୍ନୀ ଶ୍ରଦ୍ଧା ନାମ ଛ ପୁତ୍ର କନ୍ୟା କଲେ ଜନ୍ମ
ସ୍ୱାରୋଚିଷ ମନ୍ୱନ୍ତରରେ ଏମାନେ ବିଖ୍ୟାତ ହୋଇଲେ
ବିଶ୍ରବା ତପସ୍ୱୀ ବିଖ୍ୟାତ ଅଗସ୍ତ୍ୟ ଏହି ଦୁଇ ପୁତ୍ର

ପୁଲସ୍ତ୍ୟ ପତ୍ନୀ ହବିର୍ଭବ ଗର୍ଭରୁ ହୋଇଲେ ସମ୍ଭବ
ଅଗସ୍ତ୍ୟ ଅନ୍ୟ ଜନମରେ ଜଠରାଗ୍ନି ଯେ ହୋଇଥିଲେ
ବିଶ୍ରବା ପତ୍ନୀ ଇଡ଼ବିଡ଼ାର ଗର୍ଭୁ ଯକ୍ଷରାଜ କୁବେର
ବିଶ୍ରବାଙ୍କ ରମଣୀ ଅନ୍ୟ କେଶିନୀ ଗର୍ଭରୁ ରାବଣ

କୁମ୍ଭକର୍ଣ୍ଣ ଓ ବିଭୀଷଣ ତିନି ପୁତ୍ର ହେଲେ ଜନମ
ଆହେ ମହାମତି ବିଦୂର ମହର୍ଷିବର ପୁଲହଙ୍କର
ପତ୍ନୀ ସତୀ ପତି ବରତୀ ଲାବଣ୍ୟବତୀ ନାମ ଗତି
ଗର୍ଭୁ କର୍ମ ଶ୍ରେଷ୍ଠ ବରୀୟାନ ତୃତୀୟରେ ସହିଷ୍ଣୁ ନାମ

ତିନି ପୁତ୍ର ହେଲେ ଜନମ ବିଦୂର ସାବଧାନେ ଶୁଣ
କ୍ରତୁ ପତ୍ନୀ କ୍ରିୟା ନାମ ତାଗର୍ଭୁ ଅତି ତେଜୀୟାନ
ବାଳଖିଲା ଋଷି ହଜାର ଜନମିଲେ ଋଷି କୁମାର
ବଶିଷ୍ଠ ପତ୍ନୀ ଅରୁନ୍ଧତୀ ପରମା ସ୍ୱାଧ୍ୱୀ ପତି ବ୍ରତୀ

ଚିତ୍ର କେତୁ ପ୍ରଭୃତି ସପ୍ତ ବ୍ରହ୍ମନିଷ୍ଠ ବିଶୁଦ୍ଧ ଚିତ୍ତ
ବ୍ରହ୍ମର୍ଷି କରିଲେ ଜନମ ତାହାଙ୍କ ନାମ ଏବେ ଶୁଣ
ସୁରୋଚି, ବିରାଜା, ଉଲ୍ଲଣ ଚିତ୍ରକେତୁ, ବସୁଭୃଦ୍ୟାନ
ମିତ୍ର, ଦ୍ୟୁମାନ ଭାଇ ସାତ ଜଗତେ ହୋଇଲେ ବିଖ୍ୟାତ

ଏହା ଛଡ଼ା ବଶିଷ୍ଠ ଙ୍କର ଅନ୍ୟ ଏକ ପତ୍ନୀ ଶକ୍ତିର
ଗର୍ଭରୁ ମଧ୍ୟ କେତେ ପୁତ୍ର କ୍ରମରେ ହୋଇଥିଲେ ଜାତ
ଅଥର୍ବ ପତ୍ନୀ ଚିତ୍ତି ନାମ ଏକ ପୁତ୍ର କଲେ ଜନମ
ଅଶ୍ୱଶିରା ପୁଣି ଦଧ୍ୟଙ୍ଗ ପୁତ୍ରର ଏହି ଦୁଇ ନାମ

ଭୃଗୁ, ପତ୍ନୀ ଖ୍ୟାତି ଗର୍ଭରେ ଧାତା ଓ ବିଧାତା ନାମରେ
ଦୁଇ ପୁତ୍ର ପୁଣି ଶ୍ରୀ ନାମ ଏକ କନ୍ୟା ହେଲ ଜନମ
ମେରୁ ଋଷି ଯଥା ବିଧିରେ ଆୟତି ନିୟତି ନାମରେ
ଦୁଇ କନ୍ୟା ଯଥା କ୍ରମରେ ଧାତା ବିଧାତାଙ୍କୁ ଅର୍ପିଲେ

ତାଙ୍କ ଠାରୁ ମୃକଣ୍ଡ ପ୍ରାଣ ବୋଲି ଦୁଇ ପୁତ୍ର ଜନମେ
ମୃକଣ୍ଡ ବୀର୍ଯ୍ୟେ ମାର୍କଣ୍ଡେୟ ପ୍ରାଣସୁ ବ୍ରହ୍ମ ତେଜୋମୟ
ମୁନି ଦେବ ଶିରା ଜନମ ଭୃଗୁଙ୍କ କବି ନାମ ଅନ୍ୟ
ପୁତ୍ର ଠାରୁ ଶ୍ରୀଭଗବାନ ଉଶନା ହୋଇଲେ ଜନମ

ମୁନିଇଶ୍ୱର ଏପ୍ରକାର ସୃଷ୍ଟିକୁ କରିଲେ ବିସ୍ତାର
ହେ ଭକ୍ତ ପ୍ରବର ବିଦୂର କର୍ଦ୍ଦମ ମହାମୁନି ଙ୍କର
କନ୍ୟା ମାନଙ୍କର ସନ୍ତାନ ବିଷୟ କରିଲେ ଶ୍ରବଣ
ସ୍ୱାୟମ୍ଭୁବ ମନୁ ଦୁହିତା ପ୍ରସୂତି ନାମ ପତି ବ୍ରତା

ତାହାର ସ୍ୱାମୀ ଶୁଦ୍ଧମତି ତା ନାମ ଦକ୍ଷ ପ୍ରଜାପତି
ତା ବୀର୍ଯ୍ୟେ ପ୍ରସୂତୀ ଗର୍ଭରେ ଷୋଡ଼ଶ କନ୍ୟାକା ଜନ୍ମିଲେ
ଦକ୍ଷ ତେର ଜଣ କନ୍ୟାଙ୍କୁ ପ୍ରଦାନ କରିଲେ ଧର୍ମଙ୍କୁ
ଅଗ୍ନିଙ୍କୁ ଏକ କନ୍ୟ ଦେଲେ ପିତୃଙ୍କୁ ଏକ ସମର୍ପିଲେ

ସଦାଶିବଙ୍କୁ ଏକ କନ୍ୟା ଅର୍ପିଲେ ଦକ୍ଷ ମହାମନୀ
ତୁଷ୍ଟି ପୁଷ୍ଟି କ୍ରିୟା ଉନ୍ନତି ଶ୍ରଦ୍ଧା ଶାନ୍ତି ତିତିକ୍ଷା ମୈତ୍ରୀ
ଦୟା ବୁଦ୍ଧି ମେଧା ହ୍ରୀ ମୂର୍ତ୍ତି ଏ ତେର ଧର୍ମଙ୍କର ପତ୍ନୀ
ଶ୍ରଦ୍ଧାଠାରୁ ଶୁଭ ଜନ୍ମିଲେ ମୈତ୍ରୀ ଗର୍ଭୁ ପ୍ରସାଦ ହେଲେ

ଅଭୟ ଯେ ଦୟାର ପୁତ୍ର ଶାନ୍ତି ଗର୍ଭରୁ ସୁଖ ସମ୍ଭୂତ
ତୁଷ୍ଟି ମୋଦକୁ ପ୍ରସବିଲେ ପୁଷ୍ଟିରୁ ସ୍ମୟ ଜାତ ହେଲେ
କ୍ରିୟା ଗର୍ଭୁ ଯୋଗ ସମ୍ଭୂତ ଉନ୍ନତି ଦର୍ପ କଲା ଜାତ
ବୁଦ୍ଧିରୁ ଅର୍ଥ ମେଧା ଶାନ୍ତି ତିତିକ୍ଷାରୁ କ୍ଷେମ ଉତ୍ପତ୍ତି

ହ୍ରୀ ଗର୍ଭୁ ପ୍ରଶ୍ରୟ ନାମରେ ତନୟମାନେ ଜନମିଲେ
ସକଳ ସୁଗୁଣ ଆଧାର ଭବ ସାଗର କର୍ଣ୍ଣଧାର
ନର ଯେ ନାରାୟଣ ନାମ ଦ୍ୱି ଋଷି ମୂର୍ତ୍ତି ଗର୍ଭୁ ଜନ୍ମ
ଏ ଦୁଇ ଋଷିଙ୍କ ଜନ୍ମରେ ଆନନ୍ଦ ଖେଳିଲା ବିଶ୍ୱରେ

ନଦୀ ପର୍ବତ ଉପବନ ପର୍ବତ ଗଗନ ପବନ
ସାଧୁ ସନ୍ଥଙ୍କ ପ୍ରାଣ ମନ ହୋଇଲା ଅତ୍ୟନ୍ତ ପ୍ରସନ୍ନ
ସୁମଙ୍ଗଳ ବାଦ୍ୟ ବାଜିଲା ଆକାଶୁ କୁସୁମ ବର୍ଷିଲା
ମୁନିଏ ସ୍ତବ ପାଠ କଲେ କିନ୍ନର ଗନ୍ଧର୍ବ ଗାଇଲେ

ଅପସରୀ ମାନେ କଲେ ନୃତ୍ୟ ବ୍ରହ୍ମାଦି ଦେବେ କଲେ ସ୍ତୋତ୍ର
ଏହି ପରି ଚଉଦିଗରେ ଆନନ୍ଦ ବ୍ୟାପିଲା ସତ୍ୱରେ

### ଦେବା ଉଛୁତ୍ୱ

ଦେବତାଏ ଭକ୍ତିଭାବରେ ସ୍ତୁତି ପାଠକରି କହିଲେ
ଆକାଶେ ରୂପ ଭେଦ କରି ଆପଣମାୟା ଶକ୍ତି ଧରି
ସ୍ୱସ୍ୱରୂପ ପ୍ରକାର କରଣ ଋଷିଦେହ କରି ଧାରଣ
ପ୍ରକଟ ଧର୍ମଙ୍କ ଗୃହରେ ନମସ୍କାର ତୋର ପୟରେ

ଶାସ୍ତ୍ରାନୁସାରେ ଯାର ତତ୍ତ୍ୱ କେବଳ ହୁଏ ଅନୁମିତ
ପ୍ରତ୍ୟେକ୍ଷ ନ ମିଳେ ଦର୍ଶନ ତାହାଙ୍କୁ ଆମର ପ୍ରଣାମ
ଯେ ବିଶ୍ୱ ଯଥା ସ୍ଥିତି ବିଲରେଯେ ଦେବ ସତ୍ତ୍ୱ ଗୁଣରେ
କରିଣ ଅଛନ୍ତି ସର୍ଜନ ସେ ପଦ୍ମ ନିନ୍ଦିତ ନୟନ

ସେ ଭଗବାନ ନାରାୟଣ ଆମକୁ ଦିଅନ୍ତୁ ଦର୍ଶନ
ପ୍ରଭୁଙ୍କ ଦର୍ଶନ ଇଚ୍ଛାରେ ଦେବତା ପୂଜା ସ୍ତୁତି କରେ
ନର ନାରାୟଣ ତାପରେ ଗନ୍ଧମାର୍ଦ୍ଦନକୁ ଗମିଲେ
ଏବେ ସେ ନର ନାରାୟଣେ ଭୂ ଭାର ଭରଣ କାରଣେ

ଯାଦବ କୁଳ ବିଭୂଷଣ ଶ୍ରୀକୃଷ୍ଣ ନବଘନ ଶ୍ୟାମ
କୁରୁ ତିଳକ ଅର୍ଜୁନ ନାମରେ ଧରାରେ ଜନମ
ଅଗ୍ନି ପତ୍ନୀ ସ୍ୱାହା ନାମ ପାବକ ଶୁଚି ପବମାନ
ଏ ତିନି ପୁତ୍ର କଲେ ଜନ୍ମ ଅଗ୍ନି ସମାନ ତେଜୀୟାନ

ଯଜ୍ଞ ହବନ ବସ୍ତୁମାନ ଏମାନେ କରନ୍ତି ଭକ୍ଷଣ
ଏମାନଙ୍କଠାରୁ ପୁନ ପଞ୍ଚ ଚାଳିଶି ଅଗ୍ନି ଜନ୍ମ
ତ୍ରିପିତୃ ପିତାମହ ଜଣେ କଥିତ ଅଣଚାଶ ନାମେ
ଯଜ୍ଞରେ ବେଦଙ୍କ ବ୍ରହ୍ମଣ ଏହାଙ୍କୁ କଲେ ଅବାହାନ

ବିର୍ହିଷଦ ଯେ ଅଗ୍ନି ଶତ୍ତା ପୁଣି ଯେ ସୋମପା ଆଜ୍ୟପା
ପିତୃଗଣ ଅଟନ୍ତି ଏହି ସାଗ୍ନିକ ନିରଗ୍ନିକ କହି
ସୂଧାନାମ ଦକ୍ଷ ଦୁହିତୀ ପିତୃଗଣର ଅଟେ ପତ୍ନୀ
ସେ ଧାରିଣୀ ବାୟୁନା ନାମରେ ଦୁଇଟି କନ୍ୟା ଜନ୍ମ କଲେ

ଏ ଦୁହେଁ ଜ୍ଞାନ ବିଜ୍ଞାନରେ ପାରଦର୍ଶୀ ଯେ ହୋଇଗଲେ
ବ୍ରହ୍ମ ବାଦିନୀ ବୋଲାଇଲେ କେ ନାହିଁ ତା ସମ ସଂସାରେ
ଦକ୍ଷ ଦୁହିତା ନାମ ସତୀ ଶିବଙ୍କ ପ୍ରିୟବତୀ ପତ୍ନୀ
ସେ ସର୍ବଦା ପତି ସେବାରେ ଜୀବନ ମନ ସମର୍ପିଲେ

ଦକ୍ଷ ବିନା ଅପରାଧରେ ଯଜ୍ଞେ ଶିବଙ୍କୁ ନ ବରିଲେ
ସତୀ ଯୁବତୀ ଅବସ୍ଥାରେ କ୍ରୋଧରେ ଦେହ ବିସର୍ଜିଲେ
ସ୍ୱଗୁଣ ଶୀଳ ଅନୁରୂପ ତାଙ୍କର ନହୋଇଲା ପୁତ୍ର
କହଇ ଦାଶ ଧନେଶ୍ୱର ସମ୍ବାଦ ମୈତ୍ରେୟ ବିଦୂର
ଏ ପୁଣ୍ୟ ଭଗବତ ବାଣୀ ଭବସାମଗର ତରଣୀ

ଇତି ଶ୍ରୀମଦ୍ ଭାଗବତେମହାପୁରାଣେ ପାରମହଂସ୍ୟା ° ସଂହିତାୟେ ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ବିଦୂର ମୈତ୍ରେୟ ସମ୍ବାଦେ ନାମ ପ୍ରଥମୋ ଽଧାୟ ।

* * * * * * * * *

## ଦ୍ୱିତୀୟ ଅଧ୍ୟାୟ

### ବିଦୂର ଉବାଚ

ପ୍ରଣମି ମୈତ୍ରେୟ ପାଦରେ ବିଦୂର ପୁଛେ ଆନନ୍ଦରେ
ସେହି ଯେ ଦକ୍ଷ ପ୍ରଜାପତି କନ୍ୟାଙ୍କୁ ସ୍ନେହ କରେ ଅତି
ସେ ମହାଦେବ ଭଗବାନ ଚରିତ୍ରତ ବଡ଼ି ଉତ୍ତମ
ଯେ ଗୁରୁ ବିଶ୍ୱ ଚରାଚର ଯାହାର ନାହିଁ ପରାପର

ଶାନ୍ତ ମୂରତି ଆତ୍ମାରାମ ଯୋଗୀ ମଙ୍ଗଳର ନିଧାନ
ସେ ଦକ୍ଷ ଶିବ ଦ୍ରୋହୀ ହେଲାକନ୍ୟାଙ୍କୁ ଅନାଦର କଲା
ଶ୍ୱଶୁର ଜାମାତା ସମ୍ବନ୍ଧେ କେ ଦୁଷ୍ଟ ଘଟାଇଲା ଦ୍ୱନ୍ଦ୍ୱ
ସତୀ ଦେବୀ ଯାହା ଫଳରେ ଦୁସ୍ତ୍ୟଜ ପ୍ରାଣ ବିସର୍ଜିଲେ
ଏ ସବୁ ବିଷୟ ଆପଣ ସଦୟେ କରନ୍ତୁ ବର୍ଣ୍ଣନ

### ମୈତ୍ରେୟ ଉବାଚ

ପୂର୍ବେ ବ୍ରହ୍ମାଙ୍କର ଯଜ୍ଞରେ ତିନି ଅନୁଚର ସଙ୍ଗରେ
ମହର୍ଷି ଦେବତା ସମସ୍ତ ଏକତ୍ର ଥିଲେ ଉପସ୍ଥିତ
ଦକ୍ଷ ପ୍ରଜାପତି ଏ ବେଳେ ସେଠାରେ ଆସି ପ୍ରବେଶିଲେ
ଅଙ୍ଗ କାନ୍ତି ସୂର୍ଯ୍ୟ ସମାନ ଆଲୋକିତ ସଭା ଭବନ

ତେଜରେ ସେ ସଭା ଗୃହର ଅନ୍ଧାର ହୋଇଗଲା ଦୂର
ତାଙ୍କ କାନ୍ତିରେ ପ୍ରଭାବିତ ସଭାସହ ଦେବ ସମସ୍ତ
ନିଜ ଆସନରୁ ଉଠିଲେ ଦକ୍ଷେ ସମ୍ମାନ ଜଣାଇଲେ
କେବଳ ଶିବ ଉମା ସାଇଁ ଆସନ ତ୍ୟାଗ କଲେ ନାହିଁ

ଦକ୍ଷ ଧାତାଙ୍କୁ ପ୍ରଣମିଲେ ତାପରେ ଆସନେ ବସିଲେ
ଦକ୍ଷ ଶିବଙ୍କ ଏହିପରି ବ୍ୟବହାର ସହି ନପାରି
ତାହଙ୍କ ଆଡ଼କୁ ଋହିଁଲେ ଜାଳିଦେବେ କି କ୍ରୋଧାଗ୍ନିରେ
ସେହି ଯଜ୍ଞ ସଭା ମଧ୍ୟରେ କୋପେ ଏହି ପରି କହିଲେ

ଅଗ୍ନିଦେବ ବ୍ରହ୍ମର୍ଷିଗଣ ମୋର ବକ୍ତବ୍ୟ ସର୍ବେ ଶୁଣ
ମୁଁ ଅଜ୍ଞାନେ ବାବିଦ୍ୱେଷରେ କିଛି କହୁ ନାହିଁ ଏଠାରେ
କେବଳ ଶିଷ୍ଟାଋର କଥା ବିଋର କରନ୍ତୁ ସର୍ବଥା
ଅତି ନିର୍ଲ୍ଲଜ ଏହି ହର ସମସ୍ତ ଲୋକ ପାଳଙ୍କର

ଯଶ କୀରତି ନାଶ କଲା ଭଲ ମନ୍ଦ ନ ବିଋରିଲା
ଗୁଣରେ ବୈଦେହୀ ସାବିତ୍ରୀ ମୃଗ ନୟନା ରୂପବତୀ
କନ୍ୟାକୁ ଏହାର ହସ୍ତରେ ଅଗ୍ନି ବ୍ରାହ୍ମଣ ସାକ୍ଷାତରେ
ଅର୍ପିଲି ବୈଦିକ ବିଧିରେ କେବଳ ଧାତାଙ୍କ କଥାରେ

ଏ ମୋ ପୁଅ ପରି ଅଟଇ ମତେ ସ୍ୱାଗତ କଲା ନାହିଁ
ଏଟା ଅତ୍ୟନ୍ତ ଅପବିତ୍ର . ଗର୍ବିତ କୁରୂପ କୁତ୍ସିତ
ଧର୍ମ ମର୍ଯ୍ୟାଦା ଜାଣେ ନାହିଁ ଶ୍ମଶାନରେ ବାସ କରଇ
କେଶକୁ କରିଣ ମୁକୁଳା ଗଳେ ପକାଇ ମୁଣ୍ଡ ମାଳା

ଭୂତ ପ୍ରେତଙ୍କର ସଙ୍ଗରେ ବୁଲଇ ପାଗଳ ପ୍ରକାରେ
କେବେ କାନ୍ଦେ ଉଚ୍ଚେ ହସଇ ଦେହେ ଚିତା ଭସ୍ମ ବୋଳଇ
ଖାଲି ଶିବ ନାମ ବହଇ ଅଶିବ ଅମଙ୍ଗଳ ଏହି
ଏତ ନିଜେ ବଡ଼ ପାଗଳ ପାଗଳ ମାନେ ପ୍ରିୟ ଯାର

ତମୋ ଗୁଣୀଙ୍କ ନେତା ଏହି ଭୂତପ୍ରେତ ମେଳେ ରହଇ
କେବଳ ବ୍ରହ୍ମାଙ୍କ କଥାରେ ମୁ ମୋର ଦୁର୍ଭାଗ୍ୟ ଦୋଷରେ
ଏ ଦୁଷ୍ଟକୁ କନ୍ୟା ଅର୍ପିଲି ନ ଜାଣି ମୁଁ ପଥ ହୁଡ଼ିଲି

## ମୈତ୍ରେୟ ଉବାଚ

ଦକ୍ଷ ଅତି କଟୁଭାଷାରେ ବହୁତ ତିରସ୍କାର କଲେ
ଶିବ ପ୍ରତ୍ୟୁତ୍ତର ନଦେଲେ ପୂର୍ବପରି ସ୍ଥିରେ ବସିଲେ
ତେଣୁ ଦକ୍ଷ ଅତି କ୍ରୋଧରେ ଜଳ ଧରି ନିଜ ହସ୍ତରେ
ଅଭିଶାପ ଦେଇ କହିଲେ ଶୁଣ ଦେବ ମୁନି ସକଳେ

ଏ ଶିବ ଦେବତା ଅଧମ ଆଜିଠାରୁ ଉପେନ୍ଦ୍ର ଯମ
ଇନ୍ଦ୍ରାଦି ଦେବତା ସଙ୍ଗରେ ଯଜ୍ଞାଂଶ ନପାଉ ଯଜ୍ଞରେ
ମୁଖ୍ୟ ସଦସ୍ୟଙ୍କ ବାରଣ ଦକ୍ଷ ନି ଶୁଣିଣ ତକ୍ଷଣ
ଶିବଙ୍କୁ ଅଭିଶାପ ଦେଲେ ସଭାରୁ ଗୃହକୁ ଗମିଲେ

ଶିବ ଅନୁଚର ଅଗ୍ରଣୀ ନନ୍ଦୀସେ ଅଭିଶାପ ଜାଣି
ଅତିଶୟ କ୍ରୋଧ ବଶରେ ଆରକ୍ତ ନୟନ ଦ୍ୱୟରେ
ଦକ୍ଷ କଥାକୁ ଯେ ବ୍ରାହ୍ମଣ କରିଥିଲେ ଅନୁମୋଦନ
ସେମାନଙ୍କୁ ଅତି ଭିଷଣ ଅଭିଶାପ କଲେ ପ୍ରଦାନ

ସେ ମଙ୍ଗଳମୟ ଶଙ୍କର ନ କରନ୍ତି ଦ୍ରୋହ କାହାର
ଯେ ମୂଢ଼ ଦେହାଭିମାନରେ ଦ୍ୱେଷ କରିଛି ଶଙ୍କରରେ
ଭେଦ ବୁଦ୍ଧି ଯୁକ୍ତ ସେ ଦକ୍ଷ ପରମାର୍ଥେ ହେଉ ବିମୁଖ
ଦେହ ପ୍ରଶଂସାରେ ମୋହିତ ବିଷୟ ସୁଖରେ ମଜ୍ଜିତ

କପଟ ଗୃହସ୍ଥ ଧର୍ମରେ ମାତି ଅଛି କର୍ମ କାଣ୍ଡରେ
ଶରୀରକୁ ଆତ୍ମାରମଣଇ ନିଜ ସ୍ୱରୂପ ନଜାଣଇ
ରମଣୀ ଲଂପଟ ଏଦକ୍ଷ ପଶୁଙ୍କ ସମାନ ସାକ୍ଷାତ
ଶୀଘ୍ର ତାହାଙ୍କର ବଦନ ହେଉ ଛାଗ ମୁଖ ସମାନ

କର୍ମମୟୀ ଯେଉଁ ଅବିଦ୍ୟା ଏମୂର୍ଖ ମଣେ ତାକୁ ବିଦ୍ୟା
ଶଙ୍କର ସ୍ୱୟଂ ଭଗବାନ ତାଙ୍କୁ ସେ ଦେଲା ଅପମାନ
ଏହାର ଅନୁଚର ଗଣ ସଂସାରର ଜନ୍ମ ମରଣ
ଚକ୍ରରେ ଜନ୍ମ ଜନ୍ମାନ୍ତର ଦୁଃଖ ଭୋଗନ୍ତୁ ନିରନ୍ତର

ବେଦ କଥିତ କର୍ମଫଳ ଶୁଣି ଯାଙ୍କ ଚିତ୍ତ ବ୍ୟାକୁଳ
ଏଣୁ ଶିବ ଦ୍ରୋହ କରନ୍ତି କେବେହେ ଶାନ୍ତି ନ ଲଭନ୍ତି
ଏମାନଙ୍କ ଅନୁସରଣ କରୁଥିବା ବ୍ରାହ୍ମଣ ଗଣ
ତେଜି ଭକ୍ଷ୍ୟାଭକ୍ଷ୍ୟ ବିଋର ପୋଷିବା ନିମିତ୍ତ ଉଦର

ବିଦ୍ୟା ତପସ୍ୟା ବ୍ରତାଦିର ଆଶ୍ରୟ ନିଅନ୍ତୁ କେବଳ
ଦେହେନ୍ଦ୍ରିୟ ସୁଖ ଇଚ୍ଛାରେ ଭିକ୍ଷା ମାଗନ୍ତୁ ଦ୍ୱାରେ ଦ୍ୱାରେ
ନନ୍ଦୀଙ୍କ ଅଭିଶାପ ଶୁଣି ବ୍ରାହ୍ମଣ କୁଳ ଶିରୋମଣି
ଭୃଗୁ ବ୍ରହ୍ମଦଣ୍ଡ ସ୍ୱରୂପ ଦେଲେ ଦାରୁଣ ଅଭିଶାପ

ଯେମାନେ ଶିବଙ୍କର ଭକ୍ତ କିମ୍ୱା ତାହାଙ୍କ ଅନୁଗତ
ସେହିମାନେ ପାପୀ ହୁଅନ୍ତୁ ସତ୍ ଶାସ୍ତ୍ରନୀତି ନ ମାନନ୍ତୁ
ଶୌଚ ଆଚାର ଯାଇନାହିଁ ଶିରରେ ଯେ ଜଟା ବହଇ
ହସ୍ତେ ଅସ୍ଥିମାଳା ଧରନ୍ତ ସେତ ଶିବ ଭକ୍ତ ଅଟନ୍ତି

ସୁରାଦି ମାଦକ ପଦାର୍ଥ ସେ ସେବା କରିଥାନ୍ତି ନିତ୍ୟ
ଧର୍ମ ମର୍ଯ୍ୟାଦା ସଂସ୍ଥାପକ ବର୍ଣ୍ଣ ଆଶ୍ରମର ରକ୍ଷକ
ବ୍ରାହ୍ମଣଙ୍କୁ ନିନ୍ଦା କରୁଛ ତୁମେ ଅଧର୍ମ ଆଚରୁଛ
ଯେବେଦ ମାର୍ଗ ସନାତନ ସାଧଇ ଜଗତ କଲ୍ୟାଣ

ପୂର୍ବ ମହାପୁରୁଷ ଗଣ ଏପଥକୁ ଅନୁସରଣ
କରି ଲଭିଛନ୍ତି କଲ୍ୟାଣ ଶ୍ରୀ ବିଷ୍ଣୁ ଏହାର ପ୍ରମାଣ
ତୁମେ ସେ ମାର୍ଗକୁ ବୃଥାରେ ନିନ୍ଦୁଛ ଏ ସଭା ମଧ୍ୟରେ
ତୁମେ ସେ ପାଷାଣ୍ଡ ମାର୍ଗରେ ରହ ଭୂତ ପତି ପାଖରେ

### ମୈତ୍ରେୟ ଉବାଚ

ଭୃଗୁ ମୁନିଙ୍କ ଏ ପ୍ରକାର ଅଭିଶାପ ଶୁଣି ଶଙ୍କର
ଅତ୍ୟନ୍ତ ଦୁଃଖିତ ମନରେ ନିଜ ଅନୁଚରେ ସଙ୍ଗରେ
ସେ ଯଜ୍ଞସଭା ତ୍ୟାଗକଲେ କୈଳାଶ ଆଶ୍ରମେ ଗମିଲେ
ଶିବ ଗମନ୍ତେ ମୁନିଗଣେ ବୈଦିକ ବିଧିର ବିଧାନ

ସହସ୍ର ବରଷ ପର୍ଯ୍ୟନ୍ତ ଯଜ୍ଞରେ ହୋଇଣ ଦିକ୍ଷୀତ
ବିଷ୍ଣୁଙ୍କ ପୂଜା ଶେଷ କରି ଯଜ୍ଞାବଭୃତ ସ୍ନାନ ସାରି
ସ୍ନାନ କରି ଗଙ୍ଗା ଜଳରେ ବିପ୍ରେ ଯେଯା ସ୍ଥାନେ ଗମିଲେ
ଯଜ୍ଞ ପୁରୁଷ ନାରାୟଣ ପଦେ ମୋର କୋଟି ପ୍ରଣାମ

ଇତି ଶ୍ରୀମଦ୍ ଭଗବତେ ମହାପୁରାଣେକ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥ ସ୍କନ୍ଧେ ଦକ୍ଷ ଅଭିଶାପେ ନାମ ଦ୍ୱିତୀୟୋଽଧ୍ୟାୟ

* * * * * *

## ତୃତୀୟ ଅଧ୍ୟାୟ

### ମୈତ୍ରେୟ ଉବାଚ

ଭକତ ବିଦୁର ଆଗରେ ମୈତ୍ରେୟ କହେ ଆନନ୍ଦରେ
ଶ୍ୱଶୁର ଜାମାତା ମଧ୍ୟରେ ପରସ୍ପର ବିଦ୍ୱେଷରେ
ବହୁ କାଳ ହେଲା ଅତୀତ କେହି ନ ହୋଇଲେ ଚିନ୍ତିତ
ବ୍ରହ୍ମା ଦକ୍ଷଙ୍କୁ ଏ ମଧ୍ୟରେ ପ୍ରଜା ଅଧିପତି କରିଲେ

ଦକ୍ଷ ଅତିଶୟ ଗର୍ବରେ ବାଜପେୟ ଯଜ୍ଞ କରିଲେ
ବୃହସ୍ପତି ସବନାମରେ ପୁଣି ଏକ ଯଜ୍ଞାରମ୍ଭିଲେ
ଶିବଙ୍କୁ ତିରସ୍କାର କଲେ ଯଜ୍ଞଭାଗ ତାଙ୍କୁ ନଦେଲେ
ବ୍ରହ୍ମ ନିଷ୍ଠଙ୍କୁ ନ ମାନିଲେ ଅତ୍ୟନ୍ତ ଉଦ୍ଧତ ହୋଇଲେ

ବ୍ରହ୍ମର୍ଷି ଦେବର୍ଷି ପିତର ନିଜନିଜ ପତ୍ନୀ ସଙ୍ଗର
ଆସି ମାଙ୍ଗଳିକ କର୍ମରେ ଯୋଗ ଦେଲେ ଅତି ପ୍ରେମରେ
ଦକ୍ଷ ପ୍ରଜାପତି ଭକ୍ତିରେ ତାହାଙ୍କୁ ସତ୍କାର କରିଲେ
ଏବେଳେ ଆକାଶ ମାର୍ଗରେ ଦେବତା ମାନେ ବିମାନରେ

ଚର୍ଚ୍ଚାକରି ଏ ବିଷୟରେ ଯାଉଥିଲେ ପତ୍ନୀ ସଙ୍ଗରେ
ତାଙ୍କ କଥାରୁ ଦକ୍ଷସୁତା ସତୀ ପିତାଙ୍କ ଯଜ୍ଞ କଥା
ଶୁଣି ଅତି ଦୁଃଖିତା ହେଲେ ଆକାଶକୁ ଚାହିଁ ଦେଖିଲେ
ଗନ୍ଧର୍ବ ଯକ୍ଷ ଯୂଥ ଯୂଥ ନିଜ ରମଣୀଙ୍କ ସହିତ

ବିମାନରେ ବସି ପ୍ରେମରେ ଯାଉଛନ୍ତି ଯଜ୍ଞୋତ୍ସବରେ
ଦିବ୍ୟ କୁଣ୍ଡଳ ରତ୍ନହାର ବେଶ ଭୂଷାରେ ମନୋହର
ରମଣୀମାନେ ପନ୍ତି ପନ୍ତି ବିମାନେ ବସି ଯାଉଛନ୍ତି
ଯଜ୍ଞକୁ ଗମନ ଇଚ୍ଛାରେ ସତୀ ଭୂତେଶଙ୍କୁ କହିଲେ

### ସତୀ ଉବାଚ

ସତୀ ଅତ୍ୟନ୍ତ ବିନୟରେ ପତି ମହେଶଙ୍କୁ କହିଲେ
ହେ ବାମଦେବ ତୁମର ଦକ୍ଷ ପ୍ରଜାପତି ଶ୍ୱଶୁର
ଗୃହେ ଯଜ୍ଞୋତ୍ସବ କରନ୍ତି ଦେଖ ଦେବତା ଯାଉଛନ୍ତି
ଆପଣଙ୍କ ଇଚ୍ଛା ହୋଇଲେ ଆମେ ବି ସେଠାକୁ ଯାଆନ୍ତେ

ନିଜ ବନ୍ଧୁଙ୍କର ସହିତ ସାକ୍ଷାତ କରିବା ନିମିତ୍ତ
ନିଜ ନିଜ ସ୍ୱାମୀ ସଙ୍ଗରେ ଭଗିନୀ ମାନେ ଆସିଥିବେ
ତୁମ ସଙ୍ଗରେ ଯିବା ପାଇଁ ମୋର ଅତି ଇଚ୍ଛା ହୁଅଇ
ମୁଁ ପିତା ମାତାଙ୍କୁ ଦେଖନ୍ତି ବହୁ ଉପହାର ପାଆନ୍ତି

ମାଉସୀ ମାନଙ୍କ ସହିତ ସେଠାରେ ହୁଅନ୍ତା ସାକ୍ଷାତ
ଆପଣଙ୍କ ସଙ୍ଗେ ଯାଆନ୍ତି ଯଜ୍ଞଦେଖି ଫେରି ଆସନ୍ତି
ହେ ପ୍ରଭୋ ଅଜନ୍ମା ଆପଣ ଜଗତ ଉତ୍ପତ୍ତି କାରଣ
ତୁମ ମାୟାରେ ବିରଚିତ ଏ ତ୍ରିଗୁଣ ମୟ ଜଗତ

ଭାସଇ ଆପଣଙ୍କଠାରେ ଜଳେ ପ୍ରତିବିମ୍ବ ପ୍ରକାରେ
ମୁହିଁ କୃପଣୀ ନାରୀ ମାତ୍ର ନ ଜାଣେ କିଛି ତୁମ ତତ୍ତ୍ୱ
ଦୟା କର ହେ ଭୂତ ସାଇଁ ଦେଖିବା ପାଇଁ ଜନ୍ମ ଭୂଇଁ
ଏହି ଦାସୀ ଇଚ୍ଛା କରଇ ଚାଲନ୍ତୁ ଯିବା ସାଙ୍ଗ ହୋଇ

ନାରୀଏ ବେଶ ଭୂଷା ହୋଇ ଦିବ୍ୟ ବିମାନ କୁ ଆରୋହି
ନିଜ ନିଜ ସ୍ୱାମୀ ସଙ୍ଗରେ ଯାଆନ୍ତି ଯଜ୍ଞ ଦର୍ଶନରେ
ମୋ ପିତା ଦକ୍ଷଙ୍କ ସହିତ ତାଙ୍କର ସମ୍ବନ୍ଧ ନାହିଁତ
ହେ ଦେବଈଶ ଶୂଳ ପାଣି ପିତାଙ୍କ ଯଜ୍ଞୋତ୍ସବ ଶୁଣି

ତହିଁରେ ଯୋଗ ଦେବା ପାଇଁ କେ କନ୍ୟା ଇଚ୍ଛା ନକରଇ
ପିତା ମାତା ପତି ପ୍ରଭୃତି ସର୍ବେ ଗୁରୁଜନ ଅଟନ୍ତି
ନପାଇ ମଧ ନିମନ୍ତ୍ରଣ ଗୃହକୁ ଉଚିତ ଗମନ
ତେଣୁ ହେ ଦେବ ତ୍ରିଲୋଚନ ମୋପ୍ରତି ହୁଅନ୍ତୁ ପ୍ରସନ୍ନ

ହେ କରୁଣା ମୟ ଆପଣ ମୋଇଚ୍ଛା କରନ୍ତୁ ପୂରଣ
ପରମ ବିଜ୍ଞାନୀ ହେ ସ୍ୱାମୀ ମୁଁ ଅଟେ ତବ ଅର୍ଦ୍ଧାଙ୍ଗିନୀ
ଆହେ ଶଙ୍କର ଦୟାମୟ କରନ୍ତୁ ମତେ ଅନୁଗ୍ରହ

### ଋଷି ଉବାଚ

ପ୍ରିୟା ଅନୁରୋଧ ବଚନ ଶୁଣି ଶଙ୍କର ଭଗବାନ
ପୂର୍ବେ ଯଜ୍ଞସଭା ମଧରେ ପ୍ରଜାପତିଙ୍କର ଆଗରେ
ମର୍ମଭଦୀ ବାଣ ସମାନ ଦକ୍ଷଙ୍କର କଟୁ ବଚନ
ହୃଦୟେ ସ୍ମରଣ କରିଲେ ହସି ହସି ଏହା କହିଲେ

### ଶ୍ରୀ ଭଗବାନୁବାଚ

ନପାଇ ମଧ ନିମନ୍ତ୍ରଣ ବନ୍ଧୁଙ୍କ ଗୃହକୁ ଗମନ
କରିବା ଅଟଇ ଉଚିତ ହେ ସତୀ ତୋ ବାକ୍ୟ ସଙ୍ଗତ
ଯେ ବନ୍ଧୁ ଦେହାଭିମାନରେ ଗର୍ବ କ୍ରୋଧ ଦ୍ୱେଷ ବଶରେ
ବନ୍ଧୁ ଅସମ୍ମାନ କରଇ ତହିଁ କଦାପି ଯିବ ନାହିଁ

ଦୃଢ଼ଚିତ୍ତ ବିଦ୍ୟା ଧନ ଉଚ୍ଚ କୂଳ ତପ ଯୌବନ
ଏହ ଛ ସୁପୁରୁଷ ଗୁଣ ନିଚର ଏହା ଅବିଗୁଣ
ଦୃଷ୍ଟି ହୁଅଇ ଦୋଷ ଯୁକ୍ତ ବିବେକ ବୁଦ୍ଧି ହୁଏ ଲୁପ୍ତ
ପ୍ରବଳ ଅଭିମାନୀ ହୋଇ ସାଧୁ ପ୍ରଭାବ ନ ଦେଖଇ

ସୁପୁରୁଷ ତାଙ୍କ ଗୃହରେ ଉପସ୍ଥିତ ହେଲେ ସ୍ୱେଚ୍ଛାରେ
ସେମାନେତ ନିଜ ବୁଦ୍ଧିରେ କୁଟିଳ ଭ୍ରୂଭଙ୍ଗୀ ଦୃଷ୍ଟିରେ
ତାହାଙ୍କୁ ଆଡ଼କୁ ଚାହାଁନ୍ତି ସ୍ନେହରେ ପଦେ ନ କହନ୍ତି
ଏପରି ଯାମତି ବିଭ୍ରମ ଯେ ନଜାଣେ ବନ୍ଧୁ ପ୍ରେମ

ତାହାର ପାଖକୁ କେବେହେଁ ତୁମେ ଯିବା ଉଚିତ୍ ନୁହେଁ
ଶତ୍ରୁବାଣରେ ବାରମ୍ବାର କ୍ଷତ ହୋଇଲେ ବି ଶରୀର
ନିଦ୍ରା ଆସଇ ନୟନରେ ବିଦ୍ଧ ହୋଇଲେ କୁବାକ୍ୟରେ
ସଦା ଦହଇ ମର୍ମ ସ୍ଥାନ ହୃଦବ୍ୟଥିତ ରାତ୍ରିଦିନ

କନ୍ୟା ମଧରେ ଦକ୍ଷଙ୍କର ତୁମେ ଅତି ପ୍ରିୟ ତାଙ୍କର
ତୁମେ ପତିବ୍ରତା ବ୍ରତରେ ଆଶ୍ରିତ ମୋର ଚରଣରେ
ଏ ହେତୁ ତୁମ ପିତା କେବେ ତୁମକୁ ସମ୍ମାନ ନ ଦେବେ
କାରଣ ଦକ୍ଷ ମୋର ଉପରେ କ୍ରୋଧ କରନ୍ତି ଅଯଥାରେ

ଏହି ଅହଙ୍କାର ଜୀବର ସାକ୍ଷୀ ଅଟେ ଚିତ୍ତ ବୃତ୍ତିର
ମହାପୁରୁଷ ମାନଙ୍କର ହୃଦେ ନଥାଏ ଅହଂକାର
ତାଙ୍କର ଉନ୍ନତି ଦେଖିଣ ହୁଏ ବ୍ୟଥିତ ନିଚ ଜନ
କେବଳ ଶତ୍ରୁତା କରଇ ତାଙ୍କ ପଦବୀ ନ ଲଭଇ

ଶ୍ରୀହରିଙ୍କୁ ଯେଉଁ ପ୍ରକାରେ ଦ୍ରୋହ କରିଥାନ୍ତି ଅସୁରେ
ହେ ସତୀ ତୁମେ କହି ପାର ମୁଁ ପ୍ରଜାପତି ମାନଙ୍କର
ସଭା ମଧରେ ଦକ୍ଷଙ୍କର କିମ୍ପାଇ ନ କଲି ସତ୍କାର
ଅଭ୍ୟର୍ଥନା ଓ ଅଭ୍ୟୁତ୍ଥାନ ସ୍ନେହ ବିନୟରେ ପ୍ରଣାମ

ଲୋକେ ପରସ୍ପର ମଧ୍ୟରେ କରନ୍ତି ଲୋକ ବ୍ୟବହାରେ
କିନ୍ତୁ ତତ୍ତ୍ୱଜ୍ଞ ସମସ୍ତ ଅନ୍ତଃକରଣେ ଅବସ୍ଥିତ
ସେହି ବାସୁଦେବ ପରମ ପୁରୁଷେ କରନ୍ତି ପ୍ରଣାମ
ଯାର ଥାଏ ଦେହାଭିମାନ ତାଙ୍କୁ ନ ଦିଅନ୍ତି ସମ୍ମାନ

ସେ ବିଶୁଦ୍ଧ ଅନ୍ତଃକରଣ ଶ୍ରୀ ବାସୁଦେବ ତାଙ୍କନାମ
ଶ୍ରୀ ବାସୁଦେବଙ୍କ ସେଥିରେ ଅନୁଭବ ଯେ ପ୍ରତ୍ୟକ୍ଷରେ
ଶୁଦ୍ଧ ଚିତ୍ତରେ ବିଦ୍ୟମାନ ଇନ୍ଦ୍ରିୟାତିତ ଭଗବାନ
ଶ୍ରୀବାସୁଦେବଙ୍କୁ ହୃଦରେ ମୁଁ ସଦା ନମସ୍କାର କରେ

ମୋର କିଛି ଦୋଷ ନାହିଁ ଦକ୍ଷ ପ୍ରଜାପତି କିମ୍ପାଇଁ
ସେହି ଯଜ୍ଞ ସଭା ମଧ୍ୟରେ ପ୍ରଜାପତିଙ୍କ ସମ୍ମୁଖରେ
ମତେ ଅତି କଟୁ ଭାଷାରେ କ୍ରୋଧରେ ତିରସ୍କାର କଲେ
ଜନ୍ମ ଦାତା ପିତା ତୁମର ଦ୍ୱେଷକାରୀ ଅଟଇ ମୋର

ହେ ମାନୀନି ମୋ କଥା ମାନ ନଯା ନଯା ସେ ଯଜ୍ଞ ସ୍ଥାନ
କଥା ନମାନି ଯେବେ ଯିବ କଦାପି ମଙ୍ଗଳ ନ ହେବ
ବନ୍ଧୁ ବାନ୍ଧବ ଅପମାନ ଅଟଇ ମରଣ ସମାନ
ସଦାଶିବ ସତୀ ସମ୍ବାଦ ବିଷୟା ବିଷୟଗଦ
ସୁଜନେ ମନ ଦେଇ ଶୁଣ ଦଣ୍ଡ ନ ଦେବ କାଳ ଯମ

ଇତି ଶ୍ରୀମଦ୍‌ଭଗବତେ ମହାପୁରାଣେ ପାମର ହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଉମା ରୁଦ୍ର ସଂବାଦେ ନାମ ତୃତୀୟୋଽଧ୍ୟାୟଃ ।

*******

## ଚତୁର୍ଥ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ ବୋଲନ୍ତି ବିଦୁର ଶୁଣ ଯାପର ସମାଚର
ଏତିକି କହି ଭଗବାନ ଶଙ୍କର ହୋଇଲେ ମଉନ
ଦକ୍ଷଙ୍କ ଗୃହକୁ ଯିବାରେ ଆଦେଶ ବାଧା ନଦେଲେ
ଏହି ଉଭୟ ଅବସ୍ଥାରେ ସତୀଙ୍କର ପ୍ରାଣତ୍ୟାଗରେ

ସମ୍ଭାବେନା ଅଛି ସେଠାରେ ସତୀ ପଡ଼ିଛନ୍ତି ଦ୍ୱିଧାରେ
ବନ୍ଧୁଙ୍କୁ ଦେଖିବା ଇଚ୍ଛାରେ କେବେ ବୁଣୁଛନ୍ତି ବାହାରେ
ଶିବଙ୍କ କ୍ରୋଧ ଆଶଙ୍କାରେ କେବେବା ଫେରନ୍ତି ଗୃହରେ
ଏ ଅବସ୍ଥା ଦେଖି ସତୀର ଚିନ୍ତିତ ହୋଇଲେ ଶଙ୍କର

ବନ୍ଧୁମାନଙ୍କ ଦର୍ଶନ ଇଚ୍ଛାରେ ବାଧା ହନ୍ତେ ଜନ୍ମ
ସତୀ ଚିତ୍ତ ହେଲା ବ୍ୟାକୁଳ ନୟନ ହୋଇଲା ଅଶ୍ରୁଳ
ସେ ବ୍ୟାକୁଳେ କରିଲେ କ୍ରନ୍ଦନ ରୋଷେ ଶରୀର କମ୍ପମାନ
ରୋଷ ଆରକ୍ତ ନୟନରେ ଶିବଙ୍କ ଆଡ଼କୁ ଚାହିଁଲେ

ସତେ କିବା ତାଙ୍କୁ ଦହିବେ ବିଶ୍ୱ କି ବା ଧ୍ୱଂସ କରିବେ
ଶୋକ କ୍ରୋଧରେ ସତୀଙ୍କର ହୃଦୟ ହୋଇଲା ଅସ୍ଥିର
ଯେ ଶିବ ପ୍ରେମ ବଶହୋଇ ତାଙ୍କୁ ଅର୍ଦ୍ଧାଙ୍ଗ ଥିଲେ ଦେଇ
ସେ ସୁ ପୁରୁଷ ଭଗବାନ ଶଙ୍କରଙ୍କୁ ତେଜି ବହନ

ଦୀର୍ଘ ନିଃଶ୍ୱାସ ପକାଇଲେ ପିତୃ ଗୃହକୁ ବାହାରିଲେ
ସତୀ ଅତି ଶୀଘ୍ର ଗତିରେ ଏକାକୀ ଚଳନ୍ତି ପଥରେ
ମଣିମାନ ମଦ ପ୍ରଭୃତି ହଜାର ସେବକ ପଦାତି
ବହୁ ପାର୍ଷଦ ସେ ବକଙ୍କୁ ସଙ୍ଗେଘେନି ବୃଷ ରାଜକୁ

ସତୀଙ୍କର ପୃଷ୍ଠଭାଗରେ ବେଗେ ଧାଇଁଲେ ନିର୍ଭୟରେ
ସତୀଙ୍କୁ ବୃଷଭ ଉପରେ ବସାଇ ତାହାଙ୍କ ସଙ୍ଗରେ
ସାରିକା କନ୍ଦୁକ ଦର୍ପଣ ପ୍ରଭୃତି ଲୀଳା ବସ୍ତୁମାନ
ଧବଳ ଛତ୍ର ଅଗଣନ ପୁଷ୍ପମାଳାଦି ରାଜ ଚିହ୍ନ

ଦନ୍ଦୁଭି ଶଙ୍ଖ ବେଣୁ ବାଇ ଅମ୍ବରେ ସୁସଜ୍ଜିତ ହୋଇ
ଦକ୍ଷସୁତା ସତୀ ଆଗରେ ଚଳିଲେ ଆନନ୍ଦ ଚିତ୍ତରେ
ସତୀ ଅନୁଚର ସଙ୍ଗରେ ପ୍ରବେଶିଲେ ଯଜ୍ଞଶାଳାରେ
ବ୍ରାହ୍ମଣ ଗଣ ସେ ସ୍ଥାନରେ ବେଦ ପଢ଼ନ୍ତି ଉଚ୍ଚସ୍ୱରେ

ବ୍ରହ୍ମର୍ଷି ଦେବ ତା ସଙ୍ଗରେ ଶୋଭାପାଉଥିଲେ ସେଠାରେ
ମୃତ୍ତିକା କାଷ୍ଠ ଲୌହ ସ୍ୱର୍ଣ୍ଣ ଦର୍ଭଓ ଚର୍ମରେ ନିର୍ମାଣ
ପାତ୍ରମାନ ଥିଲା ସେଠାରେ କେଅବା ବର୍ଣ୍ଣିବ ମୁଖରେ
ସତୀ ପ୍ରବେଶନ୍ତେ ଯଜ୍ଞରେ ଦକ୍ଷ ଅବହେଳା କରିଲେ

ଦକ୍ଷ ଭୟରେ ତାଙ୍କୁ କେହି ସ୍ନେହ ଆଦର କଲେ ନାହିଁ
କିନ୍ତୁ ଜନନୀ ଭଗ୍ନୀଗଣ ହୋଇ ଅତିଶୟ ପ୍ରସନ୍ନ
ପ୍ରେମ ଗଦଗଦ୍ ହୃଦୟରେ ତାହାଙ୍କୁ ଆଲିଙ୍ଗନ କଲେ
ପିତାଙ୍କ ଠାରୁ ଅପମାନ ପାଇ ସତୀ ହେଲେ ବିଷଣ୍ଣ

ଭଗିନୀଙ୍କ କୁଶଳ ପ୍ରଶ୍ନ ବାର୍ତ୍ତା ଆଳପ ପ୍ରେମ ପୂର୍ଣ୍ଣ
ମା ମାଉସୀ ଉପହାର ନ କରିଲେ ସତୀ ସ୍ୱୀକାର
ସତୀ ସେ ଯଜ୍ଞ ମଣ୍ଡପରେ ସ୍ନେହ ଆଦର ନପାଇଲେ
ଦେଖିବଲେ ଶଙ୍କରଙ୍କ ପାଇଁ ଯଜ୍ଞାଂଶ ଦିଆ ଯାଇ ନାହିଁ

ପିତା ମଧ୍ୟ ଶ୍ରୀପଞ୍ଚାନନ କରନ୍ତି ଶିବ ଅପମାନ
ଏହା ଦେଖିଣ ସତୀଙ୍କର କ୍ରୋଧ ଜନ୍ମିଲା ଭୟଙ୍କର
ସତେ କି କ୍ରୋଧ ଅନଳରେ ଜଗତକୁ ଭସ୍ମ କରିବେ
ଆଶ୍ରୟ କରି କର୍ମ ପଥ ଦକ୍ଷ ଥିଲେ ଅତି ଗର୍ବିତ

ଶିବଙ୍କର ଦ୍ରୋହୀ ହୋଇଲେ ତାଙ୍କୁ ଯଜ୍ଞଭାଗ ନଦେଲେ
ଦକ୍ଷଙ୍କର ହତ୍ୟା ଇଚ୍ଛାରେ ଭୂତପ୍ରେତ ଗଣ ଉଠିଲେ
ସତୀ ତାଙ୍କୁ ବାରଣ କଲେ ଅତି କ୍ରୋଧପୂର୍ଣ୍ଣ ସ୍ୱରରେ
ନିନ୍ଦାକଲେ ପିତା ଦକ୍ଷଙ୍କୁ ଶୁଣାଇ ସକଳ ବିଶ୍ୱକୁ
ସମସ୍ତ ଯାଜ୍ଞିକ ଆଗରେ ଏହି ପ୍ରକାର ସେ କହିଲେ

### ଦେବ ଉବାଚ

ଏ ବିଶ୍ୱରେ ଶିବଙ୍କ ସମାନ ନାହିଁ ନାହିଁ କେହି ମହାନ
ସେ ପ୍ରିୟ ଆତ୍ମା ପ୍ରାଣୀଙ୍କର ପ୍ରିୟା ପ୍ରିୟ ନାହିଁ ତାଙ୍କର
ସର୍ବରୂପ ସର୍ବ କାରଣ ବୈର ହୀନ ସେ ଭଗବାନ
ତୁମ ବ୍ୟତୀତ ଆଉକେହି ତାଙ୍କୁ ବିରୋଧ ନ କରଇ

ଆପଣା ପରି ଲୋକ ଯେହି ଗୁଣରେ ଦୋଷ ନଦେଖଇ
ସାଧୁ ଏପରି କରେ ନାହିଁ ସେ ଗୁଣୀର ଗୁଣକୁ ଚିହ୍ନଇ
ଯେ ଅଳ୍ପକୁ ବହୁତ ମଣଇ ପ୍ରକୃତ ସାଧୁ ସେ ବୋଲାଇ
ମହାତ୍ମା ଶଙ୍କରଙ୍କଠାରେ ଆପଣ ବିନା କାରଣରେ

କରୁଛନ୍ତି ଦୋଷ ଆରୋପ ନଜାଣି ତାଙ୍କର ସ୍ୱରୂପ
ଯେ ପ୍ରାଣୀ ଅଜ୍ଞାନ ଅଟଇ ଜଡ଼ ଦେହ ଆତ୍ମା ମଣଇ
ସେ ଇର୍ଷ୍ୟାର ବଶ ହୋଇ ଯଦି ମହାତ୍ମାଙ୍କୁ ନିନ୍ଦଇ
ଏଥି ଆଶ୍ଚର୍ଯ୍ୟ କିଛି ନାହିଁ ଅଜ୍ଞର ପ୍ରକୃତିତ ଏହି

ମହାପୁରୁଷ ଶାନ୍ତମତି ଦୁର୍ଜନ ଇର୍ଷା ନ ଧରନ୍ତି
ପଦରେଣୁ ତାଙ୍କର ତେଜ ହରି ଦୁର୍ଜନର
ଶିବ ବୋଲି ଦୁଇ ଅକ୍ଷର ଉଚ୍ଚାରଣ ମାତ୍ରେପ୍ରାଣୀର
ସକଳ ପାପ ନାଶ ପାଇଁ ଯା ଆଜ୍ଞା ନ ଲଙ୍ଘଇ କେହି

ସେ ପୂତ କୀର୍ତ୍ତି ଶିବ ଠାରେ ଦ୍ୱେଷ କରୁଛ ଅଯଥାରେ
ପରମାନନ୍ଦ ରସପାନ ଇଚ୍ଛାରେଶ୍ରେଷ୍ଠଯୋଗୀ ଜନ
ସେବନ୍ତି ଯାହାଙ୍କ ଚରଣ ଯେଉଁ ସକାମ ଭକ୍ତ ଗଣ
ଅଭୀଷ୍ଟ କରନ୍ତି ପୂରଣ ସେ ବିଶ୍ୱ ବନ୍ଧୁ ଭଗବାନ

ଶଙ୍କରଙ୍କ ଠାରେ ଆପଣ କରନ୍ତି ଦ୍ରୋହ ଆଚରଣ
ବୃଥା ଶିବ ନାମ ବହଇ ପ୍ରକୃତ ଅଶିବ ଅଟଇ
ଏହା ଆପଣଙ୍କ ବ୍ୟତୀତ କେହି କେବେ କହେ ନାହିଁତ
ଯେ ଶିବ ଶ୍ମଶାନ ଭୂମିରେ ରହନ୍ତି ପିଶାଚ ମେଳରେ

ହାଡ଼ ମୁଣ୍ଡମାଳ ଲମ୍ବାନ୍ତି ଶିରେ ଜଟାଜୁଟ ବହନ୍ତି
ଯା ଚରଣ ନିର୍ମାଲ୍ୟ କଣ ବ୍ରହ୍ମା କରେ ଶିରେ ଧାରଣ
ଯେବା ଉଚ୍ଛୃଙ୍ଖଳ ହୋଇ ଶାସନ ମର୍ଯ୍ୟାଦା ଲଙ୍ଘଇ
ଯଦିକେ ନିରଙ୍କୁଶ ହୋଇ ନିଜ ପ୍ରଭୁ ନିନ୍ଦା କରଇ

ତାଙ୍କୁ ଦଣ୍ଡ ଦେବା ନିମିତ୍ତ ଯାର ନାହିଁ ଶକ୍ତି ସାମର୍ଥ୍ୟ
ତେବେ ସେ ବୁଜି ଦେଇ କାନତହୁଁ କରିବ ପଳାୟନ
ଯଦି ନପାର ଧରିଆଣି ତାର ଜିହ୍ୱା ପକାଅ ହାଣି
ଅନ୍ୟଥା ଧର୍ମରକ୍ଷଣ ପାଇଁ ବିସର୍ଜିବ ଜୀବନ

ସେ ନୀଳ କଣ୍ଠ ଭଗବାନ ଶିବଙ୍କୁ ନିନ୍ଦୁଛ ଆପଣ
ତେବେ ତୁମଠାରୁ ଜନମ ଦେହ ତେଜିବି ବର୍ତ୍ତମାନ
ଯଦି ଭ୍ରମରେ କେହି ଜନ ଘୃଣ୍ୟ ବସ୍ତୁ କରେ ଭୋଜନ
ତେବେ ଆତ୍ମ ଶୁଦ୍ଧି ନିମିତ୍ତ ଦମନ କରିବା ଉଚିତ

ଯେ ସ୍ୱରୂପରେ ଭ୍ରମଇ ବିଧି ନିଷେଧ ନମାନଇ
ଯଥା ଦେବ ନର ଗତିରେ ପ୍ରଭେଦ ରହେ ସ୍ୱଭାବରେ
ଦେବେ ଆକାଶରେ ଗମନ୍ତି ମାନବେ ଭୂମିରେ ଚଳନ୍ତି
ସେହିପରି ଜ୍ଞାନୀ ଅଜ୍ଞାନ କେବେହେ ନୁହନ୍ତି ସମାନ

ସ୍ୱଧର୍ମେ ପ୍ରତିଷ୍ଠିତ ଯେହି ଅନ୍ୟଧର୍ମକୁ ନନିନ୍ଦଇ
ଆସକ୍ତ ଅନାସକ୍ତ ଦୁଇ ପ୍ରକାର ଅଧିକାରୀ ପାଇଁ
ବେଦରେ ପ୍ରବୃତ୍ତି ନିବୃତ୍ତି ଏ ଦୁଇ ମାର୍ଗ ରହିଅଛି
ବରୋଧ ହେତୁ ପରସ୍ପର ଏହି ଯେ କର୍ମ ଦ୍ୱିପ୍ରକାର

ଜଣେ ନ କରେ ଆଚରଣ ବିଗ୍ରହ କରନ୍ତୁ ଆପଣ
ପରମାତ୍ମା ପରମ ବ୍ରହ୍ମ ସେହି ଶଙ୍କର ଭଗବାନ
ତାଙ୍କର ତ କୌଣସି କର୍ମ କରିବା ନୁହେଁ ପ୍ରୟୋଜନ
ଆତ୍ମ ଅଣିମାଦି ସମସ୍ତ ସମୃଦ୍ଧି ଅଯଇ ଅବ୍ୟକ୍ତ

ଯାହାର ଆତ୍ମ ଜ୍ଞାନ ଥାଇ ସେ ଏହା କେବଳ ଲଭଇ
ସେ ଐଶ୍ୱର୍ଯ୍ୟ ତୁମର ନାହିଁ ଯଜ୍ଞ ଅନ୍ନରେ ତୃପ୍ତହୋଇ
ଯେ ଲୋକ ଜୀବନ ଧରଇ ସେ ଏହାକୁ ପ୍ରଶଂସଇ
ସେହି ଶଙ୍କର ଭଗବାନ ଅତି ଅପରାଧୀ ଆପଣ

ଆପଣଙ୍କଠାରୁ ଉତ୍ପନ୍ନ ଘୃଣ୍ୟ ଦେହେ କି ପ୍ରୟୋଜନ
ତୋ ପରି ଦୁର୍ଜନ ସହିତ ସମ୍ବନ୍ଧ ହେତୁ ମୁଁ ଲଜ୍ଜିତ
ମହାତ୍ମା ଦ୍ରୋହୀ ଠାରୁ ଜନ୍ମ ଏ ଦେହ ମୋର ଅକାରଣ
ମୋ ସହିତ ତୁମ ସମ୍ବନ୍ଧ ଦେଖାଇ ଯେବେ ସଦାଶିବ

ହସି ହସି ଅତି ପ୍ରେମରେ ମତେ ଦାକ୍ଷାୟଣୀ ନାମରେ
ଡାକିଲେ ମୁ ଲଜ୍ଜିତା ହେବି ଦୁଃଖରେ ବ୍ୟଥିତା ହୋଇବି
ତା ପୂର୍ବରୁ ଏ ଶବ ସମ ଦେହ ତେଜିବା ପ୍ରୟୋଜନ

### ମୈତ୍ରେୟ ଉବାଚ

ଆହେ ଶତ୍ରୁହୀନ ବିଦୁର ଯଜ୍ଞମଣ୍ଡପେ ଏପ୍ରକାର
ଦକ୍ଷଙ୍କୁ କହି ମୌନ ହେଲେ ଉତ୍ତର ଦିଗେ ଭୂମିପରେ
ବସି ଆଚମନ କରିଲେ ଶରୀରକୁ ପୀତ ବସ୍ତ୍ରରେ
ଆଚ୍ଛାଦି ନୟନ ମୁଦିଲେ ଶରୀର ତ୍ୟାଗ ଉଦ୍ଦେଶ୍ୟରେ

ସ୍ଥିତ ହେଲେ ଯୋଗମାର୍ଗରେ ହୃଦୟେ ଶିବଙ୍କୁ ଧ୍ୟାଇଲେ
ସ୍ଥିରେ ବସିଲେ ଆସନରେ ପ୍ରାଣାୟମ ଯୋଗ ବଳରେ
ପ୍ରାଣ ଅପାନ କଲେ ଏକ ନାଭି ଚକ୍ରରେ ସ୍ଥାପିଲେ
ନାଭି ଚକ୍ରରୁ ଉଦାକୁ ଧୀରେ ଉଠାଇ ଉପରକୁ

ବୁଦ୍ଧି ସହ ହୃଦେ ସ୍ଥାପିଲେ ଏ ଅନ୍ତେ ସତୀ ଆନନ୍ଦରେ
ହୃଦ ବାୟୁ କଣ୍ଠ ମାର୍ଗରେ ନେଇ ସ୍ଥାପିଲେ ଭ୍ରୂମଧ୍ୟରେ
ଯେ ଦେହକୁ ପୂଜ୍ୟ ଶଙ୍କର ବହୁବାର କରି ଆଦର
ବସାଉଥିଲେ ସ୍ୱ କୋଳରେ ସେ ଦେହକୁ ତ୍ୟାଗ ଇଚ୍ଛାରେ

ସତୀ ନିଜ ଅଙ୍ଗ ମଧ୍ୟରେ ବାୟୁ ଅନଳକୁ ଧରିଲେ
ଜଗଦ୍‌ଗୁରୁ ଶ୍ରୀ ଭଗବାନ ଶଙ୍କରଙ୍କ ପଦ ସ୍ମରିଣ
ସତୀ ସବୁ ଚିନ୍ତା ତେଜିଲେ ଅନ୍ୟ କିଛି ସେ ନଦେଖିଲେ
ଦେହ ଅଭିମାନ ତାଙ୍କର ତକ୍ଷଣେ ହୋଇଗଲା ଦୂର

ଯୋଗ ଅନଳରେ ତାଙ୍କର ଭସ୍ମ ହୋଇଗଲା ଶରୀର
ସତୀଙ୍କ ଦେହ ବିସର୍ଜନ ଦେଖି ଆଗତ ଦେବଗଣ
ସର୍ବେ ହାହାକାର କରିଲେ କୋଳାହଳ ଚତୁଦିଗରେ
ଦେଖ ଏ ଦକ୍ଷ ପ୍ରଜାପତି ଗର୍ବେ ଆଚରିଲା ଅନୀତି

ଦେବାଧିଦେବ ପ୍ରିୟତମା ବିଶୁଦ୍ଧ ଚେତା ସ୍ଥିରମନା
ସତୀ ପିତା ଅପମାନରେ ଦେହ ତେଜିଲେ ଯଜ୍ଞଶାଳେ
ଦକ୍ଷ ପ୍ରଜାପତିଙ୍କର ସନ୍ତାନ ସର୍ବ ଚରାଚର
କିନ୍ତୁ ସେ ଧୃଷ୍ଟତା କରିଲେ କନ୍ୟାକୁ ଆଦର ନକଲେ

ବାସ୍ତବେ ଦକ୍ଷ ବ୍ରହ୍ମଦ୍ରୋହୀ ଅତି ଅସହିଷ୍ଣୁ ଅଟଇ
ପ୍ରାଣ ତ୍ୟାଗ ଉଦ୍ୟମ ବେଳେ ଦକ୍ଷ ନିବାରଣ ନକଲେ
ସଂସାର ମଧ୍ୟେ ବର୍ତ୍ତମାନ ବ୍ୟାପିବ ଅକୀର୍ତ୍ତି ମହାନ
ଲୋକେ ଏହିପରି ଭାବରେ କଥାବାର୍ତ୍ତା ହେବା ବେଳରେ

ସତୀଙ୍କ ପ୍ରାଣବିସର୍ଜନ ଦେଖି ଶିବ ପାର୍ଷଦ ଗଣ
ଅସ୍ତ୍ର ଶସ୍ତ୍ର ଧରି ହସ୍ତରେ ଦକ୍ଷ ବଧ ପାଇଁ ଉଠିଲେ
ଦେଖି ତାହାଙ୍କ ଆକ୍ରମଣ ସେ ଭୃଗୁମୁନି ତତ୍‌କ୍ଷଣ
କରିବାକୁ ବିଘ୍ନବାରଣ ମନ୍ତ୍ର କରିଣ ଉଚ୍ଚାରଣ

ଦକ୍ଷିଣାଗ୍ନିରେ କଲେ ହୋମ ଋଭୁନାମକ ତେଜିୟାନ
ଏକ ସହସ୍ର ଦେବଗଣ ଯଜ୍ଞ କୁଣ୍ଡରୁ ହେଲେ ଜନ୍ମ
ସେମାନେ ତପ ପ୍ରଭାବରେ ରହିଥିଲେ ଚନ୍ଦ୍ରର ଲୋକରେ
ଜଳନ୍ତା କାଠକୁ ହସ୍ତରେ ଧରି ପ୍ରତ୍ୟାକ୍ରମଣ କଲେ
ଗୁହ୍ୟକ ପ୍ରଥମ ସଇନ ଭୟେ କରିଲେ ପଳାୟନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପରମ ହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ସତୀ ଦେହ ବିସର୍ଜନେ ନାମ ଚତୁର୍ଥୋଽଧ୍ୟାୟ

*******

## ପଞ୍ଚମ ଅଧ୍ୟାୟ

### ମୈତ୍ରେୟ ଉବାଚ

ନାରଦ ମୁନି ତହିଁ ଥିଲେ ଶିବଙ୍କୁ ଏହା ଜଣାଇଲେ
ପିତା ଦକ୍ଷ ଅପମାନରେ ସତୀ ଦେହ ତ୍ୟାଗକରିଲେ
ଯଜ୍ଞ ବେଦୀରୁ ହୋଇ ଜନ୍ମ ଋଭୁ ନାମକ ଦେବଗଣ
ରୁଦ୍ର ପାର୍ଷଦଙ୍କୁ ସେଠାରେ ଛିନ୍ନ ଛତ୍ର ଯେ କରିଦେଲେ

ଶୁଣି ଶଙ୍କର ଭୂତନାଥ ହୋଇଲେ ଅତ୍ୟନ୍ତ କୁପିତ
ସେ ରୁଦ୍ର ସ୍ୱରୂପ ଧରିଲେ କ୍ରୋଧରେ ଓଠ କାମୁଡ଼ିଲେ
ବିଦ୍ୟୁତ ଅଗ୍ନିସମ ଜ୍ୟୋତି ଜଟା ଉପାଡ଼ି ପଶୁପତି
ନିକ୍ଷେପ କଲେ ଭୂମିପରେ ସହସା ଉଠି ଠିଆ ହେଲେ

ଗମ୍ଭୀର ଅଟ୍ଟହାସ କଲେ ଅଳନ ନୟନେ ଚହିଁଲେ
ତହିଁରୁ ଗୋଟିଏ ବିରାଟ ପୁରୁଷ ହୋଇଲା ପ୍ରକଟ
ସ୍ୱର୍ଗକୁ ଲାଗି ଅଛି ଶିର ହସ୍ତ ତାର ଏକ ହଜାର
ମେଘ ପରି ସେ ଶ୍ୟାମ ବର୍ଣ୍ଣ ସୂର୍ଯ୍ୟ ସମ ତିନି ନୟନ

ଦଶନ ମାଳ ବିକଟାଳ ଅଗ୍ନିପରି ଜଟା ଉଜ୍ଜଳ
ନରମୁଣ୍ଡ ମାଳ ଗଳାରେ ନାନା ଅସ୍ତ୍ର ଶସ୍ତ୍ର ହସ୍ତରେ
ସେ ପୁରୁଷ ଯୋଡ଼ ହସ୍ତରେ ପୁଛିଲା ଅତି ବିନୟରେ
ଆଜ୍ଞା ଦିଅ ହେ ଭଗବାନ କି କାର୍ଯ୍ୟ କରିବି ସାଧନ

କହିଲେ ପ୍ରଭୁ ମହେଶ୍ୱର ତୁ ବୀର ଭଦ୍ର ଅଂଶମୋର
ତୁହିମୋ ଗଣ ଅଧୀଶ୍ୱର ଏବେ ତୁମୋର ବୋଲ କର
ଯଜ୍ଞ ସହ ଦକ୍ଷଜୀବନ ବିନାଶେ କରତୁ ସଂଗ୍ରାମ
ପାଇ ଆଦେଶ ଶିବଙ୍କର କୋପେ କମ୍ପେ ତା କଳେବର

ଶିବଙ୍କୁ ପ୍ରଦକ୍ଷିଣ କଲା ସତ୍ୱରେ ବାହର ହୋଇଲା
ଭୀଷଣ ସିଂହ ନାଦକଲା ହସ୍ତେ ତ୍ରିଶୂଳ ବୁଲାଇଲା
ଯେ ତ୍ରିଶୂଳ କ୍ଷଣକରେ ଯମକୁ ମଧ୍ୟ ବଧିପାରେ
ଦକ୍ଷ ଯଜ୍ଞଆଡ଼େ ଧାମଇ ପଦରେ ନୂପୁର ବାଜଇ

ଗୁଣଝୁର ଶବ୍ଦ କରଇ ବୀର ନାଦେ ଦିଗ କମ୍ପଇ
ରୁଦ୍ର ପାର୍ଷଦ ଅଗଣନ କରିଣ ଭୀଷଣ ଗର୍ଜନ
ଅତ୍ୟନ୍ତ ପ୍ରଚଣ୍ଡ ବେଗରେ ତାଙ୍କ ପଛେ ପଛେ ଧାଇଲେ
ଋତ୍ୱିକ ଯଜମାନ ତୁଲେ ଯଜ୍ଞଶାଳାରେ ଯେତେ ଥିଲେ

ଅନା ଉତ୍ତର ଦିଗରେ ଧୂଳି ଉଡ଼ିବାର ଦେଖିଲେ
ସକଳେ ହୃଦୟ ମଧରେ ଏପରି ବିଚାର କରିଲେ
ଏତ ଆଚମ୍ବିତ ଅଟଇ ଅନ୍ଧକାର ଘୋଟି ଆସଇ
ଧୂଳି ଝଡ଼ କାହୁଁ ଉଠଇ ଏବେତ ବାତ୍ୟା ହେଉନାହିଁ

ଦୋଷୀକୁ ଦଣ୍ଡିବା ନିମିତ୍ତ ପ୍ରାଚୀନ-ବର୍ହିତ ଜୀବିତ
ଚୋର ଖଣ୍ଟକ ନାହିଁ ଭୟ ନୁହେସେ ଗୋଧୂଳି ସମୟ
ଏଧୂଳି କେଉଁଠୁ ଆସଇ ପ୍ରଳୟ କାଳ ତ ନୁହଁଇ
ଦକ୍ଷ ପ୍ରଜାପତିଙ୍କ ପତ୍ନୀ ଅନ୍ତପୁରର ଅନ୍ୟ ଯୁବତୀ

ଅତିବ୍ୟାକୁଳିତ ଚିତ୍ତରେ ପରସ୍ପର କଥା ହୋଇଲେ
ଦକ୍ଷ ବିନା ଅପରାଧରେ ଅନ୍ୟ କନ୍ୟାଙ୍କ ସମ୍ମୁଖରେ
ସତୀକୁ କଲେ ତିରସ୍କାର ଜଣାଯାଏ ଏତାର ଫଳ
ପ୍ରଳୟ କାଳରେ ଶଙ୍କର ବିକୀର୍ଣ୍ଣ କରି ଜଟା ଭାର

ଅସ୍ତ୍ର ଶସ୍ତ୍ରେ ହୋଇ ସଜ୍ଜିତ ଭୂଜକୁ କରି ବିସ୍ତାରିତ
ତାଣ୍ଡବ ନୃତ୍ୟ ସେ କରନ୍ତି ତ୍ରିଶୂଳେ ଦିଗଗ୍‌ଜ ବିନ୍ଧନ୍ତି
ମେଘ ଗରଜନ ପ୍ରକାରେ ଭୟଙ୍କର ଅଟ୍ଟହାସରେ
ଦିଗ ବିଦାରିତ ହୁଅଇ ତାଙ୍କ ତେଜ ସହି ନୁହିଁ

ସ ରୋଷ ଭୃକୁଟୀ ଛଟାରେ ବିକରାଳ ଦନ୍ତ ପନ୍ତିରେ
ତାରା ହୁଅନ୍ତି ଅସ୍ତ ବ୍ୟସ୍ତ ରୁଦ୍ରଙ୍କ ସ୍ୱଭାବ ଏମନ୍ତ
ସେ ଥରେ ହୋଇଲେ କୋପନ ଧାତାର ବି ନୁହେଁ କଲ୍ୟାଣ
ଏହି ପରି ଜଜ୍ଞ-ଶାଳାରେ କଥାବାର୍ତ୍ତା ହେବା ବେଳରେ

ଆକାଶ ପୃଥିବୀ ସର୍ବତ୍ର ହେଲା ଭୟଙ୍କର ଉତ୍ପାତ
ରୁଦ୍ରଙ୍କ ପାର୍ଷଦ କ୍ରୋଧରେ ଘେରିଗଲେ ଚଉଦିଗରେ
ବିଭିନ୍ନ ଅସ୍ତ୍ର ଶସ୍ତ୍ର ମାନ କରିଥିଲେ ହସ୍ତେ ଧାରଣ
କେବା ବାଙ୍ଗର ବର୍ଣ୍ଣପୀତ କେ ଅବା ଦିଶଇ ଲୋହିତ

କାମୁଖ ମାର୍ଜ୍ଜା ସମାନ କେଅଟେ ପିଙ୍ଗଳ ନୟନ
କେ ପୂର୍ବ ପଶ୍ଚିମକୁ ଗଲା ଯଜ୍ଞକାଠ ବାଂଶ ଭାଙ୍ଗିଲା
କେଭାଙ୍ଗିଦେଲା ପତ୍ନୀଶାଳା ଅଗ୍ନୀଧ୍ରାଶାଳା ଉଜାଡ଼ିଲା
ଯଜନ ଗୃହ ପାକଶାଳା କେବଳେ ନଷ୍ଟ ଭ୍ରଷ୍ଟ କଲା

କେ ଲିଭାଇଲା ଯଜ୍ଞ କୁଣ୍ଡ କେବା ଭାଙ୍ଗିଲା ଯଜ୍ଞଭାଣ୍ଡ
କେ ଯଜ୍ଞକୁଣ୍ଡରେ ମୁତିଲା କେ ସୀସା ସୂତ୍ର ଛିଣ୍ଡାଇଲା
କେବା ମୁନିଙ୍କୁ ଗୋଡ଼ାଇଲା କେ ଗର୍ଜନ ତର୍ଜନ କରିଲା
କେଯେ ଦେବତାଙ୍କୁ ଗୋଡ଼ାଇ ଅଣ୍ଟାରେ ଭିଡ଼ିଣ ଧରଇ

ଭୃଗୁମୁନିଙ୍କୁ ମଣିମାନ ରୋଷାର କରିଲା ବନ୍ଧନ
ସେ ବୀରଭଦ୍ର ବେଗେଗଲା ଦକ୍ଷଙ୍କୁ ଗୋଡ଼ାଇ ବାନ୍ଧିଲା
ସେପରି ଚଣ୍ଡୀଶ ପୂଷାଙ୍କୁ ନନ୍ଦୀଶ ଭଗ ଦେବତାଙ୍କୁ
ରୋଷେ ରଜ୍ଜୁରେ ବାନ୍ଧିଦେଲାଘୋଷାରୀ ଘୋଷାରୀ ଆଣିଲେ

ଶିବ ପାର୍ଷଦଙ୍କ ମାଡ଼ରେ ଆହତ ହୋଇଣ ସେଠାରେ
ଋତ୍ୱିକ ଦେବତା ଭୟରେ ଯେ ଯୁଆଡ଼େ ପଳାଇଲେ
ଭୃଗୁସ୍ରୁବ ଧରି ହସ୍ତରେ ଯଜ୍ଞେ ଆହୁତ ଦେଉଥିଲେ
ସେ ପ୍ରଜାପତିଙ୍କ ସଭାରେ ମୁଛକୁ ଆଉଁଶି ହସ୍ତରେ

ଦେବତା ମୁନିଙ୍କ ଆଗରେ ଶିବଙ୍କୁ ଥଟ୍ଟା କରୁଥିଲେ
ଏଣୁ ବୀରଭଦ୍ର କ୍ରୋଧରେ ତାମୁଛ ଦାଢ଼ି ଉପାଡ଼ିଲେ
ସେ ପୁଣି ଭୃଗୁଙ୍କୁ ଭୂମିରେ ପକାଇ ତାଆଖି ତାଡ଼ିଲେ
ଦକ୍ଷ ଯେତେବେଳେ କ୍ରୋଧରେ ଶିବଙ୍କୁ ଅଭିଶାପ ଦେଲେ

ଭୃଗୁ ସେକାଳରେ ସଭାରେ ଦକ୍ଷଙ୍କୁ ପ୍ରବର୍ତ୍ତାଉଥିଲେ
ଅନିରୁଦ୍ଧ ବିବାହ ବେଳେ ଶ୍ରୀବଳରାମ ଯେ ପ୍ରକାରେ
କଳିଙ୍ଗ ନୃପତି ଦଶନ କ୍ରୋଧେ କରିଲେ ଉତ୍ପାଟନ
ତଥା ବୀରଭଦ୍ର କୋପରେ ପୂଷାଙ୍କ ଦାନ୍ତ ଉପାଡ଼ିଲେ

ଶିବଙ୍କୁ ତିରସ୍କାର ବେଳେ ସେ ଦାନ୍ତ ଦେଖାଇ ହସିଥିଲେ
ଦକ୍ଷଙ୍କର ଛାତି ଉପରେ ବସି ବୀରଭଦ୍ର ରୋଷରେ
ଏକ ଇ ସୁତୀକ୍ଷ୍ଣ ଖଣ୍ଡାରେ ତା ମୁଣ୍ଡ କାଟିବାକୁ ଲାଗିଲେ
ବହୁତ ପ୍ରଯତ୍ନ କରିଲେ ସେ ଶିର ଛେଦି ନପାରିଲେ

ସକଳ ଅସ୍ତ୍ର ବ୍ୟର୍ଥ ହେଲା ଦକ୍ଷଙ୍କ ମୁଣ୍ଡ ନ କଟିଲା
ଏଣୁ ବୀର ଭଦ୍ର ଅତ୍ୟନ୍ତ ହୋଇଲେ ବିବ୍ରତ ଚିନ୍ତିତ
ଯଜ୍ଞ ମଣ୍ଡପରେ ଯୂପରେ ପଶୁ ହତ୍ୟା କଲା ପ୍ରକାରେ
ଦକ୍ଷଙ୍କ ଶିରକୁ ସେଥିରେ ପୁରାଇ ଦେହ ଛିଣ୍ଡାଇଲେ

ଦେଖି ଭୂତ ପ୍ରେତ ପ୍ରେମରେ ବୀରଭଦ୍ରକୁ ପ୍ରଶଂସିଲେ
ଯେଥିଲେ ଦକ୍ଷଙ୍କ ପକ୍ଷରେ ଦୁଃଖରେ ହାହାକାର କଲେ
ବୀରଭଦ୍ର ଅତିକୋପରେ ଯଜ୍ଞ ଦକ୍ଷିଣାଗ୍ନି ମଧରେ
ଦକ୍ଷଙ୍କ ଶିର ପକାଇଲେ ଯଜ୍ଞଶାଳାରେ ନିଆଁ ଲଗାଇଲେ
ଅତ୍ୟନ୍ତ ପ୍ରେମ ଉଲ୍ଲାସରେ କୈଳାସ ପର୍ବତେ ଫେରିଲେ

ଇତିଶ୍ରୀ ଶ୍ରୀମଦ୍ ଭାଗବତେ ମହାପୁରାଣେ ପରମହଂସ୍ୟା ସଂହିତାୟା ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଦକ୍ଷ ଯଜ୍ଞ ଧ୍ୱଂସୋ ନାମ ପଞ୍ଚମ ଅଧ୍ୟାୟ

*******

## ଷଷ୍ଠ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏହି ପ୍ରକାରେ ଦେବଗଣ ପରାଜିତ ହେଲେ ସଂପୂର୍ଣ୍ଣ
ରୁଦ୍ରମାନଙ୍କର ପରିଘ ତ୍ରିଶୂଳ ପଟ୍ଟିଶ ଖଡ଼ଗ
ଗଦା ପ୍ରଭୃତି ଆୟୁଧର ଆଘାତେ ଦେବତା ଗଣର
ଅଙ୍ଗ ପ୍ରତ୍ୟେଙ୍ଗ ହେଲା ଛିନ୍ନ ଭୟରେ ଋତିଜ ବ୍ରହ୍ମଣ

ସଦସ୍ୟ ମାନଙ୍କ ସଙ୍ଗରେ ବ୍ରହ୍ମାଙ୍କ ନିକଟକୁ ଗଲେ
ପ୍ରଣାମ କରି ବିନୟରେ ସମସ୍ତ ବୃତ୍ତାନ୍ତ କହିଲେ
ଚତୁରାନନ ଭଗବାନ ସର୍ବାନ୍ତର୍ଯ୍ୟାମି ନାରାୟଣ
ପୂର୍ବରୁ ଏହା ଜାଣିଥିଲେ ତେଣୁ ଯଜ୍ଞକୁ ନ ଆସିଲେ

ବଳିଷ୍ଠ ଜନେ ଅପରାଧ କରିଲେ ଘଟଇ ପ୍ରମାଦ
କରିଲେ ପ୍ରାଣ ନରହଇ ନିଷ୍ଟେ ଅମଙ୍ଗଳ ଘଟଇ
ଶିବେ ଯଜ୍ଞଭାଗ ନଦେଲ ତାଙ୍କର ଦ୍ରୋହ ଆଚରିଲ
ଶଙ୍କର ଅତି ଉଦାସୀନ ସେ ଶୀଘ୍ର ହୁଅନ୍ତି ପ୍ରସନ୍ନ

ଧରି ତାହାଙ୍କ ଚରଣ କ୍ଷମା ମାଗି କର ପ୍ରସନ୍ନ
ଦକ୍ଷ ଦୁର୍ବଚନ କହିଲା ସତୀଙ୍କ ବିଯୋଗ ହୋଇଲା
ଏହି ଯଜ୍ଞଥରେ ପୁନ ଆରମ୍ଭି ହୋଇବ ସଂପୂର୍ଣ୍ଣ
ଯଦି ଥାଏ ଶୁ କାମନା ଯାଇ ଶିବଙ୍କୁ ମାଗ କ୍ଷମା

ଅନ୍ୟଥା ସେ ଶିବ କୁପିତ ହେଲେ ଲୋକପାଳ ସହିତ
ଧ୍ୱଂସ ହୋଇବ ଏ ଜଗତ ଶିବତ ପରମ ସ୍ୱତନ୍ତ
ତାଙ୍କ ତତ୍ତ୍ୱ ଶକ୍ତି ସାମର୍ଥ୍ୟ ମୁନି ଋଷି ସିଦ୍ଧ ଦୈବତ
ଯଜ୍ଞସ୍ୱରୂପ ଶଚୀ ସାଇଁ ମୁ ମଧ୍ୟ ନିଜେ ଜାଣି ନାହିଁ

ତାକୁ କେବା ଶାନ୍ତ କରିବ କେ ବା ଉପାୟ ବତାଇବ
ବ୍ରହ୍ମା ଦେବତାଙ୍କୁ ଏମନ୍ତ କହି ସେମାନଙ୍କ ସହିତ
ପ୍ରଜାପତି ପିତୃସଙ୍ଗରେ କୈଳାସ ପର୍ବତେ ଗାମିଲେ
ଔଷଧି ତପ ମନ୍ତ୍ର ଯୋଗ ପ୍ରଭୃତି ଉପାୟରେ ସିଦ୍ଧ

ଆଜନ୍ମ ପ୍ରସିଦ୍ଧ ପୁରୁଷ କିନ୍ନର ଯକ୍ଷ ଅପସରସ
ସେଠାରେ ସଦା ନିବସନ୍ତି ତାହାକୁ ଅର୍ଚ୍ଚନା କରନ୍ତି
ତା ମଣିମୟ ଶୃଙ୍ଗମାନ ଲତା ଗୁଳ୍ମାଦି ପରିପୂର୍ଣ୍ଣ
ନାନା ଧାତୁ ବର୍ଣ୍ଣେ ଶୋଭନ ତହିଁ ଅରଣ୍ୟ ପ୍ରାଣୀ ଗଣ

ଶାବକ ମାନଙ୍କ ସଙ୍ଗରେ ଭ୍ରମନ୍ତି ଅତି ଆନନ୍ଦରେ
ଉଚ୍ଚଶିଖର କନ୍ଦରାରେ ନିଜ ନିଜ ସ୍ୱାମୀ ସଙ୍ଗରେ
ସିଦ୍ଧ ରଣଣୀ ବିହରଇ ନିର୍ମଳ ନିର୍ଝରଣା ବହଇ
ମୟୁର ମାନଙ୍କ ନିସ୍ୱନ ମଦାନ୍ଧ ଭ୍ରମର ଗୁଂଜନ

କୁସୁମ ମଧୁ କରି ପାନ ଭ୍ରମର କରି ଗୁଞ୍ଜନ
କୋକିଳ କୁହୁକୁହୁ ତାନ ମାନସ କରଇ ହରଣ
ମୟୁର କରେ କେକା ସ୍ୱନ ଉଡେ ରାବନ୍ତି ପକ୍ଷୀ ଗଣ
କଳ୍ପ ବୃକ୍ଷମାନେ ଯେ ତହିଁ ଶାଖା ପ୍ରଶାଖାକୁ ହଲାଇ

ପକ୍ଷୀମାନଙ୍କୁ ଆହ୍ୱାନ କରିବା ପରି ହୁଏ ଜ୍ଞାନ
ହସ୍ତୀ ବିଚରଣ ଛଳରେ ଅଦ୍ରିକି ପ୍ରଦକ୍ଷିଣ କରେ
ଝରଣା ନିସ୍ୱନ ଛଳରେ ପର୍ବତ କିବା ଗାନ କରେ
ମନ୍ଦାର ସରଳ ତମାଳ ରଙ୍ଗିମ କାଞ୍ଚନ ଯେ ଶଳ

ପାରିଜାତ ଜାତ ଜୀବ ଅର୍ଜୁନ ବୃକ୍ଷେ ପର୍ବତ ମନୋରମ
କଦମ୍ବ ପୁନ୍ନାପ ପାଟଳ ନାଗେଶ ଅଶୋକ ବକୁଳ
କୁରୁ-ବକ କୁଳକ ନାମ ଶୋଭା ଦିଶଇ ଅନୁପମ
ମଲ୍ଲିକା ମାଧବୀ ନିଆଳୀ ଲତାରେ ପୂର୍ଣ୍ଣ ବନ ସ୍ଥଳୀ

ପନସ ଉଦୁମ୍ବର ପୁଣ ଅଶ୍ୱତ୍ଥ ପ୍ଳକ୍ଷ ଯେ ନ୍ରଗୋଧ
ବିବିଧ ନାନା ଔଷଧ ମଧୁକ ଆମ୍ର ପିଆଶାଳ କୀଟକ
ଇକ୍ଷୁ ବାଉଁଶ ଯେ ଅନ୍ୟାନ୍ୟ ବୃକ୍ଷ ଲତାପୂର୍ଣ୍ଣ ସେ ସ୍ଥାନ
ସରୋବର ଜଳ ନିର୍ମଳ ପୁଷ୍ପିତ କୁମୁଦ କମଳ

ମଧୁ ସୌରଭ ବୃଦ୍ଧି ପାଇଁ ପକ୍ଷୀଏ ବିହରନ୍ତି ତହିଁ
ମଧୁର କୂଜନ କରନ୍ତି କୈଳାସ ସୁଷମା ବଢ଼ାନ୍ତି
ଘେନି କୁସୁମ ମଧୁଗନ୍ଧ ପବନ ବହେ ମନ୍ଦ ମନ୍ଦ
ବରାହ ସିଂହ ଶାଖା ମୃଗ ସିଂହ ଭଲ୍ଲୁକ ଗଜମୃଗ

ଶଶକ ମହିଷ ଯେ କର୍ଣ୍ଣ ବ୍ୟାଘ୍ର ଗୁରୁ ସରଭ ଉର୍ଣ୍ଣ
ଏକ ପଦ ଅଶ୍ୱ ବଦନ ବୃକ ମୃଗଙ୍କ ବିଚରଣ
ସରୋବର କମଳ ପରିପୂର୍ଣ୍ଣ ତୀରରେ ରମ୍ଭା ତରୁବର
ଦିବ୍ୟ ସୁଷମା ବିମଣ୍ଡିତ ବିରଜେ କୈଳାସ ପର୍ବତ

ପବିତ୍ର ଜଳ ଗଙ୍ଗା ତହିଁ ଚତୁର୍ଦ୍ଦିଗ ବେଢ଼ି ବହଇ
ସତୀ ଦେବୀଙ୍କ ସ୍ନାନ ଫଳେ ଗଙ୍ଗା ପବିତ୍ର ତିନିପୁରେ
ଶିବ ନିବାସ ସେ ପର୍ବତ ଦେଖି ଦେବଗଣ ବିସ୍ମିତ
ସୌଗନ୍ଧକ ବନ ଅଛଇ ସୌଗନ୍ଧିକ ପଦ୍ମ ଫୁଟଇ

ନଗରୀ ଯେ ଅଳକା ନାମ ଦେବତା କରିଲେ ଦର୍ଶନ
ସେ ନଗରୀ ବର୍ହିଭାଗରେ ନନ୍ଦା ଅଳକାନ୍ଦା ନାମରେ
ସରିତ ଦ୍ୱୟ ପ୍ରବାହିତ ଶିବ ପଦ ରେଣୁ ପବିତ୍ର
ନିଜ ସ୍ଥାନୁ ଅବତରଣ କରି ସୁର ରମଣୀ ଗଣ

ସେ ନନ୍ଦା ଅଳକା ନନ୍ଦାରେ ପ୍ରବେଶି ସ୍ନେହାଦ୍ର ଚିତ୍ତରେ
ସ୍ୱାମୀ ମାନଙ୍କ ଶରୀରରେ ଜଳ ସିଞ୍ଚି ଅତି ପ୍ରେମରେ
ରତି କ୍ରୀଡ଼ାରେ ହୋଇ ଶାନ୍ତ ନନା କ୍ରୀଡ଼ା କରନ୍ତି ନିତ୍ୟ
ଦେବ ରମଣୀଙ୍କ ସ୍ନାନରେ ଗଳିତ ନବ କୁଙ୍କୁମରେ

ହସ୍ତୀ ହସ୍ତିନୀଙ୍କ ସଙ୍ଗରେ କ୍ରୀଡ଼ା କରିବା ସମୟରେ
ସେ ଜଳକୁ ବିନା ତୃଷାରେ ପାନ କରନ୍ତି ଆନନ୍ଦରେ
ସ୍ୱର୍ଣ୍ଣ ରୋପଙ୍କ ମଣି ଶୋଭିତ ବିମାନ୍ ଅଛି ଶତ ଶତ
ଯକ୍ଷ ରମଣୀ ମାନେ ତହିଁ ବାସ କରନ୍ତି ସ୍ନେହ ବହି

ତେଣୁ ସେ ନଗରୀ ବିଦ୍ୟୁତ ବାରିଧର ମାଳା ମଣ୍ଡିତ
ଆକାଶ ପରି ଯାଏ ଜଣା ନାହିଁ ନଥିବ ତା ତୁଳନା
ଯକ୍ଷରାଜ କୁବେରଙ୍କର ରାଜଧାନୀ ଅଳକାପୁର
ଦେବତା କରି ଅତିକ୍ରମ ପ୍ରବେଶ ସୌଗନ୍ଧିକ ବନ

ନାନାରଙ୍ଗ ପତ୍ର କୁସୁମ ଫଳ ପୂର୍ଣ୍ଣ କଳ୍ପ ବୃକ୍ଷମାନ
ସୁଶୋଭିତ ଏହି କାନନ ଆଶ୍ଚର୍ଯ୍ୟ ଚଉଦ ଭୁବନ
କୋକିଳ ଆଦି ବିହଙ୍ଗମ କରୁଥାନ୍ତି କଳ କୂଜନ
ଭ୍ରମର କରଇ ଗୁଂଜନ ଅତି ରମଣୀୟ ଏବନ

ପଦ୍ମପୂର୍ଣ୍ଣ ସର ଶୋଭଇ ରାଜ ହଂସ କ୍ରୀଡ଼ା କରଇ
ହରି ଚନ୍ଦନ ବୃକ୍ଷ ପୂର୍ଣ୍ଣ ଏଠାରେ ଅଛି ବହୁବନ
ଏହି ବୃକ୍ଷରେ ହସ୍ତୀଗଣ ଦେହ କରିବାରୁ ଘର୍ଷଣ
ଚନ୍ଦନ ଗନ୍ଧ ବାହାରଇ ସେଥିରେ ସୁଗନ୍ଧିତ ହୋଇ

ବାୟୁ ପ୍ରବାହିତ ହୋଇ ଯକ୍ଷ ପତ୍ନୀ ମନ ମୋହଇ
ବୈଦୁର୍ଯ୍ୟ ସୋପାନ ଶୋଭନ ପଦ୍ମ ପୁଷ୍ପରେ ପରିପୂର୍ଣ୍ଣ
ବାପୀ ଅନେକ ଅଛି ଯହିଁ କିନ୍ନର ଯେ କ୍ରୀଡ଼ନ୍ତି ତହିଁ
ଦେବତା ଏବନ ପାଖରେ ଏକ ବଟବୃକ୍ଷ ଦେଖିଲେ

ଉଚ୍ଚ ଯୋଜନ ଏକ ଶତ ଶାଖା ସମୂହ ବିସ୍ତାରିତ
ପସ୍ତରି ଯୋଜନ ପର୍ଯ୍ୟନ୍ତ ଦେଖି ଦେବ ଗଣ ବିସ୍ମିତ
କୌଣସି ପକ୍ଷୀ ଏ ବୃକ୍ଷରେ କୁଳାୟ ନିର୍ମାଣ ନକରେ
ମହାମହିମ ଯୋଗମୟ ମୁମୁକ୍ଷୁ ମାନଙ୍କ ଆଶ୍ରୟ

ସେ ବୃକ୍ଷମୂଳେ ଯୋଗାସୀନ କ୍ରୋଧବିହୀନ କାଳ ସମ
ଶିବଙ୍କୁ କରି ଦରଶନ ଦେବତା ହେଲେ ପ୍ରେମେ ମଗ୍ନ
ଶ୍ରୀ ଭଗବାନ ଭୂତନାଥ ଶ୍ରୀ ଅଙ୍ଗ ଥିଲା ଅତି ଶାନ୍ତ
ସନନ୍ଦ ପ୍ରଭୃତି ପ୍ରଶାନ୍ତ ସିଦ୍ଧ ଗଣଙ୍କର ସହିତ

ଲକ୍ଷ ଯକ୍ଷଙ୍କର ଇଶ୍ୱର କୁବେର ସେବନ୍ତି ପୟର
ଜଗଦୀଶ୍ୱର ସେ ଶଙ୍କର ବନ୍ଧୁ ଅଖିଳ ଜଗତର
ସେ ହୋଇ ଭକ୍ତ ସ୍ନେହାଧୀନ କରନ୍ତି ସମସ୍ତ କଲ୍ୟାଣ
ସେ ସର୍ବ ଲୋକ ହିତ ପାଇଁ ସଦା ଏକାଗ୍ର ଚିତ୍ତ ହୋଇ

ସମାଧି ଯୋଗ ଆଚରନ୍ତି ସକଳ ସମାନ ମଣନ୍ତି
ମସ୍ତକେ ଶେଭେଭେ ଚନ୍ଦ୍ରକଳା କଟିରେ ଭୁଜଙ୍ଗ ମେଖଳା
ଶରୀର କାନ୍ତି ସାନ୍ଧ୍ୟ ଘନ ଭସ୍ମ ଦଣ୍ଡ ଜଟା ଅଜିନ
ତପସ୍ୱୀର ଅଭିଷ୍ଟ ଚିହ୍ନ ସେ କରି ଅଛନ୍ତି ଧାରଣ

ବସିକୁଶାସନ ଉପରେ ନାରଦ ପ୍ରଶ୍ନ ଅନୁସାରେ
ଶ୍ରୋତାଙ୍କୁ ସନାତନ ବ୍ରହ୍ମ ବିଷୟେ ପ୍ରବଚନ ଦାନ
ବାମ ପାଦ ସବ୍ୟ ଜଙ୍ଘରେ ବାମହସ୍ତ ବାମ ଜାନୁରେ
ଅକ୍ଷମାଳା ମଣିବନ୍ଧରେ ସଂଯୋଜିଣ ତର୍କ ମୁଦ୍ରାରେ

ହୋଇଥିଲେ ସମାସୀନ ସେ ସଦାଶିବ ପଞ୍ଚାନନ
ଯୋଗ କକ୍ଷାର ଆଶ୍ରୟରେ ଏକାନ୍ତ ଏକାଗ୍ର ଚିତ୍ତରେ
ବ୍ରହ୍ମାନନ୍ଦରେ ମଗ୍ନଥିଲେ ଲୋକ ପାଳଙ୍କର ସଙ୍ଗରେ
ମୁନିମାନେ ଯାଇ ଭକ୍ତିରେ କୃତାଞ୍ଜଳିରେ ପ୍ରଣମିଲେ

ସ୍ୱୟଂ ଶ୍ରୀ ବିଷ୍ଣୁ ଦୟାମୟ ହେଲେବି ସର୍ବ ପୂଜନୀୟ
ସେ ବାମନ ଅବତାରେ କଶ୍ୟପଙ୍କୁ ପ୍ରଣାମ କଲେ
ତଥା ଦେବ ଦାନବ ଗଣ ବନ୍ଦନ୍ତି ଶ୍ରୀ ହରି ଚରଣ
ତଥାପି ବ୍ରହ୍ମା ଆଗମନ ଜାଣି ତ୍ୟାଗ କରି ଆସନ

ଅବନତ ମସ୍ତକରେ ତାହାଙ୍କୁ ପ୍ରଣାମ କରିଲେ
ଶଙ୍କରଙ୍କ ଚତୁଃପାର୍ଶ୍ୱରେ ଥିବା ମହର୍ଷିଏ ଭକ୍ତିରେ
ସିଦ୍ଧ ସାଧ୍ୟଙ୍କର ସଙ୍ଗରେ ବ୍ରହ୍ମାଙ୍କ ପଦେ ପ୍ରଣମିଲେ
ଶଙ୍କର ପ୍ରଣାମ ମୁଦ୍ରାରେ ସେଠାରେ ଠିଆ ହୋଇଥିଲେ
ସେ ବ୍ରହ୍ମା ପ୍ରେମ ଭକ୍ତିରେ ହସି ଶଙ୍କରଙ୍କୁ କହିଲେ

### ବ୍ରହ୍ମୋବାଚ

ଏଜଗତର ସ୍ୱାମୀ ତୁହିଁ ହେ ପ୍ରଭୋ ଜାଣି ଅଛି ମୁହିଁ
ଏହି ବିଶ୍ୱର ଯୋନି ଶକ୍ତି ଯା ନାମ ଅଟଇ ପ୍ରକୃତି
ତାହାର ବୀଜ ଶିବ ଯେହି ତାଙ୍କୁ ପୁରୁଷ ବୋଲି କହି
ଏଦୁଇ ଉର୍ଦ୍ଧ୍ୱରେ ଆପଣ ଏକରସ ପରମ ବ୍ରହ୍ମ ।

ତୁମେ ଉର୍ଣ୍ଣନାଭ ପ୍ରକାରେ ନିଜ ରୂପ ଶିବ ଶକ୍ତିରେ
ସଦା ଲୀଳାରେ କ୍ରୀଡ଼ାକରୁ ବିଶ୍ୱ ସୃଜି ପାଳି ସଂହାରୁ
ଧର୍ମାର୍ଥଦାୟୀ ତ୍ରିବେଦର ରକ୍ଷାପାଇଁ ହେ ମହେଶ୍ୱର
ତୁ ଦକ୍ଷକୁ ନିମତ୍ତ କରି ଯଜ୍ଞ ପ୍ରକଟ ଥିଲୁ କରି

ତୁମେ ରଚିଛ ବର୍ଣ୍ଣାଶ୍ରମ ଯାହା ନୀତିନିଷ୍ଠ ବ୍ରାହ୍ମଣ
ଶ୍ରଦ୍ଧାରେ କରନ୍ତି ପାଳନ ଯଜ୍ଞର ସ୍ୱରୂପ ଆପଣ
ଯେ ବ୍ୟକ୍ତି କରେ ଶୁଭକର୍ମ ତୁ କରୁ ଭୁକ୍ତି ମୁକ୍ତି ଦାନ
ପାପୀକୁ ଦେଉ ନର୍କ ଗତି ହେ ଶୁଭମୟ ବିଶ୍ୱପତି

କର୍ମ ଫଳର ବ୍ୟତିକ୍ରମ ହୋଇନପାରେ କଦାଚନ
ଯେ ବ୍ୟକ୍ତି ତୋର ଚରଣରେ ନିଜକୁ ସମର୍ପଣ କରେ
ସବୁ ପ୍ରାଣୀ ମଧ୍ୟେ ଯେହି ତୋର ଅଭାସକୁ ଦେଖଇ
ସବୁପ୍ରାଣୀ ମଣେ ସମାନ ସେ ନୁହେଁ କେବେ କ୍ରୋଧାଧୀନ

ଯେ ପୁରୁଷ ଭେଦ ବୁଦ୍ଧିରେ ମଜ୍ଜିରହେ କର୍ମକାଣ୍ଡରେ
ତା କାମନା ନୁହେଁ ଉତ୍ତମ ସେତ ଅଟଇ ନରାଧମ
ଯେଦେଖି ପରର ଉନ୍ନତି ବ୍ୟାକୁଳ ହୁଏ ଦିନ ରାତି
ମର୍ମଭେଦୀ ବାକ୍ୟ କହଇ ଅନ୍ୟ ହୃଦେ ଦୁଃଖ ଦିଅଇ

ତା ବଧ ନୁହଁଇ ଉଚିତ୍ ସେତ ଅଟଇ ଜୀବନ୍ମୃତ
ପଦ୍ମନାଭଙ୍କ ମାୟା ଶକ୍ତି ଅଟେ ପ୍ରବଳ ବଳବତୀ
ମୋହିତ ହୋଇଣ ମାୟାରେ କାର ଯଦି କେଉଁ ସ୍ଥାନରେ
ଭେଦବୁଦ୍ଧି ଜନ୍ମେ ହୃଦରେ ସାଧୁ ସ୍ୱାଭାବିକ ଗୁଣରେ
ସେ ବ୍ୟକ୍ତିକୁ ଦୟା କରନ୍ତି ବାଧାରେ ଯତ୍ନ ନ କରନ୍ତି
ହେ ପ୍ରଭୋ ସର୍ବଜ୍ଞ ଆପଣ ନୁହନ୍ତି ମାୟାର ଅଧୀନ

ଯେହୁମାୟାରେ ବଶୀଭୂତ କର୍ମମାର୍ଗେ ରହେ ଆସକ୍ତ
ତାହାର ଅପରାଧ ସହି ଦୟା ଯେ ଉଚିତ ଅଟଇ
ଯଜ୍ଞ ଫଳଦାତା ଆପଣ ଯଜ୍ଞାଂଶ ଭାଗୀ ଭଗବାନ
କୁଯାଜ୍ଞିକ ଦକ୍ଷ ଯଜ୍ଞରେ ତତେ ଯଜ୍ଞଭାଗ ନ ଦେଲେ

ସେ ଯଜ୍ଞ ହୋଇଅଛି ଧ୍ୱସ୍ତ ଆପଣ ସେହି ଅସମାପ୍ତ
ଯଜ୍ଞକୁ କରନ୍ତୁ ଉଦ୍ଧାର କୃପାକରିଣ ପୁନର୍ବାର
ଦକ୍ଷକୁ ଦିଅନ୍ତୁ ଜୀବନ ଭଗଦେବ ଲଭୁ ନୟନ
ଭୃଗୁଙ୍କ ଶ୍ମଶ୍ରୁ ପୁଷାଦନ୍ତ ପୂର୍ବ ପ୍ରକାର ହେଉ ଜାତ

ଯେ ଦେବ ଋତ୍ୱିକ ଗଣର ଅସ୍ତ୍ର ଶସ୍ତ୍ର ଭଗ୍ନ ଶରୀର
ସେମାନେ ଲଭନ୍ତୁ ଆରୋଗ୍ୟ ସଦୟ ହୁଅ ମହାଭାଗ
ଯଜ୍ଞଶେଷରେ ଯା ରହିବ ତା ସବୁ ତୋଭାଗରେ ଯିବ
ହେ ଶିବ ଯଜ୍ଞ ଆପଣ ଯଜ୍ଞ ଭାଗକରି ଗ୍ରହଣ

ସେ ଯଜ୍ଞ କରନ୍ତୁ ସଂପୂର୍ଣ୍ଣ ଏତିକି ଆମ ନିବେଦନ
ଏ ଭାଗବତ ପୁଣ୍ୟବାଣୀ ଶୁଣି ସଂସାରୁ ତର ପ୍ରାଣୀ

ଇତି ଶ୍ରୀମଦ୍ ଭଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟା ରୁଦ୍ର ସାନ୍ତ୍ୱନଂ ନାମ ଷଷ୍ଠୋଽଧ୍ୟାୟ

********

## ସପ୍ତମ ଅଧ୍ୟାୟ

### ମୈତ୍ରେୟ ଉବାଚ

ବୋଲେ ମୈତ୍ରେୟ ମୁନିବର ଆହେ ମହା ବାହୁ ବିଦୁର
ବିଧାତାଙ୍କର ପ୍ରାର୍ଥନାରେ ଶିବ ତୋଷ ଲଭି କହିଲେ
ଶୁଣ ହେ ବ୍ରହ୍ମା ପ୍ରଜାପତି ସହି ମୁଁ ନପାରେ ଅନୀତି
ବିମୋହିତ ଦେବ ମାୟାରେ ଦକ୍ଷଯେ ଅପରାଧ କଲେ

ବାଳ ପରି ସେ ବିଷୟରେ ମୁଁ ଚିନ୍ତା ମାତ୍ର ନକରେ
କେବଳ ଲୋକ ଶିକ୍ଷାପାଇଁ ଦକ୍ଷକୁ ଦଣ୍ଡି ଅଛି ମୁହିଁ
ସେ ଦକ୍ଷପ୍ରଜାପତିଙ୍କର ଦଗ୍ଧଯେ ହୋଇ ଅଛି ଶିର
ତାଙ୍କ ଶରୀରେ ଛାଗ ଶିର ଲଗାଇ ଦିଅନ୍ତୁ ସତ୍ୱର

ମିତ୍ର ଚକ୍ଷୁରେ ଦେବ ଭଗ ଦେଖନ୍ତୁ ନିଜ ଯଜ୍ଞଭାଗ
ଯଜମାନ ଦନ୍ତେ ପେଷଣ ଅନ୍ନ ପୁଷାକରୁ ଭୋଜନ
ଦେବେ ଲଭନ୍ତୁ ନିଜରୂପ ଯାର ଥିଲା ଯେଉଁ ସ୍ୱରୂପ
ଋତ୍ୱିଜ ଯାଜ୍ଞିକ ବ୍ରାହ୍ମଣ ଯେ ହୋଇଛନ୍ତି ବାହୁହୀନ

ଅଶ୍ୱିନୀ କୁମାର ବାହୁରେ କାର୍ଯ୍ୟକରନ୍ତୁ ମୋବାକ୍ୟରେ
ଯେ ହୋଇଛନ୍ତି ହସ୍ତହୀନ ପୁଷା ହସ୍ତେ କରନ୍ତୁ କର୍ମ
ମୁଖରେ ଭୃଗୁମୁନିଙ୍କର ଛାଗ ଦାଢ଼ି ହେଉ ବାହାର
ଶ୍ରୀଭଗବାନ ଶିବଙ୍କର ଶୁଣି ବଚନ ଏପ୍ରକାର

ସମସ୍ତେ ପ୍ରସନ୍ନ ଚିତ୍ତରେ ସାଧୁ ସାଧୁ ବୋଲି କହିଲେ
ଏଥୁ ଅନ୍ତେ ଦେବତା ଗଣ ଶିବଙ୍କୁ କରି ଆମନ୍ତ୍ରଣ
ଶିବ ଓ ବିଧାତା ସଙ୍ଗରେ ପୁଣି ଯଜ୍ଞ ସ୍ଥଳେ ଗମିଲେ
ଶିବ ଉପଦେଶାନୁସାରେ ଦେବତା ଏ କର୍ମ କରିଲେ

ଛାଗ ଶିର ଦ୍କ୍ଷ ଦେହରେ ତକ୍ଷଣେ ସଂଯୋଜିତ କଲେ
ଦକ୍ଷ ଦେହରେ ଛାଗ ଶିର ଦେଖି କୃପାକଲେ ଶଙ୍କର
ନିଦ୍ରାରୁ ଉଠିବା ପ୍ରକାରେ ଉଠି ନିଜର ସମ୍ମୁଖରେ
ଦୟାଳୁ ଶିବଙ୍କୁ ଦେଖିଲେ ପୂର୍ବକୃତ କର୍ମ ଭୂଲିଲେ

ଶଙ୍କରଙ୍କୁ କରି ଦର୍ଶନ ଶରତ କାଳ ସରସମ
ଦକ୍ଷହୃଦ ନିର୍ମଳ ହେଲା ଶିବ ଦ୍ରୋହ କାଳିମା ଗଲା
ଶିବଙ୍କ ସ୍ତୁତି ଇଚ୍ଛାକଲେ ମୃତ କନ୍ୟାର ସ୍ମରଣରେ
ସ୍ନେହ ଉତ୍କଣ୍ଠାରେ ତାଙ୍କର ନେତ୍ରୁ ବହିଲା ଅଶ୍ରୁଧାର

ତେଣୁ ବଦନରୁ ତାଙ୍କର କଥା ନ ହୋଇଲା ବାହାର
ପ୍ରେମରେ ବିହ୍ୱଳିତ ମତି ସେ ବୁଦ୍ଧିମାନ ପ୍ରଜାପତି
ଦକ୍ଷ ଆବେଗ ହୃଦୟର ନିରୋଧି କୌଣସି ପ୍ରକାର
ପ୍ରେମପୂର୍ଣ୍ଣ ଭକ୍ତି ଭାବରେ ସ୍ତୁତି କରିବାକୁ ଲାଗିଲେ

### ଦକ୍ଷ ଉବାଚ

ବୋଇଲେ ଦକ୍ଷ ପ୍ରଜାପତି ହେ ପ୍ରଭୋ ମୁଁ ଅତି ଦୁର୍ମତି
ଅପରାଧ କଲି ତୋଠାରେ ମାତ୍ର ତୁ ତା ବଦଳରେ
ନ ଦଣ୍ଡିକଲୁ ଅନୁଗ୍ରହ ହେ ସଦାଶିବ ଦୟାମୟ

ଆପଣ ତଥା ଶ୍ରୀ ହରିତ ଆଗ୍ରହୀନ ନାମ ମାତ୍ର
ବିପ୍ରେମଧ ଦୟା କରନ୍ତି ମତେବା ଭୁଲନ୍ତେ କେମିତି
ହେ ବିଭୋ, ବ୍ରହ୍ମା ସ୍ୱରୂପରେ ଆପଣ ସର୍ବ ପ୍ରଥମରେ
ଆମ୍ନାତତ୍ତ୍ୱ ରକ୍ଷା ନିମିତ୍ତ ବୈଦିକ ତପ ଯଜ୍ଞବ୍ରତ

ଧାରଣ କାରୀଯେ ବ୍ରାହ୍ମଣ ନିଜ ମୁଖୁ କଲେ ଜନମ
ପଶୁପାଳ ଦଣ୍ଡ ଧରିଣ ଯଥା ପଶୁ କରେ ପାଳନ
ତଥା ବ୍ରାହ୍ମଣଙ୍କୁ ଆପଣ ସର୍ବଦା କରନ୍ତି ରକ୍ଷଣ
ମୁଁ ତବ ତତ୍ତ୍ୱ ଜାଣେ ନାହିଁ ସଭାଗୃହରେ ସେଥିପାଇଁ

ନାନାଦି କୁବଚନ କହି ତୋ ହୃଦେ ବ୍ୟଥା ଦେଲି ମୁହିଁ
ମାତ୍ର ତୁ ଦୋଷ ନଥରିଲୁ ସର୍ବ ସମକ୍ଷେ କ୍ଷମା ଦେଲୁ
ତତେ କରିବାକୁ ପ୍ରସନ୍ନ ନାହିଁ ମୋ କୌଣସି ଗୁଣ
ସ୍ୱଭାବେ ଉଦାର ଆପଣ ମୋଠାରେ ହୁଅନ୍ତୁ ପ୍ରସନ୍ନ

### ମୈତ୍ରେୟ ଉବାଚ

ଦକ୍ଷ ନିଜର ଦୋଷ ପାଇଁ ଶିବଙ୍କୁ କ୍ଷମା ମାଗିଲେ ଯାଇଁ
ବ୍ରହ୍ମାଙ୍କ କଥା ଅନୁସାରେ ଋତ୍ୱିକ ପ୍ରଭୃତି ସଙ୍ଗରେ
ଯଜ୍ଞ କର୍ମ ଆରମ୍ଭ କଲେ ଋଷି ମୁନିଙ୍କୁ ନିମନ୍ତ୍ରିଲେ
ବ୍ରାହ୍ମଣମାନେ ଭକ୍ତି ଭରେ ଯଜ୍ଞ ସଂପନ୍ନ ଉଦ୍ଦେଶ୍ୟରେ

ଭୂତାଦି ସଂସର୍ଗ ଜନିତ ଦୋଷ ନିବାରଣ ନିମିତ୍ତ
ପ୍ରସ୍ତୁତ କଲେ ପାତ୍ର ତିନି ବିଷ୍ଣୁ ସନ୍ତୋଷ ପାଇ ପୁଣି
ପୁରୋଡାଶ ଚରୁ ରଖିଲେ ଯଜ୍ଞ କର୍ମ ଆରମ୍ଭ କଲେ
ଏହବିକୁ ଧରି ହସ୍ତରେ ଅଧ୍ୱର୍ଯ୍ୟୁଙ୍କର ସହିତରେ

ଦକ୍ଷ ବିଶୁଦ୍ଧ ହୃଦୟରେ ଯେବେଳେ ହରିକୁଧ୍ୟାଇଲେ
ଶ୍ରୀ ଭଗବାନ ସେକାଳରେ ସହସା ପ୍ରକଟ ହୋଇଲେ
ବୃହତ ଏବଂ ରଥନ୍ତର ନାମକ ଦୁଇ ପକ୍ଷ ଯାର
ସେହି ଗରୁଡ଼ ପୃଷ୍ଠରେ ବିଷ୍ଣୁ ପ୍ରବେଶନ୍ତେ ସେଠାରେ

ତେଜ ଦଶ ଦିଗେ ବ୍ୟାପିଲା ସମସ୍ତ କାନ୍ତି ନ୍ୟୁନ ହେଲା
ତମାଳ ଶ୍ୟାମଳ ଶରୀର କଟିରେ ଶୋହେ ପୀତାମ୍ବର
ଶିରେ ମୁକୁଟ ବିରାଜଇ କୋଟି ସୂର୍ଯ୍ୟ ତେଜ ନିନ୍ଦଇ
ମୁଖ ପଦ୍ମ ନୀଳ ଭ୍ରମର ସମଅଳକା ମନୋହର

ମକର କୁଣ୍ଡଳ କର୍ଣ୍ଣରେ ସ୍ୱର୍ଣ୍ଣ ଆଭୂଷଣ ଭୁଜରେ
ଅଷ୍ଟ ଭୁଜେ ଶଙ୍ଖ ଚକ୍ର ବାଣ ଧନୁ ଗଦା ପଦ୍ମ ଶୋଭନ
ଧରିଣ ଏ ସମସ୍ତ ଅସ୍ତ୍ର ପୁଷ୍ପିତ କର୍ଣ୍ଣିକାର ବୃକ୍ଷ
ସମାନ ଶ୍ରୀହରି ଶୋଭିତ ଭକତ ରକ୍ଷଣେ ଉଦ୍ୟତ

ଲକ୍ଷ୍ମୀଦେବୀଙ୍କ ବାସସ୍ଥଳ ବକ୍ଷେ ଶୋଭଇ ବନମାଳ
ସ୍ମିତହାସ କଟାକ୍ଷପାତ ବିଶ୍ୱକୁ କରେ ଆନନ୍ଦିତ
ପାର୍ଷଦମାନେ ଆନନ୍ଦରେ ପ୍ରଭୁଙ୍କ ଉଭୟ ପାର୍ଶ୍ୱରେ
ଶୁଭ୍ରରାଜ ହଂସ ପ୍ରକାରେ ପଙ୍ଖା ଚାମର ବିଞ୍ଚୁଥିଲେ

ଦେବେନ୍ଦ୍ର ବ୍ରହ୍ମା ମହାଦେବ ଦେବତା ରାଜର୍ଷି ଗନ୍ଧର୍ବ
ଦେଖି ପ୍ରଭୁଙ୍କ ଆଗମନ ସହସା କରିଲେ ପ୍ରଣାମ
ତାଙ୍କ ତେଜରେ ଦେବଗଣ ସର୍ବେ ହୋଇଲେ ତେଜ ହୀନ
ସମସ୍ତେ କ୍ଷୁଭିତ ଚିତ୍ତରେ ଅଞ୍ଜଳୀ ଦେଇ ମସ୍ତକରେ

ପ୍ରେମ ଗଦ୍‌ଗଦବାଣୀରେ ସ୍ତୁତି କରି ଠିଆ ହୋଇଲେ
ବ୍ରହ୍ମାଦି ଦେବତା ଗଣର ମହିମା ଅଗୋଚର ଯାର
ତଥାପି ଭକତ ଉପରେ କୃପାକରିବା ଉଦ୍ଦେଶ୍ୟରେ
ଆର୍ବିଭୂତ ଦିବ୍ୟ ରୂପରେ ହରିଙ୍କୁ ଦେଖି ପ୍ରେମଭରେ

ନିଜର ବୁଦ୍ଧି ଅନୁସାରେ ସମସ୍ତେ ସ୍ତୁତି ଆରମ୍ଭିଲେ
ଦକ୍ଷ ଏକ ପୂତ ପାତ୍ରରେ ପୂଜା ସାମଗ୍ରୀ ଧରି କରେ
ନନ୍ଦ ସୁନନ୍ଦାଦି ପାର୍ଷଦ ଗଣରେ ହୋଇ ପରିବୃତ୍ତ
ପରମ ଗରୁ ଯଜ୍ଞେଶ୍ୱର ନିକଟକୁ ଯାଇ ସତ୍ୱର

ଅତି ଆନନ୍ଦିତ ଚିତ୍ତରେ ଭକତି ବିନୀତ ଭାବରେ
ହାତ ଯୋଡ଼ି ପ୍ରାର୍ଥନା କଲେ ଚରଣେ ଶରଣ ପଶିଲେ

## ଦକ୍ଷ ଉବାଚ

ହେ ଭଗବାନ ଆପଣ ବୁଦ୍ଧି ଅବସ୍ଥା ଅତିକ୍ରମ
କରି ସ୍ୱରୂପେ ଅବସ୍ଥାନ ଶୁଦ୍ଧ ଚୈତନ୍ୟ ଭେଦ ଶୂନ୍ୟ
ମାୟାକୁ କରି ଅଭିଭୂତ ସ୍ୱାଧୀନ ଭାବେ ବିରାଜିତ
ଯେବେଳେ ମାୟା ଆଶ୍ରୟରେ ଲୀଳା କରନ୍ତି ସଂସାରରେ
ଅଜ୍ଞାନ ଆପଣଙ୍କଠାରେ ରାଗାଦି କଳ୍ପନା କରେ

## ଋତ୍ୱିକ ଉବାଚ

ଉପାଧିଶୂନ୍ୟ ନାରାୟଣ ନିତ୍ୟ ଅବ୍ୟକ୍ତ ସନାତନ
ଶ୍ରୀଭଗବାନ ରୁଦ୍ରଙ୍କର ପାର୍ଷଦ ଏ ନନ୍ଦୀଶ୍ୱରର
ଅଭିଶାପରେ ବୁଦ୍ଧି ଆମ ହୋଇଛି ବିକୃତ ବିଭ୍ରମ
କର୍ମ କାଣ୍ଡରେ ସଦା ରହି ତୋ ତତ୍ତ୍ୱ ଆମେ ଜାଣୁ ନାହିଁ

ଯେ କର୍ମରେ ଯେ ଦେବତା ବେଦରେ ରହିଛି ବ୍ୟବସ୍ଥା
ହେ ପ୍ରଭୋ ପରମ ଶରଣ ସଂସାର ନାନା କ୍ଲେଶ ପୂର୍ଣ୍ଣ
ପୁଣି ଅତିଶୟ ଦୁର୍ଗମ ଜୀବକୁ ନମିଳେ ବିଶ୍ରାମ
ଦ୍ୱନ୍ଦ ସ୍ୱରୂପ ପରିପୂର୍ଣ୍ଣ ଚାକିଛି କାଳ ଭୁଜଙ୍ଗମ

ଦୁର୍ଜନ ହିଂସ୍ର ଜନ୍ତୁଙ୍କର ଭୟ ରହିଛି ନିରନ୍ତର
ଶୋକ ଦାବାନଳ ଜଳଇ ଜୀବକୁ ଦଗ୍‌ଧ କରଇ
କାମାଗ୍ନି ସର୍ବଦା ପୀଡ଼ଇ ଜୀବ ଅଜ୍ଞାନ ବଶ ହୋଇ
ବିଷୟ ମୃଗ ତୃଷ୍ଣାର ପଛେ ଦଉଡ଼ି ନିରନ୍ତର

ଶରୀର ପରିବାର ଭାର ବୋହି ବୋହି ଅତି କାତର
ଆପଣଙ୍କ ପଦ୍ମ ଚରଣ ତଳରେ ପଶଇ ଶରଣ

## ରୁଦ୍ର ଉବାଚ

ଆହେ ପ୍ରଭୋ ବର ଦାୟକ ଚରଣ ପଦ୍ମ ଆପଣଙ୍କ
ସକାମ ମାନଙ୍କୁ ସମସ୍ତ ପ୍ରଦାନ କରେ ପୁରୁଷାର୍ଥ
କାମନା ହୀନ ମୁନିଗଣ ପୂଜନ୍ତି ମଧ ତୋ ଚରଣ
ମୋ ଚିତ୍ତ ତହିଁ ନିମଜ୍ଜିତ ମୁଁତ ନିର୍ବିକାର ସାକ୍ଷାତ

ସେହି କାରଣୁ ଯଦି କିଏ    ମତେ ଆଉର ଭ୍ରଷ୍ଟ କହେ
ଆପଣଙ୍କ ଅନୁଗ୍ରହରେ    ସେ କଥାକୁ ମୁ ବିଚାରେ

### ବ୍ରହ୍ମୋବାଚ

ପୁରୁଷ ଇନ୍ଦ୍ରିୟ ଦ୍ୱାରରେ    ପୃଥକ ପୃଥକ ଭାବରେ
ଯାହା ଦେଖେଯା ଅନୁଭବଇ    ତାହା ତୋ ସ୍ୱରୂପ ନୁହଁଇ
ଜ୍ଞାନ ଅର୍ଥ ପୁଣି ଇନ୍ଦ୍ରିୟ    ଆପଣ ଅଟନ୍ତି ଆଶ୍ରୟ
ଏମାୟା ପ୍ରପଞ୍ଚରୁ ଭିନ୍ନ    ଇନ୍ଦ୍ରିୟ ଅତୀତ ଆପଣ

### ଇନ୍ଦ୍ର ଉବାଚ

ହେ ଅଚ୍ୟୁତ ଏ ଜଗତ    ତବ ଶରୀରେ ପ୍ରକାଶିତ
ଦେବ ଦ୍ରୋହୀ ନାଶ ନିମିତ୍ତ    ଅଷ୍ଟ ଭୁଜରେ ସୁଶୋଭିତ
ନାନା ଆୟୁଧ କରିଛ ଧାରଣ ରୂପ ମନ ନେତ୍ରାଭିରାମ

### ପତ୍ନୀ ଉବାଚ

ବ୍ରହ୍ମା ଯେ ପୂଜା ଉଦ୍ଦେଶ୍ୟରେ ଏ ଯଜ୍ଞକୁ ଆରମ୍ଭିଥିଲେ
କୋପ ବହି ଦକ୍ଷ ଉପରେ    ଭୂତେଶ ଏହା ନାଶ କଲେ
ଶ୍ମଶାନ ଭୂମିର ସମାନ    ଆମର ଯଜ୍ଞ ବର୍ତ୍ତମାନ
ଆହେ ନୀଳ କମଳ ନେତ୍ର    ଏହାକୁ କରନ୍ତୁ ପବିତ୍ର

### ଋଷୟ ଉବାଚ

ତୋର ଲୀଳା ଅତି ବିଚିତ୍ର    କର୍ମ କରି ମଧ୍ୟ ନିର୍ଲିପ୍ତ
ଲୋକେ ଧନ ଲାଭ ନିମିତ୍ତ    ଯେ ଲକ୍ଷ୍ମୀଙ୍କୁ ପୂଜନ୍ତି ନିତ୍ୟ
ସେହି ଲକ୍ଷ୍ମୀ ତତେ ସେବଇ    ତୋର ଆସକ୍ତି ନାହିଁ ତହିଁ

### ସିଦ୍ଧା ଉବାଚ

ଆହେ ପ୍ରଭୋ ଆମର ଚିତ୍ତ    କ୍ଳେଶ ଦାବାନଳେ ଅତ୍ୟନ୍ତ
ଦଗ୍ଧହୋଇ ହୋଇ ତୃଷିତ    କଥା ସୁଧା ନଦୀ ମଜ୍ଜିତ
ବ୍ରହ୍ମା ନନ୍ଦରେ ବୁଡ଼ିରହି    ଏ ସଂସାର ଚିନ୍ତା ନକରଇ

### ଯଜମାନୀ ଉବାଚ

ଆହେ ପ୍ରଭୋ ସର୍ବ ସମର୍ଥ    ଆପଣଙ୍କ ହେଉ ସ୍ୱାଗତ
ହେ ପରମେଶ୍ୱର ଇଶ୍ୱର    ଘେନନ୍ତୁ ଆମ ନମସ୍କାର
ଆମ ପ୍ରତି ହୁଅ ପ୍ରସନ୍ନ    ହେ ଲକ୍ଷ୍ମୀ ପତି ନାରାୟଣ
ପ୍ରିୟାପତ୍ନୀ ଲକ୍ଷ୍ମୀ ସଙ୍ଗରେ    ରକ୍ଷା କରନ୍ତୁ କାଳେ କାଳେ
ଯଥା କବନ୍ଧ ଶିରହୀନ    କେବେହେଁ ନୁହଁ ଶୋଭନ
ତଥା ସର୍ବାଙ୍ଗେ ପୂର୍ଣ୍ଣ ହୋଇ    ଯଜ୍ଞ ତୋ ବିନା ନଶୋଭଇ

### ଲୋକପାଳାଃ ଉବାଚ

ଅନନ୍ତ ପରମାତ୍ମା ତୁହି    ତୋହର ଆଦି ଅନ୍ତ ନାହିଁ
ଅନ୍ତରେ ସାକ୍ଷୀ ରୂପେ ରହି    ବିଶ୍ୱକୁ ଦେଖୁ ଅଛୁ ତୁହି
ମାୟା ଜନିତ ଆମ ନେତ୍ର    ତତେ ବା ଦେଖିବ କେମନ୍ତ
ତୋର ବିଶୁଦ୍ଧ ସତ୍ତ୍ୱମୂର୍ତ୍ତି    ଶୁଦ୍ଧ ଚିତ୍ତ ସାଧୁ ଦେଖନ୍ତି

ମାୟା ପ୍ରପଞ୍ଚ ଠାରୁ ଭିନ୍ନ    ପ୍ରକୃତ ଅଟନ୍ତି ଆପଣ
ଭୌତିକ ଶରୀର ସହିତ    ତୋ ସମ୍ବନ୍ଧ ମାୟା କଳ୍ପିତ

### ଯୋଗେଶ୍ୱର ଉବାଚ

ଅଖିଳବିଶ୍ୱ ଆତ୍ମା ଆପଣ    ସର୍ବତ ଅଛି ପରିପୂର୍ଣ୍ଣ
ଜୀବାତ୍ମା ଓ ପରମାତ୍ମାରେ    ଯେ ଭେଦଭାବ ନବିଚାରେ
ତହୁ ଅଧିକ ପ୍ରିୟକେହି    ସଂସାର ମଧ୍ୟେ ତୋର ନାହିଁ
ଯେ ବା ଅନନ୍ୟ ଭକତିରେ    ସେବାକରେ ସ୍ୱାମୀ ଭାବରେ

ହେ ଭକ୍ତ ପ୍ରିୟ ଦୟାମୟ    ତା ପ୍ରତି ହେଉ ତୁ ସଦୟ
ମାୟା ଶକ୍ତି ଆଶ୍ରୟେ ତୁହି    ସୃଷ୍ଟି ସ୍ଥିତି ଲୟେ ପାଇଁ
ବ୍ରହ୍ମାଦି ରୂପକୁ ଧରିଣ    ଭେଦ ବୁଦ୍ଧି କରୁ ଜନମ
ସ୍ୱରୂପେ ଅବସ୍ଥାନ କାଳେ    ତ୍ରିଗୁଣ ଠାରୁ ରହୁ ଦୂରେ
ହେ ବିଷ୍ଣୁ ଜଗତ ଇଶ୍ୱର    ଘେନନ୍ତୁ ଆମ ନମସ୍କାର

### ବ୍ରହ୍ମ ଉବାଚ

କହିଲେ ଦେବ ଶବ୍ଦ ବ୍ରହ୍ମ    ହେପ୍ରଭୁ ନିର୍ଗୁଣ ଆପଣ
ଉତ୍ପତ୍ତି ପାଇଁ ଧର୍ମାଦିର    ଶୁଦ୍ଧ ସତ୍ତ୍ୱକର ସ୍ୱୀକାର
ମୋ ସହିତ ବ୍ରହ୍ମା କେହି ପ୍ରଭୃତି ତୋ ତତ୍ତ୍ୱ କେହି ନ ଜାଣନ୍ତି
ହେ ଶୁଦ୍ଧ ସତ୍ତ୍ୱ ପରଂବ୍ରହ୍ମ    ଘେନନ୍ତୁ ଆମର ପ୍ରଣାମ

### ଅଗ୍ନି ଉବାଚ

ତୋ ତେଜେ ହୋଇ ପ୍ରଜ୍ୱଳିତ ମୁଁ ଯଜ୍ଞରେ ଘୃତ ମିଶ୍ରିତ
ହବିକୁ କରଉ ଗ୍ରହଣ ଯଜ୍ଞ ପୁରୁଷତ ଆପଣ
ପୌର୍ଣ୍ଣମାସ ଚତୁର୍ମାସ୍ୟ ପଶୁ ସୋମାଗ୍ନି ହୋତ୍ର ଦର୍ଶ
ଏହି ଯଜ୍ଞ ପଞ୍ଚ ପ୍ରକାର ସ୍ୱରୂପ ଅଟଇ ତୁମର

ଆଶ୍ରା ବର୍ଯ ଅସ୍ତୁ ଶ୍ରୌଷଟ ଯଜେ ଯଜାମହେ ବଷଟ
ଏହି ପଞ୍ଚ ଯଜୁ ମନ୍ତ୍ରରେ ତୁ ପୂଜିତ ହେଉ ଯଜ୍ଞରେ
ଆହେ ଯଜ୍ଞଈଶ ଆପଣ ଘେନନ୍ତୁ ଆମର ପ୍ରଣାମ

### ଦେବ ଉବାଚ

ଆହେ ଦେବ ଆଦି ପୁରୁଷ ହୁଅନ୍ତେ ପୂର୍ବ କଳ୍ପଶେଷ
ବିଶ୍ୱଲୀଳା ଧରି ଉଦରେ ପ୍ରଳୟ ପୟୋଧି ନଳରେ
ଶେଷନାଗ ଶେଯେ ଆପଣ କରିଥିବଲେ ପ୍ରଭୋ ଶୟନ
ଜନ ଲୋକର ସିଦ୍ଧ ସେହି ତୋ ଅଧାତ୍ମା ରୂପ ଚିନ୍ତଇ
ନିଜ ଭକ୍ତର ରକ୍ଷାପାଇଁ ଆଜି ଦେଖା ହେଉଛୁ ତୁହି

### ଗନ୍ଧର୍ବା ଉବାଚ

ବ୍ରହ୍ମା ଶିବ ଋଷି ଦୈବତ ତୋର ଅଂଶରୁ ଅଂଶ ମାତ୍ର
ଆହେ ବିଭୂ ଆପଣଙ୍କର ଏ ବିଶ୍ୱ ଅଟେ ଖେଳ ଘର
ହେ ପ୍ରଭୋ ତୋର ଚରଣ ଆମେ କରୁଅଛୁ ପ୍ରଣାମ

### ବିଦ୍ୟାଧର ଉବାଚ

ଏଜୀବ ନର ଦେହବହି ମାୟାରେ ବିମୋହିତ ହୋଇ
ଦେହକୁ ମୁଁ ମୋର ଭାବଇ ବିଷୟ ଭୋଗରେ ମଜଇ
କିନ୍ତୁ ତୋ କଥାମୃତ ପାନ କରିଲେ ହୁଏ ମୋହଶୂନ

### ବ୍ରହ୍ମଣା ଉବାଚ

ହେ ବିଶ୍ୱପତି ଭଗବାନ ଯଜ୍ଞହିଁ ଅଟନ୍ତି ଆପଣ
ହବି ଅନଳ ଯଜ୍ଞପାତ୍ର ସମିଧ କୁଶ ପୁଣି ମନ୍ତ୍ର
ସଦସ୍ୟ ଋତ୍ୱିକ ଯଜମାନ ତାଙ୍କ ଧର୍ମ ପତ୍ନୀ ଆପଣ

ଦେବତା ସୁଧା ଅଗ୍ନୀହୋତ୍ର ଯଜ୍ଞପଶୁ ସୋମରସ ଘୃତ
ହେ ଦେବମୂର୍ତ୍ତି ଆପଣ ଯଜ୍ଞ ସଙ୍କଳ୍ପ ଯଜ୍ଞନାମ
ଗଜ ପଦ୍ମ ତୋଳିବା ପରି ତୁମେ ଶୂକର ମୂର୍ତ୍ତିଧରି
ପୂର୍ବ କାଳେ ଅନାୟସରେ ଥୋଇ ନିଜ ଦନ୍ତଉପରେ
ରସାତଳ ଗାମୀ ଧରାକୁ ଉଠାଇ ଥିଲ ଉପରକୁ
ଗର୍ଜନ କଲେ ଧୀରେ ଧୀରେ ଋଷିମାନେ ସ୍ତୁତି କରିଲେ

କଲେ ତବ ନାମ କୀର୍ତ୍ତନ ନଷ୍ଟ ହୁଏ ଯଜ୍ଞର ବିଘ୍ନ
ଏ ଯଜ୍ଞରୂପକ ସତ୍ କର୍ମ ନଷ୍ଟ ହୋଇଛି ବର୍ତ୍ତମାନ
ଦେଇପ୍ରଭୋ ବାରେ ଦର୍ଶନ ଆମ ପ୍ରତି ହୁଅ ପ୍ରସନ୍ନ
ଘେନନ୍ତୁ ଆମର ପ୍ରଣାମ ହେ ଅନ୍ତର୍ଯ୍ୟାମୀ ନାରାୟଣ

### ମୈତ୍ରେୟ ଉବାଚ

ହେ ଭଦ୍ର ବିଦୁର ଯେବେଳେ ସମସ୍ତେ ଅନନ୍ୟ ଭକ୍ତିରେ
ଯଜ୍ଞେଶ ହରି ସ୍ତୁତିକଲେ ଚତୁର ଦକ୍ଷ ସେବେଳରେ
ବୀରଭଦ୍ର ଦ୍ୱାରା ବିଧ୍ୱସ୍ତ ଯଜ୍ଞକୁ କରିଲେ ଆରମ୍ଭ

ସମସ୍ତ ଯଜ୍ଞ ଭାଗଭୋକ୍ତା ଶ୍ରୀ ନାରାୟଣ ବିଶ୍ୱାଆତ୍ମା
ନିଜଭାଗରେ ତୃପ୍ତ ହେଲେ ଦକ୍ଷକୁ ସଂବୋଧି କହିଲେ

### ଭଗବାନୋବାଚ

ମୁଁ ବିଶ୍ୱ ପରମକାରଣ ମୁଁ ବିଧାତା ପଞ୍ଚାନନ
ମୁଁ ସର୍ବ ଆତ୍ମା ମହେଶ୍ୱର ମୋହରି ନାହିଁ ପରାପର
ସ୍ୱପ୍ରକାଶ ଉପାଧିଶୂନ୍ୟ ସାକ୍ଷୀ ସ୍ୱରୂପ ନିରଞ୍ଜନ
ତ୍ରିଗୁଣାତ୍ମିକ ମାୟାବଳେ ସୃଷ୍ଟିସ୍ଥିତି ପାଳନ କରେ

ମୁଁ ବିଭିନ୍ନ କର୍ମ ପାଇଁ ବ୍ରହ୍ମା ବିଷ୍ଣୁ ଶିବ ହୁଅଇ
ମୁଁ ଶୁଦ୍ଧ ବ୍ରହ୍ମ ଭେଦଶୂନ୍ୟ ଅଜ୍ଞାନ କରେ ଭେଦଜ୍ଞାନ
ଯଥା ନିଜର ଅଙ୍ଗମାନ ଶରୀରଠାରୁ ନୁହେଁ ଭିନ୍ନ
ତଥା ପ୍ରାଣୀକୁ ଭକ୍ତଗଣ ମୋଠାରୁ ନଭାବନ୍ତି ଅନ୍ୟ
ବ୍ରହ୍ମା ବିଷ୍ଣୁ ଶିବ ଅଭିନ୍ନ ମୁଜୀବ ସ୍ୱରୂପ ସଂପୂର୍ଣ୍ଣ
ଯାହାର ଭେଦ ଜ୍ଞାନ ନାହିଁ ସେପ୍ରାଣୀ ପ୍ରଶାନ୍ତି ଲଭଇ

### ମୈତ୍ରେୟ ଉବାଚ

ଶ୍ରୀହରିଙ୍କର ଆଦେଶରେ ତ୍ରିକପାଳନାମ ଯଜ୍ଞରେ
କଲେ ନାରାଣ ପୂଜନ ଏଯଜ୍ଞ ଅଗ୍ନୀଭୂତ ଅନ୍ୟ

ଦଉ ପ୍ରାକରର ପ୍ରଧାନ ଦେବତାଙ୍କୁ କଲେ ଅର୍ଚ୍ଚନ
ପୁନଷ୍ଟ ଏକାଗ୍ର ଚିତ୍ତରେ ଯଜ୍ଞ ଅବଶେଷ ଭାଗରେ
ଈଶ୍ୱରଙ୍କୁ କଲେ ଅର୍ଚ୍ଚନ ଦକ୍ଷ ହୋଇଣ ସାବଧାନ
ସୋମ ପାୟୀ ଅନ୍ୟ ଦୈବତ ପୂଜି ଯଜ୍ଞ କଲେ ସମାପ୍ତ

ଋତ୍ୱିକ ମାନଙ୍କ ସଙ୍ଗରେ ଅବଭୃଧ ସ୍ନାନ କରିଲେ
ହରି ଆରଧନା ଫଳରେ ସେ ସିଦ୍ଧି ଲଭିଲେ ଯଜ୍ଞରେ
ଆର୍ଶୀବାଦ କରି ଶେଷରେ ଦେବତା ଫେରିଲେ ସ୍ୱର୍ଗରେ
ତେଜି ନିଜ ପୂର୍ବ ଶରୀର ଦକ୍ଷସୁତା ସତୀ ପୁନର୍ବାର

ହିମାଳୟ ପତ୍ନୀ ଗର୍ଭରେ ସେ ଜନ୍ମ ଗ୍ରହଣ କରିଲେ
ପ୍ରଳୟରେ ପ୍ରସୁପ୍ତ ଶକ୍ତି ଯେମନ୍ତ ହରିଙ୍କୁ ଲଭନ୍ତି
ତଥା ଅନନ୍ୟ ପରାୟଣା ଅମ୍ବିକା ହିମାଳୟା କନ୍ୟା
ଶ୍ରୀ ଶଙ୍କରଙ୍କୁ ଏ ଜନ୍ମରେ ଶକ୍ତି ସ୍ୱରୂପରେ ବରିଲେ

ଶିବଙ୍କ ଏ ପୁତ ଚରିତ ବୃହସ୍ପତି ଶିଷ୍ୟ ଧୀମନ୍ତ
ମୁ ଉଦ୍ଧବ ଠାରୁ ଶିଣିଥିଲି ତୋ ଆଗେ ସମସ୍ତ କହିଲି
ଶିବଙ୍କର ଚରିତ ଏହି ଆୟୁ ଯଶ ବୃଦ୍ଧି କରଇ
ଯେ ନିତ୍ୟ ଭକତି ଭାବରେ ଶୁଣେ ବା କୀର୍ତ୍ତନ କରେ
ତାହାର ପାପ ଯାଏ ନାଶ ସେ ଶିବଲୋକେ କରେ ବାସ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଦକ୍ଷ ଯଜ୍ଞ ସମାପନଂ ନାମ ସପ୍ତମୋଽଧ୍ୟାୟ ।

******

## ଅଷ୍ଟମ ଅଧ୍ୟାୟ

### ରାଗ କଳସୀ

ଜୟଜୟ ରାମ ଚନ୍ଦ୍ର ପତିତ ପାବନ
ନୀଳ ଇନ୍ଦୀବର ଶ୍ୟାମ ନୟନାଭିରାମ
ମାୟା ଶକ୍ତିରେ ଏକୁ ଅନେକ ରୂପବହି
ଯୁଗେ ଯୁଗେ ଅବତରୁ ଜନ୍ମୁ ଧର୍ମ ରକ୍ଷାପାଇଁ

କାର୍ଯ୍ୟ କାରଣ କରଣ ଫଳଦାତା ତୁହି
ସଗୁଣ ନିର୍ଗୁଣ ତୋର ଆଦି ଅନ୍ତ ନାହିଁ
ସର୍ବରୂପ ସର୍ବବ୍ୟାପି ତୁତ ସର୍ବନାମ
ସର୍ବେଶ୍ୱର ଅନ୍ତର୍ଯ୍ୟାମୀ କାରଣ କରଣ

ରକାର ଆକାର ମକାର ତିନି ବର୍ଣ୍ଣ
ମିଶ୍ରଣେ ଗଠିତ ପ୍ରଭୋ ତୋରରାମ ନାମ
ଭକ୍ତର ଅନଳ ବୀଜ ପାପତାପକୁ ଦହଇ
ସର୍ବାନ୍ତ କରଣସୁଖ ପବିତ୍ର କରଇ

ଆକାର ଆଦିଅ ଅଜ୍ଞାନତା ସମ ନାଶଇ
ସର୍ବବେଦ ଶାସ୍ତ୍ର ଜ୍ଞାନ ପ୍ରକାଶ କରଇ
ମକର ଅଟେ ଚନ୍ଦ୍ରମା ସାମୀ ପ୍ରଶାନ୍ତି ଜ୍ୟୋସ୍ନାରେ
ହୃଦୟ ଶୀତଳ କରେ ଦିବ୍ୟ ଆନନ୍ଦରେ

ର ଜୀବ ଆ ମାୟା ଜାଣ ମ ପରମବ୍ରହ୍ମ ଗୁଣ
ଲକ୍ଷ୍ମଣରାମ ମଧରେ ବୈଦେହୀ ଶୋଭନ
ଜପିତୋର ପୁତ ନାମ ଦସ୍ୟୁରତ୍ନାକର
ତୋ ଦୟାରେ ହେଲା ବାଲ୍ମିକୀ ଋଷିବର

ସାତ କାଣ୍ଡ ରାମାୟଣ ପୁରାଣ ରଚିଲା ପତିତ
ପାବନ ବାନା ବିଶ୍ୱରେ ରହିଲା
ସିଦ୍ଧି ଲାଭ କରି ରାମ ତାରକ ମନ୍ତ୍ରରେ
ଉପଇନ୍ଦ୍ର ଭକ୍ତ କବି ସମ୍ରାଟ ହୋଇଲେ

ଆହେ କରୁଣାକର ଦୀନେ କରୁଣା କର ହେ
ଅକର୍ମ ଦାନୀ ମୁ ଚରଣ କିଙ୍କର
ଅନାଥରେ ଦୀନ ବନ୍ଧୁ ଥରେ ମାତ୍ର ଅନା
ଅନାମ ରୂପ ହେ କୃପା କୃପଣ ହୁଅନା

ଲିଖନେ ଧ୍ରୁବ ଚରିତ ବଳାଇଛି ମନ
ବାରେ ଦୟାକର ପ୍ରଭୋ ରାଜିବ ଲୋଚନ
ଚତୁର୍ଦ୍ଦଶାକ୍ଷରୀ କଳସା ରାଗ ବରଚିତ
ଦବ୍ୟାନନ୍ଦରେ ମୋହିତ ଶ୍ରୋତା ଭକ୍ତଚିତ୍ତ

ଦିବ୍ୟ ଅମୃତ ବଚନ ମଧୁର ଚରିତ
କହିବି ସଦୟ ହୁଅ ବାରେ ରଘୁନାଥ
ଶ୍ରୀ ମୈତ୍ରେୟ ମୁନି ସରସ୍ୱତୀ ନଦୀତୀରେ
ଯାହା କହିଲେ ଭକ୍ତ ବିଦୁର ଆଗରେ

ସେ ପୁଣ୍ୟ ଭାଗବତ ଅପୂର୍ବ ଆଖ୍ୟାନ
ଶ୍ରବଣ ପଠନେ ହରେ ପାପ ତାପ ମାନ
ଅଧର୍ମର ବଂଶାବଳୀ ଠାରୁ ଆରମ୍ଭିଣ
ସଂପୂର୍ଣ୍ଣ ଧ୍ରୁବଚରିତ କରବି ବର୍ଣ୍ଣନ

ଦେବର୍ଷି ନାରଦ ଋଭୁ ଅରୁଣି ଓ ଯତି ସନକ
ସନନ୍ଦ ସନତ କୁମାର ପ୍ରଭୃତି
ବ୍ରହ୍ମାଙ୍କର ପୁତ୍ର ମାନେ ବ୍ରହ୍ମଚରୀ ଥିଲେ
ଗୃହସ୍ଥାଶ୍ରମ ନକରି ବୈରାଗି ହୋଇଲେ

ବ୍ରହ୍ମାଙ୍କର ପୁତ୍ର ମଧ୍ୟ ଅଧର୍ମ ଅଟଇ
ମୃଷା ଅଟଇ ତାହାଙ୍କର ଭାର୍ଯ୍ୟାନାମ
ତାଙ୍କ 'ଦମ୍ଭ' ନାମ ପୁତ୍ର କନ୍ୟାମାୟା ନାମ
ନୈରତିଙ୍କର ନଥିଲା କୌଣସି ସନ୍ତାନ

ସେ ଦମ୍ଭ ମାୟାକୁ ପୋଷ୍ୟରୂପେ ଘେନି ଗଲେ
ଗୃହେ ରଖି ଅତି ସ୍ନେହେ ପାଳନ କରିଲେ
ଦମ୍ଭ ମାୟାଠାରୁ ଲୋଭ ଶଠତା ସମ୍ଭୂତ
ଶୁଣନ୍ତୁ ସୁଜନେ ଏହି ଅପୂର୍ଣ୍ଣ ଚରିତ

ସେ ଦୁଇର କଳି ତା ଭଗିନୀ ଦୁରୁକ୍ତି
କଳି ଦୁରୁକ୍ତିରୁ ଭୀତି ମୃତ୍ୟୁର ଉତ୍ପତ୍ତି
ଏହି ଦୁଇ ସଂଯୋଗୁ ଯାତନା ନରକ ଜନ୍ମିଲେ
ଏହି ଦୁଇ ଯାଆଁଳା ସନ୍ତାନ ଯେ ଥିଲେ

ଏ ଅଧର୍ମ ବଂଶ ବିବରଣ ଏ ସମସ୍ତ
ଆହେ ସାଧବ ବିଦୁର ହୋଇଲା ସମାପ୍ତ
ଅଧର୍ମର ତ୍ୟାଗରେ ନାମ ଅଟେ ପୁଣ୍ୟ ଜାଣ
ଏ ବିଷୟ ତିନିଥର କରିଲେ ଶ୍ରବଣ

ଦୂର ହୁଅଇ ସଂପୂର୍ଣ୍ଣ ଚିତ୍ତର ମାଳିନ୍ୟ
ଜୟରାମ ଜୟରାମ ବୋଲ ସର୍ବ ଜନ
ହେ କୁରୁ ନନ୍ଦନ ଶ୍ରୀବିଷ୍ଣୁଙ୍କ ଅଂଶରେ
ବେଦବର ବିଧାତା ଜନମିଲେ ତହୁଁ

ବ୍ରହ୍ମାଙ୍କ ଅଂଶେ ପବିତ୍ର କିର୍ତ୍ତୀ ମହୀପତି ସ୍ୱାୟମ୍ଭୁବ
ମନୁ ନାମେ ହୋଇଲେ ଉତ୍ପତ୍ତି
ଶତରୂପା ସ୍ୱାୟମ୍ଭୁବ ମନୁ ସଂଯୋଗରେ
ପ୍ରିୟବ୍ରତ ଉତ୍ତାନ ପାଦ ଜନମିଲେ

ବାସୁଦେବ କଳାଜାତ ଏହି ଦୁଇ ପୁତ୍ର
ସଂସାର ରକ୍ଷାକର୍ମରେ ହୋଇଲେ ପ୍ରବୃତ୍ତ
ଉତ୍ତାନ ପାଦଙ୍କର ସୁରୁଚି ସୁନୀତି
ନାମେ ଥିଲେ ଦୁଇ ପତ୍ନୀ ସୁଶ୍ରୀ ରୂପବତୀ

ସୁରୁଚି ଯେ ରଜାଙ୍କର ପ୍ରିୟ ଅତି
ବସ୍ତ୍ର ଆଭୂଷଣେ ରାଜା ତା ଚିତ୍ତ ତୋଷନ୍ତି
ମାତ୍ର ସୁନୀଳ ଓ ତାହା ପୁତ୍ର ଧ୍ରୁବଠାରେ
କରିଥାନ୍ତୁ ଅନାଦର ସୁରୁଚି ବଶରେ

ଦିନେକ ସେ ଉତ୍ତାନ ପାଦ ନରସାଇଁ ସୁରୁଚି
ପୁତ୍ର ଉତ୍ତମକୁ କୋଳରେ ବସାଇ
ଗେହ୍ଲା କରୁଥିବା ବେଳେ ଧ୍ରୁବ ପ୍ରବେଶିଲା
ପିତା କୋଳେ ବସିବାକୁ ହସ୍ତ ପ୍ରସାରିଲଣ

ମାତ୍ର ରାଜା ସେ ଧ୍ରୁବକୁ ଅନାଦର କଲେ
ତାହାକୁ ଆଡ ଆଖିରେ ମଧ୍ୟ ନ ଚାହିଁଲେ
ଏ ସମୟେ ସୁରୁଚି ସେଠାରେ ପ୍ରବେଶିଲା
ଧ୍ରୁବକୁ ଦେଖି କ୍ରୋଧ ଚିତ୍ତରେ କହିଲା

ରେ ଦୁର୍ଭାଗା ପୁତ୍ର ତୋର ମୁଖେ ଲାଜ ନାହିଁ
ରାଜ ସିଂହାସନ ବସିବା ଯୋଗ୍ୟ ନୋହୁ ତୁହିଁ
ତ୍ରିଭୁବନେ ପୂଜିତ ଏ ରାଜ ସିଂହାସନ ଦେଖ
ପୂର୍ବ ତପଫଳ ମୋତ ପୁତ୍ର ଉତ୍ତମ

ନୃପତି ଔରସେ ଜନ୍ମ ମୋ ଗର୍ଭରେ
ଏକମାତ୍ର ସୁଯୋଗ୍ୟ ସେ ଏ ସିଂହାସନରେ
ତୁ ଇତର ନାରୀ ଠାରୁ ଲଭିଛୁ ଜନମ
ରାଜପୁତ୍ର ହେବା ତୋର ଅଟେ ଅକାରଣ

ଯେ କୃଚ୍ଛ ତପୋବଳ ବିଷ୍ଣୁଙ୍କୁ ତୋଷଇ
ସେ କେବଳ ଇହ ଲୋକେ ନର ଦେଇ ପାଇ
କାଖ ହୋଇ ନାହୁଁ କେବେ ମୋର ଏ କାଖରେ
ଖେଳା ଲୀଳା କରିନାହୁଁ ମୋର ଏ କୋଳରେ

ଯଦି ଏ ଦୁର୍ଲ୍ଲଭ ବସ୍ତୁପାଇଁ ଇଚ୍ଛା ତୋର ତେବେ
ଯାଇ ଅରଣ୍ୟକୁ ତପସ୍ୟାକୁ କର
ପୁରୁଷୋତ୍ତମ ହରିଙ୍କୁ କଲେ ଆରାଧନା ତାଙ୍କ
କୃପାରେ ଗର୍ଭେ ମୋର ଜନମିବୁ ସିନା ।

ରାଜା ସଭା ମଧ୍ୟେ ଶୁଣି ବିମାତା ବଚନ ଶୋକ
ଚିତ୍ତେ ଧ୍ରୁବ ଯେ ହୋଇଲା ମଉନ
ଅପମାନେ ତା ହୃଦୟ କଂପିତ ହୋଇଲା
ଭୂମିକୁ ଅନାଇ ତହୁଁ ଅଧୋମୁଖ ହେଲା

ସୁରୁଚିର ଗର୍ବବାଣୀ ସଭା ମଧ୍ୟେ ଶୁଣି
ଉଚିତ ଅନୁଚିତ କିଛି ନକହିଲେ ନରମଣି
ସୁରୁଚି ରୂପ ଯୌବନ ନୃପ ବଶ ହୋଇ ପଦେ
ମାତ୍ର କଥାସିଏ ନ ପାରିଲେ କହି

ଲାଠିମାଡ଼େ ଆହାତ ଭୁଜଂଗମ ସମ ଶୁଣି
ଧ୍ରୁବ ବିମାତାଙ୍କ ଏ କଟୁ ବଚନ
କ୍ରୋଧ ବଶେ ଘନ ଘନ ତେଜି ଦୀର୍ଘ ଶ୍ୱାସ
ଧ୍ରୁବକାନ୍ଦି ପ୍ରବେଶିଲା ନିଜ ମାତା ପାଶ

ସୁନୀତି ଦେଖିଲେ ପୁତ୍ର ଓଠ ଥରୁଅଛି
କ୍ରୋଧେ ଘନ ଘନ ସିଏ ନିଶ୍ୱାସ ଛାଡୁଛି
ପୁତ୍ରକୁ କୋଳେ ବସାଇ ସାନ୍ତ୍ୱନା ସେ ଦେଲେ
ଅନ୍ୟାନ୍ୟ ଲୋକଙ୍କଠାରୁ ସମସ୍ତ ଶୁଣିଲେ

ହୃଦୟରେ ଜନମିଲା ତାଙ୍କ ଗୁରୁ ବ୍ୟଥା
ମୁଖୁ ମଧ ନସ୍ଫୁରିଲା ଏକ ପଦ କଥା
ଦାବାନଳେ ଯଥା ବନଲତା ଯାଏ ଜଳି ହୃଦୟ
ଜଳିଲା ସଉତଣୀ କଥା ଭାଳି

ପଦ୍ମ ସମାନ ନୟନେ ଅଶ୍ରୁ ଗଲା ଭରି କାନ୍ଦି
କାହିଁ କାହିଁ ଧୈର୍ଯ୍ୟ ନପାରିଲେ ଧରି ।
ଦୁଃଖ ସାଗରର ଶେଷ ଭାବିନପାରିଲେ
ଶୋକେ ଦୀର୍ଘ ଶ୍ୱାସ ତେଜି ଧ୍ରୁବକୁ କହିଲେ

ଯେଉଁ ଜନ ସଦାପର ଅନିଷ୍ଟ ଚିନ୍ତଇ
ତାର ଅମଙ୍ଗଳ ଚିନ୍ତନ୍ତୁ ପ୍ରଭୁ ରଘୁସାଇଁ
ଆରେ ବତ୍ସ ସତ୍ୟ ଅଟେ ସୁରୁଚି ବଚନ ମୋ
ସମାନ ଅଭାଗିନୀ ଗର୍ଭୁ ତୋର ଜନ୍ମ

ତୁତ ବଢ଼ିଅଛୁ ସଦା ମୋର ସନ୍ତପିଇ
କେବଳ ରଖିବେ ତୋତେ ପ୍ରଭୁ ବିଶ୍ୱସାଇଁ ।
ଆରେ ବାପ ସତ୍ୟ ଅଟେ ସୁରୁଚି ବଚନ
ଦ୍ୱେଷ ତେଜି ତା ବଚନ କରତୁ ପାଳନ

ରାଜସିଂହାସନେ ବସିବାକୁ ଇଚ୍ଛା
ତୋର ତେବେ ଅଧୋକ୍ଷଜ ଶ୍ରୀହରିଙ୍କୁ ପୂଜା କର
ଜଗତ ପାଳନ ପାଇଁ ସେ ଶ୍ରୀହରି ସମସ୍ତ
ସଦ୍‌ଗୁଣ ସଦାଚାର ସୁରୂପ ବିଦୂଷିତ

ତାଙ୍କ ପାଦ ପଦ୍ମ ସଦା ଭକ୍ତରେ ପୂଜିଣ
ପିତା ମହ ବ୍ରହ୍ମା ଲଭିଛନ୍ତି ଶ୍ରେଷ୍ଠାସନ
ମୁନି ମାନେ ମନ ପ୍ରାଣ କରିଣ
ସଂଯମ ଶ୍ରୀହରିଙ୍କ ପାଦ ପଦ୍ମ କରନ୍ତୁ ସେବନ

ସ୍ୱୟମ୍ଭୁ ମନୁ ମଧ ବହୁ ଯଜ୍ଞ କରି
ଶ୍ରୀ ହରିଙ୍କ ପାଦପଦ୍ମେ ଥିଲେ ପୂଜା କରି
ଯଜ୍ଞ ମାନଙ୍କରେ ବହୁ ଦକ୍ଷିଣା ପ୍ରଦାନ ଏକ
ଚିତ୍ତେ ଶ୍ରୀହରିଙ୍କୁ କରନ୍ତେ ଅର୍ଚ୍ଚନ

ପାର୍ଥିବ ଓ ମୋକ୍ଷ ସୁଖ କରିଥିଲେ ଲାଭ ଅନ୍ୟ
ବ୍ୟକ୍ତିର ପକ୍ଷରେ ଯାହା ଅସମ୍ଭବ
ରେ ପୁତ୍ର ତୁ ଭକ୍ତପ୍ରିୟ ହରି ଆଶ୍ରାକର
ଜନ୍ମ ମରଣ ଚକ୍ରରୁ ହୋଇବୁ ଉଦ୍ଧାର

ନିଜ ହୃଦ ପଦ୍ମରେ ତୁ ହରିଙ୍କୁ ବସାଇ
ତୁ ସର୍ବଦା ପୂଜା କର ଏକ ଚିତ୍ତ ହୋଇ
ଶ୍ରୀ ହରି ଭଜନ ତୋର ଏକମାତ୍ର ଧର୍ମ ଭାବି
ତାଙ୍କୁ ପୂଜାକର ତେଜି ସର୍ବ କର୍ମ

ବ୍ରହ୍ମାଦି ଦେବତା ଯେଉଁ ମହାଲକ୍ଷ୍ମୀଙ୍କର
ସନ୍ତୋଷ ନିମିତ୍ତ ସଦା ହୁଅନ୍ତି ତତ୍ପର
ପଦ୍ମ ପୁଷ୍ପ ହସ୍ତେ ଧରି ସେହି ଲକ୍ଷ୍ମୀ ପୁନ
ଭକ୍ତିରେ ସେ ଶ୍ରୀ ହରିଙ୍କୁ କରନ୍ତି ବନ୍ଦନ

କମଳ ଲୋଚନ ସେହି ଶ୍ରୀହରି କେବଳ
ତୋର ଦୁଃଖ ସବୁ ନିଶ୍ଚେ କରିଦେବେ ଦୂର

### ମୈତ୍ରେୟ ଉବାଚ

ଧ୍ରୁବ ମାତାଙ୍କ ବଚନ ଶୁଣଣି ଏହିପରି
ଏହାହିଁ ଯଥାର୍ଥ ପଥ ହୃଦରେ ବିଚାରି
ପିତାଙ୍କ ନଗର ମଧ୍ୟୁଁ ହୋଇଲେ ବାହାର
ଦେବର୍ଷି ନାରଦ ଶୁଣି ଏହି ସମାଚାର

ଧ୍ରୁବର ମନୋ ଭାବନା ସେଜାଣି ପାରିଲେ
ସତ୍ୱର ସେଠାରେ ଆସି ପ୍ରବେଶ ହୋଇଲେ
ନିଜ ବିଶୁଦ୍ଧ ହସ୍ତକୁ ଦେଇ ତାର ଶିରେ
ବିସ୍ମୟରେ ନିଜ ହୃଦେ ବିଚାର କରିଲେ

କ୍ଷତ୍ରିୟର ତେଜ କେଡ଼େ ଅଦ୍ଭୁତ ଅଟଇ
ଏମାନେ ସମ୍ମାନ ହାନି ନ ପାରନ୍ତି ସହି
ଦେଖ ଛୋଟ ପିଲାଟି ବିମାତା କଟୁ କଥା
ମନେ ମନେ ଭାବି ପାଉଅଛି ଅତି ବ୍ୟଥା

ନାରଦ କହିଲେ ତୁତ ପିଲା ବର୍ତ୍ତମାନ
ଖେଳ କଉତୁକ ତୋର ଅଟେ ପ୍ରୟୋଜନ
ଏ ବୟସେ ତୋର ମାନ ଅପମାନ ନାହିଁ
ରେ ବତ୍ସ ବିମାତା ବାକ୍ୟେ କିମ୍ପା ହେଉ ବାଇ

ଅସନ୍ତୋଷର କରଣ କରଣ ଯେ ମୋହ ଅଟଇ
ସଂସାରେ ମନୁଷ୍ୟ କର୍ମବଳେ ସବୁ ପାଇ
ଆହେ ତାତ୍ କୃପା ନକରିଲେ ଭଗବାନ
ସଫଳ ହୁଅଇ ନାହିଁ କୌଣସି ଉଦ୍ୟମ

ଦୈବ ବଶେ ଏ ସଂସାରେ ସମସ୍ତ ଅଟଇ
ଏହା ବୁଝି ବୁଦ୍ଧିମାନ ସନ୍ତୋଷ ଲଭଇ
ମାତା ଉପଦେଶେ କରି ତୁ ଯୋଗ ସାଧନ
ଯାର କୃପା ଲାଭ ପାଇଁ ବଳାଇଛୁ ମନ

ସେ ହରିଙ୍କ ଆରଧନା ସହଜ ନୁହଁଇ
ବୋଲି ଏହା ମୋର ସ୍ଥିର ମତଯେ ଅଟଇ
ମୁନିଏ କଠୋର ଯୋଗ ସମାଧିରେ ରହି
ଜନ୍ମଜନ୍ମାର ଯାକୁ ଖୋଜି ପାନ୍ତି ନାହିଁ

ତେଣୁ ବର୍ତ୍ତମାନ ହଠତା ପରିତ୍ୟାଗ କରି
ମୋ ବଚନେ ନିଜ ପୁରେ ଯାଆ ବେଗେ ଫେରି
ପରମାର୍ଥ ସାଧନର ସମୟ ଆସିଲେ
ତୁ ପ୍ରଯତ୍ନ କରିବୁ ଜାଣି ଥାଅ ଭଲେ

ଯେ ସୁଖ ଦୁଃଖ ଆସଇ ଧାତା ବିଧାନରେ
ଚିତ୍ତ ତୋଷିବା ଉଚିତ ଅଟଇ ସେଥିରେ
ଏହା ଦ୍ୱାରା ପୁରୁଷ ମୋହ ଯେ ମାୟାର
ଏହି ସଂସାରକୁ ସିନା ହୋଇ ଯାଏ ପାର

ଗୁଣାଧିକ ବ୍ୟକ୍ତି ଦେଖି ଆନନ୍ଦିତ ହେବ
ଗୁଣ ନ୍ୟୂନ ବ୍ୟକ୍ତି ଠାରେ ସଦୟ ହୋଇବ
ସମଗୁଣ ସହିତ ମିତ୍ରତା କରିବ
ଏହା କଲେ ଦୁଃଖ କେବେ ସ୍ପର୍ଶ କରିବ

### ଧ୍ରୁବ ଉବାଚ

ସୁଖ ଦୁଃଖ ବିଚଳିତ ଚିତ୍ତ ଶାନ୍ତି ପାଇଁ
ଆପଣ ସହଜ ପଥ ଦେଲେ କ ବତାଇ
ଅଜ୍ଞାନ ବାଳକ ମୁହିଁ ବୁଝିପାରୁ ନାହିଁ
କ୍ଷତ୍ରିୟ ସ୍ୱଭାବ ହେତୁ ମୋ ବିନୟ ନାହିଁ

ସୁରୁଚି ବାକ୍ୟ ବାଣ ମୋ ହୃଦ ବିଦାରଇ
ଆପଣଙ୍କ ଉପଦେଶ ଚିତ୍ତେ ନପଶଇ
ତ୍ରିଲୋକରେ ଯେଉଁ ପଦ ଶ୍ରେଷ୍ଠ ଯେ ଅଟଇ
ପୂର୍ବ ପୁରୁଷେ ଯାହା ନ ଲଭିଛନ୍ତି କେହି

ହେ ମୁନେ ମୋ ଇଚ୍ଛା ସେହି ପଦ ପ୍ରାପ୍ତିପାଇଁ
ଆପଣ ଉତ୍ତମ ମାର୍ଗ ଦିଅନ୍ତୁ ବତାଇ
ବ୍ରହ୍ମା ସୁତ ତୁମେ ବିଶ୍ୱକଲ୍ୟାଣର ପାଇଁ
ସୂର୍ଯ୍ୟ ପରି ଭ୍ରମ ତୁମେ ବୀଣା ଯନ୍ତ୍ର ବାଇକ

ଧ୍ରୁବ ଅନୁରୋଧେ ନାରଦ ପ୍ରସନ୍ନ ହୋଇଲେ
କୃପାକରି ତାକୁ ସତ୍ ଉପଦେଶ ଦେଲେ
ମାତା ସୁନୀତି ଦେବୀ କହିଛନ୍ତି ଯାହା
ତୋ ପକ୍ଷେ କଲ୍ୟାଣ ମାର୍ଗ ନିଶ୍ଚେ ଅଟେ ତାହା

ତୁ ଏକାଗ୍ର ଚିତ୍ତେ ବାସୁଦେବଙ୍କ ଚରଣ ଆରେ
ବତ୍ସକର ନିରନ୍ତର କରତୁ ଭଜନ
ଧର୍ମ ଅର୍ଥ କାମ ମୁକତିର ଲାଭ ପାଇଁ
ଶ୍ରୀହରି ଚରଣ ସେବା ଉଚିତ ଅଟଇ

ଯମୁନା ତୀରରେ ଥିବା ପରମ ପାବନ
ମଧୁବନ କ୍ଷେତ୍ରକୁ ତୁ ଯାଆ ବର୍ତ୍ତମାନ
ତାହା ବାସୁଦେବଙ୍କର ନିତ୍ୟ ବାସ ସ୍ଥାନ
କାଳିନ୍ଦୀରେ ଦିନକୁ କରି ତିନିଥର ସ୍ନାନ

ନିତ୍ୟ କର୍ମ ଶେଷ କରି ବିଧି ଅନୁସାରେ
ପୁତ ଆସନ ପକାଇ ବସିବୁ ତୁ ସ୍ଥିରେ
ପ୍ରାଣାୟମେ କରି ମନ ଇନ୍ଦ୍ରିୟ ଶୋଧନସ୍ଥିର
ଚିତ୍ତେ କର ବତ୍ସ ଶ୍ରୀହରିଙ୍କୁ ଧ୍ୟାନ

ସେହି କେବଳ ଏକମାତ୍ର ପରମ ଗୁରୁ
ସର୍ବ ଇଷ୍ଟ ଫଳ ଦାତା କାମ କଳ୍ପତରୁ
ନୟନ ମୁଖ ମଣ୍ଡଳ ସର୍ବଦା ପ୍ରସନ୍ନ
ଉଦ୍ୟତ ଭକ୍ତରେ ବର କରିବାକୁ ଦାନ

ନାସା କପାଳ ଭୃଲତା ଅତି ମନୋରମ
ଦେବତା ମାନଙ୍କ ମଧ୍ୟେ ଅଟନ୍ତି ଉତ୍ତମ
ସଦା ନବଯୁବା ଓଷ୍ଠ ନୟନ ଅରୁଣ
ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ଅତିମନୋରମ

ଶରଣାଗତ ବତ୍ସଳ କରୁଣା ସାଗର
ସେ ଶରଦ ହରି ସୁଖ ଦିଅନ୍ତି ଅପାର
ସଜଳ ମେଘ ସମାନ ଶ୍ୟାମ ବର୍ଣ୍ଣ
ଶୋଭା ପାଏ ବକ୍ଷ ସ୍ଥଳେ ଶ୍ରୀବତ୍ସର ଚିହ୍ନ

ବନମାଳ ଚତୁର୍ଭୁଜେ ଶଙ୍ଖ ଚକ୍ର ଗଦା
ପଦ୍ମ ସୁଶୋଭିତ ତାର କି ଉପମା ଦେବା
କିରୀଟ କୁଣ୍ଡଳ ଯେବେ ୟୁର କଙ୍କଣ
ଆଭରଣେ ଅଙ୍ଗ ପ୍ରତ୍ୟଙ୍ଗ ଶୋଭମାନ

ପୀତ କୌଶେୟ ବସନ ପ୍ରଶାନ୍ତ ଦର୍ଶନ
ତାଙ୍କ ସ୍ୱରୂପ ମନ ନୟନ ଅଭିରାମ
କଟୀପ୍ରଦେଶରେ ସୁବର୍ଣ୍ଣ କାଞ୍ଚି ଯେ ଶୋଭଇ
ଦରଶନ ମାତ୍ରେ ଜଗତ ଜନକୁ ମୋହଇ

ଯେ କରନ୍ତି ପ୍ରଭୁଙ୍କର ମାନସ ପୂଜନ ହୃଦ
ପଦ୍ମ କର୍ଣ୍ଣିକାରେ ରହି ଭଗବାନ
ନିଜର ନଖମଣି ମଣ୍ଡିତ ମନୋହର
ପଦାର ବିନ୍ଦ ସ୍ଥାପିତ କରନ୍ତି ବିହାର

ଧାରଣାରେ ଚିତ୍ତ ଧୀର ଏକାଗ୍ରତା ହୋଇଲେ
ଦରଦ ପ୍ରଭୁଙ୍କୁ ଧାୟିବୁ ତୁ ଏକପ୍ରକାରେ
ସତେ ଯେପରି ସେ ପ୍ରେମ ଦୃଷ୍ଟିରେ ଅନାଇ
ମନ୍ଦ ମନ୍ଦ ହସୁଛନ୍ତି ତୋ ଆଡ଼କୁ ଚାହିଁ

ସେ ମଙ୍ଗଳମୟୀ ମୂର୍ତ୍ତି କଲେ ସଦା ଧ୍ୟାନ
ବିଷୟ ନିବୃତ୍ତମନ ହେବ ତହିଁ ଲୀନ
ଆଉ କେବେ ସଂସାରକୁ ନ ଆସିବ ଫେରି
ତୁ ନିଶ୍ଚୟ ଭବ ସିନ୍ଧୁ ହୋଇଯିବୁ ପାରି

ଆରେ ବସ୍ତ ଏହିପରି ଧ୍ୟାନର ସହିତ
ଓଁ ନମୋ ଭଗବତେ ବାସୁଦେବାୟ ମନ୍ତ
ଯେଉଁ ମନୁଷ୍ୟ ସପତ ରାତି ଯେ ଜପଇ
ସେ ନିଶ୍ଚେ ଆକାଶ ଋରୀ ସିଦ୍ଧଙ୍କୁ ଦେଖଇ

ବିଜ୍ଞ ବ୍ୟକ୍ତି ଦେଶ କାଳ ଭେଦେ ଉପଯୁକ୍ତ
ପଦାର୍ଥ ସଂଗ୍ରହ କରି ଜପିଲେ ଏହି ମନ୍ତ
ଭଗବାନ ହରିଙ୍କର ଦ୍ରବ୍ୟ ମୟୀ ମୂର୍ତ୍ତି
ପୂଜାକଲେ ଏକଚିତ୍ତେ ମିଳଇ ପ୍ରଶାନ୍ତି

ଶୁଦ୍ଧ ଜଳ ପୁଷ୍ପମାଳ ବନ୍ୟ ଫଳ ମୂଳ
ଦୁର୍ବାଙ୍କୁର ଉପଯୁକ୍ତ ଆରଣ୍ୟ ବଲ୍‌କଳ
ତାଙ୍କ ପ୍ରିୟ ତୁଳସୀରେ ପୂଜିବା ଉଚିତ
କିମ୍ବା ଶାଳଗ୍ରାମ ପୂଜା କରିବା ବିହିତ

ମୃଣ୍ମୟୀ ମୂର୍ତ୍ତିରେ କିବା ଜଳର ଘଟରେ ପୂଜିବ
ସଂଯତ ଚିତ୍ତେ ସବୁ ସମୟରେ
ମନନ ଶୀଳ ପ୍ରଶାନ୍ତ ରହିବ ମଉନ
ପରିମିତ ଫଳ ମୂଳ କରିବ ଭୋଜନ

ସେ ପୁଣ୍ୟ ଶ୍ଳୋକ ଶ୍ରୀହରି ମାୟା ଆଶ୍ରୟରେ
ଯେ ବିଭିନ୍ନ ଅବତାର ହୁଅନ୍ତି ସ୍ୱଇଚ୍ଛାରେ
ସେହି ମନୋହର ଲୀଳା କରିବ ସ୍ମରଣ
ମନ୍ତ୍ର ମୂର୍ତ୍ତି ଶ୍ରୀହରିଙ୍କୁ ଉପଚାରମାନ

ଦ୍ୱାଦଶକ୍ଷର ମନ୍ତ୍ରରେ କରିବ ଅର୍ପଣ
ହୃଦୟସ୍ଥ ହରିଙ୍କର ମୁଖ ବାଣୀ ମନ
ସର୍ବାଙ୍ଗରେ ଭକ୍ତିଭାବେ କରିବ ଅର୍ଚ୍ଚନ
ଭକ୍ତର ଇଚ୍ଛାନୁସାରେ ଧର୍ମ ଅର୍ଥ କାମ

ମୁକତି ସ୍ୱରୂପ କଲ୍ୟାଣ କରନ୍ତି ପ୍ରଦାନ
ଯଦି ଉପବାସେ ବିଷୟ ବୈରାଗ୍ୟ ଜନ୍ମଇ
ସଦା ଭଜିବା ଉଚିତ ତେବେ ମୁକ୍ତି ପାଇଁ
ନାରଦ ଠୁଁ ପାଇ ଉପଦେଶ ସେ ଏସନ

ପରିକ୍ରମାକରି ତାକୁ ବିହିଲା ପ୍ରଣାମ
ଶ୍ରୀ ହରି ଚରଣାଙ୍କିତ ପୁଣ୍ୟ ମଧୁବନ
ରାଜପୁତ୍ର ଧ୍ରୁବ ତହୁଁ କରିଲା ଗମନ
ସେ ନାରଦ ଧ୍ରୁବ ତପୋବନ ଯିବା ପୂରେ

ପ୍ରବେଶିଲେ ଉତ୍ତାନ ପାଦଙ୍କ ଅନ୍ତପୁରେ
ଯଥାଯୋଗ୍ୟ ଉପଚାରେ ହୋଇଣ ପୂଜିତ
ଆସନେ ବସି ରାଜାଙ୍କୁ କହିଲେ ଏମନ୍ତ

### ନାରଦ ଉବାଚ

ହେ ରାଜନ କିଂପା ମୁଖ ଦିଶଇ ମଳିନ
କୌଣସି ବିଷୟେ ଶୋଚନା କର କି ଆପଣ
ଧର୍ମ ଅର୍ଥ କାମ ବିଷୟର ପ୍ରଭୃତିର
ଅଭାବ ହୋଇଛି କିବା ଆହେ ନରବର

### ରାଜୋବାଚ

ହେ ମୁନି, ମୁହିଁ ସୈତା ନିର୍ଦ୍ଦୟ ନିତାନ୍ତ
ପାଞ୍ଚବର୍ଷ ପୁତ୍ରକୁ ମୁଁ ତା ମାତା ସହିତ
ଗୃହରୁ ବାହାର କରି ଦେଲି ଅବିଚାରେ
ତାର ଦେହ ଶୁଖିଥିବ ନିଶ୍ଚୟ କ୍ଷୁଧାରେ

ସେ ଚାଲି ଚାଲି କ୍ଷୁଧାରେ କେଉଁଠି ପଡିଥିବ
କିବା ସେ ହିଂସ୍ର ଜନ୍ତୁ ମୁଖରେ ପଡିଥିବ
ମୁହିଁ ନାରୀର କିଣା କିଙ୍କର ମନ୍ଦ ବୁଦ୍ଧି
କି ମନ୍ଦ କରମ କଲି ବାମ ହେଲା ବିଧି

ସେ ବସିବାକୁ ଉଛୁଳୁଥିଲା କୋଳେ ମୋର
ଧିକ ମୁଁ ନିର୍ଦ୍ଦୟ ତାକୁ ନ କଲି ଆଦର

नारद उवाच

ହେ ରାଜନ ପୁତ୍ର କଥା ନକର ତୁ ଚିନ୍ତାଯାର
ରକ୍ଷକ ଶ୍ରୀହରି ଜଗତ ନିୟନ୍ତା
ଜଗତରେ ତାର ଯଶ ବିଖ୍ୟାତ ହୋଇବସେ
ବାଳକ ସର୍ବକର୍ମ ସମର୍ଥ ହୋଇବ

ଲୋକପାଳ ପକ୍ଷେ ଯେଉଁ କର୍ମ ଅସମ୍ଭବ
ସେହି କର୍ମ ପୂର୍ଣ୍ଣ କରି ସେ ପାଖକୁ ଫେରିବ
ତାହା ଯୋଗୁଁ ଜଗତରେ ବଢ଼ିବ ତୋର ଖ୍ୟାତି
ବୃଥା ଚିନ୍ତା ତେଜ ହଦୁ ଆହେ କ୍ଷିତି ପତି

ଦେବର୍ଷିଙ୍କଠାରୁ ଶୁଣି କଥା ଏ ପ୍ରକାରେ
ଉଦାସୀନ ନହେଲେ ସଦା ରାଜାର କର୍ମରେ
ବ୍ୟତି ବ୍ୟସ୍ତ ହେଲେ ପୁତ୍ର ଧ୍ରୁବର ଚିନ୍ତାରେ
ମନତାଙ୍କ ନଲାଗିଲା ବିଷୟା ଭୋଗରେ

ତହୁ ଧ୍ରୁବ ଯାଇଁ ମଧୁବନ ପ୍ରବେଶିଲେ
ପବିତ୍ର ଯମୁନାର ଜଳରେ ସ୍ନାନ କଲେ
ଉପବାସେ ରହି ତହିଁ ପବିତ୍ର ଚିତ୍ତରେ
ପୁରୁଷୋତ୍ତମ ହରିଙ୍କୁ ଉପାସନା କଲେ

ତିନିଦିନେ ଥରେ ମାତ୍ର ଦେହ ରକ୍ଷା ପାଇଁ
ହରି ପୂଜିଲେ କଇଁଥ ବରକୋଳି ଖାଇ
ଦ୍ୱିତୀୟ ମାସରେ ଛ ଦିନରେ ମାତ୍ର ଥରେ
ଶୁଷ୍କ ଘାସ ପତ୍ର ଖାଇ ହରିଙ୍କୁ ଭଜିଲେ

ତୃତୀୟ ମାସରେ ନଅ ଦିବସରେ ଥରେ
ଜଳପିଇ ସମାଧିରେ ହରିଙ୍କୁ ଅର୍ଚ୍ଚିଲେ
ଚତୁର୍ଥରେ ଶ୍ୱାସ ଜିଣି ବାର ଦିନେ ଥରେ
ବାୟୁ ପିଇ ଧ୍ୟାନ ଯୋଗେ ଆରାଧନା କଲେ

ପଞ୍ଚମରେ ଧ୍ରୁବ ପରଂବ୍ରହ୍ମ ଚିନ୍ତନରେ
ଖମ୍ବପରି ଠିଆ ହେଲେ ଗୋଟିଏ ପାଦରେ
ମନକୁ ସର୍ବ ବିଷୟରୁ ନିବାରିଲେ

ହୃଦୟସ୍ଥ ହରି ଚରଣେ ଲଗାଇଲେ
ମହଦାଦି ସମ୍ପୂର୍ଣ୍ଣ ତତ୍ତ୍ୱର ଆଧାର
ଜଡ ପ୍ରକୃତି ଓ ପୁରୁଷର ଅଧୀଶ୍ୱର
ଯେବେଳେ ପରଂ ବ୍ରହ୍ମରେ ଧାରଣା କରିଲେ

ତାଙ୍କ ତେଜନ ସହି ତିନି ଲୋକ କଂପିଲେ
ହସ୍ତୀ ପାଦ ପାତେ ଯଥା ନୌକା ଦବି ଯାଏ
ଗୋଟିଏ ପାଦକୁ ନଇଁ ଟଳମଳ ହୁଏ
ତଥା ଧ୍ରୁବ ଠିଆ ହେବାରୁ ଏକ ପାଦରେ

ପୃଥିବୀ ଦବି ଟଳିଲା ତାଙ୍କ ଅଙ୍ଗୁଳିରେ
ଇନ୍ଦ୍ରିୟ ଦ୍ୱାରା ପ୍ରାଣକୁ ସେ ରୋଧ କରିଲେ
ବିଶ୍ୱାତ୍ମା ଶ୍ରୀହରି ପାଦେ ଧ୍ୟାନ ଲଗାଇଲେ
ତାଙ୍କ ପ୍ରାଣ ପ୍ରାଣ ସମଷ୍ଟି ଅଭିନ୍ନ ହୋଇଲା

ସମସ୍ତ ଜୀବ ଶ୍ୱାସ ପ୍ରଶ୍ୱାସ ରୁଦ୍ଧ ହେଲା
ସର୍ବ ଲୋକ ଲୋକ ପାଳ ପୀଡିତ ହୋଇଲେ
ଶ୍ରୀହରିଙ୍କ ଶ୍ରୀଚରଣେ ଶରଣ ପଶିଲେ

देवा उवाच

ସର୍ବ ସ୍ଥାବର ଜଙ୍ଗମ ଜୀବଙ୍କର ପ୍ରାଣ
ଏକାବେଳେ ରୁଦ୍ଧ ହେବାର କି କରଣ
ଆମେ ଜାଣି ନ ପାରୁଛୁ ହେ ଜଗଦୀଶ୍ୱର
ଆପଣ କରନ୍ତୁ ଆମ ମାନଙ୍କୁ ଉଦ୍ଧାର

भगवान उवाच

ରାଜା ଉତ୍ତାନ ପାଦ ପୁତ୍ର ଧ୍ରୁବ ନିଜ ମନ
ମୋ ଶ୍ରୀଚରଣରେ କରି ଦେଇଅଛି ଲୀନ
ଜନମିଛି ମୋଠାରେ ତାର ଅଭେଦ ଜ୍ଞାନ
ତେଣୁ ରୁଦ୍ଧ ଅଛି ତୁମ ମାନଙ୍କର ପ୍ରାଣ

ବର୍ତ୍ତମାନ ଯାଅ ତୁମେମାନେ ନିଜ ଧାମ
ମୁହିଁ ସେବିବାଳକୁ ସଙ୍ଗେ ନେବି ଜାଣ

ଧ୍ରୁବ ଚରିତ ପୁଣ୍ୟ ବାଣୀ
ଶୁଣି ସଂସାରୁ ତରପ୍ରାଣୀ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପରମ ହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଧ୍ରୁବ ଚରିତ ବର୍ଣ୍ଣନେ ନାମ ଅଷ୍ଟମ ଅଧ୍ୟାୟ ।

*******

## ନବମୋଽଧ୍ୟାୟ

ହରି ଆଶ୍ୱାସନା ପାଇ ଦେବେ ନିର୍ଭୟରେ
ହରିଙ୍କୁ ପ୍ରଣାମି ସ୍ୱର୍ଗ ଭୁବନେ ଗମିଲେ
ତହୁ ଗରୁଡ ଆରୋହି ପ୍ରଭୁ ଭଗବାନ
ଭକ୍ତ ଦର୍ଶନ ନିମିତ୍ତ ଗଲେ ମଧୁବନ

ଯୋଗାଭ୍ୟାସେ ସ୍ଥିର ଚିତ୍ତ ହେଉ ବୁଦ୍ଧି ଦ୍ୱାରେ
ବିଜୁଳି ପରି ଉଜ୍ଜ୍ୱଳ ହୃଦ କମଳରେ
ଯେଉଁ ଶ୍ରୀମୂର୍ତ୍ତିକୁ ଧ୍ରୁବ କରୁଥିଲେ ଧ୍ୟାନସେ
ମୂର୍ତ୍ତି ହେଲା ସହସା ହୃଦୟରେ ଲୀନ

ଉଦ୍‌ବିଗ୍ନ ହୋଇ ଧ୍ରୁବ ଖୋଲନ୍ତେ ନୟନ
ବାହାରେ ସେ ରୂପେ ହରିଙ୍କୁ କରିଲେ ଦର୍ଶନ
ପ୍ରଭୁଦର୍ଶନେ ଧ୍ରୁବର ଜାତ କୌତୁହଳ
ପ୍ରେମରେ ହୋଇଲା ଚିତ୍ତ ଅତ୍ୟନ୍ତ ବିହ୍ୱଳ

ଭୂମିପରେ ଲୋଟି କଲେ ସାଷ୍ଟାଙ୍ଗ ପ୍ରଣାମ
ନୟନ ହୋଇଲା ପ୍ରେମ ଆନନ୍ଦାଶ୍ରୁ ପୂର୍ଣ୍ଣ
ଏକ ଦୃଷ୍ଟିରେ ହରିଙ୍କୁ ରହିଲେ ଅନାଇ ସତେ
ଯେପରି ନେତ୍ରରେ ତାଙ୍କୁ ଯିବେ ପିଇ

କିଅବା ସୁଖରେ ତାଙ୍କୁ କରିବେ ଚୁମ୍ବନ ହସ୍ତରେ
ଧରି କରିବେ ପ୍ରେମେ ଆଲିଙ୍ଗନ
ଧ୍ରୁବ ହାତଯୋଡି ପ୍ରଭୁଙ୍କର ସମ୍ମୁଖରେ
ଠିଆ ହୋଇ ସ୍ତୁତି କରିବାକୁ ଇଚ୍ଛାକଲେ

ଅନ୍ତର୍ଯ୍ୟାମୀ ହରି ଜାଣି ଧ୍ରୁବ ମନୋଭାବକୃପା
ପରବଶ ହୋଇ ସେ ଦୀନ ବାନ୍ଧବ
ତତକ୍ଷଣେ ନିଜର ବେଦମୟ ଶଙ୍ଖରେ ଭକତ
ଧ୍ରୁବର କପୋଳକୁ ସ୍ପର୍ଶ କଲେ

ଶଙ୍ଖ ସ୍ପର୍ଶେ ବେଦ, ମୟୀ ବାଣୀ ହେଲା ପ୍ରାପ୍ତ
ସେ ଜାଣି ପାରିଲେ ଜୀବ ଓ ବ୍ରହ୍ମର ସ୍ୱରୂପ
ଧୈର୍ଯ୍ୟ ଧରି ସେ ଅନନ୍ୟ ଭାବ ଭକତିରେ
ବିଶ୍ୱ ବିଖ୍ୟାତ ହରିଙ୍କୁ ସ୍ତୁତି ଆରମ୍ଭିଲେ

ହେ ପ୍ରଭୋ ବିଶ୍ୱେଶ ହରେ ସର୍ବ ଶକ୍ତିମାନ
ଦମୋର ଅନ୍ତକରଣରେ ପ୍ରବେଶି ଆପଣ
ତେଜରେ ମୋ ସୁପ୍ତ ବାଣୀ କଲି ସଂଜ୍ଜିବିତ
ଇନ୍ଦ୍ରିୟ ପ୍ରାଣରେ ଚେତନା ଦେଲେ ଆହେ ନାଥ

ହେ ସର୍ବ ଅନ୍ତର୍ଯ୍ୟାମୀ ପୁରୁଷ ସର୍ବେଶ୍ୱର
ତବ ଶ୍ରୀଚରଣେ ଦୀନ କରେ ନମସ୍କାର
ଅଗ୍ନି ଏକ ମାତ୍ର ନାନା କାଷ୍ଠ ସଂଯୋଗରେ
ଯଥା ପ୍ରକାଶ ଲଭଇ ବିଭିନ୍ନ ରୂପରେ

ତଥା ଏକ ଅଦ୍ୱିତୀୟ ହୋଇବି ଆପଣ
ଗୁଣମୟୀ ମାୟା ଶକ୍ତି ପ୍ରଭାବ ଯୋଗେଣ
ମହଦାଦି ସଂପୂର୍ଣ୍ଣ ପ୍ରପଞ୍ଚ ସୃଜିଲ
ତହିଁ ଅନ୍ତର୍ଯ୍ୟାମୀ ରୂପେ ପ୍ରବେଶ କରିଲ

ଇନ୍ଦ୍ରିୟର ଅଧୀଶ୍ୱର ଦେବତା ରୂପରେ
ପ୍ରକାଶିତ ହୋଇଅଛ ଅନେକ ଭାବରେ
ସୃଷ୍ଟି ଆରମ୍ଭରେ ବ୍ରହ୍ମା ତୋ ଶରଣ ନେଲା
ତୋ କୃପାରୁ ଦିବ୍ୟ ଜ୍ଞାନ ଲାଭକଲା

ସେ ଜ୍ଞାନରେ ଏ ବିଶ୍ୱକୁ କରିଲା ଦର୍ଶନ
ନିଦ୍ରାରୁ ଉଠିଥିବା ପୁରୁଷ ସମାନ
ମୁକ୍ତ ପୁରୁଷ ସେ ପାଦେ ଆଶ୍ରୟ ନିଅଇତୋ
ପାଦର ଉପକାର ଭୁଲିନ ପାରଇ

ଯେ ମାନବ ଶବପରି ଏ ଦେହ ନିମିତ୍ତ ବିଷୟ
ସୁଖରେ ସଦା ହୋଇ ଲାଳାୟିତ
ଜନମ ମରଣ ବନ୍ଧନର ମୁକ୍ତି ଦାତା
କାମ କଳ୍ପତରୁ ବିଶ୍ୱ ମାତା ପିତା

ତୋର କମଳ ଚରଣ ନ କରେ ଅର୍ଚ୍ଚନ
ନିଶ୍ଚୟ ତାହାର ବୁଦ୍ଧି ତୋ ମାୟାରେ ଲୀନ
ବିଷୟ ସୁଖତ ନରକରେ ବି ମିଳଇ
ମୁକ୍ତିପଥ ତେଜି ବୃଥା ଚେଷ୍ଟା ସେଥିପାଇଁ

ଆହେ ନାଥ ତୋ କମଳ ଚରଣ ଧ୍ୟାନରେ
ଭକ୍ତମାନଙ୍କ ପୁତ ଚରିତ ଶ୍ରବଣରେ
ଦେହ ଧାରୀ ଯେଉଁ ଦିବ୍ୟ ଆନନ୍ଦ ଲଭଇ
ବ୍ରହ୍ମ ସାକ୍ଷାତକାରେ ମଧ ତାହା ନ ମିଳଇ

ସ୍ୱର୍ଗ ସୁଖ ଭୋଗ କଥା କହିବା ବା କ'ଣ
ସ୍ୱର୍ଗ ସୁଖ ଉପଭୋଗ କରୁଥିବା ଜନ
କରାଳ କାଳ ଖଡଗରେ ହୋଇଣ ଖଣ୍ଡିତ
ସ୍ୱର୍ଗୀୟ ବିମାନରୁ ହୁଅଇ ନି ପତିତ

ଯେ ଅନନ୍ୟ ଭକ୍ତିଭାବେ ସେବେ ତୋ ଚରଣ
ସେ ଭକତ ସଙ୍ଗ ମତେ କରନ୍ତୁ ପ୍ରଦାନ
ତାଙ୍କ ସଙ୍ଗେ ତୋ ଗୁଣ ଲୀଳା ସୁଧା ପିଇ
ଦୁଃଖ ପୂର୍ଣ୍ଣ ଭବାବ୍ଧିରୁ ଯିବି ପାରିହୋଇ

ଆହେ ପଦ୍ମନାଭ ତବ କମଳ ଚରଣ
ସୁଗନ୍ଧରେ ଲୁବ୍ଧ ଅଟେ ଯେଉଁ ଭକ୍ତ ମନ
ସେ ମହାନୁଭବ ଭକ୍ତ ମାନଙ୍କ ସହିତ
ଯେ ସାଙ୍ଗ ଲଭଇ ସେ ମାନବ କଦାଚିତ

ନିଜର ପ୍ରିୟ ପୁତ୍ର କଳତ୍ର ବନ୍ଧୁ ଜନ
ସ୍ୱପ୍ନରେ ମଧ ଚିତ୍ତରେ ନ କରେ ସ୍ମରଣ
ମୁଁ କେବଳ ପଶୁ ସରୀସୃପ ଗିରି ଦ୍ରୁମ
ପକ୍ଷୀ ଦେବ ଦୈତ୍ୟ ମନୁଷ୍ୟାଦି ପରିପୂର୍ଣ୍ଣ

ମହଦାଦି ତୋର ବିଶ୍ୱ ସ୍ୱରୂପ ଜାଣଇ
ମାତ୍ର ବଚନ ଯହିଁ ପ୍ରବେଶ ନ କରଇ
ସେ ପରମ ସ୍ୱରୂପକୁ ମୁହିଁ ଜାଣଇ
ସେ ରୂପ ଦେଖାଅ ପ୍ରଭୋ ବାରେ ଦୟାବହି

ଆପଣ ହିଁ ପରମ ପୁରୁଷ ଭଗବାନ
ଶେଷେ ବିଶ୍ୱକୁ ଉଦରେ କରିଣ ବିଲୀନ
ଅନନ୍ତ ନାଗ କୋଳରେ କରନ୍ତି ଶୟନ
ତୋ ନାଭି କମଳୁ ଧାତା ଲଭନ୍ତି ଜନମ

ତୋ ନିର୍ଦ୍ଦେଶେ ଏ ବ୍ରହ୍ମାଣ୍ଡ କରନ୍ତି ରଚନ
ମୁ ତବ ପଦ୍ମଚରଣେ କରଇ ପ୍ରଣାମ
ଆପଣ ନିଜ ଅଖଣ୍ଡ ଚିନ୍ମୟୀ ଦୃଷ୍ଟିରେ
ବୁଦ୍ଧି ଅବସ୍ଥାରେ ଥାନ୍ତି ସାକ୍ଷୀ ସ୍ୱରୂପରେ

ନିତ୍ୟ ମୁକ୍ତ ଶୁଦ୍ଧ ସତ୍ତ୍ୱମୟ ସର୍ବଜ୍ଞାତା
ନିର୍ବିକାର ଆଦିକନ୍ଦ ଦୈବ ହର୍ତ୍ତା କର୍ତ୍ତା
ତ୍ରିଗୁଣ ଅଧୀଶ ଷଡ ଐଶ୍ୱର୍ଯ୍ୟ ସଂପନ୍ନ
ଜୀବାତ୍ମା ଠାରୁ ଆପଣ ସର୍ବଥା ଯେ ଭିନ୍ନ

ସର୍ବ ଯଜ୍ଞ ଅଧିଷ୍ଠାତା ବିଷ୍ଣୁ ସ୍ୱରୂପରେ
ସର୍ବଦା ବିରାଜୁଛନ୍ତି ଏ ମାୟା ସଂସାରେ
ଅଖଣ୍ଡ ଅନାଦି ଅନନ୍ତ ନିର୍ବିକାର
ଆନନ୍ଦମୟ ବ୍ରହ୍ମତୁ କାରଣ ଜଗତର

ବିଦ୍ୟା ଅବିଦ୍ୟା ପ୍ରଭୃତି ବିରୁଦ୍ଧ ଶକତି
ଆପଣଙ୍କଠାରୁ ସଦା ପ୍ରକଟ ହୁଅନ୍ତି
ହେ ପରମ ପୁରୁଷ ପ୍ରଭୋ ଭଗବାନ
ତୋ ଚରଣ ତଳେ ଦୀନ ନେଉଛି

ହେ ଶ୍ରୀହରି ପରମ ଆନନ୍ଦ ମୂରତି
ଯେମାନେ ନିଷ୍କାମେ ଚରଣ ସେବନ୍ତି
ରାଜ୍ୟାଦି ଭୋଗ ଅପେକ୍ଷା ତୋ ପାଦ କମଳ
ପ୍ରାପ୍ତି ରୂପ ଫଳ ଦାନକରୁ ତୁ କେବଳ

କାମନାପୂର୍ଣ୍ଣ କରି ତୁ ସଦା ରକ୍ଷା କର
ହେ ପରମପିତା ତୁତ କାମ କଳ୍ପତରୁ
ଯଥା ଧେନୁ ସଦ୍ୟ ଜାତ ବତ୍ସାରେ କ୍ଷୀର ଦେଇ
ହିଂସ୍ର ଜନ୍ତୁମାନଙ୍କ ଭୟରୁ ରଖଇ

ତଥା ଭକତର ସଦା ପାଖେ ପାଖେ ରହି
ବିପଦରୁ ଆପଦରୁ ରକ୍ଷା କରୁ ତୁହି

## ମୈତେୟ ଉବାଚ

ବୁଦ୍ଧିମାନ ଧ୍ରୁବ ସ୍ତୁତି କରନ୍ତେ ଏପରି
ତାହାକୁ ପ୍ରଶଂସା କରି କହିଲେ ଶ୍ରୀହରି
ହେ ବତ୍ସ, ତୋର ମନ ସଂକଳ୍ପ ମୁ ଜାଣଇ
ଉତ୍ତମ ବ୍ରତଧାରଣ କରିଅଛୁ ତୁହି

ତୋର ସଂକଳ୍ପିତ ବସ୍ତୁ ଦୁର୍ଲ୍ଲଭ ଅଟଇ
ତଥାପି ତାହା ତତେ ନିଶ୍ଚେ ଦେବି ମୁହି
ବତ୍ସ ତୋହର ହେଉ ସକଳ ମଙ୍ଗଳ
ଅଚିରେ ଲାଭ କରିବୁ ତୁହି ଶୁଭଫଳ

ହେ ଭକ୍ତ ଧ୍ରୁବ-ମଣ୍ଡଳ ଦେଉଅଛି ମୁହି
କେତହିଁ ଆଜିଯାଏ ପ୍ରବେଶ କରିନାହିଁ ତହିଁ
ବଳଦମାନେ ବେଙ୍ଗଳା ପକାଇବା ବେଳେ
ଯେପରି ବୁଲନ୍ତି ମେଚିର ଚାରି ପାଖୁଶରେ

ଗ୍ରହ ଋକ୍ଷ ତାରା ଜ୍ୟୋତି ଷକ୍ର ସେ ପ୍ରକାରେ
ଭ୍ରମନ୍ତି ଧ୍ରୁବମଣ୍ଡଳର ଚତୁର୍ଦ୍ଦିଗରେ
କଳ୍ପାନ୍ତ ବାସୀ ଲୋକ ସମୂହ ନାଶ ଯାଏମାତ୍ର
ସେ ଧ୍ରୁବ ମଣ୍ଡଳ ସ୍ଥିର ହୋଇ ରହେ

ତାରାଗଣ ସହ ଶୁକ୍ର ଆଦି ଋକ୍ଷଗଣ
ଧର୍ମ ଅଗ୍ନି କଶୀପାଦି ସପ୍ତଋଷି ପୁଣ
ସର୍ବଦା ଯେ କରୁଥାନ୍ତି ତାକୁ ପ୍ରକ୍ଷିଣ
ତାହା ଲଭିଲେ ସାର୍ଥକ ହେବ ତୋର ଜନ୍ମ

ରାଜ୍ୟ ଭାର ଦେଇ ପିତା ଯିବେ ଘୋର ବନ
ଛତିଶ ସହସ୍ର ବର୍ଷ ଲଭିବୁ ଜୀବନ
ତୁମେ ଧର୍ମରେ ପୃଥିବୀ ପାଳନ କରିବ
ଇନ୍ଦ୍ରିୟର ଶକ୍ତି ତୋର ଅତୁଟ ରହିବ

ତୋ ଭାଇ ଉତ୍ତମ ମୃଗୟାରେ ଯେ ମରିବ
ତାର ମାତା ତାକୁ ଖୋଜି ବନମଧ୍ୟେ ଯିବ
ପୁତ୍ରର ଶୋକରେ ବନାଗ୍ନିରେ ପ୍ରବେଶିବ
ଆରେ ବତ୍ସ ଧ୍ରୁବ ତୋର ସର୍ବ ଶୁଭ ହେବ

ଯଜ୍ଞ ଅଟେ ଭୂତି ପ୍ରିୟ ମୂର୍ତ୍ତି ମମ
ବହୁ ଯଜ୍ଞରେ ତୁ ମତେ କରିବୁ ଅର୍ଚ୍ଚନ
ଯଜ୍ଞର ଦକ୍ଷିଣା ବ୍ରାହ୍ମଣଙ୍କୁ କରି ଦାନ
ଇହଲୋକେ ଭୋଗ କରିଣ ରାଜ ସିଂହାସନ

ଅନ୍ତଃ କାଳରେ କରିବୁ ତୁମତେ ସ୍ମରଣ ନିଶ୍ଚୟ
ଲାଭ କରିବୁ ମୋହର ଦର୍ଶନ
ଏଥୁ ଅନ୍ତେ ତୁ ସପ୍ତର୍ଷି ମଣ୍ଡଳ ଊର୍ଦ୍ଧ୍ୱରେ
ପ୍ରବେଶ କରିବୁ ବତ୍ସ ନିଜର ଧାମରେ

ପ୍ରବେଶ କରିଲେ ମୋର ଏ ନିତ୍ୟ ଧାମରେ
କେହି ଫେରେ ଦୁଃଖମୟ ମର୍ତ୍ତ୍ୟ ପୁରେ

## ମୈତ୍ରେୟ ଉବାଚ

ବାଳକ ଧ୍ରୁବଠାରୁ ଏପରି ପୂଜା ପାଇ
ତାକୁ ନିଜର ନିତ୍ୟ ଦିବ୍ୟ ସ୍ଥାନ ଦେଇ
ସେହି ଗରୁଡ ଧ୍ୱଜ ତାର ନେତ୍ରର ଆଗରେ
ଚାହୁଁ ଚାହୁଁ ପଲକରେ ଅଦୃଶ୍ୟ ହୋଇଲେ

ବିଷ୍ଣୁ ସେବାସୌ ଭାଗ୍ୟରେ ପୂର୍ଣ୍ଣ ମନୋରଥ
ଧ୍ରୁବ ନିଜ ସଂକଳ୍ପରୁ ହୋଇଲେ ନିବୃତ୍ତ
ତଥାପି ତାହାର ଚିତ୍ତ ନ ହେଲା ପ୍ରସନ୍ନ
ରାଜଭବନକୁ ଶେଷେ କରିଲେ ପ୍ରସ୍ଥାନ

### ବିଦୁର ଉବାଚ

ହରିଙ୍କ ପରମ ପଦ ଅତ୍ୟନ୍ତ ଦୁର୍ଲଭ
ତାଙ୍କ ପଦ ସେବାରେ କେବଳ ହୁଏ ଲାଭ
ଧ୍ରୁବ ଲାଭ କଲେ ତାହା ଗୋଟିଏ ଜନ୍ମରେ
କିଂପାଇ ନିଜକୁ ଅକୃତାର୍ଥ ମନେ କଲେ

### ମୈତ୍ରେୟ ଉବାଚ

ବିମାତା କଟୁ ବଚନ ସ୍ମରି ହୃଦୟରେ
ଧ୍ରୁବ ମୁକ୍ତୀଶ ହରିଙ୍କୁ ମୁକ୍ତି ନ ମାଗିଲେ
ବିଷ୍ଣୁ ଦର୍ଶନରେ ଦୂର ହେଲା ମନସ୍ତାପ
ନିଜର ଭ୍ରମ ବୁଝିଣ କଲେ ପଶ୍ଚାତ୍ ତାପ

### ଧ୍ରୁବ ଉବାଚ

ସନକାଦି ଉର୍ଦ୍ଧ୍ୱରେତା ସିଦ୍ଧି ଗଣ
ସମାଧି ଯୋଗରେ ମଧ ଅନେକ ଜନମ
ପରେ ଲଭନ୍ତି ଯେଉଁ ଚରଣ ଶ୍ରୀହରି
ମାତ୍ର ଛ ମାସରେ ମତେ ମିଳିଗଲା ଜାଣ

ଭେଦ ଦୃଷ୍ଟି ହେତୁ ମୁହି ତାହା ତ୍ୟାଗ କଲି
ବଞ୍ଚି ଥାଉଁ ଥାଉଁ ମୁହିଁ ଜୀବନ୍ମୃତ ହେଲି
ମୁ ଅତି ଭାଗ୍ୟହୀନ ଅଜ୍ଞାନ ବଶ ହୋଇ
ଭବ କ୍ଲେଶ ହାରୀ ଶ୍ରୀହରି ପାଦ ପଦ୍ମ ପାଇ

ଏ କ୍ଷଣ ଭଙ୍ଗୁର ସଂସାର ସୁଖ ଯା ମାଗିଲି
ଜାଣି ଶୁଣି ଆଖି ଥାଇ ମୁଁ ଅନ୍ଧ ହୋଇଲି
ଦେବତାମାନେ ମଧ ସରଗ ଭୋଗ ପରେ
ପୁଣ୍ୟ ଶେଷେ ଜନମନ୍ତି ଏ ମର୍ତ୍ତ୍ୟ ପୁରରେ

ସେମାନେ ମୋ ବିଷ୍ଣୁ ପ୍ରାପ୍ତି ସହି ନ ପାରିଲେ
ମୋର ବୁଦ୍ଧିକୁ କୌଶଳେ ଦୂଷିତ କରିଲେ
ଦୁଷ୍ଟମୁ ନାରଦ ଉପଦେଶ ନ ମାନିଲି
ମୁକ୍ତି ଛାଡି ରାଜ ଭୋଗ ସୁଖ ଯା ମାଗିଲି

ଏକ ଆତ୍ମା ଏ ସଂସାରେ ଦ୍ୱିତୀୟକେ ନାହି
ଦୈବୀମାୟାରେ ମୁହିଁ ବିମୋହିତ ହୋଇ
ମାନବ ଯେ ପଦାର୍ଥ ଦେଖଇ ସ୍ୱପ୍ନରେ
ଯଥା ତାହା ମିଥ୍ୟା ହୁଏ ନିଦ୍ରାରୁ ଉଠିଲେ

ତଥା ଶତ୍ରୁତା କଳ୍ପନା କରି ଭାଇଠାରେ
ହୃଦୟ ଯୁର୍ଣ୍ଣ କରିଲି କେବଳ ବୃଥାରେ
ଯେ ଶ୍ରୀହରି ବିନାଶନ୍ତି ସଂସାର ବନ୍ଧନ
ଯାହାଙ୍କୁ ପ୍ରସନ୍ନ କରିବା ଅତ୍ୟନ୍ତ କଠିନ

ସେ ହରିଙ୍କୁ ତପସ୍ୟାରେ ମୁ ତୋଷ କରିଲି
ମୁକତି ନ ମାଗି ଅଳିକ ବିଷୟ ମାଗିଲି
ଯଥା ସୁଚିକିତ୍ସା ବ୍ୟର୍ଥ ହୁଏ ଶତାୟୁରେ
ତଥା ମୋ ପ୍ରାର୍ଥନା ନିଷ୍ଫଳ ହେଲା ହରିଠାରେ

ଯେଉଁପର କାଙ୍ଗାଳ ଚକ୍ରବର୍ତ୍ତୀ ସମ୍ରାଟଙ୍କୁ
ଚଷୁମିଶାକ୍ଷୁଦ ମାଗେ ତଥା ମୁଁ ହରିଙ୍କୁ
ଅଜ୍ଞାନ ବଶରେ ରାଜ ପଦବୀ ମାଗିଲି ମଣିକୁ
କାଚ ଜ୍ଞାନରେ ଉପେକ୍ଷା କରିଲି

### ମୈତ୍ରେୟ ଉବାଚ

ଯେଉଁ ଜନ ଶ୍ରୀହରିଙ୍କ ଚରଣ ସେବଇ ସେ
ସଦା ତୁମରିପରି ସନ୍ତୋଷ ଲଭଇ
ଶ୍ରୀହରିଙ୍କର ପାଦପଦ୍ମ ଅର୍ଚ୍ଚନ ବ୍ୟତୀତ
ସେ କେବେ ନ ମାଗଇ ଅନ୍ୟାନ୍ୟ ପଦାର୍ଥ

ଏ ବାରଣ ଜନତାଠାରୁ କରିଣ ଶ୍ରବଣ
ମୃତ ବ୍ୟକ୍ତି ଯମ ଲୋକୁ ଫେରିବା ସମାନ
ବିଶ୍ୱାସନକରି ହୃଦ ମଧରେ ଭାବିଲେ
ମୋପରି ଅଭାଗାର ପୁଣି ଏ ବଡ ଭାଗ୍ୟ

ସତେଅବା ଜନ୍ମଅନ୍ଧ ନୟନ ଲଭିବ
ଦେବର୍ଷି ନାରଦ କଥା ଭାବି ସେ ମନରେ
ବିଶ୍ୱାସ କରି ଆନନ୍ଦେ ଅଧୀର ହୋଇଲେ
ସମାଚାର ଆଣିଥିବା ବ୍ୟକ୍ତିରେ ପ୍ରସନ୍ନ

ବହୁ ମୂଲ୍ୟ ରତ୍ନ ହାର କରିଲେ ପ୍ରଦାନ
ଉତ୍ତାନ ପାଦ ପୁତ୍ରକୁ ଦେଖି ବାର ପାଇଁ
ବ୍ରାହ୍ମଣ କୁଳ ବୃଦ୍ଧି ମନ୍ତ୍ରୀ ସଙ୍ଗରେ ନେଇ
ଉତ୍ତମ ଅଶ୍ୱସଂଯୁକ୍ତ ସୁବର୍ଣ୍ଣ ମଣ୍ଡିତ

ରଥ ଆରୋହି ପୁରରୁ ହୋଇଲେ ନିର୍ଗତ
ଶଙ୍ଖ ଦୁନ୍ଦୁଭି ବଂଶୀ ବାଜିଲା ସେବେଳେ
ବ୍ରାହ୍ମଣ ମାନେ ବେଦ ଧ୍ୱନି ଆରମ୍ଭିଲେ
ସୁନୀତି-ସୁରୁଚି ଧ୍ରୁବଠାରେ ସ୍ନେହ ବହି

ସ୍ୱର୍ଣ୍ଣମୟ ଆଭୂଷଣେ ବିଭୂଷିତ ହୋଇ
ସଙ୍ଗରେ ରାଜକୁମାର ଉତ୍ତମକୁ ନେଇ
ପୁରୁବାହାର ହୋଇଲେ ପାଲିଙ୍କି ଆରୋହି
ଅସୀମ ଆନନ୍ଦ ହୃଦୟରେ ଜାତ ହେଲା

ସତେ କିବା ଦୀନ ବିପୁଳ ସଂପଦ ଲଭିଲା
ଧ୍ରୁବ ଉପବନ ନିକଟରେ ପ୍ରବେଶିଲେ
ତାକୁ ଦେଖି ମହାରାଜ ରଥୁ ଓହ୍ଲାଇଲେ
ଦୀର୍ଘ ଶ୍ୱାସ ତେଜି ପ୍ରେମେ ବିହ୍ୱଳ ହୋଇଲେ

ପୁତ୍ର ଧ୍ରୁବକୁ ବାହୁରେ ଆଲିଙ୍ଗନ କଲେ
ରାଜାଙ୍କ ମହତ ଇଚ୍ଛା ହୋଇଲା ପୂରଣ ପୁତ୍ରର
ମସ୍ତକ ପ୍ରେମେ କରିଲେ ଆଘ୍ରାଣ
ଶୀତଳ ଆନନ୍ଦ ଅଶ୍ରୁ ନେତ୍ରରୁ ବହିଲା

ପୁତ୍ରର ମସ୍ତକଦେଶ ଆର୍ଦ୍ର ହୋଇଗଲା
ବର୍ତ୍ତମାନ ଧ୍ରୁବ ପୂର୍ବପରି ଯେ ନୁହଁଇ
ପ୍ରଭୁପାଦ ସ୍ପର୍ଶେ ତାର ପାପ ଅଛି ଧୋଇ
ସନ୍ଥ ଧ୍ରୁବ ପିତାଙ୍କର ଚରଣ ବନ୍ଦିଲେ

ଶୁଭ ଆଶିଷ କୁଶଳ ବାରତା ଲଭିଲେ
ଦୁଇ ଜନନୀଙ୍କୁ କଲେ ସାଷ୍ଟାଙ୍ଗ ପ୍ରଣାମ ମାତା
ସୁରୁଚି ତାହାଙ୍କୁ କଲେ ଆଲିଙ୍ଗନ
ହୃଦୟେ ଲଗାଇ ବାଷ୍ପ ଗଦ୍‌ଗଦ୍ ସ୍ୱରରେ

"ଚିର ଜୀବୀ ହୁଅ" ବୋଲି ଆଶୀର୍ବାଦ ଦେଲେ
ସାମ୍ୟ ମୈତ୍ରୀ ଗୁଣ ଥାଏ ଯାର ହୃଦୟରେ
ସଦା ପ୍ରସନ୍ନ ହୁଅନ୍ତି ହରି ତାର ନିକଟରେ
ଅନ୍ୟ ସମସ୍ତେ ଅବନତ ଥାନ୍ତି ହୋଇ

ଯଥା ଜଳ ଉଚ୍ଚସ୍ଥାନୁ ନିଚକୁ ବହଇ
ଉତ୍ତମ ଧ୍ରୁବ ଦୁହେଁ ଅନନ୍ୟ ପ୍ରେମରେ
ମିଳିଣ ପରସ୍ପରକୁ ଆଲିଙ୍ଗନ କଲେ
ଅଙ୍ଗ ସ୍ପର୍ଶରେ ଶରୀର ରୋମାଞ୍ଚିତ ହୋଇ

ନୟନୁ ଯୁଗଳୁ ପ୍ରେମ ଅଶ୍ରୁ ଗଲା ବହି
ମାତା ସୁନୀତି ଧ୍ରୁବକୁ ଆଲିଙ୍ଗନ କଲେ
ସଂତାପ ସମସ୍ତ ଦୂର ଅଙ୍ଗ ପରଶରେ
ବୀର ମାତା ସୁନୀତିର ଆନନ୍ଦାଶ୍ରୁ ବହି

ସ୍ତନ ଯୁଗଳ ତକ୍ଷଣେ ଗଲା ସିକ୍ତ ହୋଇ
ବାର ବାର ବହିଲା ତାଙ୍କର କ୍ଷୀର ଧାରକେ
ଅବାବର୍ଣ୍ଣି ବତାହା ହେ ବୀର ବିଦୁର
ପୁରଜନେ ସୁନୀତିକୁ ପ୍ରଶଂସି କହିଲେ

ମହାରାଣୀ ଆପଣଙ୍କ ପୁତ୍ର ଏ ବିଶ୍ୱରେ
ବହୁକାଳ ଯାଏ ମହୀ କରିବ ଶାସନ
ଭକ୍ତ ଦୁଃଖହାରୀ ହରିକୁ କରିଣ ଅର୍ଚ୍ଚନ
ପୁଣି ନିରନ୍ତର ତାଙ୍କୁ କରିବାରୁ ଧ୍ୟାନ

ଜନ୍ମ ଓ ମୃତ୍ୟୁକୁ କରିପାରେ ଅତିକ୍ରମ
ସମସ୍ତେ ଧ୍ରୁବଙ୍କ ପ୍ରତି ପ୍ରକାଶିଲେ ସ୍ନେହ
ନରପତି ଧ୍ରୁବଙ୍କୁ ଉତ୍ତମ ଭ୍ରାତା ସହ
ହସ୍ତିନୀ ଉପରେ ବସାଇ ଅତି ଆନନ୍ଦରେ

ପ୍ରବେଶ ହୋଇଲେ ରାଜଧାନୀର ମଧ୍ୟରେ
ସ୍ଥାନେ ସ୍ଥାନେ ମକରାକୃତି ମନୋରମ
ନିର୍ମିତ ହୋଇଥିଲା ନୂତନ ତୋରଣ
ଫଳପୁଷ୍ପ ରମ୍ଭା ଗୁବାକ ବୃକ୍ଷରେ

ସୁସଜ୍ଜିତ ପୁରଦ୍ୱାର ଜନମନ ହରେ
ପ୍ରଦୀପ ଜଳ କଳସ ପୁଷ୍ପ ଆମ୍ରପତ୍ର
ବସ୍ତ୍ର ପୁଷ୍ପ ମାଳା ମୋତି ମାଳା ସୁସଜ୍ଜିତ
ଅଳଙ୍କୃତ ରାଜପୁରୀ ପ୍ରାଚୀର ବହିଦ୍ୱାର ସ୍ୱର୍ଣ୍ଣମୟ

ବସ୍ତ୍ର ଶୋଭଇ ଉପରେ ତାହାର
ତାହା ସବୁ ଦିଶେ ଶ୍ରେଷ୍ଠ ରଥାରୂଢ଼ି ପରିଦର୍ଶନେ
ମନ ନୟନ ପ୍ରେମେ ଯାଏ ପୁରି
ଅଗଣନ ରାଜପଥ ପ୍ରସାଦରେ ବି ନିର୍ମିତ

ବେଦୀକାମାନ ସମ୍ମାର୍ଜିତ ଚନ୍ଦନ ଚର୍ଚ୍ଚିତ
ସେ ସ୍ଥାନରେ ଅକ୍ଷତ କୁସୁମ ଫଳ ଖଇ
ବିବିଧ ପୂଜା ସାମଗ୍ରୀ ଥିଲା ଥୁଆ ହୋଇ
ପୁର ନାରୀ ଧ୍ରୁବଙ୍କୁ ଦେଖି ରାଜମାର୍ଗରେ

ତାଙ୍କୁ ଆଶୀର୍ବାଦ କଲେ ବାତ୍ସଲ୍ୟ ସ୍ନେହରେ
ଶ୍ୱେତ ଶୋରିଷ ଯବା ଦୁର୍ବା ଫଳ କୁସୁମ
ବର୍ଷଣ କରି କରିଲେ ତାଙ୍କ ଗୁଣ ଗାନ
ଧ୍ରୁବ ତାହା ସବୁ ଶୁଣି ଆନନ୍ଦ ଚିତ୍ତରେ

ପିତାଙ୍କର ଭବନରେ ପ୍ରବେଶ କରିଲେ
ଯେ ଭବ ନ ସୁଶୋଭିତ ମହାର୍ଘ ମଣିରେ
ପିତାଙ୍କ ଦ୍ୱାରା ଲାଳିତ ହୋଇଣ ସେଠାରେ
ସ୍ୱର୍ଗରେ ଦେବତା ସମ ପରମ ସୁଖରେ

ନିବାସ କରିଲେ ଧ୍ରୁବ ଆନନ୍ଦ ଚିତ୍ତରେ
ଗଜଦନ୍ତ ପଲଙ୍କ ସ୍ୱର୍ଣ୍ଣ ଆସ୍ତରଣ
ଦୁଗ୍ଧ ଫଳ ଶଯ୍ୟା ମହାର୍ଘ ଆସନ
ସ୍ୱର୍ଣ୍ଣମୟ ସମ୍ମାନନୀ ସ୍ଫଟିକ ମର୍କତ

ଖଚିତ ସୁବର୍ଣ୍ଣ ଖମ୍ୱମାନ ବିରାଜିତ
ରତ୍ନରେ ଖଚିତ ରମଣୀ ମୂର୍ତ୍ତିର ହସ୍ତରେ
ମଣି ଶୋଭା ପାଉଥିଲା ସେହି ଭବନରେ
ସେ ଭବନରେ ଚତୁଃ ପାର୍ଶ୍ୱରେ ବିଭିନ୍ନ ଦିବ୍ୟ

ବୃକ୍ଷ ରମଣୀୟ କୁସୁମ ଉଦ୍ୟାନ
ପକ୍ଷୀ ପକ୍ଷିଣୀ ସେଠାରେ କରନ୍ତି କୂଜନ
ଭ୍ରମର ଗଣ ଗୁଞ୍ଜନ ହରେ ପ୍ରାଣ ମନ
ବାପୀମାନ ବୈଦୁର୍ଯ୍ୟ ପାବଛ ଶୋଭିତ

ପଦ୍ମ ନୀଳ କମଳ କୁମୁଦ ପ୍ରସ୍ଫୁଟିତ
ହଂସ କାରଣ୍ଡବ ଚକ୍ର ବାଳ ପକ୍ଷୀ ଯୁଥ
ସେବାପୀରେ ଖେଳୁଥାନ୍ତି ନିତ୍ୟ ଦିବାରାତ୍ର
ଧ୍ରୁବର ପ୍ରଭାବ ନାରଦଠାରୁ ଥିଲେ ଶୁଣି ପ୍ରତ୍ୟକ୍ଷ

ଦେଖି ବିସ୍ମିତ ହେଲେ ନରମଣି
କ୍ରମେ କ୍ରମେ ପୁତ୍ର ଧ୍ରୁବ ହୋଇଲା ତରୁଣ
ତାକୁ ଆଦର କରିଲେ ପ୍ରଜା ମନ୍ତ୍ରୀ ଗଣ
ତେଣୁ ଉତ୍ତାନ ପାଦ ରାଜା ଅତି ଆନନ୍ଦରେ

ଅଭିଷେକ କଲେ ତାକୁ ନୃପତି ପଦରେ
ବୃଦ୍ଧାବସ୍ଥା ଆସିବାର ନୃପତି ଜାଣିଲେ
ସଂସାର ବିଷୟ ପ୍ରତି ବୀତସ୍ପୃହ ହୋଇଲେ
କରିବା ନିମିତ୍ତ ଆତ୍ମ ସ୍ୱରୂପ ଚିନ୍ତନ
ପୁରୁ ବାହାରି ଗମନ କଲେ ଘୋର ବନ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥ ସ୍କନ୍ଧେ ଧ୍ରୁବ ରାଜ୍ୟାଭିଷେକ ବର୍ଣ୍ଣନଂ ନାମ ନବମୋଽଧ୍ୟାୟ ।

********

## ଦଶମ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ କହନ୍ତି ଶୁଣ ହେ ଭକ୍ତ ବିଦୁର
ପରମ ଭାଗବତ ଧ୍ରୁବଙ୍କର ସମାଚାର
ପ୍ରଜାପତି ଶିଶୁମାର ଦୁହିତା ଭ୍ରମିର
ପାଣିଗ୍ରହଣ କରିଲେ ଧ୍ରୁବ ନରବର

ତାହାର ଗର୍ଭରୁ କଳ୍ପ ବତ୍ସର ନାମରେ
ଦୁଇ ପୁତ୍ର ଯେ ଜନମ ହୋଇଲେ କ୍ରମରେ
ବାୟୁ କନ୍ୟା ଇଳା ମଧ୍ୟ ଧ୍ରୁବ ନାରୀ ଥିଲେ
ଉତ୍କଳ ନାମ ପୁତ୍ର ଏକ କନ୍ୟା ଜନ୍ମିଲେ

ଅବିବାହିତ ଉତ୍ତମ ମୃଗୟା କାଳରେ
ନେପାଳ ଯକ୍ଷଦ୍ୱାରା ସେ ନିହତ ହୋଇଲେ
ତାହାର ଜନନୀ ମଧ ପୁତ୍ରର ଶୋକରେ
ପରଲୋକକୁ ଗମନ କରିଲେ ଅଚିରେ

ନୃପ ଧ୍ରୁବ ଭ୍ରାତୃବଧ ସମାଚାର ପାଇ
କ୍ରୋଧ ଶୋକରେ ଅତ୍ୟନ୍ତ ବ୍ୟାକୁଳିତ ହୋଇ
ଆରୋହଣ କରି ବିଜୟ ନାମ ସ୍ୟନ୍ଦନରେ
ପ୍ରବେଶ ହୋଇଲେ ଶୀଘ୍ର ଯକ୍ଷଙ୍କ ଦେଶରେ

ଉତ୍ତର ଦିଗରେ ହିମାଳୟର ଘାଟିରେ
ଯକ୍ଷଙ୍କ ନିବାସ ଅଳକା ପୁରୀକୁ ଦେଖିଲେ
ରୁଦ୍ରଙ୍କର ଅନୁଚର ଭୂତ ପ୍ରେତ ସେଠାରେ
ପରମ ସୁଖରେ ତହି ବାସ କରୁଥିଲେ

ସେଠାରେ ପ୍ରବେଶି ଧ୍ରୁବ କଲେ ଶଙ୍ଖ ଧ୍ୱନି
ସଂପୂର୍ଣ୍ଣ ଆକାଶ ଦିଗ କଂପିଲା ମେଦିନୀ
ତାହା ଶୁଣି ଯକ୍ଷ ନାରୀମାନେ ଭୟ କଲେ
ଅତି କାତରରେ ନୟନ ମୁଦ୍ରିତ କରିଲେ

ମହାବଳ ଯକ୍ଷମାନେ ସହି ନ ପାରିଲେ ଅସ୍ତ୍ରଶସ୍ତ୍ରେ
ସଜ୍ଜ ହୋଇ ପୁରୁ ବାହାରିଲେ
ଧ୍ରୁବଙ୍କର ଚଉପାଶେ ଘେରିଣ ଯେ ଗଲେ
ସିଂହ ନାଦ କରି ଧ୍ରୁବଙ୍କୁ ସେ ଆକ୍ରମିଲେ

ମହାରଥୀ ଧ୍ରୁବ ପ୍ରଚଣ୍ଡ ଧନୁର୍ଦ୍ଧର
ପ୍ରତି ଯକ୍ଷକୁ ବିନ୍ଧିଲେ ତିନି ତିନି ଶର
ତିନି ତିନି ଶର ବିଦ୍ଧ ଦେଖି ମସ୍ତ କରେ
ନିଶ୍ଚୟ ହାରିବେ ବିଶ୍ୱାସ କରି ହୃଦୟରେ

ବିଲୋକି ଧ୍ରୁବଙ୍କର ଯେ ଅଦଭୂତ ପରାକ୍ରମ
ଅତି ପ୍ରଶଂସା କରିଲେ ତାଙ୍କୁ ପକ୍ଷଗଣ
ସାକ୍ଷାତ ପଦ ଆହତ ଭୁଜଙ୍ଗ ସମାନ
ଯକ୍ଷମାନେ ସହି ନପାରି ଧ୍ରୁବ ପରାକ୍ରମ

ସେମାନେ ପ୍ରତ୍ୟେକ କ୍ରୋଧେ ଏକ ସମୟରେ
ଛଅ ଛଅ ଶାଣ ବାଣ ଧ୍ରୁବଙ୍କୁ ବିନ୍ଧିଲେ
ସେମାନଙ୍କ ସଂଖ୍ୟା ଥିଲା ତେର ଯେ ଅୟୁତ
ପ୍ରତିଶୋଧ ନେବାପାଇଁ ହୋଇ ପ୍ରକୋପିତ

ରଥ ସାରଥି ସହିତ ଧ୍ରୁବଙ୍କ ଉପରେ
ପରିଘ ଖଡଗ ପ୍ରାସ ତ୍ରିଶୂଳ ସଙ୍ଗରେ
ପାର୍ଶା ଯେ ଭୁଶୁଣ୍ଡୀ ଶରମାନ ବରଷିଲେ
ଧ୍ରୁବଙ୍କର ଚଉପାଶେ ଘେରଣ ଯେ ଗଲେ

ପ୍ରବଳ ବର୍ଷା ଧାରାରେ ଯେପରି ପର୍ବତ
ଯକ୍ଷଶର ବର୍ଷାରେ ଧ୍ରୁବ ହେଲେ ଆଚ୍ଛାଦିତ
ଆକାଶରେ ରହଣି ଦେଖୁଥିବା ସିଦ୍ଧଗଣ ଉଚ୍ଚେ
ହାହାକାର କରି କହିଲେ ଏସନ

ଆଜି ଯକ୍ଷସେନା ସାଗରରେ ବୁଡି ଯାଇ ଏ
ମାନବ ସୂର୍ଯ୍ୟ ନିଷ୍ଟେ ଯିବେ ଅସ୍ତ ହୋଇ
ବିଜୟ ଘୋଷଣା କରି ସଂଗ୍ରାମ କ୍ଷେତ୍ରରେ
ଯକ୍ଷମାନେ ଆନନ୍ଦରେ ସିଂହନାଦ କଲେ

କୁହୁଡି ମଧରୁ ସୂର୍ଯ୍ୟ ଉଠିଲା ପ୍ରକାର
ଯକ୍ଷସେନା ମଧ୍ଯୁ ରଥ ପ୍ରକଟିଲା ଧ୍ରୁବଙ୍କର
ଧ୍ରୁବ ଅତି କ୍ରୋଧେ ଦିବ୍ୟ ଧନୁ ଟଙ୍କାରିଲେ
ବିପକ୍ଷ ସେନା ମାନଙ୍କୁ ସ୍ତବ୍ଧ କରିଦେଲେ

ଯଥା ଝଡ ମେଘମାଳା କରେ ଛିନ୍ନଭିନ୍ନ
ସେପରି ବରଷା କରି ତୀକ୍ଷ୍ଣ ଶାଣ ବାଣ
ପତ୍ରୁଙ୍କର ଶସ୍ତ୍ର ଅସ୍ତ୍ର କଲେ ଛିନ୍ନଭିନ୍ନ
କେତେ ଯକ୍ଷ ମହାଭୟେ କଲେ ପଳାୟନ

ବଜ୍ର ଯଥା ପ୍ରବେଶଇ ପର୍ବତ ମଧ୍ୟରେ
ଧ୍ରୁବଙ୍କର ଶାଣ ବାଣ ସେହିପ୍ରକାରେ
ଧ୍ରୁବଙ୍କର ଶାଣ ବାଣ ସେହି ପ୍ରକାରେ
କବଚକୁ ଭେଦ କରି ପଶିଲା ଶରୀରେ

ଧ୍ରୁବ ତ ଅଜେୟ ବୀର ତିନି ଭୁବନରେ ନାହିଁ
ତୁଳନା ତାଙ୍କର ଏ ବିଶ୍ୱ ମଧ୍ୟରେ
ବଳୟ ଭୂଷିତ ବାହୁ ଛିନ୍ନ ଭିନ୍ନ ହେଲା
କୁଣ୍ଡଳ ମଣ୍ଡିତ ଶିର ଭୂତଳେ ଲୋଟିଲା

ଭୁଜବନ୍ଧ ମୁକୁଟ ମହାର୍ଘ ମଣି ହାର
ସମୂହରେ ଯୁଦ୍ଧ ଭୂମି ଦିଶିଲା ସୁନ୍ଦର
ବଞ୍ଚି ରହିଥିବା ଅବଶିଷ୍ଟ ଯକ୍ଷ ଗଣ
ଧ୍ରୁବ ବାଣରେ ଅଙ୍ଗ ହେବାରୁ ବିଦୀର୍ଣ୍ଣ

ସିଂହଠାରୁ ପରାଭୂତ ଗଜରାଜ ସମ
ସମର ଭୂମିକୁ ତେଜି କଲେ ପଳାୟନ
ଜଣେ ମାତ୍ର ଶତ୍ରୁ ନାହିଁ ତାଙ୍କ ସମ୍ମୁଖରେ
ଦେଖି ଧ୍ରୁବ ଅଳକା ପୁରୀ ଦେଖିବା ଇଚ୍ଛିଲେ

ମାୟାବୀଙ୍କ ଇଚ୍ଛା ମାନବେ ଅଗୋଚର
ବୋଲି ସାରଥିକୁ କହି ଧ୍ରୁବ ନରବର
ଅଳକା ପୁରୀ ମଧ୍ୟକୁ ପ୍ରବେଶ ନକଲେ
ପ୍ରତି ଆକ୍ରମଣ ଭୟେ ସାବଧାନ ହେଲେ

ଏବେଳେ ସମୁଦ୍ର ପରି ଶବ୍ଦ ହେଲା
ଆକାଶରେ ଧୂଳି ଉଡିବା ଯେ ଦେଖାଗଲା
କ୍ଷଣକେ ଆକାଶେ ମେଘମାଳ ଘୋଟିଗଲା
ଘଡଘଡି ସହିତ ବିଜୁଳି ଚମକିଲା

ମେଦ ରକ୍ତ ମାଂସ ପୂଜ ବିଷ୍ଠା ବରଷିଲା
ଆକାଶରୁ ଅସଂଖ୍ୟକ କବନ୍ଧ ପଡିଲା
ଅକାଶରେ ଦେଖାଗଲା ବହୁତ ପର୍ବତ
ଚତୁର୍ଦିଗକୁ ପଥର ବରଷା ସହିତ

ଗଦା ଖଡଗ ପରିଘ ଭୂଷଣ୍ଡ ମୁଷଣ
ବରଷିଲା ମହାବାତ୍ୟା ହୋଇଲା ପ୍ରବଳ
ସର୍ପମାନେ ଫୁତ୍କାର କରି ବ୍ରଜପରି
ରୋଷନେତ୍ରେ ଆସୁଛନ୍ତି ଅଗ୍ନିବର୍ଷା କରି

ମତ୍ତଗଜ ହିଂସ୍ର ବ୍ୟାଘ୍ର ସିଂହ ଯୂଥ ଯୂଥ
ଧାଇଁ ଆସୁଛନ୍ତି ଭଲ୍ଲୁକ ଶତ ଶତ
ଜଣାଗଲା ସତେ ଯଥା ପ୍ରଳୟ କାଳୀନ
ପାରାବାର କରି କରି ଭୀଷଣ ଗର୍ଜନ

ପୃଥ୍ୱୀକୁ ବୁଡାଇବାକୁ ଉତ୍ତାଳ ତରଙ୍ଗେ
ମାଡି ଆସୁଛନ୍ତି ଚଉଦିଗେ ବେଗେ ବେଗେ
କ୍ରୂର ସ୍ୱଭାବ ଦୈତ୍ୟମାନେ ଆସୁରୀ ମାୟାରେ
ଏପରି ଭାବେ ନାନା ଭୟ ଦେଖାଇଲେ

ଅସୁରମାନେ ଧ୍ରୁବଙ୍କର ଚଉପାରୁଶରେ
ଅତ୍ୟନ୍ତ ଦୁସ୍ତର ମାୟା ବିସ୍ତାର କରିଲେ
ଏହା ଶୁଣି ବହୁ ମୁନି ଋଷି ମହାମନା
ଆସି କରିଲେ ଧ୍ରୁବଙ୍କ ମଙ୍ଗଳ କାମନା

ହେ ଉତ୍ତାନପାଦ ନନ୍ଦନ ଶରଣ୍ୟ ରଂଜନ
ଚକ୍ର ପାଣି ଭଗବାନ ପ୍ରଭୁ ନାରାୟଣ
ତୁମର ପୁତ୍ର ମାନଙ୍କୁ କରନ୍ତୁ ନିଧନ
ଶ୍ରବଣ କୀର୍ତ୍ତନ ମାତ୍ରକେ ଯାର ନାମ

ଦୁସ୍ତର ମୃତ୍ୟୁକୁ ମାନବ ହୋଇ ଯାଏ ପାର
ସେ ରକ୍ଷା କରନ୍ତୁ ସଦାପ୍ରାଣ ଧ୍ରୁବଙ୍କର

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଦଶମୋଽଧ୍ୟାୟ ।

******

## ଏକାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୁନି ଉପଦେଶେ ଧ୍ରୁବ ଆଗମନ କଲେ
ନାରାୟଣ ଅସ୍ତ୍ରକୁ ଧନୁରେ ଚଢ଼ାଇଲେ
ଅସ୍ତ୍ର ଯୋଖିବା ମାତ୍ରେ ଜ୍ଞାନୋଦୟ ହେଲା
ଯକ୍ଷଙ୍କ ଆସୁରୀମାୟା ବିନାଶ ଲଭିଲା

ଧନୁରେ ଯୋଗ କରନ୍ତେ ନାରାୟଣ ଅସ୍ତ୍ର
ତହୁଁ ବାହାରିଲା ତୀକ୍ଷ୍ଣ ବାଣ ଶତଶତ
ମୟୂରମାନେ ଯେପରି କେକା ନାଦ କରି
ବନେ ପ୍ରବେଶ କରନ୍ତି ସାକ୍ଷାତରେ ସେପରି

ଭୟଙ୍କର ବାଣ ଗଣ ଭୀଷଣ ଶବ୍ଦରେ
ନିପତିତ ହେଲା ଶତ୍ରୁ ସେ ନାନୀ ମଧ୍ୟରେ
ଯଥା ଗରୁଡ଼ କ୍ରମଇ ସର୍ପଷଣ ଶତ୍ରୁ
ବ୍ୟସ୍ତ କରିଲା ସୁତୀକ୍ଷ୍ଣ ବାଣମାନ

ତଥା କୋପେ ଯକ୍ଷମାନେ କୁପିତ ହୋଇଲେ
ଅସ୍ତ୍ର ଧରି ଧ୍ରୁବଙ୍କର ଆଡକୁ ଧାଇଁଲେ
ଏହା ଦେଖି ଧ୍ରୁବ ସୁତୀକ୍ଷ୍ଣ ବାଣକୁ ବିନ୍ଧିଲେ
ବାହୁଜଙ୍ଘ କନ୍ଧ ପାଦ ଛନ୍ନ ଭିନ୍ନ କଲେ

ସୂର୍ଯ୍ୟ ମଣ୍ଡଳକୁ ଭେଦକରି ମୁନି ଗଣ
ଯେପରି ସତ୍ୟ ଲୋକକୁ କରନ୍ତି ଗମନ
ଯକ୍ଷମାନେ ଧ୍ରୁବବାଣେ ହୋଇଣ
ନିଧନଗମନ କରିଲେ ସେହି ପରମ ଯେ ଧାମ

ଧ୍ରୁବ ବିଚିତ୍ର ରଥରେ କରି ଆରୋହଣ
ନିରପରାଧ ଯକ୍ଷଙ୍କୁ କରନ୍ତି ନିଧନ
ପିତାମହ ସ୍ୱାୟମ୍ଭୁବ ମନୁ ଦେଖି ଏହା
ଯକ୍ଷମାନଙ୍କ ଉପରେ କରିଣ ମୁ ଦୟା

ଋଷି ମାନଙ୍କ ସହିତ ପ୍ରବେଶି ସେଠାରେ
ଧ୍ରୁବକୁ ସେ ସ୍ନେହ ବଚନରେ ବୁଝାଇଲେ

### ମନୁ ଉବାଚ

ରେ ବତ୍ସ ଅତ୍ୟନ୍ତ କ୍ରୋଧ ପାପର କାରଣ
ନରକ ଗତିର ଦ୍ୱାର ଏହା ଅଟେ ପୁଣ
ନିରପରାଧ ଯକ୍ଷଙ୍କୁ ବଧୁଛ କିଂପାଇ
ତୋ ପକ୍ଷେ ଏପରି କ୍ରୋଧ ଉଚିତ ନୁହଁଇ

ଏହା ନୁହଁଇ ଆମର କୁଳୋଚିତ କର୍ମ
ଏ କର୍ମକୁ ନିନ୍ଦା କରିଥାନ୍ତି ସାଧୁଜନ
ଥିଲା ଅତ୍ୟନ୍ତ ସ୍ନେହ ତୁମର ଭାଇଠାର
ତେଣୁ ତୁମେ ସନ୍ତପ୍ତ ହୋଉ ଭାଇର ମୃତ୍ୟୁରେ

ଗୋଟିଏ କ୍ଷର ଅପରାଧ କରଣରେ
ବହୁତ ଯକ୍ଷଙ୍କୁ ବଧକଲ ଅବିଚାରେ
ଏ ଜଡ ଦେହକୁ ଆତ୍ମା ବୋଲି ମନେକରି
ରେ ବତ୍ସ ବୃଥାରେ ଏହାପାଇଁ ପଶୁପରି

ନିରିହ ପ୍ରାଣୀଙ୍କଠାରେ ହିଂସା ଆଚରଣ ଭଗବତ୍
ଭକ୍ତ ସାଧୁର ନୁହେଁ ମାର୍ଗ ଜାଣ
ହରିଙ୍କର ଆରାଧନା ଅତ୍ୟନ୍ତ ଦୁଷ୍କର
ମାତ୍ର ବାଲ୍ୟେ ତୁ ଆଚରିଣ ତପଘୋର

ସର୍ବାତ୍ମଭାବରେ କରି ତାହାଙ୍କ ଅର୍ଚ୍ଚନ
ରେ ବତ୍ସ ଲଭି ଅଛୁ ସେ ପରପଦେ ସ୍ଥାନ
ଯାହା ଅଟେ ଚିର କାମ୍ୟ ସର୍ବ ପ୍ରାଣୀଙ୍କର
ଭକ୍ତ ସମାଜରେ ତୋର ବହୁତ ଆଦର

ପ୍ରିୟଭକ୍ତ ବୋଲି ହରି କରନ୍ତି ସ୍ୱୀକାର
ତୁତ ପଥ ପ୍ରଦର୍ଶକ ସାଧୁ ମାନଙ୍କର
ଏହି ନିନ୍ଦନୀୟ କର୍ମ କରୁଛୁ କିଂପାଇ
ତୋ ପକ୍ଷରେ ଅପକର୍ମ ଉଚିତ ନୁହଁଇ

ମହତ ଜନରେ କ୍ଷମା କରୁଣା ନିଚରେ
ସମରେ ମିତ୍ରତା ସମତା ସକଳ ପ୍ରାଣୀରେ
ବିଶ୍ୱର ଈଶ୍ୱର ମହାପ୍ରଭୁ ଭଗବାନ
ତାଠାରେ କାଳେ କାଳେ ହୁଅନ୍ତି ସୁପ୍ରସନ୍ନ

ଶ୍ରୀହରି ଯେଉଁ ପୁରୁଷେ ପ୍ରସନ୍ନ ହୁଅଇ
ସେ ପ୍ରାକୃତ ଗୁଣ ସୂକ୍ଷ୍ମ ଦେହ ମୁକ୍ତ ପାଇ
ଆନନ୍ଦ ସ୍ୱରୂପ ପରଂବ୍ରହ୍ମକୁ ଲଭଇ
ରେ ବତ୍ସ ଭକ୍ତର କାମ୍ୟ ଏହା ହିଁ ଅଟଇ

ପଞ୍ଚ ଭୂତରେ ନିର୍ମିତ ଏହି ଯେ ଶରୀର
ତହିଁରୁ ଜନମ ଅଟେ ନାରୀ ପୁରୁଷର
ସେହି ମାନଙ୍କର ସମାଗମରେ ଯେ ପୁନ
ଅନ୍ୟ ନାରୀ ପୁରୁଷର ଘଟଇ ଜନମ

ଭଗବାନଙ୍କ ମାୟାରେ ସତ୍ୱାଦି ଗୁଣରେ
ନ୍ୟୁନାଧିକ ଭାବୁ ପଞ୍ଚଭୂତ ସଂଯୋଗରେ
ସକଳ ପ୍ରାଣୀ ଶରୀର ରଚିତ ଯେପରି
ସେମାନଙ୍କ ସ୍ଥିତି ଲୟ ହୁଅଇ ସେପରି

ଯଥା ଲୌହ ଘୁରେ ଚୁମ୍ବକ ଆଶ୍ରୟରେ
କାର୍ଯ୍ୟ କାରଣାତ୍ମକ ବିଶ୍ୱ ତାଙ୍କ ଆଶ୍ରୟରେ
ସର୍ବଦା କରେ ଭ୍ରମଣ, ହେ ପୁରୁଷ ପ୍ରବର
ନିର୍ଗୁଣ ପରମାତ୍ମା, ଯେ ନିମିତ୍ତ ମାତର

ତ୍ରିଗୁଣ ବିଭକ୍ତ ହେଲେ କାଳର ଶକ୍ତିରେ
ଈଶ୍ୱର ଶକ୍ତି ବିଭକ୍ତ ସୃଷ୍ଟି ବିଷୟରେ
ଅକର୍ତ୍ତା ହୋଉ ମଧ୍ୟ ସେ **ସୃଷ୍ଟିକୁ** ରଚନ୍ତି
ସଂହାର କର୍ତ୍ତା ନ ହୋଇ ସଂହାର କରନ୍ତି

ହରିଙ୍କ ଲୀଳା ସର୍ବଥା ଅଚିନ୍ତ୍ୟ ଅଟଇ
କେଅବା **କଳିବ** ବତ୍ସ ନରଦେହ ବହି
କାଳରୂପୀ ପରମାତ୍ମା ଅବ୍ୟୟ ଅଟଇ
ଅନନ୍ତ ହୋଇ ମଧ୍ୟ ସେ ଅନ୍ତ କରଇ

ଅନାଦି ହୋଇମଧ୍ୟ ଆଦିକର୍ତ୍ତା ଏ ବିଶ୍ୱର
ଏକ ଜୀବ ଠାରୁ ସୃଜି ସେ ଅନ୍ୟ ଜୀବର
ଏ ସକଳ ବିଶ୍ୱକୁ ସେ ସର୍ଜନା କରନ୍ତି
ମୃତ୍ୟୁଦ୍ୱାରା ସଂସାରକୁ ସଂହାର କରନ୍ତି

କାଳ ସ୍ୱରୂପୀ ଅବ୍ୟୟ ପରମାତ୍ମା ସେହି
ଅନନ୍ତ ହେଲେ ବି ବିଶ୍ୱର ଅନ୍ତ ସାଧଇ
ଅନାଦି ହୋଇ ମଧ୍ୟ ଆଦିକର୍ତ୍ତା ଜଗତର ଜୀବରୁ
ଜୀବ ଜନ୍ମାଇ ସୃଜେ ଏ ସଂସାର

ମୃତ୍ୟୁରୂପେ ସଂହାର କାରୀକୁ ବିନାଶଇ
ସର୍ବ ଜୀବ ଜଗତର ନିୟତା ଟି ସେହି
ସେ କାଳ ସୃଷ୍ଟିରେ ସମଭାବେ ପ୍ରବେଶଇ
କେହି ତାହାର ଶତ୍ରୁ କେ ଅବା ମିତ୍ର ନାହିଁ

ପବନ ସଙ୍ଗରେ ଧୂଳି ଯେପରି ଉଡଇ
କର୍ମ ବଶ ଜୀବ କାଳର ଗତିକୁ ଲଭଇ
ସୁଖ ଦୁଃଖ ଭୋଗେ ଜୀବ କର୍ମ ଅନୁସାରେ
କେହି ପ୍ରାରବ୍ଧ କର୍ମକୁ ଏଡ଼ି ଯେ ନପାରେ

ସଂସାରେ ଶ୍ରୀହରି ସର୍ବ ସମର୍ଥ ଅଟନ୍ତି
ବଦ୍ଧ ଜୀବର ଆୟୁ କ୍ଷୟ ବୃଦ୍ଧି ସେକରନ୍ତି
କିନ୍ତୁ ସେ ସ୍ୱୟଂ ନିଜ ସ୍ୱରୂପେ ଅବସ୍ଥିତ
ସେହେତୁ ଶ୍ରୀହରି କ୍ଷୟ ବୃଦ୍ଧିରୁ ରହିତ

ଏ ପରମାତ୍ମାକୁ କେହି କହଇ ସ୍ୱଭାବ
କେହି କାଳ କେହି ଜୀବ କେ କହେ ଦଇବ
ସେ ପ୍ରମାଣ ଇନ୍ଦ୍ରିୟର ବିଷୟ ନୁହନ୍ତି
ମହଦାଦି ଶକ୍ତି ତାଙ୍କଠାରୁ ପ୍ରକଟନ୍ତି

ପ୍ରଭୁଙ୍କର କର୍ମ ଚେଷ୍ଟା କେହି ନ ଜାଣଇ
ସେ ଅନାଦିଙ୍କୁ ଜାଣିବା କାର ଶକ୍ତି ନାହିଁ
ନୁହଁଇ କୁବେରା ତୋ ଭ୍ରାତାର ହତ୍ୟାକାରୀ
ମାନବ ଜନ୍ମ ମୃତ୍ୟୁର କରଣ ଶ୍ରୀହରି

ସେ ଏକା ସୃଷ୍ଟି ପାଳନ ସଂହାର କରନ୍ତି
ନିରହଙ୍କାର ସର୍ବଦା ନିର୍ଲିପ୍ତ ରହନ୍ତି
ଅନ୍ତର ଆତ୍ମା ନିୟନ୍ତା ରକ୍ଷା କର୍ତ୍ତା ସେହି
ସେ ସୃଷ୍ଟି ଆଦି କରନ୍ତି ମାୟା ଶକ୍ତି ବହି

ଅଭକ୍ତ ପାଇଁ ସେ ମୃତ୍ୟୁ ସ୍ୱରୂପ ଅଟଇ
ଭକତ ପାଇଁ ଅମୃତସିନା ସେହି
ଯେପରି ନାସିକାରେ ଦଉଡିରେ ବନ୍ଧା ହୋଇ
ବଳଦ ଯେ ମାଲିକର କାମକୁ କରଇ

ତଥା ବ୍ରହ୍ମା ମଧ୍ୟ ତାଙ୍କଙ୍କ ଆଦେଶ ପାଳଇ
ଅଟେ ଏକା ଏ ସଂସାର ହର୍ତ୍ତାକର୍ତ୍ତା ସେହି
ଚିର ବସ୍ତୁ ଶ୍ରୀହରି ଚରଣରେ
ଶରଣ ନିଅରେ ପୌତ୍ର ସର୍ବତୋ ଭାବରେ

ବିମାତା ବାକ୍ୟବାଣରେ ମର୍ମାହତ ହୋଇ
ମାତା କୋଳ ତେଜିଗଲୁ ବଣକୁ ପଳାଇ
ପାଞ୍ଚବର୍ଷ ବୟସରେ ତୁ ଘୋର ତପରେ
ହରି ଆରାଧନା କରି ତ୍ରିଲୋକ ଉପରେ

ଅବ୍ୟୟ ଧ୍ରୁବ ପଦବୀ ଲାଭ କଲୁ ତୁହି ହରି
ତୋର ହୃଦୟରେ ଛନ୍ତି ବିଜେ ହୋଇ
ଅଦ୍ୱୟ ଅବିନାଶୀ ନିତ୍ୟଯୁକ୍ତ ନିର୍ଗୁଣ
ପରମାତ୍ମାକୁ ହୃଦ ମଧ୍ୟେ କର ଅନ୍ୱେଷଣ

କୌଣସି ଅସତ୍ୟ ଭେଦ ଭାବ ତାଙ୍କ ନାହିଁ
ମାତ୍ର ତାହା ଥିଲାପରି ପ୍ରତୀତ ହୁଅଇ
ତାଙ୍କୁ ଅନ୍ତକରଣରେ କଲେ ଅନ୍ୱେଷଣ
ପରାନନ୍ଦ ଅନ୍ତର୍ଯ୍ୟାମୀ ସର୍ବଶକ୍ତିମାନ

ଦୃଢ଼ ଭକ୍ତି ହେବ ସେହି ଅନନ୍ତଙ୍କ ଠାରେ
ମମତା ଲକ୍ଷ ଅହଂକାର ଯିବ ଭକ୍ତି ପ୍ରଭାବରେ
ଔଷଧରେ ରୋଗ ଉପଶମ ଯେପ୍ରକାର
ମୋ କଥା ବିଚାରି କ୍ରୋଧ ସମ୍ବରଣ କର

କ୍ରୋଧ ବିରୋଧୀ ଅଟଇ କଲ୍ୟାଣ ମାର୍ଗର
ଭଗବାନ ସୁମଙ୍ଗଳ କରନ୍ତୁ ତୁମର
ତୁମେ ଭ୍ରାତୃ ହତ୍ୟାକାରୀ ଠାରେ ବହି କ୍ରୋଧ
ଏତେକ ଯକ୍ଷମାନଙ୍କୁ କରିଲଣି ବଧ

ତୁମେ ଶିବଙ୍କର ସଖା କୁବେରଙ୍କଠାରେ ମହା
ଅପରାଧ କରିଅଛ ଅବିଚାରେ
ନମ୍ର ବିନୟ ବଚନେ ଶାନ୍ତ କର ତାଙ୍କୁ
ନ ହେଲେ ତାଙ୍କର ତେଜ ଦହିବ ବଂଶକୁ

ସ୍ୱାୟମ୍ଭୁବ ମନୁ ପୌତ୍ର ଧ୍ରୁବକୁ ଏପରି
ଉପଦେଶ ଦେଲେ ଅନୁଶାନ ସେ କରି
ଧ୍ରୁବଙ୍କଠାରୁ ପ୍ରଣାମ କରିଣ ଗ୍ରହଣ
ମହର୍ଷିଙ୍କ ସହ ମନୁ ଗଲେ ନିଜ ଧାମ

ଇତି ଶ୍ରୀମଦ୍ ଭଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟା ବୈୟାସିକ୍ୟାଂ ଧ୍ରୁବ ସ୍ୱାୟଂଭୁବ ମନୁ ଅନୁଶାସନେ ଚତୁର୍ଥ ସ୍କନ୍ଧେ ଏକାଦଶୋଽଧ୍ୟାୟଂ ।

*******

## ଦ୍ୱାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ସ୍ୱାୟମ୍ଭୁବ ମନୁ ବାକ୍ୟେ ଧ୍ରୁବଶାନ୍ତ ହେଲେ
ଯକ୍ଷ ମାନଙ୍କର ବଧୁ ନିବୃତ୍ତ ହୋଇଲେ
ଏହା ଜାଣି କୁବେର ସେଠାରେ ମିଳିଲେ
ଯକ୍ଷଚାରଣ ଗଣ ତାହାଙ୍କୁ ସ୍ତୁତି କଲେ

ତାଙ୍କୁ ଦେଖି ଧ୍ରୁବ ହାତଯୋଡି ଠିଆହେଲେ
କୁବେର ତାହାଙ୍କୁ ଏହି ପ୍ରକାର କହିଲେ
ହେ ଧ୍ରୁବ ତୁମେ ନିଷ୍ପାପ କ୍ଷତ୍ରିୟ କୁମାର
ପିତାମହ ଉପଦେଶେ ତ୍ୟାଗ କଲ ବୈର

ତୁମେ ଯକ୍ଷଙ୍କୁ ବଧିନାହଁ କିବା ଯକ୍ଷଗଣ ତୁମର
ଭାଇଙ୍କୁ କରି ନାହାନ୍ତି ନିଧନ
ନାଶ ଉତ୍ପତ୍ତି କାରଣ କାଳ ହିଁ ଅଟଇ
ସକଳଜୀବ ଅଜ୍ଞାନରେ ବଶ ହୋଇ

ସ୍ୱପ୍ନପରି ମିଥ୍ୟା ଦେହ ଆତ୍ମା ମଣି ଥାଇ
ଏହା ଅହଂକାର ଯୋଗୁ ଜନମ ହୁଅଇ
ଏଥି ଯୋଗୁ ମିଥ୍ୟା ବୁଦ୍ଧି ହୁଅଇ ଜନମ ଜୀବ
ଲଭେ ବିପରୀତ ଦୁଃଖ ଓ ବନ୍ଧନ

ହେ ଧ୍ରୁବ ତୁମେ ରାଜ୍ୟକୁ ଯାଅ ବର୍ତ୍ତମାନ
ତୁମର ମଙ୍ଗଳ କରନ୍ତୁ ପ୍ରଭୁ ଭଗବାନ
ଜୀବେ ସମଦୃଷ୍ଟି ରଖି ସର୍ବାତ୍ମା ଭଗବାନ
ହରିଙ୍କୁ ଭଜ ତୁଟିବ ଏ ଭବ ବନ୍ଧନ

ସେ ବିଶ୍ୱ ଉତ୍ପତ୍ତି ପାଇଁ ମାୟାଯୁକ୍ତ ସେହି
ମାତ୍ର ଏ ମାୟା ତାହାଙ୍କୁ ସ୍ପର୍ଶ କରେନାହିଁ
ଭଜିବା ଅଟେ ଉଚିତ ତାଙ୍କର ଚରଣ
ଶୁଣିଛି ମୁଁ ତୁମେ ସଦା ପ୍ରଭୁ ଭଗବାନ

ଶ୍ରୀଚରଣ କମଳରେ ରଖିଥାଅ ମନ
ଯେଉଁବର ପାଇବାକୁ ଇଚ୍ଛା ଅଛି ତୁମ
ନିଃସଂକୋଚେ ମୋର ଠାରୁ ସେହି ବର ଘେନ
ହରିଙ୍କ ଅଖଣ୍ଡ ସ୍ମୃତି ରହୁ ଚିତ୍ତେ ରହୁ ତୁମ

ଭବ ସାଗରକୁ ପାରି ହେବ ସହଜରେ
ଇଡ୍‌ବିଡା ସୁତ କୁବେର ଅତି ଆନନ୍ଦରେ
ଧ୍ରୁବଙ୍କୁ ଭଗତ୍ ସ୍ମୃତି ବରଦାନ କଲେ ଚାହୁଁ
ଚାହୁଁ ତତ୍‌କ୍ଷଣେ ଅନ୍ତର୍ଦ୍ଧାନ ହେଲେ

ଧ୍ରୁବ ମଧ୍ୟ ନିଜ ରାଜଧାନୀକୁ ଫେରିଲେ
କୁବେରଙ୍କ ଉପଦେଶେ ଅତି ଆନନ୍ଦରେ
ଧ୍ରୁବ ବ୍ରାହ୍ମଣଙ୍କୁ ଦେଇ ପ୍ରଚୁର ଦକ୍ଷିଣା
ମହାଯଜ୍ଞରେ କରିଲେ ହରି ଆରାଧନା

ଦ୍ରବ୍ୟ କ୍ରିୟା ଦୈବ କର୍ମ ସେହି ଭଗବାନ
କର୍ମଫଳ, କର୍ମଜୀବେ କରନ୍ତି ପ୍ରଦାନ
ଉପାଧିଶୂନ୍ୟ ସର୍ବାତ୍ମା ଅଚ୍ୟୁତଙ୍କଠାରେ
ତୀବ୍ର ଭକ୍ତିଭାବେ ଧ୍ରୁବ ନିଜ ହୃଦୟରେ

ପୁଣି ସର୍ବ ପ୍ରାଣୀ ଠାରେ ହରିଙ୍କୁ ଦେଖିଲେ
ବିବିଧ ଐଶ୍ୱର୍ଯ୍ୟ ଭୁଂଜି ପୁଣ୍ୟ କ୍ଷୟ କଲେ
ଭୋଗ ତେଜି ଯଜ୍ଞ କର୍ମେ ପାପ ଦୂର କଲେ
ଛତିଶ ହଜାର ବର୍ଷ ପୃଥିବୀ ପାଳିଲେ

ସେ ମହାତ୍ମା ଜିତେନ୍ଦ୍ରିୟ ଧ୍ରୁବ ଏହିପରି
ଯଜ୍ଞେଧର୍ମ ଅର୍ଥ କାମ ଅରଜନ କରି
ନିଜର ପୁତ୍ରକୁ ରାଜ ସିଂହାସନ ଦେଲେ
ବାନପ୍ରସ୍ଥାଶ୍ରମ ପାଇଁ ମନ ବଳାଇଲେ

ଏ ଦୃଶ୍ୟ ବିଶ୍ୱ ଅବିଦ୍ୟା ରଚିତ ସ୍ୱପନ
ଗନ୍ଧର୍ବ ନଗରୀ ପରି ମାୟାର ସର୍ଜନ
ବୋଲି ଧ୍ରୁବ ହୃଦୟରେ କରିଣ କଳ୍ପନା
ପୁତ୍ର ନାରୀ ଦେହ ସଂପଦ ମିତ୍ର ସେନା

ବିଶାଳ ସାମ୍ରାଜ୍ୟ ଅବ୍ଧି ପର୍ଯ୍ୟନ୍ତ ବିସ୍ତୃତ
ନିଶ୍ଚେ ଦିନେ ହେବ ସବୁ କାଳ କବଳିତ
ଏହା ଭାବି ଧ୍ରୁବଗଲେ ବଦ୍ରିକା ଆଶ୍ରମ
ପୁଣ୍ୟ କ୍ଷେତ୍ର ବ୍ୟାସ ଦେବଙ୍କର ଜନ୍ମସ୍ଥାନ

ତହିଁ ଧ୍ରୁବ ପବିତ୍ର ଜଳରେ କରି ସ୍ନାନ
ଶାନ୍ତ କରିଦେଲେ ମନ ସହ ଇନ୍ଦ୍ରିଗଣ
ପ୍ରାଣାୟାମେ ପବନକୁ କରିଲେ ଆୟତ
ବାହ୍ୟ ବିଷୟରୁ ଇନ୍ଦ୍ରିୟ କରିଲେ ନିବୃତ୍ତ

ଭଗବାନଙ୍କର ସ୍ଥୂଳ ବିରାଟ ସ୍ୱରୂପରେ
ତାଙ୍କ ମନ ସ୍ଥିର ହୋଇଗଲା ଧୀରେ ଧୀରେ
ଶେଷେ ଧ୍ୟାତା ଧ୍ୟେୟ ଭେଦଭାବ ହେଲା ଶୂନ୍ୟ
ନିର୍ବିକଳ୍ପ ସମାଧିରେ ସେ ହୋଇଲେ ଲୀନ

ବିରାଟ ସ୍ୱରୂପକୁ ମଧ୍ୟ ପରିତ୍ୟାଗ କଲେ
ଶ୍ରୀହରିଙ୍କଠାରେ ସର୍ବଦା ଭକ୍ତି ପ୍ରବାହରେ
ନେତ୍ର ଅବିରଳ ଆନନ୍ଦାଶ୍ରୁ ଯେ ବହିଲା
ହୃଦୟ ପ୍ରଦେଶ ତାଙ୍କ ଦ୍ରବୀଭୂତ ହେଲା

ପୁଲକିତ ଅଙ୍ଗ ଦେହ ଅଭିମାନ ଗଲା
ମୁଁ ଧ୍ରୁବ ବୋଲି ଏପରି ସ୍ମୃତି ନରହିଲା
ଏହି ସମୟରେ ଧ୍ରୁବ ଆକାଶ ମଧ୍ୟରେ
ଗୋଟିଏ ବିମାନ ଅବତରଣ ଦେଖିଲେ

ବିମାନ ଜ୍ୟୋତିରେ ଆଲୋକିତ ଦଶ ଦିଶ
ଆକାଶେ ପୂର୍ଣ୍ଣିମା ଚନ୍ଦ୍ର ଉଦୟ ସଦୃଶ
ଦୁଇଟି ଶ୍ରେଷ୍ଠ ଦେବତା ସେହି ବିମାନରେ
ଠିଆହୋଇ ଥିଲେ ଭରାଦେଇ ଗଦାର ଉପରେ

ଚତୁର୍ଭୁଜ ଶରୀର ସୁନ୍ଦର ଶ୍ୟାମ ବର୍ଣ୍ଣ
କମଳ ପରି ସୁନ୍ଦର ନୟନ ଅରୁଣ
ସେ ଦୁହେଁ କିରୀଟ ହାର ସୁରମ୍ୟ ବସନ
ରତନ କୁଣ୍ଡଳ କରିଥିଲେ ଯେ ଧାରଣ

ପୁଣ୍ୟ ଶ୍ଳୋକ ଶ୍ରୀହରିଙ୍କ ପାର୍ଷଦ ଜ୍ଞାନରେ
ଧ୍ରୁବ ପୂଜା କ୍ରମ ଭୁଲି ଅତି ସଂଭ୍ରମରେ
ଠିଆ ହୋଇ ହରିନାମ କରିଲେ କୀର୍ତ୍ତନ ହାତ
ଯୋଡି ସେମାନଙ୍କୁ କରିଲେ ପ୍ରଣାମ

ଚିତ୍ତ ଦେଇ ଶ୍ରୀହରିଙ୍କ ପଦ କମଳରେ
ହାତଯୋଡି ଅତିଶୟ ବିନୟ ଭାବରେ
ଶିର ଅବନତ କରି ଧ୍ରୁବ ଠିଆ ହେଲେ
ଆନନ୍ଦାଶ୍ରୁ ଜଳରେ ଅଙ୍ଗ ସିକ୍ତ କଲେ

ହରିଙ୍କ ପ୍ରିୟ ପାର୍ଷଦ ସୁନନ୍ଦ ଓ ନନ୍ଦ
ଧ୍ରୁବଙ୍କୁ ଏହା କହିଲେ ହସି ମନ୍ଦ ମନ୍ଦ
ଆପଣଙ୍କ ସୁମଙ୍ଗଳ ହେଉ ହେରାଜନ
ଆମର କଥା ଶୁଣନ୍ତୁ ହୋଇ ସାବଧାନ

ସର୍ବେଶ୍ୱର ହରିଙ୍କୁ ଆପଣ ତୁଷ୍ଟ କଲେ
ପାଞ୍ଚବର୍ଷ ବୟସରେ ଘୋର ତପସ୍ୟାରେ
ସକଳ ନିୟନ୍ତା ଶାର୍ଙ୍ଗ ପ୍ରାଣି ହରିଙ୍କର
ଆମେ କିଂଙ୍କର ଅଟୁ ହେ ପୁରୁଷ ପ୍ରବର

ଆପଣଙ୍କୁ ନେବାପାଇଁ ଭାଗବତ ଧାମ
ଶ୍ରୀହରି ଆଜ୍ଞାରେ ଆସିଅଛୁ ଏହି ସ୍ଥାନ
ଯେଉଁ ବିଷ୍ଣୁ ପଦକୁ ସପତ ଋଷିଗଣ
ଯାଇ ନ ପାରି ନିମ୍ନରେ କରନ୍ତି ଦର୍ଶନ

ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ର ତାରାକା ଗଣ
ଯେଉଁ ବିଷ୍ଣୁ ପଦକୁ କରନ୍ତି ପ୍ରଦକ୍ଷିଣ
ଅଧିକାର ପାଇଣ ସେ ଦୁର୍ଜୟ ଲୋକରେ
ଆସନ୍ତୁ ବାସ କରିବେ ସେ ବିଷ୍ଣୁ ଧାମରେ

ସକଳ ବିଶ୍ୱର ବନ୍ଦ୍ୟ ସେ ପରମ ଧାମ
ଆପଣଙ୍କ ପୂର୍ବଜ ବା ଅନ୍ୟ କେହି ଜନ
ଆଜି ପର୍ଯ୍ୟନ୍ତ କେହି ଯାଇନାହିଁ ଜାଣ
ସେଠାରେ ବିଜେ କରନ୍ତୁ ହେ ଧ୍ରୁବ ରଜନ

ଶ୍ରୀହରି ପଠାଇଛନ୍ତି ଏ ଦିବ୍ୟ ବିମାନ
ଆପଣ ହିଁ ଯୋଗ୍ୟ ସଶରୀରେ ତହିଁ ଆରୋହଣ
ହରି ମୁଖ୍ୟ ପାର୍ଷଦ ଅମୃତ ବଚନ
ଶୁଣି ପରମ ଭାଗବତ ଧ୍ରୁବ କଲେ ସ୍ନାନ

ସନ୍ଧ୍ୟା ବନ୍ଦନାଦି ନିତ୍ୟ କର୍ମ ଶେଷ କଲେ
ମାଙ୍ଗଳିକ ଅଳଙ୍କାର ମାନ ସେ ପିନ୍ଧିଲେ
ବଦ୍ରିକା ଆଶ୍ରମ ଋଷିଙ୍କୁ ପ୍ରଣମିଲେ
ସେମାନଙ୍କ ଠାରୁ ଶୁଭ ଆଶୀର୍ବାଦ ଘେନିଲେ

ତାଙ୍କ ଦେହ ହେଲା ସ୍ୱର୍ଣ୍ଣ ସମ ସୁଶୋଭନ
କରିଲେ ବିମାନକୁ ଅର୍ଚ୍ଚନ ପ୍ରଦକ୍ଷିଣ
ପାର୍ଷଦଙ୍କୁ ନମି ବିମାନ କଲେ ଆରୋହଣ
ଏ ସମୟେ ମୃତ୍ୟୁ ନିଜ ସ୍ୱରୂପ ଧରିଣ

ଅତି ଆନନ୍ଦ ମନରେ ପରି ପ୍ରଦକ୍ଷିଣ
ଧ୍ରୁବଙ୍କୁ କରିଲା ଆସି ସେଠାରେ ପ୍ରଣାମ
ଧ୍ରୁବ ବିଷ୍ଣୁ ସ୍ମରି ମୃତ୍ୟୁ ଶିରେ ପାଦଦେଲେ
ସେ ଅଦ୍‌ଭୂତ ବିମାନରେ ଆରୋହଣ କଲେ

ଦୁନ୍ଦୁଭି ମୃଦଙ୍ଗ ପଣବ ଭେରି ବାଜିଲା
ଗନ୍ଧର୍ବେ ଗାଇଲେ ସ୍ୱର୍ଗୁ ପୁଷ୍ପ ବରିଷିଲେ
ଧ୍ରୁବ ପରମ ଧାମକୁ ଯିବା ସମୟରେ
ମାତା ସୁନୀତିଙ୍କ କଥା ପଡିଲା ମନରେ

ଭାବିଲେ ମାଆକୁ ଏକୁଟିଆ ଛାଡି ଦେଇ
ଏକାକୀ ମୁ ପରମ ଧାମକୁ ଯିବି ନାହି
ସୁନନ୍ଦ ନନ୍ଦ ଧ୍ରୁବଙ୍କ ଭାବନା ଜାଣିଲେ
ମାତା ତାଙ୍କ ଆଗେ ଆଗେ ଅନ୍ୟ ବିମାନରେ

ଆରୋହିଣ ଯାଉଛନ୍ତି ଦେଖାଇଣ ଦେଲେ
ଦିବ୍ୟ ବିମାନ ଆରୋହି ଆକାଶ ପଥରେ
ଯାଉଥିବା ଦେବତା ଧ୍ରୁବଙ୍କୁ ପ୍ରଶଂସିଲେ
ତାହାଙ୍କ ଶିରରେ ପାରିଜାତ ବୃଷ୍ଟିକଲେ

କ୍ରମେ କ୍ରମେ ଧ୍ରୁବ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଦେଖିଲେ
ସେ ବିମାନେ ବସି ଧ୍ରୁବ ତ୍ରିଲୋକ ପାର ହେଲେ
ଅବସ୍ଥିତ ସପ୍ତର୍ଷି ମଣ୍ଡଳର ଉପରେ
ବିଷ୍ଣୁଙ୍କର ନିତ୍ୟ ଧାମରେ ପ୍ରବେଶିଲେ

ଏପରି ସେ ସ୍ଥିର ଧ୍ରୁବଗତି ପ୍ରାପ୍ତ ହେଲେ
କେ ଏହା ବର୍ଣ୍ଣିବ ଏ ମାନବ ଶରୀର
ସେ ନିତ୍ୟ ଧାମ ପ୍ରକାଶିତ ସ୍ୱଜ୍ୟୋତିରେ
ଲୋକତ୍ରୟ ପ୍ରକାଶିତ ତାହାର ଜ୍ୟୋତିରେ

ନିର୍ଦ୍ଦୟ ପୁରୁଷ ତହିଁ ଯାଇ ପାରେ ନାହିଁ ଜୀବର
କଲ୍ୟାଣ କାରୀ ସେ ସ୍ଥାନେ ଗମଇ
ଯେ ପ୍ରଶାନ୍ତମନା ସମଦର୍ଶୀ ଶୁଦ୍ଧମତି
ସୁପ୍ରସନ୍ନ ହୁଅଇ ସମସ୍ତ ଜୀବ ପ୍ରତି

ଶ୍ରୀହରି ଭକ୍ତକୁ ପ୍ରିୟ ବନ୍ଧୁ ଯେ ମଣଇ
ତା ପାଇଁ ଏ ଧାମ ପ୍ରାପ୍ତି ସୁଗମ ଅଟଇ
କୃଷ୍ଣ ପରାୟଣ ଧ୍ରୁବ ତ୍ରିଲୋକ ଉର୍ଦ୍ଧ୍ୱରେ
ସ୍ୱଚ୍ଛ ଚୂଡାମଣି ସମ ବିରାଜିତ ହେଲେ

ବଳଦମାନେ ବେଙ୍ଗଳା ପଡିବା ବେଳରେ
ଯେପରି ବୁଲନ୍ତି ମେରି ଚାରି ପାରୁଶରେ
ତଥା ଧୀରେ ବେଗଗାମୀ ଜ୍ୟୋତିଷ୍କ ଏହି
ଶାଶ୍ୱତ ଲୋକ ଆଶ୍ରୟେ ସର୍ବଦା ଘୁରଇ

ନାରଦ ଏହି ଲୋକର ମହିମା ଦେଖିଣ
ପ୍ରଚେତାଙ୍କ ଯଜ୍ଞଶାଳେ ପ୍ରବେଶି ବହନ
ଏ ପ୍ରମାନନ୍ଦ ଚିତ୍ତେ ବୀଣା କରିଣ ବାଦନ
ଏହି ଶ୍ଳୋକ ମାନେ ଉଚ୍ଚେ କରିଲେ ଗାୟନ

**ନାରଦ ଉବାଚ**

ସୁନୀତିର ପୁତ୍ର ଧ୍ରୁବ ଘୋର ତପ କଲା ଅଦ୍‌ଭୂତ
ଶକ୍ତିରେ ଯେଉଁ ସୁଗତି ପାଇଲା
ଏହା ଲଭି ନାହାନ୍ତି ବେଦବାଦୀ ଋଷିଗଣ
ଅନ୍ୟ ରାଜା କଥା କହିବା ଅକାରଣ

ବିମାତାର ବାକ୍ୟ ବାଣେ ହୋଇ ମର୍ମାହତ
ଏ ଧ୍ରୁବ ପାଞ୍ଚ ବରଷ ବୟସରେ ମାତ୍ର
ଦୁଃଖ ପୂର୍ଣ୍ଣ ହୃଦୟରେ ବନକୁ ଚଳିଲା
ମୋର ଉପଦେଶ ଆଚରି ପ୍ରଭୁକୁ ଜିଣିଲା

ଭଗବାନ ନିଷ୍ଠେ ଭକ୍ତ ଗୁଣ ନିକଟରେ
ପରାଜୟ ସ୍ୱୀକାର କରନ୍ତି ପ୍ରକୃତରେ
ଧ୍ରୁବ ଯା ପାଇଲା ପାଞ୍ଚବର୍ଷ ବୟସରେ
କୌଣସି କ୍ଷତ୍ରିୟ ବର୍ଷ ବର୍ଷ ତପସ୍ୟାରେ

ଲଭି ନ ପାରିବ କେବେ ଏ ମର୍ତ୍ତ୍ୟ ପୁରରେ
ଏହା ସତ୍ୟ ସତ୍ୟ ସତ୍ୟ ମୋର ବିଚାରରେ

### ମୈତ୍ରେୟ ଉବାଚ

ମୈତ୍ରେୟ କହିଲେ ହେ ଭକ୍ତ ବିଦୁର
ଶୁଣିଲ ତ ଧ୍ରୁବଙ୍କର ଚରିତ ଉଦାର
ସାଧୁମାନେ ପ୍ରଶଂସନ୍ତି ଏ ପୁତ ଚରିତ
ଏହା ଅଟଇ ମଙ୍ଗଳମୟ ଅତ୍ୟନ୍ତ

ଏହା ଧନ ଯଶ ପୁତ୍ର ଆୟୁ ବୃଦ୍ଧି କରେ
ଏହା ଦ୍ୱାରା ସ୍ୱର୍ଗ ଲାଭ ହୋଇପାରେ
ଯେ ଜନ ଏହା ଶୁଣାଏ କିଅବା ଶୁଣଇ
ଭକ୍ତି ଲଭେ ପାପ କ୍ଷୟ ଯାଇ

ତେଜ ମହତ୍ତ୍ୱ ଶୀଳତା ଉପଯୁକ୍ତ ସ୍ଥାନ
ମନସ୍ୱୀ ମାନଙ୍କ ଏହା ବଢ଼ାଏ ସମ୍ମାନ
ଏ ଧ୍ରୁବ ଚରିତ ପ୍ରାତଃ ସନ୍ଧ୍ୟା ସମୟରେ
ବ୍ରାହ୍ମଣାଦି ଜାତି ମାନଙ୍କର ସମାଜରେ

କୀର୍ତ୍ତନ ଉଚିତ ସଦା ଏକାଗ୍ର ଚିତ୍ତରେ
ପୂର୍ଣ୍ଣିମା ଅମାବାସ୍ୟା କିବା ଦ୍ୱାଦଶୀରେ
ଶ୍ରବଣା କ୍ଷୟତିଥି ବ୍ୟତିପାତ ସଂକ୍ରାନ୍ତିରେ
ରବିବାର ଦିନ ଯେବା ଶୁଣଇ ଶ୍ରଦ୍ଧାରେ

ଶ୍ରୀହରି ସନ୍ତୋଷ ଲଭନ୍ତି ତାହାଠାରେ
ଏ ଭବ ସାଗର ପାର ହୁଏ ଅକ୍ଳେଶରେ
ଭାଗବତ ବିଷୟ ଏ ଅମୃତ ଜ୍ଞାନ
ଏହା ନ କହିବ ଅଜ୍ଞ ଜନେ କଦାଚନ

ଯେବା ଦୀନ ବତ୍ସଳ କୃପାଳୁ ଦାତା ପ୍ରତି
ସକଳ ଦେବତା ଅନୁଗ୍ରହ କରିଥାନ୍ତି
ଅତି ବିଶୁଦ୍ଧ ବିଖ୍ୟାତ ଧ୍ରୁବଙ୍କର କର୍ମ
ସେ ବାଲ୍ୟେ ମାତ୍ର ଗୃହ କ୍ରୀଡ଼ା ବସ୍ତୁମାନ

ମୋହ ତେଜି ବିଷ୍ଣୁଙ୍କର ଲଭିଲେ ଚରଣ
ସେ ଚରିତ ଶୁଣାଇଲି ହେ କୁରୁ ନନ୍ଦନ

ଇତି ଶ୍ରୀମଦ୍ ଭାଗବତେ ଚତୁର୍ଥ ସ୍କନ୍ଧେ ଧ୍ରୁବ ଚରିତଂ ନାମ ଦ୍ୱାଦଶୋଧ୍ୟାୟଂ ।

*******

## ତ୍ରୟୋଦଶ ଅଧ୍ୟାୟ

ଧ୍ରୁବଙ୍କ ବିଷ୍ଣୁପଦ ଲଭିବା ବୃତ୍ତାନ୍ତ
ମୈତ୍ରେୟଙ୍କଠାରୁ ଶୁଣି ବିଦୁର କୃତାର୍ଥ
ତାଙ୍କ ହୃଦୟରେ ହରି ଭକ୍ତି ହେଲା ଜନ୍ମ
ପୁନର୍ବାର ମୈତ୍ରେୟଙ୍କୁ ସେ ପଚାରିଲେ ପ୍ରଶ୍ନ

### ବିଦୁର ଉବାଚ

ପ୍ରଚେତା ମାନେ କିଏ କାହାର ସେ ସନ୍ତାନ
କେ ବଂଶେ ବିଖ୍ୟାତ କେଉଁଠି କଲେ ଯଜ୍ଞ ମାନ
ଯେ ନାରଦ ଦେବର୍ଷି ପରମ ଭାଗବତ ହରିଙ୍କ
ଦର୍ଶନେ ହୋଇ ଅଛନ୍ତି କୃତାର୍ଥ

ସେ ଭାଗବତ ଉପାସନାର ସହଜ ପଥ
କ୍ରିୟାଯୋଗ ଉପଦେଶ ଦିଅନ୍ତି ସର୍ବତ୍ର
ପ୍ରଚେତାଗଣ ଯେବେଳେ ସ୍ୱଧର୍ମ ପାଳିଣ
କରୁଥିଲେ ଯଜ୍ଞେଶ୍ୱରଙ୍କର ଆରାଧନ

ଭକ୍ତ ପ୍ରବର ନାରଦ ଗାଇ ଧ୍ରୁବଗୁଣ
ଯେଉଁ ଲୀଳାମାନ କରିଲେ ସେହି ବର୍ଣ୍ଣନ
ହେ ମୈତ୍ରେୟ ପୂର୍ଣ୍ଣଭାବେ ଶୁଣାନ୍ତୁ ଆପଣ
ଶୁଣି ବା ନିମିତ୍ତ ମୋର ବଳିଅଛି ମନ

### ମୈତ୍ରେୟ ଉବାଚ

ଧ୍ରୁବମହାରାଜ କରନ୍ତେ ବନକୁ ଗମନ ତାଙ୍କ
ପୁତ୍ର "ଉତ୍କଳ" ପିତୃ ସିଂହାସନ
ସାର୍ବ ଭୌମ ବୈଭବରେ ନୋହିଲେ ମୋହିତ
ସେ ଆଜନ୍ମ ସମଦର୍ଶୀ ଅନାସକ୍ତ ଶାନ୍ତ

ସେ ବିଶ୍ୱକୁ ନିଜଠାରେ ନିଜକୁ ବିଶ୍ୱରେ ଅବସ୍ଥିତ
ଦେଖି ଅଖଣ୍ଡ ଯୋଗାଗ୍ନିରେ
ଅନ୍ତର ବାସନା ମଳ କରିଥିଲେ ଭସ୍ମ
ନିଜର ଆତ୍ମାକୁ ଅବିଚ୍ଛିନ୍ନ ଜ୍ଞାନ ରସ

ସହ ଅଭିନ୍ନ ଆନନ୍ଦମୟ ସର୍ବ ବ୍ୟାପ୍ତ
ପ୍ରଶାନ୍ତ ଜାଣି ପାରିଲେ ନିଜର ସ୍ୱରୂପ
ସେ କୌଣସି ପଦାର୍ଥକୁ ଆତ୍ମାଠାରୁ ଭିନ୍ନ
ଭାବୁନଥିଲେ ସେହି ବିଜ୍ଞାନୀ ଯେ ଜନ

ସେ ମାର୍ଗରେ ସାଧାରଣ ସ୍ଥାନ ମାନଙ୍କରେ
ଅଜ୍ଞ ତାଙ୍କୁ ନିସ୍ତେଜ ଅଗ୍ନିପରି ଦେଖୁଥିଲେ
ମୂର୍ଖ୍ୟ ଅନ୍ଧ ବଧିର ପ୍ରଶାନ୍ତ ଉନ୍ମତ୍ତ
ଜଡ ଭିକ୍ଷୁକ ଜଣା ଯାଉଥିଲେ ସେ ସର୍ବତ୍ର

କୁଳ ବୃଦ୍ଧ ମନ୍ତ୍ରୀ ତାଙ୍କୁ ପାଗଳ ଭାବିଲେ
ସାନ ଭାଇ ପୁତ୍ର ବତ୍ସରକୁ ରାଜା କଲେ
ବତ୍ସରଙ୍କ ପ୍ରିୟ ଭାର୍ଯ୍ୟା ସ୍ୱର୍ବୀଥି ଗର୍ଭରେ
ପୁଷ୍ପାର୍ଣ୍ଣ ତିଗ୍ମକେତୁ ଇଷ ଉର୍ଜ ନାମରେ

ପୁଣି ବସୁ ଜୟ ବୋଲି ଛଅ ପୁତ୍ର ହେଲେ
ଏମାନେ ଅତିବିନୟା ପିତୃପ୍ରିୟ ଥିଲେ
ପୁଷ୍ପାର୍ଣ୍ଣର ପ୍ରଭା, ଦୋଷା, ଦୁଇ ପତ୍ନୀ ଥିଲେ
ପ୍ରଭା, ପ୍ରାତଃ ମଧ୍ୟନ୍ଦିନ ସାୟଂ ପ୍ରସବିଲେ

ପ୍ରଦୋଷ, ନିଶିଥ, ବ୍ୟୁଷ୍ଟ ଏହି ତିନି ପୁତ୍ର
ଦୋଷାଙ୍କର ଗର୍ଭରୁ ହୋଇଲେ ସମ୍ଭୂତ
ବ୍ୟୁଷ୍ଟ ନିଜ ପତ୍ନୀ ପୁଷ୍କରିଣୀଙ୍କ ଗର୍ଭରେ ସର୍ବ
ତେଜା ନାମରେ ତନୟ ଜନ୍ମାଇଲେ

ଆକୂତି ଠାରୁ ଚକ୍ଷୁନାମ ପୁତ୍ର ଜାତ ହେଲା
ଚାକ୍ଷୁଷ ମନ୍ୱନ୍ତରରେ ସେ ମନୁ ହୋଇଲା
ପୁରୁ କୁତ୍ସ ତ୍ରିତ, ଦ୍ୟୁମ୍ନ ଋତ ସତ୍ୟବାନ ବ୍ରତ
ଅଗ୍ନିଷ୍ଟୋମ ଅତି ରାତ୍ର ଯେ ପ୍ରଦ୍ୟୁମ୍ନ

ଶିବି ଓ ଉଲ୍ମୁକ ଏହିପରି ବାର ଜଣ
ଚାକ୍ଷୁଷ ମନ୍ୱନ୍ତର ନାରୀ ଇଳବିଡା କଲେ ଜନ୍ମ
ଅଙ୍ଗ ସୁମନା ଖ୍ୟାତି କ୍ରତୁ ଅଙ୍ଗିରା ଗୟ ଖ୍ୟାତି
ଉଲ୍ମୁକ ପତ୍ନୀ ପୁଷ୍କରିଣୀ ଗର୍ଭୁ ଉତ୍ପତ୍ତି

ଅଙ୍ଗଙ୍କର ରମଣୀ ସୁନୀଥା ଗର୍ଭରେ
ବେଣୁନାମ କ୍ରୁର କର୍ମା ପୁତ୍ର ଜାତ ହେଲେ
ରାଜର୍ଷି ଅଙ୍ଗ ସେ ପୁତ୍ରର ଦୁଷ୍ଟତାରେ
ଅତି ବିଚଳିତ ହୋଇ ରାଜ୍ୟ ତ୍ୟାଗ କଲେ

ମୁନି ବାକ୍ୟ ଅମୋଘ ଅଟେ ବଜ୍ରସମ
ତାଙ୍କ ଅଭିଶାପେ ବେଣୁ ଲଭିଲେ ମରଣ
ରାଜା ଅଭାବରୁ ଦସ୍ୟୁ ପ୍ରଜାଙ୍କୁ ପୀଡିଲେ
ମୁନିଏ ବେଣଙ୍କ ଦକ୍ଷ ଭୁଜକୁ ମନ୍ଥିଲେ

ବିଷ୍ଣୁଙ୍କର ଅଂଶାବତାର ଆଦି ସମ୍ରାଟ
ମହାରାଜ ପୃଥୁ ତହୁଁ ହୋଇଲେ ପ୍ରକଟ

### ବିଦୁର ଉବାଚ

ମହାରାଜ ଅଙ୍ଗ ସୁଶୀଳ ବ୍ରାହ୍ମଣଙ୍କ ଭକ୍ତ
ସ୍ୱଭାବରେ ସାଧୁ ବିଜ୍ଞ ମହାତ୍ମା ବିଖ୍ୟାତ
କିଂପା ତାଙ୍କ ବେଣପରି ପୁତ୍ର ହେଲା ଜାତ
ଯାହାଯୋଗୁଁ ସେ ଦୁଃଖରେ ରାଜ୍ୟ କଲେ ତ୍ୟକ୍ତ

ଦଣ୍ଡଧର ବେଣଙ୍କର କି ଅପରାଧରେ
ବ୍ରହ୍ମନିଷ୍ଠ ମୁନିମାନେ ଅଭିଶାପ ଦେଲେ
କୌଣସି ପାପ ହୋଇଲେ ମଧ ରାଜାଙ୍କର
ତିରସ୍କାର ଯୋଗ୍ୟ ନୁହନ୍ତି ସେ ପ୍ରଜାଙ୍କର

ରାଜା ଅଷ୍ଟ ଲୋକପାଳ ତେଜକୁ ଧରନ୍ତି
ହେ ବ୍ରହ୍ମନ୍ ଆପଣତ ତ୍ରିକାଳଜ୍ଞ ବ୍ୟକ୍ତି
ମୁଁ ଶ୍ରଦ୍ଧାଳୁ ଭକ୍ତ ଅଟଇ ଆପଣଙ୍କର
ଦୟାକରି ଶୁଣାନ୍ତୁ ବେଣଙ୍କ ସମାଚାର

### ମୈତ୍ରେୟ ଉବାଚ

ସେ ରାଜର୍ଷି ଅଙ୍ଗ ଅଶ୍ୱମେଧ ଯଜ୍ଞ କଲେ
ବ୍ରାହ୍ମଣେ ବେଦ ମନ୍ତ୍ରରେ ଆବାହନ କଲେ
ଦେବତା ଯଜ୍ଞ ଭାଗପାଇଁ ନ ଆସିଲେ

ଋତିକମାନେ ବିସ୍ମୟେ ଅଙ୍ଗଙ୍କୁ ପୁଛିଲେ
ଯେ ଘୃତାଦି ଆମେମାନେ କରୁଛୁ ଆହୁତି
ଦେବତାମାନେ ଗ୍ରହଣ ତା କରୁନାହାନ୍ତି
ହେ ରାଜା ହୋମ ସାମଗ୍ରୀ ନୁହଇ ଦୂଷିତ

ଆପଣତ ସଂଗ୍ରହ କରିଛନ୍ତି ଶ୍ରଦ୍ଧାରେ ସହିତ
ମନ୍ତ୍ର ଗାନ ନୁହେଁ ବଳହୀନ ପ୍ରଦୂଷିତ
ଋତ୍ୱିକତ ବ୍ରତ ପାଳିଛନ୍ତି ଯଥୋଚିତ
ଦେବତା ମାନଙ୍କୁ ହେଳା କରାଯାଉ ନାହିଁ

ସେମାନେ ଆସନ୍ତି ନାହିଁ କି କାରଣ ପାଇଁ
ଋତ୍ୱିକଙ୍କ ମାନଙ୍କ କଥା ଶୁଣି ଏ ପ୍ରକାରେ
ଯଜମାନ ଅଙ୍ଗ ଅତି ଉଦାସୀନ ହେଲେ
ଯାଜକମାନଙ୍କ ଠାରୁ ଅନୁମତି ନେଲେ

ମୌନ ବ୍ରତ ଭାଙ୍ଗି ସେମାନଙ୍କୁ ପଚାରିଲେ
ଆବାହନ କଲେ ମଧ ଯଜ୍ଞକୁ ଦେବଗଣ
ନ ଆସନ୍ତି ସୋମପତ୍ର ନ ନିଅନ୍ତି ପୁଣ
ଆପଣମାନେ ସକଳ କହନ୍ତୁ ବିଚାରି
ମୁହିଁ କିଛି ଅପରାଧ ଅଛି କିବା କରି

ସଦ ସ୍ୱତୟ ଉବାଚ

ଏ ଜନ୍ମରେ ତୁମ ଅପରାଧ କିଛି ନାହିଁ
ପୂର୍ବ ଜନ୍ମ ଏକ ଅପରାଧ ପାଇଁ
ଏ ଜନ୍ମେ ଆପଣ ହୋଇଛନ୍ତି ପୁତ୍ରହୀନ
ସୁପୁତ୍ର ପାଇଁ ଉପାୟ କରନ୍ତୁ ଆପଣ

ନିଶ୍ଚୟ ଆପଣଙ୍କର ହୋଇବ କଲ୍ୟାଣ
ପୁତ୍ର ଲାଭ ପାଇଁ ଯଜ୍ଞ କରନ୍ତୁ ଆପଣ
ଯଜ୍ଞେଶ୍ୱର ତୁଷ୍ଟ ହୋଇ ଦେବେ ପୁତ୍ରଦାନ
ପୁତ୍ର ଲାଭ ପାଇଁ କଲେ ବିଷ୍ଣୁ ଆବାହନ

ଦେବେ ଆସି ଯଜ୍ଞ ଭାଗ କରିବେ ଗ୍ରହଣ
ଭକ୍ତ ଯେହୁ ପଦାର୍ଥ ଥାଏ ଇଛା କରି

ତାହାକୁ ସେ ପଦାର୍ଥ ଦିଅନ୍ତି ଶ୍ରୀହରି
ଯେ ହରିଙ୍କୁ ଆରାଧଇ ଯେପରି ଭାବରେ
ଉପାସକୁ ଫଳ ମିଳଇ ସେହି ପ୍ରକାରେ
ରାଜାଙ୍କର ପୁତ୍ର ଲାଭ ହେବ ଯେ ପ୍ରକାରେ

ଋତ୍ୱିକମାନେ ନିଶ୍ଚୟ କରି ହୃଦୟରେ
ପଶୁଙ୍କ ମଧ୍ୟରେ ଯଜ୍ଞ ରୂପେ ଅବସ୍ଥାନ
ଶ୍ରୀବିଷ୍ଣୁଙ୍କୁ ପୁରୋଡାସ କଲେ ସମର୍ପଣ
ଯଜ୍ଞରେ ଆହୁତି କରିବା ମାତ୍ରକେ ପ୍ରଦାନ

ଅଗ୍ନି କୁଣ୍ଡ ମଧ୍ୟୁ ଶୁଭ୍ର ବସ୍ତ୍ର ପରିଧାନ
ସ୍ୱର୍ଣ୍ଣହାର ବିଭୂଷିତ ଏକଇ ପୁରୁଷ
ଏକ ସ୍ୱର୍ଣ୍ଣ ପାତ୍ରେ ଧରିଣ ସିଦ୍ଧ ପାୟସ
ସର୍ବ ସମକ୍ଷରେ ପ୍ରକଟ ହୋଇଲେ ତକ୍ଷଣ

ତାହାଙ୍କୁ ଦେଖି ସମସ୍ତେ ଅତି ଆନନ୍ଦିତ ମନ
ଯାଜକ ଅନୁମତିରେ ନିଜ ଅଞ୍ଜଳିରେ
ରାଜା ଅଙ୍ଗ ସେ ପାୟସ ଗ୍ରହଣ କରିଲେଦ
ନିଜେ ଆଘ୍ରାଣ କରିଣ ପ୍ରସନ୍ନ ଚିତ୍ତରେ

ପ୍ରାଣ ପ୍ରିୟା ପତ୍ନୀକୁ ସେ ପ୍ରଦାନ କରିଲେ
ପୁତ୍ରହୀନ ରାଣୀ ସେହି ପାୟସ ଭକ୍ଷିଲେପତି
ସହବାସେ ଗର୍ଭ ଧାରଣ କରିଲେ
ଯଥା ସମୟରେ ପୁତ୍ର ହୋଇଲା ତାଙ୍କର

ଅପାର ଆନନ୍ଦେ ମଗ୍ନ ହେଲେ ନରବର
ସୁନୀଥା ମୃତ୍ୟୁ ଦେବଙ୍କର ଦୁହିତା ଥିଲେ
ତାଗର୍ଭୁ ଜାତ ବାଳକ ଅଧର୍ମ ବଂଶରେ
ଜନ୍ମି ମାତା ମହ ମୃତ୍ୟୁର ଅନୁଗାମୀ ହେଲେ

ତେଣୁ ବାଲ୍ୟକାଳରୁ ସେ ଅଧାର୍ମିକ ହେଲେ
ସେ ଦୁଷ୍ଟ ଯାଏ ବଣକୁ ଧନୁଶର ଧରି ନିରିହ
ମୃଗଙ୍କୁ ବଧକରେ ବ୍ୟାଧ ପରି
ତାହାଙ୍କୁ ଦେଖିବାମାତ୍ରେ ପୁର ନାରୀ ନର

ବେଣ ଆସିଲା ଆସିଲା କରନ୍ତି ଚିତ୍କାର
ସେ ନିର୍ଦ୍ଦୟ କ୍ରୁର ଖେଳ ପଡିଆରେ
ସମ ବୟସ୍କ ପିଲାଙ୍କୁ ଖେଳିବା କୋଳରେ
ବିନା ଦୋଷେ ପଶୁପରି କରଇ ବିନାଶ ବେଣର

ଦୁଷ୍ଟ ପ୍ରକୃତି ଦେଖି ନରଇଶ
ତାହାର ଶାସନ ପାଇଁ କହିଲେ ପ୍ରୟାଃ
ତେଣୁ ନୃପତିଙ୍କ ଅତି ଦୁଖ ଜାତ ହେଲା
ଯେ ଗୃହୀର ପୁତ୍ର ନାହିଁ ଏହି ସଂସାରେ

ସେ ହରିଙ୍କୁ ପୂଜିଛି ନିଶ୍ଚେ ପୂର୍ବ ଜନ୍ମରେ
ତେଣୁ ସେ କୁପୁତ୍ର ଜନ୍ମିତ ଦୁଃଖ ଭୋଗୁ ନାହିଁ
ଏହା ହିଁ ହରିଙ୍କ କୃପାବର ତାହାପାଇଁ
ଯେ ପୁତ୍ରର କୁକର୍ମରେ ପିତା ମାତାଙ୍କରଯଶ

ନଷ୍ଟ ହୁଏ ବଢ଼ଇ ଅଧର୍ମ ଘୋର
ସମସ୍ତ ଲୋକଙ୍କ ସଙ୍ଗେ ଶତ୍ରୁତା ବଢ଼ଇ ମନରୁ
ଦୁଷ୍ଚିନ୍ତା କେବେ ଦୂର ହୁଏ ନାହିଁ
ଗୃହ ବାସୀ ଅତିଶୟ କ୍ଳେଶକୁ ଭୋଗଇ

କିଏ ବା ଚାହିଁବ ସେଭଳି ପୁତ୍ର ପାଇଁ
କୁପୁତ୍ର ଗୃହକୁ କରେ ନର୍କେ ପରିଣତ
ତେଣୁ ସର୍ବଥା ତାହାକୁ ତେଜିବା ଉଚିତ
ଏପରି ଚିନ୍ତାରେ ରାତ୍ରିରେ ନିଦ୍ରା ନ ହୋଇଲା

ଗୃହସ୍ଥ ଧର୍ମେ ରାଜାଙ୍କ ବିରକ୍ତି ଜନ୍ମିଲା
ସେ ରାତ୍ରି ଅର୍ଦ୍ଧରେ ଧୀରେ ଶଯ୍ୟା ତ୍ୟାଗ କଲେ
ବେଣର ମାତା ଗଭୀର ନିଦ୍ରାରେ ଶୋଇଥିଲେ
ସମସ୍ତଙ୍କ ଅଲକ୍ଷ୍ୟରେ ଗୃହ ତ୍ୟାଗକଲେ

ଏହା ଜାଣି ପ୍ରଜା ପୁରୋହିତ ମନ୍ତ୍ରୀ ତୁଲେ
ବନ୍ଧୁ ବାନ୍ଧବ ସକଳେ ଶୋକାକୁଳ ହେଲେ
ରାଜ୍ୟ ଅରାଜକ ହେବ କିବା ବିଚାରିଲେ
ସେହି ଗୃହସ୍ଥ ହରିଙ୍କୁ ବାହାରେ ଖୋଜଇ

ସେପରି ସେମାନେ ବହାରେ ରାଜଙ୍କୁ ଖୋଜିଲେ
ମାତ୍ର କୌଣସି ସ୍ଥାନରେ ତାଙ୍କୁ ନପାଇଲେ
ସମସ୍ତେ ନିରାଶ ହୋଇ ପୁରକୁ ଫେରିଲେ
ଯହିଁ ମୁନିମାନେ ଏକତ୍ରିତ ହୋଇଥିଲେ ସକଳେ

ନିରାଶ ହୋଇ ପୁରକୁ ଫେରିଲେ
ପ୍ରଜାଏ ପ୍ରଣାମ କରି ଅଶ୍ରୁଳ ନେତ୍ରରେ ରାଜା
ସନ୍ଧାନ ନମିଳିବା ବାର୍ତ୍ତା ଜଣାଇଲେ

ଇତି ଶ୍ରୀମଦ୍ ଭାଗବତେ। ଚତୁର୍ଥ ସ୍କନ୍ଧେ ଦୁଷ୍ଟଚରିତ୍ର ବର୍ଣ୍ଣନେ
ତ୍ରୟୋଦଶଃଧ୍ୟାୟ

*********

## ଚତୁର୍ଦ୍ଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ କହୁଅଛନ୍ତି ଶୁଣ ହେ ବିଦୁର
ଏଥୁ ଅନ୍ତେ ଦୁଷ୍ଟ ବେଣ ନୃପ ସମାଚାର
ମହାରାଜ ଅଙ୍ଗ ରାଜ୍ୟ ଚେଜି ଯିବା ପରେ
ଉପଯୁକ୍ତ ନରପତି ନାହାନ୍ତି ପୃଥ୍ୱୀରେ

ପ୍ରଜାଗଣ ଉଚ୍ଛୁଙ୍ଖଳ ପଶୁଙ୍କ ସମାନ
ଲୋକ ଶୁଭାଙ୍କ୍ଷୀ ଭୃଗୁ ଆଦି ମୁନିଗଣ
ଜନନୀ ସୁନିଥା ଦେବୀଙ୍କର ସମ୍ମତିରେ
ବେଣକୁ ରାଜପଦରେ ଅଭିଷେକ କଲେ

ନିଷ୍ଠୁର ଶାସକ ଥିଲେ ସେ ବେଣୁ ରାଜନ
ଏହା ଜାଣିପାରିଣ ସକଳ ଦସ୍ୟୁଗଣ
ସର୍ପ ରାଜର ଭୟରେ ମୂଷିକ ସମାନ
ଯେ ଯେଉଁଠି କରିଲେ ସର୍ବେ ନିଜକୁ ଗୋପନ

ରାଜ ବିଭୂତିରେ ବେଣ ଉନ୍ମତ୍ତ ହୋଇଲେ
ଅହଙ୍କାରେ ନିଜକୁ ସର୍ବଶ୍ରେଷ୍ଠ ମନେକଲେ
ଐଶ୍ୱର୍ଯ୍ୟ ମଦରେ ସେ ଅନ୍ଧ ହୋଇଲା
ମହାପୁରୁଷମାନଙ୍କୁ ଅପମାନ ଦେଲା

ରଥ ଆରୋହଣ ନିରଙ୍କୁଶ ଗଜ ସମ
ଆକାଶ କଂପାଇ ସର୍ବତ୍ର କରିଲା ଭ୍ରମଣ
ସେ ଘୋଷଣା କଲା ରାଜ୍ୟେ ଡେଙ୍ଗୁରା ବଜାଇ
ଦାନ ହୋମ ଯଜ୍ଞ ବ୍ରାହ୍ମଣ ଯେ କରିବେ ନାହିଁ

ଏପରି ସେ ବନ୍ଦକଲା ସର୍ବ ଧର୍ମ କର୍ମ
ତା ଅତ୍ୟାଚାରେ ଅତିଷ୍ଠ ହେଲ ପ୍ରଜାଗଣ
ଦୁଷ୍ଟ ବେଣର ଏପରି ଦେଖି ଅତ୍ୟାଚାର ମୁନିଏ
ମିଳିତ ହୋଇ କରିଲେ ବିଚାର

ସଙ୍କଟ ଆସିଲା ବୋଲି ସେମାନେ ବୁଝିଲେ
ଦୟା ବଶେ ପରସ୍ପର କଥା ବାର୍ତ୍ତା ହେଲେ
ଦୁଇ ପଟୁ ଜଳୁଥିବା କାଠର ମଝିରେ
ଯେପରି ପିପିଲିକା ପଡନ୍ତି ସଙ୍କଟରେ

ରାଜା ଅତ୍ୟାଚାର ଦସ୍ୟୁ ଗଣ ଅତ୍ୟାଚାର
ମଧ୍ୟରେ ପ୍ରଜାଏ ହେଉଛନ୍ତି ହରବର
ଅରାଜକତା ଭୟରେ ଆମ ଏ ରାଜ୍ୟରେ
ଦୁଷ୍ଟ ହେଲେ ବି ଜଣକୁ ରାଜା କରାଇଲେ

ମାତ୍ର ସେ ବର୍ତ୍ତନ ପ୍ରଜା ଭୟର କାରଣ କିପରି
ସୁଖେ ଚଳିବେ ଅବା ପ୍ରଜାଗଣ
ସର୍ପକୁ ଦୁଧ ପିଆଇବା ପରି ଏହି ବେଣପାଳନ
କାରୀର ହେଲା ଅନର୍ଥ କରଣ

ପ୍ରଜା ରକ୍ଷା ପାଇଁ ଯାକୁ କରିଲୁ ନିଯୁକ୍ତ
ସେ ଆଜି ପ୍ରଜାଙ୍କର ପାନ କଲେ ରକ୍ତ
ଜାଣି ଶୁଣି ବେଣକୁ ଆମେ ରାଜା କରାଇଲୁ
ତାର ପ୍ରତିଫଳ ଏବେ ସାକ୍ଷାତ ପାଇଲୁ

ଲୋକଙ୍କ ଧିକ୍କାର ସେତ ହୋଇଲାଣି ଦଗ୍ଧ
ବୁଝାଇଲେ ଆମ କଥା ଯଦି ନ ମାନିବ
ତେବେ ତାଙ୍କୁ ଆମେ ତେଜେ ଦେବା ଭସ୍ମକରି
ମୁନିଏ ବେଣ ନିକଟେ ଗଲେ ଯା ବିଚାରି

ଚକ୍ରାଧ ପ୍ରକାଶନ କରି ତାଙ୍କୁ ବୁଝାଇଲେ
ପ୍ରିୟ ବଚନରେ ତାକୁ ଏପରି କହିଲେ

### ମୁନୟ ଉବାଚ

ହେ ରାଜନ ଆମ କଥା ସାବଧାନେ ଶୁଣ
ବୃଦ୍ଧି ହେବ ତବ ଆୟୁବଳ କୀର୍ତ୍ତି ଧର୍ମ
ଯେ ମାନବ ମନବାଣୀ ଶରୀର ବୁଦ୍ଧିରେ
ଧର୍ମ ଆଚରଣ କରେ ସେ ବସେ ସ୍ୱର୍ଗରେ

ନିଷ୍କାମ ଭାବରେ ଯେବା କରମ କରଇ ଅନନ୍ତ
ମୁକ୍ତି ପଦକୁ ସେ ଜନ ଲଭଇ
ପ୍ରଜାଙ୍କ କଲ୍ୟାଣ କର ସେହି ଧର୍ମ କର୍ମ
ନାଶ କରିବା ଉଚିତ ନୁହେଁ ହେ ରାଜନ

ଧର୍ମ ନାଶେ ରାଜା ସର୍ବ ଐଶ୍ୱର୍ଯ୍ୟ ହରାଇ
ନାନା ଦୁଃଖ ଯାତନା ଭୋଗ କରି ଥାଇ
ଯେ ରାଜା ଦୁର୍ବୃତ୍ତ ଦସ୍ୟୁ ଚୋର ଦୁଷ୍ଟ ମନ୍ତ୍ରୀ
ପ୍ରଭୃତିଙ୍କଠାରୁ ପ୍ରଜାଗଣଙ୍କୁ ରଖନ୍ତି

ନ୍ୟାୟ ଅନୁକୂଳ ପଥେ ସର୍ବଦା ଚଳନ୍ତି ସେ
ଇହ ପର କାଳର ପ୍ରଶାନ୍ତି ଲଭନ୍ତି
ଯେ ରାଜ୍ୟେ ପ୍ରଜା ବର୍ଣ୍ଣାଶ୍ରମ ସହିତ ସ୍ୱଧମ
ପାଳି ଯଜ୍ଞେଶ ହରିଙ୍କୁ କରନ୍ତି ଅର୍ଚ୍ଚନ

ନିଜର ଆଜ୍ଞା ପାଳଙ୍କ ସେହି ରାଜା ପତ
ଜନାର୍ଦ୍ଦନ ଜଗଦୀଶ ସ୍ତୁଦ ଏକୟା କରନ୍ତି
ସେ ବିଶ୍ୱାତ୍ମା ରକ୍ଷକ ସକଳ ଜୀବର
ବ୍ରହ୍ମାଦି ଜଗଦୀଶଙ୍କ ଅଟନ୍ତି ଈଶ୍ୱର

ସେ ପ୍ରସନ୍ନ ହେଲେ କିଛି ଦୁର୍ଲ୍ଲଭ ହୁଏ ନାହିଁ
ଏହା ବିଚାର କର ହୃଦେ ଆହେ ନରସାଇଁ
ବ୍ରାହ୍ମଣମାନେ କରିଲେ ଯଜ୍ଞ ଅନୁଷ୍ଠାନ
ପୂଜାରେ ସନ୍ତୁଷ୍ଟ ହୋଇ ପ୍ରଭୁ ଭଗବାନ

ଶ୍ରୀହରିଙ୍କର ଅଂଶ ସ୍ୱରୂପ ଦେବଗଣ
ଆପଣଙ୍କୁ କାମ୍ୟ ଫଳ କରିବେ ପ୍ରଦାନ
ଯଜ୍ଞାଦି ଧର୍ମରେ ହେଳା କରି ଆହେ ବୀର
ନକରନ୍ତୁ ଦେବତା ମାନଙ୍କୁ ତିରସ୍କାର

ସେ ଲୋକ ଲୋକପାଳ ଯଜ୍ଞ ନିୟନ୍ତା ଅଟନ୍ତି
ବେଦତ୍ରୟୀ ଦ୍ରବ୍ୟ ତପ ସ୍ୱରୂପ ବୋଲାନ୍ତି
ପ୍ରଜାମାନେ ଆପଣଙ୍କ ଉନ୍ନତି ଇଛାରେ
ହରିଙ୍କୁ ପୂଜା କରନ୍ତି ବିବିଧ ଯଜ୍ଞରେ

ସେମାନଙ୍କ ପ୍ରତି ସଦା ଅନୁକୂଳ ମତ
ଆହେ ବୀର ଆପଣଙ୍କ ରଖିବା ଉଚିତ

### ବେଣ ଉବାଚ

ବେଣ କହିଲେ-ମହାମୂର୍ଖ ତୁମ୍ଭେମାନେ
ଅଧର୍ମକୁ ଧର୍ମ ବୋଲି ଭାବୁଛ ଅଜ୍ଞାନେ
ମୁ ଜୀବିକା ପ୍ରଦାନକାରୀ ପତି ଯେ ଅଟଇ
ଅନ୍ୟ ପତିଙ୍କୁ ସେବୁଛ ମତେ ଛାଡ଼ି ଦେଇ

ନୃପତି ଅଟଇ ସାକ୍ଷାତ ପରମଈଶ୍ୱର
ଯେ ଅଜ୍ଞାନରେ ତାଙ୍କୁ କରେ ଅନାଦର
ଇହ ପରକାଳରେ ସେ ସୁଖ ନ ଲଭଇ
ନାନା ଦୁଃଖ କ୍ଲେଶ ସେ ଜୀବନେ ଭୋଗଇ

ଯାହାଙ୍କ ଠାରେ ଏପରି ଭକତି ତୁମର ସେହରି
କିଏ କେଉଠି ବାସ ତାହାଙ୍କର
ଯଥା କୁଳଟା ବିବାହିତ ସ୍ୱାମୀ ତ୍ୟାଗକରି
ଅନ୍ୟ ପୁରୁଷକୁ ପ୍ରେମ କରେ ସେହିପରି

ସେହିପରି ଅଟେ ତୁମ୍ଭମାନଙ୍କର କଥା
ଭାବି ଭାବି ହୃଦେ ମୋର ଜନମଇ ବ୍ୟଥା
ବିଷ୍ଣୁ ବ୍ରହ୍ମା ଶିବ ଇନ୍ଦ୍ର ବାୟୁ ଅଗ୍ନି ଯମ
ମେଘ କୁବେର ଚନ୍ଦ୍ରମା ତପନ ବରୁଣ

ଏମାନଙ୍କ ଛଡା ଶାପ ବରଦାନ ସମ
ରହି ଅଛନ୍ତି ଯେତେ ସର୍ବ ଦେବଗଣ
ସେମାନେ ସମସ୍ତେ ରାଜା ଶରୀରେ ବସନ୍ତି
ଦେବତାମାନେ ରାଜାଙ୍କ ଅଂଶ ଯେ ଅଟନ୍ତି

ମତେ ଅର୍ଚ୍ଚନାକର ଆହେ ବ୍ରାହ୍ମଣ ଗଣ
ମୋ ଚରଣେ ବଳି ପୂଜା କର ସମର୍ପଣ
ବୁଦ୍ଧି ବିପରୀତ ହେତୁ ବେଣ ପାପ ଅରଜିଲା
କୁସଙ୍ଗରେ ପଡି ସେ କୁମାର୍ଗରେ ଗମିଲା

ଧୀରେ ଧୀରେ ତାର ପୁଣ୍ୟ ବଳ ହେଲା କ୍ଷୀଣ
ମୁନିମାନଙ୍କ କଥାରେ ନ ହେଲା ସେ ଧ୍ୟାନ
ନିଜକୁ ବିଚାରି ଅତିଶୟ ବୁଦ୍ଧିମାନ
ପୂଜ୍ୟ ମୁନି ମାନଙ୍କୁ ସେ ଦେଲା ଅପମାନ

ନିଜର କଲ୍ୟାଣ ମାର୍ଗ ହେବା ଦେଖି ବ୍ୟର୍ଥ
ବେଣ ପ୍ରତି ମୁନିଗଣ ହୋଇଲେ କୁପିତ
ଏ ଯଦି କିଛି ଦିନ ଜୀବିତ ରହିବ
ସଂସାରକୁ ନିଶ୍ଚୟ ଏ ଭସ୍ମ କରିଦେବ

ଏହି ପାପୀ ସିଂହାସନ ଅଯୋଗ୍ୟ ଅଟଇ
ସାକ୍ଷାତରେ ଶ୍ରୀହରିଙ୍କୁ ଏ ନିନ୍ଦା କର
ଯାହାଙ୍କ କୃପାରେ ଏ ଦୁଷ୍ଟ ଲଭିଛି ଐଶ୍ୱର୍ଯ୍ୟ
ସେ ହରିଙ୍କୁ ନିନ୍ଦା କରୁଅଛି ଏ ନିର୍ଲଜ

ବେଣକୁ ମାରିବା ପାଇଁ ନିଶ୍ଚିତ ହୋଇଲେ
ମୁନିମାନେ ଗୁପ୍ତ କ୍ରୋଧ ପ୍ରକାଶ କରିଲେ
ଶ୍ରୀହରିଙ୍କ ନିନ୍ଦାରେ ସେତ ଜୀବନ୍ମୃତି ଥିଲା
ମୁନି ମାନଙ୍କ ହୁଙ୍କାରେ ପର ମୃତ୍ୟୁ ହେଲା

ଶାପ ଦେଇ ମୁନିମାନେ ଆଶ୍ରମକୁ ଗଲେ
ବେଣ ଜନନୀ ସୁନିଥା ମନ୍ତ୍ରାଦି ବଳରେ
ଅନ୍ୟାନ୍ୟ ଯୋଗରେ ବେଣ ଶବ ରକ୍ଷାକଲେ
ଏଥୁ ଯାହା ହେଲା ଶୁଣି ଚିତ୍ତ ସ୍ଥିର

ମୁନିମାନେ ସରସ୍ୱତୀ ପବିତ୍ର ଜଳରେ
ସ୍ନାନାଦି ସାରିଣ କୁଳେ ହରିଚର୍ଚ୍ଚା କରୁଥିଲେ
ଭୟଙ୍କର ଉପଦ୍ରବେ ଲୋକଙ୍କ ମଧ୍ୟରେ ଆତଙ୍କ
ଦେଖି ପରସ୍ପର ବିଚାରିଲେ

ଆଜିକାଲି ରକ୍ଷକ ନାହିଁ ପୃଥିବୀରେ
ପ୍ରଜାଙ୍କ ଅଶୁଭ ଦସ୍ୟୁଙ୍କ ପ୍ରାଦୁର୍ଭାବରେ
ଏହା ବିଚାରିବା ବେଳେ ଋଷିଏ ଦେଖିଲେ
ଚୋର ଦସ୍ୟୁ ଧାଉଁଛନ୍ତି ଚାରି ପାଖୁଶରେ

ସେମାନଙ୍କ ପଦାଘାତେ ଉଡଇ ଯେ ଧୂଳି
ଆକାଶ ପଥେ ଅଦୃଶ୍ୟ ହେଲେ ଅଂଶୁମାଳୀ
ସେମାନେ ବୁଝିଲେ ବେଣଙ୍କ ମୃତ୍ୟୁପରେ
ଅରାଜକତା ବ୍ୟାପିଛି ଆଜି ଏ ରାଜ୍ୟରେ

ରାଜ୍ୟେ ରାଜ ଶକ୍ତି ହୋଇବାରୁ ବଳହୀନ
ଚୋର ଦସ୍ୟୁ ପ୍ରଭାବ ବଢ଼େ ଦିନୁ ଦିନ
ପ୍ରଜାଙ୍କ ଧନ ସଂପଦ ଲୁଟି ନେଉଛନ୍ତି
ପ୍ରଭୁତ୍ୱ ନିମିତ୍ତ ହାଣା ହାଣି ହେଉଛନ୍ତି

ସମର୍ଥ କ୍ଷତ୍ରିୟମାନେ ଉପଦ୍ରବ ନିବାରଣନ
କରିଣ ରହି ଅଛନ୍ତି ଉଦାସୀନ
ବ୍ରାହ୍ମଣ ଶାନ୍ତ ସ୍ୱଭାବ ସମଦର୍ଶୀ ହୋଇ
ଯଦି ସେମାନଙ୍କୁ ସଦା ଉପେକ୍ଷା କରଇ

ତେବେ ଭଗ୍ନ କଳସୀରୁ ଜଳ ବହିରସମ
ସେମାନଙ୍କ ତପ ଶକ୍ତି ହୋଇଯାଏ କ୍ଷୀଣ
ରାଜର୍ଷି ଅଙ୍ଗଙ୍କ ବଂଶ ରହିବା ଉଚିତ
ଏ ବଂଶେ ବହୁ ହରିଭକ୍ତ ହୋଇଛନ୍ତି ଜାତ

ଏମାନେ ସମସ୍ତେ ଥିଲେ ଅମୋଘ ଶକ୍ତିମାନ
ନ୍ୟାୟ ଧର୍ମରେ ପାଳୁଥିଲେ ପ୍ରଜାଗଣ
ଏସବୁ ବିଚାର ସ୍ଥିର କରି ମୁନିଗଣ
ମୃତ ରାଜାଙ୍କ ଜଙ୍ଘକୁ କରିଲେ ମନ୍ଥନ

ତହୁଁ ଏକ ବାମନ ପୁରୁଷ ହେଲା ଜନ୍ମ
ସେ ପୁରୁଷ ଥିଲା କାକ ପରି କୃଷ୍ଣ ବର୍ଣ୍ଣ
ଖର୍ବ ଦେହ ଅତି କ୍ଷୁଦ୍ର ତା ହସ୍ତ ଚରଣ
ହନୁ ହାଡ ଅତି କ୍ଷୁଦ୍ର ରକ୍ତିମ ନୟନ

ନିମ୍ନ ନାସିକାରେ ତାର କେଶ ତାମ୍ର ବର୍ଣ୍ଣ
ଅତି ଦୈନ୍ୟ ନମ୍ରହୋଇ ସେ କରିଲା ପ୍ରଶ୍ନ
ମୁ କି କର୍ମ କରିବି ଆଜ୍ଞା ଦିଅ ବର୍ତ୍ତମାନ
ସେ ପୁରୁଷକୁ 'ନିଷିଦ' କହିଲେ ମୁନିଗଣ

ତେଣୁ ସେ ପୁରୁଷ 'ନିଷିଦ' ନାମକୁ ବହିଲେ
ସେ ଜନ୍ମ ମାତ୍ରେ ବେଣଙ୍କର ପାପ ନେଇଥିଲେ
ପ୍ରାଣୀ ହିଂସା ଚୌର୍ଯ୍ୟ ଲୁଣ୍ଠନ ପାପେ ରତ ହେଲେ
ନଗରେ ତେଜି ବନ ପର୍ବତେ ରହିଲେ

ଅପୂର୍ବ ବେଣ ଅଖ୍ୟାନ ମନ ଦେଇ ଶୁଣ ସୁଜନ
ବେଣପରି ପାପ ନକର ଭଣଇ ଦକ୍ଷ ଧନେଶ୍ୱର

ଇତି ଶ୍ରୀମଦ୍ ଭାଗବତେ ଚତୁର୍ଥ ସ୍କନ୍ଧେ ପୃଥୁ ଚରିତ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

*******

## ପଞ୍ଚଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ କହିଲେ ଆହେ ଭକ୍ତ ବିଦୁର
ସାବଧାନ ହୋଇ ଶୁଣ ଆନ ସମାଚାର
ଏହାପରେ ବ୍ରାହ୍ମଣମାନେ ସେହି ପୁତ୍ର ହୀନ
ବେଣଙ୍କର ଭୁଜଦ୍ୱୟ କରିଲେ ମନ୍ଥନ

ତହିଁରୁ ଏକ ସ୍ତ୍ରୀ ଏକ ପୁରୁଷ ଜନମ
ଏ ବିଷୟ ଦେଖି ବ୍ରହ୍ମବାଦୀ ଋଷିଗଣ
ଭଗବାନ ଅଂଶ ଜାଣି ପ୍ରସନ୍ନ ହୋଇଲେ ଅନନ୍ୟ
ଭକ୍ତିରେ ହୃଦ ମଧ୍ୟେ ବିଚାରିଲେ

### ଋଷିୟ ଉବାଚ

ନିଶ୍ଚୟ ଏହି ପୁରୁଷ ବିଷ୍ଣୁ ଭଗବାନ
ହରି ଭୁବନ ପାଳିନୀ କଳାରୁ ଜନମ
ଏହି ସ୍ତ୍ରୀ ସେ ପରମ ପୁରୁଷ ହରିଙ୍କର
ଅନ୍ତରଙ୍ଗା ଶକ୍ତି ଲକ୍ଷ୍ମୀ ଦେବୀ ଅବତାର

ଏହି ପୁରୁଷ ସୁଯଶ ବିସ୍ତାର କରିବେ
ଯଶସ୍ୱୀ ପୃଥୁ ନାମରେ ସମ୍ରାଟ ହୋଇବେ
ରାଜାଙ୍କ ମଧ୍ୟରେ ଏ ଯେ ହୋଇବେ ପ୍ରଥମ
ଏ ଯେ ଶୋଭନ ଦର୍ଶନା ଭୂଷଣ ଭୂଷଣ

ସ୍ୱରୂପି ସମ ଗୁଣବତୀ କନ୍ୟା 'ଅର୍ଚ୍ଚି' ନାମ
ପୃଥୁଙ୍କୁ ପତି ରୂପରେ କରିବେ ବରଣ
ଏ ପୁରୁଷୋତ୍ତମ ସର୍ବ ଲୋକ ରକ୍ଷା ପାଇଁ
ସାକ୍ଷାତ ବିଷ୍ଣୁ ଅଂଶରେ ଛନ୍ତି ଜନ୍ମ ହୋଇ

ଏ ରମଣୀ ବିଷ୍ଣୁ ଅନୁରାଗିନୀ ସନାତନୀ
କମଳାଙ୍କର ଅଂଶରେ ଅଛନ୍ତି ଯେ ଜନ୍ମି

### ମୈତ୍ରେୟ ଉବାଚ

ବ୍ରାହ୍ମଣମାନେ କରିଲେ ପୃଥୁଙ୍କର ସ୍ତୁତି
ଗୁଣଗାନ କଲେ ସେଠାରେ ଗନ୍ଧର୍ବପନ୍ତି
ସିଦ୍ଧ ସାଧ୍ୟମାନେ କଲେ କୁସୁମ ବର୍ଷଣ ଆନନ୍ଦେ
ନୃତ୍ୟ କରିଲେ ଅପସରା ଗଣ

ଦୁନ୍ଦୁଭି ମୃଦଙ୍ଗ ବାଜିଲା ଯେ ଆକାଶରେ
ଦେବ ଋଷି ପିତର ଆସିଣ ପ୍ରବେଶିଲେ
ଜଗତ୍‌ଗୁରୁ ବ୍ରହ୍ମା ହର ଦେବେଶ ସଙ୍ଗରେ
ଆସି ପ୍ରବେଶିଲେ ତହିଁ ଆନନ୍ଦିତ ହୃଦରେ

ବେଣ ପୁତ୍ର ପୃଥୁଙ୍କର ଦକ୍ଷିଣ ହସ୍ତରେ
ବିଷ୍ଣୁ ହସ୍ତରେଖା ପୁଣି ଚରଣ ଦ୍ୱୟରେ
ପଦ୍ମ ଚିହ୍ନ ଦେଖି ହରିଙ୍କ ଅଂଶ ଜାଣିଲେ ନିଜକୁ
ସେମାନେ ଅତି କୃତାର୍ଥ ମଣିଲେ

ସମଗ୍ର ସାମଗ୍ରୀମାନ ସଂଗ୍ରହ କରିଲେ
ବ୍ରାହ୍ମଣମାନେ ଅଭିଷେକ ଆୟୋଜନ କଲେ
ସମୁଦ୍ର ସରିତ ପର୍ବତ ପକ୍ଷୀ ମୃଗ
ଗୋଜାତି ପୃଥିବୀ ପାତାଳ ଯେ ସ୍ୱର୍ଗ

ପ୍ରାଣୀମାନେ ଉପହାର କରିଲେ ପ୍ରଦାନ
ନାନା ଆଭୂଷଣେ ମଣ୍ଡିତ ସେ ପୃଥୁ ରାଜନ
ବିଧି ଅନୁସାରେ ରାଜ୍ୟେ ଅଭିଷିକ୍ତ ହେଲେ
ସୁସଜ୍ଜିତା ମହାରାଣୀ 'ଅର୍ଚ୍ଚି'ଙ୍କ ସଙ୍ଗରେ

ପୃଥୁନୃପ ଦ୍ୱିତୀୟ ଅଗ୍ନିପରି ଶୋଭିଲେ
ଭାଟ ମାନେ ମିଳି ତହିଁ ଜୟଧ୍ୱନି କଲେ
କୁବେର ଅର୍ପିଲେ ତାଙ୍କୁ ସ୍ୱର୍ଣ୍ଣ ସିଂହାସନ ଚନ୍ଦ୍ରପରି
ଧବଳ ଛତ୍ର ଦେଲେ ଯେ ବରୁଣ

ସେହି ଛତ୍ରରୁ ସୁଶୀତଳ ସଲିଳ ଝରଇ
ଦର୍ଶକ ମନରେ ବିସ୍ମୟ ଭାବନା ସ୍ୱଜଇ
ବାୟୁ ଅରପିଲେ ତାଙ୍କୁ ଦୁଇଟି ଚାମର
ସରସ୍ୱତୀ ଦେବୀ ଦେଲେ ମନୋହର ହାର

ଧର୍ମ କୀର୍ତ୍ତିମୟୀ ମାଳା କରିଲେ ପ୍ରଦାନ
ଭଗବାନ ବିଷ୍ଣୁ ଦେଲେ ଚକ୍ର ସୁଦର୍ଶନ
ମୁକୁଟ ପ୍ରଦାନ କଲେ ଦେବ ମଘବାନ
ଦମନ ନିମିତ୍ତ ଦଣ୍ଡ ଦେଲେ ଜନ୍ତୁରାଣ

ଲକ୍ଷ୍ମୀଦେବୀ ସମର୍ପିଲେ ଅଚଳା ସଂପତ୍ତି ବର୍ଣ୍ଣି
ନପାରିବେ ତାହା ଦେବେ ସରସ୍ୱତୀ
ଦଶ ଚନ୍ଦ୍ର ଚିହ୍ନ ଯୁକ୍ତ ଦେଲେ ହର
ତେଜୋମୟ ବାଣ ଦେଲେ ଦେବ ଦିବାକର

ଶତ ଚନ୍ଦ୍ର ଚିହ୍ନ ଯୁକ୍ତ ଢ଼ାଲ ଦେଲେ ଯେ ଅମ୍ବିକା
ପୃଥ୍ୱୀ ଦେବୀ ଯୋଗମୟୀ ଦୁଇଟି ପାଦୁକା
ଅମୃତମୟ ଘୋଟକ ଦେଲେ ନିଶାକର
ବିଶ୍ୱକର୍ମା ସମର୍ପିଲେ ସ୍ୟନ୍ଦନ ସୁନ୍ଦର

ଅଗ୍ନି ଦେଲେ ଗୋଶୃଙ୍ଗ ନିର୍ମିତ ଶରାସନ
ଅମୋଘ ଶୁଭଆଶୀଷ ଦେଲେ ଋଷିଗଣ
ନିତ୍ୟ ନୂତନ ପୁଷ୍ପ ମାଲ୍ୟା ଦିଗ ଦେବତା ଗଣ
ଅନ୍ତର୍ଦ୍ଧାନ ଶକ୍ତି ନୃତ୍ୟ ଗାୟନ ବାଦନ

ଆକାଶ ବିହାରୀ ସିଦ୍ଧ ଗନ୍ଧର୍ବ ଚାରଣ
ନାନା ଉପହାର ମାନ କରିଲେ ପ୍ରଦାନ
ରଥମାର୍ଗ ଶଙ୍ଖ ନିଧି ସରିତ ପର୍ବତ
ସୂତ ମାଗଧ ବନ୍ଦୀ ସ୍ତୁତି କରିବା ନିମିତ୍ତ

ଆନନ୍ଦେ ଆସି ସେଠାରେ ହେଲେ ଉପସ୍ଥିତ
ସ୍ତୁତି ଆରମ୍ଭିଲେ ହୋଇ ଆନନ୍ଦିତ ଚିତ୍ତ
ପୃଥୁ ସେମାଙ୍କର ଅଭିପ୍ରାୟକୁ ଜାଣିଲେ
ସେ ମେଘପରି ଗମ୍ଭୀର ବାଣୀରେ କହିଲେ

**ପୃଥୁରୁବାଚ**

ଆହେ ସୌମ୍ୟ ମଗଧ ସୂତ ବନ୍ଦୀ ଜନ
ପୃଥ୍ୱୀ ଅପ୍ରକାଶିତ ମୋଗୁଣ ବର୍ତ୍ତମାନ
ମତେ ସ୍ତୁତି କରିବ କେଉଁ ଗୁଣ ଆଶ୍ରୟରେ
ତୁମେ ଅନ୍ୟ କାହାର ସ୍ତୁତି ଗାଅ ଅନ୍ୟଠାରେ

ଭବିଷ୍ୟତେ ମୋଗୁଣ ଯେବେ ପ୍ରକାଶିତ ହେବ
ତୁମ୍ଭେମାନେ ତାହା ଇଛା ଅନୁସାରେ ଗାଇବ
ଶ୍ରୀ ହରିଙ୍କ ଗୁଣଗାନ କରନ୍ତୁ କୀର୍ତ୍ତନ
ସଭ୍ୟ ଅର୍ବାଚୀନ ସ୍ତୁତି ନ କରନ୍ତି ଗାନ

ମହତ ଗୁଣଧାରଣେ ହୋଇଲେ ବି କ୍ଷମ
ସମ୍ଭାବିତ ଗୁଣ ଆଶ୍ରୟରେ ବୁଦ୍ଧିମାନ
ନ କରାଇଥାନ୍ତି କେବେ ଆତ୍ମ ମୃତ୍ୟୁ
ଭବିଷ୍ୟତ ସମ୍ଭାବିତ ଗୁଣର ସ୍ତବନ

ପ୍ରକୃତରେ ହୁଏ ଉପହାସର କାରଣ
ପ୍ରକୃତରେ ହୁଏ ଉପହାସର କାରଣ
ଏହା ନ ବୁଝିଣ କେବେ ହେଁ ମନ୍ଦ ବ୍ୟକ୍ତି
ଅଯଥାରେ ଆସି ନାନା ସ୍ତୁତି ଯେ କରନ୍ତି

ଲଜ୍ଜାଶୀଳ ଉଦାର ସୁପୁରୁଷ କେହି
ନିଜ ନିତ୍ୟ ପରାକ୍ରମେ ସୁଖୀ ନ ହୁଅଇ
ଲୋକ ବିଖ୍ୟାତ ସମର୍ଥ ପୁରୁଷ ସେପରି ନିଜର
ସ୍ତୁତିକୁ ଭାବଇ ଯେ ନିନ୍ଦା ପରି

ହେ ସୂତ ଗଣ ମୁ କୌଣସି ଶ୍ରେଷ୍ଠ କର୍ମରେ
ଅଦ୍ୟାପି ଖ୍ୟାତି ଅର୍ଜି ନାହିଁ ଏହି ସଂସାରେ
ତେଣୁ କିପରି ବା ମୁହିଁ ଅଜ୍ଞ ବ୍ୟକ୍ତି ସମ
କରାଉଅଛି ନିଜର ପ୍ରଶସ୍ତି ଗାୟନ

ଇତି ଶ୍ରୀମଦ୍ ଭାଗବତେ ଚତୁର୍ଥ ସ୍କନ୍ଧେ ପୃଥୁ ଚରିତ ନାମ ପଞ୍ଚଦଶୋଽଧ୍ୟାୟ ।

********

## ଷୋଡଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ପୃଥୁଙ୍କ ବଚନାତ କରି ଆସ୍ୱାଦନନ
ସୂତ ପ୍ରଭୃତି ଗାୟକ ହୋଇଲେ ପ୍ରସନ୍ନ
ପୁନଶ୍ଚ ପୂଜ୍ୟ ମୁନି ମାନଙ୍କ ପ୍ରେରଣାରେ
ମହାରାଜ ପୃଥୁଙ୍କର ସ୍ତୁତି ଗାନ କଲେ

ଆପଣ ସାକ୍ଷାତ ଦେବଶ୍ରେଷ୍ଠ ନାରାୟଣ
ମାୟା ପ୍ରଭାବରେ ହୋଇଛନ୍ତି ଅବତୀର୍ଣ୍ଣ
ତବ ମହିମା ବର୍ଣ୍ଣନେ ଆମେ ଅସମର୍ଥ
ବେଣଙ୍କ ମୃତ ଅଙ୍ଗରୁ ଆପଣ ଯେ ଜାତ

କରିବାକୁ ଆପଣଙ୍କ ପୌରୁଷ ବର୍ଣ୍ଣନ
ବ୍ରହ୍ମାଦି ବାଚସ୍ପତିଙ୍କ ମତି ହେବ ଭ୍ରମ
ତଥାପି ଆଦର କରି କଥା ଅମୃତରେ
ମୁନି ମାନଙ୍କର ଉପଦେଶ ପ୍ରେରଣାରେ

ପରମ ପ୍ରଶଂସନୀୟ ଆପଣଙ୍କ କର୍ମ
ବିସ୍ତାରିଣ ଗାଇବାକୁ ଇଚ୍ଛା ଅଛି ଆମ
ଆପଣ ସାକ୍ଷାତ ହରିଙ୍କର କଳାଅବତାରତେଣୁ
ଆପଣଙ୍କ କୀର୍ତ୍ତି ଅତ୍ୟନ୍ତ ଉଦାର

ଧର୍ମଧାରୀ ମଧ୍ୟେ ଶ୍ରେଷ୍ଠ ସେ ପୃଥୁରାଜନ
ପୃଥିବୀ ମଧ୍ୟରେ ସ୍ୱଧର୍ମ କରି ପ୍ରବର୍ତ୍ତନ
ଧର୍ମର ମର୍ଯ୍ୟଦା ସଦା ଅତୁଟ ରଖିବେ
ଧର୍ମ ଦ୍ରୋହୀ ମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବେ

ସେ ପୃଥୁ ମହାରାଜ ସମୟ ସମୟରେ ପ୍ରଜା
ପାଳନ ପୋଷଣ ଅନୁରଞ୍ଜନରେ
ଭିନ୍ନ ଭିନ୍ନ ଲୋକପାଳ ମୁରତି ଧରିବେ
ସ୍ୱର୍ଗ ମର୍ତ୍ତ୍ୟ ଲୋକ ହିତ ସାଧନ କରିବେ

ସୂର୍ଯ୍ୟପରି ପ୍ରତାପୀ ସମଦର୍ଶୀ ହେବେ
ପୃଥିବୀରେ ନିଜ ଯଶ ବିସ୍ତାର କରିବେ
ଯେପରି ସୂର୍ଯ୍ୟ ଜଳକୁ କରିଣ ଶୋଷଣ ଯଥା
ସମୟରେ ତାହା କରନ୍ତି ବର୍ଷଣ

ତଥା ପୃଥୁ ଧନରାଶି ସଞ୍ଚୟ କରିଣ
ପ୍ରଜା ହିତ ପାଇଁ ସେ କରିବେ ବିତରଣ
ପୃଥୁନୃପ ଅତିଶୟ ଦୟାଳୁ ହୋଇବେ
ଆର୍ତ୍ତ ଦରିଦ୍ରର ଦୁଃଖ ଯାତନା ହରିବେ

ଦରିଦ୍ର ବ୍ୟକ୍ତିର ଅନୁଚିତ ବ୍ୟବହାର
ପୃଥିବୀ ପରି ସହିବେ ପୃଥୁ ନୃପବର
ଯଦି ଅନାବୃଷ୍ଟି ଶଙ୍କଟ ହୋଇବ ରାଜ୍ୟରେ
ଇନ୍ଦ୍ରପରି ଜଳବର୍ଷି ପ୍ରଜାଙ୍କୁ ରଖିବେ

ସୁଧାମୟ ମୁଖଚନ୍ଦ୍ର ସୁସ୍ମିତ ହାସ୍ୟରେ
ଲୋକଙ୍କୁ ଆନନ୍ଦ ଦେବେ ସେ ପ୍ରେମ ଦୃଷ୍ଟିରେ
ଏହାଙ୍କର ଉପକାର ନ ବୁଝିବେ
ନିଷ୍ପତ୍ତି ମାନ ପୂର୍ବରୁ କେହି ନଜାଣିବେ

ସାଗର ପରି ଗମ୍ଭୀର ଏହାଙ୍କ ସ୍ୱଭାବ
ଧନ ସଂପଦ ସର୍ବଦା ସୁର ରକ୍ଷିତ ହେବ
ଅନନ୍ତ ମହାମ୍ନୀ ସୁଗୁଣର ଆଶ୍ରୟରେ
ବରୁଣ ସମାନ ହେବେ ମହୀମଣ୍ଡଳରେ

ବେଣ ରୂପ ଅରଣୀରୁ ଜାତ ଅଗ୍ନିସମ
ପ୍ରକାଶିତ ପୃଥୁନୃପ ଅନନ୍ତ ମହୀମ
ଶତ୍ରୁଙ୍କ ପାଇଁ ଦୁଃସହ ଦୁର୍ଦ୍ଧର୍ଷ ହୋଇବେ
ତାଙ୍କ ପୌରୁଷରେ ଶତ୍ରୁ ଦୂରରେ ରହିବେ

କୌଣସି ପରାଭବ ସେ ନ ପାରିବେ ଦେଇ
ତାଙ୍କ ପରାକ୍ରମେ ଶତ୍ରୁ ଭୀତ ତ୍ରସ୍ତ ହୋଇ
ପ୍ରାଣବାୟୁ ସମ ଶରୀର ମଧ୍ୟରେ ପ୍ରାଣୀର
ରହି ଦେଖି ମଧ ସେହି ସକଳ ବ୍ୟାପାର

ସର୍ବଦା ଉଦାସୀନର ହଇ ଯେଉଁପରି
ପୃଥୁ ଗୁପ୍ତଚର ମାନଙ୍କ ଦ୍ୱାର ସେହିପରି
ଜାଣି ମଧ ଗୁପ୍ତ ଓ ପ୍ରକାଶ୍ୟ କର୍ମମାନ ନିଜ
ନିନ୍ଦା ପ୍ରଶଂସାରେ ଥାନ୍ତି ଉଦାସୀନ

ପୃଥୁନୃପ ସର୍ବଦା ଧର୍ମ ମାର୍ଗେ ସ୍ଥିର ଥାନ୍ତି
ବୁଦ୍ଧି ବିବେକ ବିଚାରେ ପ୍ରଜାଙ୍କୁ ପାଳନ୍ତି
ଦଣ୍ଡଯୋଗ୍ୟ ଶତ୍ରୁ ପୁତ୍ରକୁ ବି ନ ଦଣ୍ଡନ୍ତି
ଦୋଷ ଦେଖି ନିଜ ପୁତ୍ରଙ୍କୁ ଶାସ୍ତି ଦେଇଥାନ୍ତି

ସୂର୍ଯ୍ୟ ଦେବତା ମାନସ ପର୍ବତ ପର୍ଯ୍ୟନ୍ତ
ଯେତେଦେଶ କିରଣେ କରିବେ ପ୍ରକାଶିତ
ସେହି ସକଳ ନିଷ୍କଣ୍ଟକ ରାଜ୍ୟମାନ
ପୃଥୁ ନିଜ ପରାକ୍ରମେ କରିବେ ଶାସନ

ନିଜର କାର୍ଯ୍ୟରେ ଲୋକଙ୍କୁ ସେ ସୁଖ ଦେବେ
ସଦା ପ୍ରଜାମାନଙ୍କର ଚିତ୍ତକୁ ରଞ୍ଜିବେ
ମନୋରଞ୍ଜନ କର୍ମ ଯୋଗୁ ପ୍ରଜା ସର୍ବେ
ଏହାଙ୍କୁ ଯେ ରାଜା ବୋଲି ପ୍ରଶଂସା କରିବେ

ଦୃଢ଼ ସଂକଳ୍ପ ସତ୍ୟପ୍ରତିଜ୍ଞ ବିପ୍ରଭକ୍ତ
ବୃଦ୍ଧଜନ ସେବାକାରୀ ଅପ୍ରମତ୍ତ ଚିତ୍ତ
ପ୍ରାଣୀମାନଙ୍କ ମାନଦ ଦୀନ ଦୟାଶୀଳ
ବ୍ରହ୍ମବାଦୀଙ୍କ ସେବକ ଶରଣ୍ୟ ବତ୍ସଳ

ପରଦାରେ ମାତୃପରି ଭକତି କରିବେ
ନିଜ ପତ୍ନୀଙ୍କୁ ଅର୍ଦ୍ଧାଙ୍ଗ ବୋଲି ବିଚାରିବେ
ପ୍ରଜାଙ୍କୁ ଅତି ସ୍ନେହ କରିବେ ପିତୃ ସମ
ଯଥାକାଳେ ସତ୍ ପାତ୍ରରେ ବିତରିବେ ଧନ

ଦେହପରି ପ୍ରାଣୀମାନଙ୍କର ପ୍ରିୟ ହେବେ
ଏହି ରାଜା ବନ୍ଧୁଙ୍କ ଆନନ୍ଦ ବଢାଇବେ
ବୈରାଗୀ ପୁରୁଷଙ୍କୁ କରିବେ ଏ ପ୍ରେମ ଦୁଷ୍ଟଙ୍କୁ
ଯମ ସମାନ କରିବେ ଦମନ

ସଗୁଣ ତ୍ରିଗୁଣପତି ନିର୍ବିକାର ନାରାୟଣ ନିଜ
ଅଂଶେ ପୃଥୁ ରାଜା ରୂପେ ଅବତୀର୍ଣ୍ଣ
ଏହାଙ୍କ ଠାରେ ଅଜ୍ଞାନେ ପ୍ରତୀତ ଭିନ୍ନତା
ପଣ୍ଡିତମାନେ ସର୍ବଥା ମନେ କରନ୍ତି ଯେ ମିଥ୍ୟା

ଏ ଅଦ୍ୱିତୀୟ ବୀର ସମ୍ରାଟ ଏକଛତ୍ର
ଏକାକୀ ଉଦୟାଚଳ ପର୍ଯ୍ୟନ୍ତ ସମସ୍ତ
ସସାଗରା ଧରାକୁ ଏ କରିବେ ପାଳନ
ଧନୁଧରି ଜୟଶୀଳ ରଥ ଆରୋହିଣ

ସୂର୍ଯ୍ୟପରି ସର୍ବତ୍ର କରିବେ ପ୍ରଦକ୍ଷିଣ
ଲୋକପାଳ ପୃଥ୍ୱୀପାଳ ଦେବେ ଉପାୟନ
ସାକ୍ଷାତରେ ନାରାୟଣ ଭାବି ନାରୀ ଗଣ
ଆଦି ନୃପ ପୃଥୁଙ୍କ କରିବେ ଯଶ ଗାନ

ଏ ରାଜାଧିରାଜ ପ୍ରଜାଙ୍କ ଜୀବନ ଧାରଣ
ପାଇଁ ଗୋରୂପିଣୀ ପୃଥ୍ୱୀ କରିବେ ଦୋହନ
ଧନୁର କୋଟୀରେ ପର୍ବତ ମାନଙ୍କୁ ବିଦାରି
ପୃଥ୍ୱୀକୁ ସମତଳ କରିବେ ଇନ୍ଦ୍ର ପରି

ସିଂହ ଯଥା ବିଚରଇ ଲାଙ୍ଗୁଡ ଉଠାଇ
ଏ ରାଜା ସ୍ୱ ଆଜଗବ ଧନୁରେ ଗୁଣ ଦେଇ
ଟଙ୍କାରି ଯେବେଳେ ରଣାଙ୍ଗଣେ ବିଚରିବେ
ଦୁଷ୍ଟମାନେ ଚତୁର୍ଦ୍ଦରେ ଲୁଚିଣ ରହିବେ

ଏହାଙ୍କ ପ୍ରତାପ କେହି ସହିନ ପାରିବେ
କେତେ କେତେ ଦୁଷ୍ଟ ଶତ୍ରୁ ଶରଣ ପଶିବେ
ଏ ସରସ୍ୱତୀ ନଦୀର ଉତ୍ପତ୍ତି ସ୍ଥାନରେ
ଏକଶତ ଅଶ୍ୱମେଧ କରିବେ ଅଚିରେ

ଅନ୍ତିମ ଯଜ୍ଞ କାଳରେ ଦେବ ମଘବାନ
ଏହାଙ୍କ ଯଜ୍ଞ ଅଶ୍ୱକୁ କରିବେ ହରଣ
ନିଜର ରାଜ ପ୍ରସାଦ ଉଦ୍ୟାନ ମଧରେ
ସନତକୁମାରଙ୍କୁ ସାକ୍ଷାତ କରିବେ ଏ ଥରେ

ତାଙ୍କୁ ସେବି ନିର୍ମଳ ଜ୍ଞାନ ଏ ଲଭିବେ
ଅନାୟାସେ ପରଂବ୍ରହ୍ମ ପଦ ପ୍ରାପ୍ତ ହେବେ
ପୃଥୁନୃପ ନିଜକ୍ୟେ ସମସ୍ତ ସ୍ଥାନରେ
ନିଜର ଚରିତ ଚର୍ଚ୍ଚା ହେବାର ଶୁଣିବେ

ରାଜ୍ୟମାନ ଜୟ କରି ଏ ନିଜ ତେଜରେ
ପ୍ରଜାଙ୍କ ଦୁଃଖ ହରିବେ ଏ ଚତୁର୍ଦ୍ଦିଗରେ
ସମ୍ପୂର୍ଣ୍ଣ ଭୂମଣ୍ଡଳର ଶାସକ ହୋଇବେ
କେହି ଏହାଙ୍କର ଆଜ୍ଞା ଅବଜ୍ଞା ନ କରିବେ

ଦେବତା ଅସୁର ଦାନବ ମାନବ ଗଣ
ଏହାଙ୍କ ପ୍ରତାପ ସଦା କରିବେ ଗାୟନ
ମହାପୁରାଣ ଭାଗବତ ପୁଣ୍ୟ ପୃଥୁ ନୃପ ଚରିତ
ଶୁଣି ଭବାବ୍ଧି ହୁଅ ପାର ଭଣଇ ଦାଶ ଧନେଶ୍ୱର

ଇତି ଶ୍ରୀଚତୁର୍ଥ ସ୍କନ୍ଧେ ପୃଥୁ ଚରିତେ ନାମ ଷୋଡଶୋଽଧ୍ୟାୟ ।

# ସପ୍ତଦଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ମହାରାଜ ପୃଥୁଙ୍କର ବର୍ଣ୍ଣି ଗୁଣ କୀର୍ତ୍ତି
ସ୍ତାବକ ମାନେ ଉଚ୍ଚରେ ଗାନକଲେ ସ୍ତୁତି
ନୃପତି ପ୍ରତିପୂଜନ ଅଭିନନ୍ଦନରେ
ତାହାଙ୍କୁ ତୋଷିଲେ ପ୍ରାର୍ଥିତ ବସ୍ତୁ ପ୍ରଦାନରେ

ବ୍ରାହ୍ମଣାଦି ଚାରିବର୍ଣ୍ଣ ଭୃତ୍ୟ ମନ୍ତ୍ରିଗଣ
ପୁରୋହିତ ପୁରବାସୀ ଦେଶବାସୀ ଜନ
ବିଭିନ୍ନ ବ୍ୟବସାୟୀ ସୁବିଜ୍ଞ କାରିଗର
ମାନଙ୍କ ବିଧିରେ ପୂଜିଲେ ପୃଥୁ ନରବର

ବିଦୁର ପଚାରିଲେ ହେ ମୈତ୍ରେୟ ବ୍ରହ୍ମଣ୍ୟ
ପୃଥ୍ୱୀ ତ ବହୁ ରୂପ କରି ପାରନ୍ତି ଧାରଣ
ସେ ଗାଈ ସ୍ୱରୂପ କିଂପାଇ ଧରିଲେ
ପୃଥୁନୃପ ଯେ ବେଳରେ ତାହାକୁ ଦୁହିଁଲେ

ସେ ବେଳରେ କେ ବତ୍ସା ଦୋହନ ପାତ୍ର ହେଲେ
ପୃଥ୍ୱୀବୀତ୍ ସ୍ୱଭାବରେ ଉଚ୍ଚ ନିଚ ଥିଲେ
ପୃଥୁ କିପରି ତାହାକୁ ସମତଳ୍ କଲେ
ଇନ୍ଦ୍ର ତାହାଙ୍କର ଅଶ୍ୱକୁ କିଂପାଇ ହରିଲେ

ସନତ କୁମାରଙ୍କ ଠାରୁ ଜ୍ଞାନ ଓ ବିଜ୍ଞାନ ଲଭି
ପୃଥୁଙ୍କର ଯେଉଁ ଗତି ହେଲା ପୁଣ
ପୁଣ୍ୟ କୀର୍ତ୍ତି ହରିଙ୍କ ଏ ପୃଥୁ ଅବତାର
ଯାହା ସମସ୍ତ ଅଛି ପବିତ୍ର ସମାଚାର

ତାହା ବିସ୍ତାରି ସଂପୂର୍ଣ୍ଣ କହନ୍ତୁ ଆପଣ
ମୁ ଆପଣଙ୍କର ଓ କୃଷ୍ଣଙ୍କର ଭକ୍ତ ଜାଣ
ବିଦୁର ପ୍ରାର୍ଥନାରେ ମୈତ୍ରେୟ ତୋଷ ହେଲେ
ତାହାଙ୍କୁ ପ୍ରଶଂସି କହିବାକୁ ଆରମ୍ଭିଲେ

## ମୈତ୍ରେୟ ଉବାଚ

ମୈତ୍ରେୟ ବୋଇଲେ ଶୁଣ ଆହେ ଭକ୍ତ ବିଦୁର
ବ୍ରାହ୍ମଣମାନେ ଯେ ମହାରାଜ ପୃଥୁଙ୍କର
ରାଜ୍ୟାଭିଷେକ ବୈଦିକ ବିଧିରେ କରିଲେ
ତାଙ୍କୁ ପ୍ରଜା ପାଳ ବୋଲି ଘୋଷଣା କରିଲେ

ସେବେଳରେ ପୃଥିବୀ ଥିଲା ଅନ୍ନହୀନ
କ୍ଷୁଧାରେ ପ୍ରଜା ଶରୀର ହେଉଥିଲା କ୍ଷୀଣ
କଲେ ସେମାନେ ପୃଥୁନୃପଙ୍କୁ ନିବେଦନ
କୋଟରସ୍ଥ ଅନଳ ଯଥା ଜଳେ ଦ୍ରୁମ

କ୍ଷୁଧା ଜ୍ୱାଳାରେ ଜଳଇ ଆମର ଉଦର
ଆପଣ ଶରଣାଗତ ରକ୍ଷକ ନୃପବର
ଆହେ ବୃତ୍ତିଦାତା ସର୍ବଲୋକ ରକ୍ଷାକର୍ତ୍ତା
ଶରଣାଗତ ବତ୍ସଳ ପ୍ରଭୁ ହର୍ତ୍ତା କର୍ତ୍ତା

ଆହେ ରାଜ ରାଜେଶ୍ୱର ଆମ ନିବେଶାଦ ଘେନ
କ୍ଷୁଧା ପୀଡିତକୁ ଶୀଘ୍ର କର ଅନ୍ନ ଦାନ
ଅନ୍ନ ଅଭାବେ ଯଥା ଆମ ହୁଏ ମରଣ ହେ
ମହାରାଜ କରନ୍ତୁ ସେପରି ବିଧାନ

ପ୍ରଜାଙ୍କ ଏପରି କରୁଣ ବିଳାପ ଶୁଣି
ବହୁକାଳ ଚିନ୍ତାମଗ୍ନ ହେଲେ ନରମଣି
ଅନ୍ନ ଅଭାବ କାରଣ ଶେଷରେ ଜାଣିଲେ
ପୃଥ୍ୱୀବୀ ଅନ୍ନ ଗ୍ରାସିଛି ବୋଲି ସ୍ଥିର କଲେ

ତ୍ରିପୁରାରି ଶିବପରି କ୍ରୋଧିତ ହୋଇଲେ
ପୃଥିବୀ ଲକ୍ଷ୍ୟରେ ଶର ଯୋଖିଲେ ଧନୁରେ
ତାହା ଦେଖି ପୃଥ୍ୱୀ ଦେବୀ ହେଲା କଂପମାନ
ବ୍ୟାଧ ଭୟରେ ଯଥା ମୃଗୀ କରେ ପଳାୟନ

ସେପରି ଗାଭୀ ସ୍ୱରୂପ କରିଣ ଧାରଣ
ପୃଥିବୀ ଦେବୀ ଭୟରେ କଲା ପଳାୟନ
ତାହା ଦେଖି ପୃଥୁ କ୍ରୋଧ ରକ୍ତ ନୟନରେ
ଶର ସନ୍ଧାନ କରି ତା ପଛେ ଗୋଡାଇଲେ

ପୃଥ୍ୱୀ ଦିଗ ବିଦିଗ ସ୍ୱର୍ଗ ଅନ୍ତରୀକ୍ଷରେ
ସବୁ ସ୍ଥାନରେ ଧନୁର୍ଦ୍ଧର ପୃଥୁଙ୍କୁ ଦେଖିଲେ
ଯଥା ମୃତ୍ୟୁରୁ ବଞ୍ଚାଇ ପାରେ ନାହିଁ କେହି
ତଥା ପୃଥୁନୃପଠାରୁ ବଞ୍ଚାଇବା ପାଇଁ

ତିନି ଲୋକେ କେଉଁଠି ଆଶ୍ରୟ ନ ମିଳିଲା
ଭୟେ ପୃଥ୍ୱୀ ନ ପଳାଇ ପୃଥୁଙ୍କୁ କହିଲା
ହେ ଶରଣାଗତ ସୋଦର ପୃଥୁ ନର ସାଇଁ
ମୁଁ ଅତ୍ୟନ୍ତ ଦୀନା କିଛି କରି ନାହିଁ

ଆପଣ କାହିଁକି ମତେ ମାରିବା ଇଛନ୍ତି
ସ୍ୱଭାବରେ ଆପଣତ ଧର୍ମଜ୍ଞ ଅଟନ୍ତି
ସ୍ତ୍ରୀ ଲୋକମାନେ ଯଦି ଦୋଷ କରିଥାନ୍ତି
ସାଧୁ ସାଧାରଣ ଲୋକେ ଦଣ୍ଡ ନ ଦିଅନ୍ତି

କରୁଣାମୟ ଦୀନବତ୍ସଳ ରାଜା ହୋଇ
ଆପଣ ଏପରି କର୍ମ କରୁଛ କିଂପାଇ
ସୁଦୃଢ଼ ନୌକାପରି ମୋର ଏ ପୃଷ୍ଠରେ
ଏ ସାରା ସଂସାର ବାସକରନ୍ତି ସୁଖରେ

ମତେ ବିନାଶି ଆପଣ କିପରି ଭାବରେ
ନିଜକୁ ପ୍ରଜାକୁ ରଖିବେ ଜଳ ଉପରେ

### ପୃଥୁ ଉବାଚ

ମହାରାଜା ପୃଥୁ କହିଲେ ହେ ବସୁଧେ ଶୁଣ
ତୁମର ଆଜ୍ଞାକୁ ମୁହିଁ କରିଛି ଲଙ୍ଘନ
ଯଜ୍ଞରେ ଦେବତା ରୂପେ ଭାଗ ନେଉଅଛ
ମାତ୍ର ଆମମାନଙ୍କୁ ତ ଅନ୍ନ ନ ଦେଉଛ

ତୁମେ ପ୍ରତ୍ୟହ ସବୁଜ ଘାସ ଖାଉଅଛ
କିନ୍ତୁ ନିଜ ସ୍ତନରୁ କ୍ଷୀର ନ ଦେଉଛ
ବ୍ରହ୍ମାଙ୍କ ଉତ୍ପନ୍ନ ଅନ୍ନ ଆଦି ବୀଜ ମାନ
ନିଜର ଗର୍ଭରେ ତୁମେ କରଛ ଗୋପନ

ଆରେ ପୃଥ୍ୱୀ ମନ୍ଦ ବୁଦ୍ଧି ମହିଁ ବର୍ତ୍ତମାନ
ନିଜ ତୀକ୍ଷ୍ଣ ବାଣେ ତତେ କରି ଛିନ୍ନ ଭିନ୍ନ
ତୋ ମେଦରେ ପ୍ରଜାଙ୍କର କରୁଣ କ୍ରନ୍ଦନ
ନିଶ୍ଚୟ ଶାନ୍ତ କରିବି ମୁହିଁ ବର୍ତ୍ତମାନ

ନିଜର ରକ୍ଷକ ତଥା ଅନ୍ୟ ପ୍ରାଣୀ ପ୍ରତି
ଯେଉଁମାନେ ଅବଜ୍ଞାରେ ଦୟା ନ କରନ୍ତି
ସେ ପୁରୁଷ ସ୍ତ୍ରୀ ବା ନପୁଂସକ ହେଉ ଯେହି
ରାଜାର ପକ୍ଷେ ନିଧନ ଉଚିତ ଅଟଇ

ତୁ ବଡ ଗର୍ବିଣୀ ମଦ ଉନ୍ମତ୍ତା ହୋଇଛୁ
ମାୟାବଳେ ଏକ ଗାଇ ସ୍ୱରୂପ ଧରିଛୁ
ମୁ ତଳେ ତୀକ୍ଷ୍ଣ ବାଣରେ କରି ଛିନ୍ନ ଭିନ୍ନ
ଯୋଗବଳେ ପ୍ରଜାଙ୍କୁ ମୁ କରିବି ଧାରଣ

ପୃଥୁ କୋପେ କାଳମୂର୍ତ୍ତି କରିଲେ ଧାରଣ
ତାହା ଦେଖି ଭୟେ ପୃଥ୍ୱୀ ହେଲା କଂପମାନ
ହାତଯୋଡି କହିଲା ବିନୀତ ଭାବରେ ଆହେ
ପୃଥୁ ନରବର କ୍ଷମା କର ବାରେ

### ଧରୋବାଚ

ଆପଣ ସାକ୍ଷାତ ପରମ ପୁରୁଷ ଅଟନ୍ତି
ତ୍ରିଗୁଣା ମାୟାରେ ନାନା ସ୍ୱରୂପ ଧରନ୍ତି
ମାତ୍ର ବାସ୍ତବରେ ଆତ୍ମାନୁଭବେ ଆପଣ ଅଦ୍ଭୂତ
ଅଧ୍ୟାତ୍ମ ଅଧିଦୈବ ଅଭିମାନ

ରାଗ ଦ୍ୱେଷ ପ୍ରଭୃତିରୁ ରହିତ ସର୍ବଥା
ଘେନନ୍ତୁ ମୋର ନମସ୍କାର କୋପ ନକରନ୍ତୁ ବୃଥା
ଆପଣ ଅଖିଳ ବିଶ୍ୱର ବିଧାତା ଅଟନ୍ତି
ଏହି ତ୍ରିଗୁଣାତ୍ମକ ସୃଷ୍ଟିକୁ ରଚିଛନ୍ତି

ମତେ ଜୀବଙ୍କ ଆଶ୍ରୟ ରୂପେ ସୃଜିଛନ୍ତି
ହେ ପ୍ରଭୋ ଆପଣ ସର୍ବଥା ସ୍ୱାଧୀନ ଅଟନ୍ତି
ଅସ୍ତ୍ର ମୋର ନିଧନ ଇଛନ୍ତି
ନ ବୁଝି କିଂପାଇଁ ବୃଥାରେ କରୁଛନ୍ତି

ଆଉ କାହାଠାରେ ମୁହିଁ ପଶିବି ଶରଣ
ଆହେ ମହାରାଜ କୋପ କର ସମ୍ବରଣ
କଳ୍ପ ଆରମ୍ଭରେ ମାୟା ଶକ୍ତିରେ ଆପଣ
ଚରାଚର ଜଗତକୁ କରନ୍ତି ସର୍ଜନ

ସେହି ମାୟାରେ ହିଁ ଏ ସଂସାର ପାଳନ୍ତି ହେ
ଧାର୍ମିକ କିଂପା ମୋର ମରଣ ଇଛନ୍ତି
ଆପଣ ସର୍ବଦା ଏକ ଅଦ୍ୱୟ ଅଟନ୍ତି
ମାତ୍ର ମାୟାରେ ଅନେକ ବୋଲି ଜଣାଯାନ୍ତି

ବ୍ରହ୍ମାଙ୍କ ସୃଜି ସୃଷ୍ଟି କରନ୍ତି ରଚନା
ହେ ପୁରୁଷୋତ୍ତମ ପ୍ରଭୋ ହେ ପ୍ରଶାନ୍ତ ମନା
ତୋର ମାୟାରେ ବିଚଳିତ-ବୁଦ୍ଧି ହୋଇ
ଅଜିତ ଇନ୍ଦ୍ରିୟ ବ୍ୟକ୍ତି ତୋ ଲୀଳା ନ ଜାଣଇ

ଦ୍ରବ୍ୟ କ୍ରିୟା କାରକ ବୁଦ୍ଧି ଆତ୍ମା ଅହଙ୍କାର
ନିଜ ସ୍ୱରୂପ ଶକ୍ତିରେ ଆହେ ସର୍ବେଶ୍ୱର
ଆପଣ କରନ୍ତି ସୃଷ୍ଟି ପାଳନ ସଂହାର
ବେଳେ ବେଳେ ବିଭିନ୍ନ କାର୍ଯ୍ୟ କରିବାକୁ

ଆବିର୍ଭାବ ତିରୋଭାବ କରୁ ତୁ ଶକ୍ତିକୁ
ପରମ ପୁରୁଷ ଜଗତ ବିଧାତା ଆପଣଦ
ଏ ଦୀନ ଜନର ଘେନନ୍ତୁ ବିନମ୍ର ପ୍ରଣାମ
ପଞ୍ଚଭୂତ ଇନ୍ଦ୍ରିୟ ପୁଣି ଇନ୍ଦ୍ରିୟ ଗଣର

ଦଅଧୀଶ୍ୱର ଦେବତା ବୁଦ୍ଧି ଅହଙ୍କାର
ସ୍ୱରୂପ ଶକ୍ତିରେ କ୍ରମଶଃ ଜଗତର
ଆପଣ କରନ୍ତି ସୃଷ୍ଟି ପାଳକ ସଂହାର
ବେଳେ ବେଳେ ବିଭିନ୍ନ କାର୍ଯ୍ୟ କରିବାକୁ

ପ୍ରକାଶ କରୁ ନିଜର ଅବ୍ୟକ୍ତ ଶକ୍ତିକୁ
ପରମ ପୁରୁଷ ବିଶ୍ୱ ବିଧାତା ଆପଣ
ଏ ଦୀନା କରଇ ତବ ଚରଣେ ପ୍ରଣାମ
ଆପଣ ହିଁ ନିଜ ବିରଚିତ ପଞ୍ଚ ଭୂତ

ଇନ୍ଦ୍ରିୟ ଅନ୍ତକରଣ ରୂପ ଏ ଜଗତ
ସ୍ଥିତି ନିମିତ୍ତ ଆଦି ବରାହ ରୂପ ହେଲେ
ରସାତଳୁ ଜଳମଧ୍ୟୁ ମତେ ଉଦ୍ଧାରିଲେ
ମତେ ଉଦ୍ଧରିର "ଧରାଧର" ନାମ ଦେଲେ

ମୁ ରହିଛି ନୌକାପରି ଜଳର ଉପରେ
ଆଜି ସେହି ଆପଣ ମୋଠାରେ ଆଶ୍ରିତ ଏ
ପ୍ରଜାମାନଙ୍କୁ ରକ୍ଷା କରିବା ନିମିତ୍ତ
ଦୁଗ୍ଧ ନ ଦେଲି ବୋଲି ମତେ ବଧିବାକୁ ବୀର

ମୂର୍ତ୍ତିରେ ଧରିଛ ସୁତୀକ୍ଷ୍ଣ ବାଣକୁ -
ଆହେ ପ୍ରଭୋ ଏହା ଅତି ବିଚିତ୍ର ଅଟଇ ଆଶ୍ରିତ
ପ୍ରାଣୀକୁ କେହି କେବେ ନ ବଧଇ
ମୋ ପରି ସାଧାରଣ ଜୀବଙ୍କର ଚିତ୍ତ

ଈଶ୍ୱରଙ୍କ ଗୁଣମୟୀ ମାୟାରେ ମୋହିତ
ତୋ ଭକ୍ତ ଲୀଳା ବୁଝିବା ନାହିଁ ଆମ ଶକ୍ତି
ହେ ପରମେଶ ତୋଳିଲା ଜାଣିବୁ କେମିତି
ଆହେ ପ୍ରଭୋ ଜିତେନ୍ଦ୍ରିୟ ଭକ୍ତମାନେ ତୋର

ଏ ସଂସାରେ ଅକ୍ଷୟ ଯଶ କରନ୍ତି ବିସ୍ତାର
ତଥା ଯଶସ୍କର ପୂଜ୍ୟଭକ୍ତ ମାନଙ୍କର
ଚରଣ କମଳେ ନମସ୍କାର ବାର ବାର
ଏ ପୁଣ୍ୟ ଭାଗବତ ବାଣୀ ଶୁଣି ସଂସାରୁ ତର ପ୍ରାଣୀ
ଭଣଇ ଧନେଶ୍ୱର ଦାଶ ସୁଜନେ ରାମ ନାମ ଘୋଷ

ଇତି ଶ୍ରୀମଦ୍ ଭାଗବତେ ଚତୁର୍ଥ ସ୍କନ୍ଧେ ପୃଥୁବିଷୟେ ଧରିତ୍ରୀ ନିଗ୍ରହୋ ନାମ ସପ୍ତଦଶୋଽଧ୍ୟାୟ ।

*******

# ଅଷ୍ଟାଦଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ମୈତ୍ରେୟ ମୁନି କରନ୍ତି ଶୁଣ ହେ ବିଦୁର
ସେହି ସମୟରେ ମହାରାଜ ପୃଥୁଙ୍କର
ଓଷ୍ଠ ଅତି କୋପବଶେ ହୋଇଲା କଂପିତ
ପୃଥ୍ୱୀ ଦେବୀ ତାହା ଦେଖି ହୋଇ ଭୀତତ୍ରସ୍ତ

ବିନୟଭାବ ନିଜ ହୃଦୟେ ସ୍ଥିର କଲା
ମହାରାଜ କ୍ରୋଧ ଶାନ୍ତ କରନ୍ତୁ ବୋଇଲା
ପ୍ରଭୋ ମୋର ପ୍ରାର୍ଥନା ସ୍ଥିର ଚିତ୍ତରେ ଶୁଣ
ଭ୍ରମର ସମାନ ସାର ଗ୍ରହୀ ବୁଦ୍ଧିମାନ

ଇହଲୋକ ପରଲୋକ କଲ୍ୟାଣ ନିମିତ୍ତ
ତତ୍ତ୍ୱଦ୍ରଷ୍ଟା ମୁନିଗଣ ଋଷି ଅଗ୍ନିହୋତ୍ର
ପ୍ରଭୃତି ବହୁ ଉପାୟ ଦର୍ଶାଯ଼ ଅଛନ୍ତି
ପୁଣି ସେଗୁଡ଼ିକୁ ଅନୁଷ୍ଠାନ କରିଛନ୍ତି

ପୂର୍ବ ଋଷି ପ୍ରଦର୍ଶିତ ସେ ଉପାୟମାନ
ଯେ ବ୍ୟକ୍ତି ଉତ୍ତମ ରୂପେ କରେ ଆଚରଣ
ସେ ଅକ୍ଲେଶେ ଅଭୀଷ୍ଟ ଫଳକୁ ଲଭଇ
ମାତ୍ର ଯେ କୁତର୍କୀ ତା ଆଦର ନ କରଇ

କାଳ୍ପନିକ ଉପାୟର ଆଶ୍ରୟ ନିଅଇ
ତା ପ୍ରଯତ୍ନ ବାରମ୍ବାର ନିଷ୍ଫଳ ହୁଅଇ
ପୂର୍ବକାଳେ ପିତାମହ ଯେଉଁ ଧନ ଧାନ୍ୟ
ବିଭିନ୍ନ ଔଷଧ କରିଥିଲେ ଉତ୍ପାଦନ

ଯମ ନିୟମାଦି ବ୍ରତ ନକରି ପାଳନ
ଦୁରାଚାର ଜନଗଣ କଲେତା ଭକ୍ଷଣ
ଆପଣଙ୍କ ବଂଶଧର ପୂର୍ବ ନୃପଗଣ
ମତେ ଅନାଦର କରି ନ କଲେ ପାଳନ

ପ୍ରଜାମାନେ ସେଥିପାଇଁ ହେଲେ ଚୋର ଭଳି
ଯଜ୍ଞ କର୍ମ ପାଇଁ ଔଷଧ ମୁ ଦେଲି ଗିଳି
ଏହିପରି ଅତୀତ ହେବାରୁ ବହୁଦିନ
ସେ ଶସ୍ୟମାନ ଉଦରେ ହୋଇଗଲା ଜୀର୍ଣ୍ଣ

ପୂର୍ବ ଆଚାର୍ଯ୍ୟଙ୍କ ପ୍ରଦର୍ଶିତ ଉପାୟରେ ଆପଣ
ତାହା ବାହାର କରନ୍ତୁ ଅଚିରେ
ହେ ଚରାଚର ଜୀବ ପାଳକ ମହାବୀର
ଯଦି ବା ଆପଣ ସର୍ବ ଜୀବ ମାନଙ୍କର

ଇପ୍ସିତ ବଳପ୍ରଦ ଅନ୍ନକୁ ଉଦ୍ଧାର
ଇଚ୍ଛା କରୁଛନ୍ତି ଯେବେ ଆହେ ନରବର
ମୋ ପାଇଁ ଉପଯୁକ୍ତ ଦୋହନର ପାତ୍ର
ନିର୍ଣ୍ଣୟ କରନ୍ତୁ ଶୀଘ୍ର ଆହେନରନାଥ

ମୁହିଁ ସକଳ ଅଭିଳଷିତ ବସ୍ତମାନ
ଦୁଗ୍ଧରୂପରେ ନିଶ୍ଚୟ କରିବି ପ୍ରଦାନ
ମୋର ଉଚ୍ଚନିଚସ୍ଥଳ କର ସମତଳ
ବର୍ଷାଋତୁ ପରେ ମଧ୍ୟ ଇନ୍ଦ୍ର ବୃଷ୍ଟିଜଳ

ମୋର ଉପରେ ସର୍ବତ୍ର ସମାନ ରହିବ
ଏହା ଆପଣଙ୍କ ପକ୍ଷେ ମଙ୍ଗଳ ହୋଇବ
ପୃଥିବୀର ଏହିପରି ହିତ ପ୍ରିୟବାଣୀ
ଶ୍ରବଣ କରିଣ ସେହି ପୃଥୁ ନରମଣି

ସ୍ୱାୟମ୍ଭୁବ ମନୁଙ୍କୁ ସେ ବତ୍ସା କରିଲେ
ନିଜର ହସ୍ତରେ ଧନ ଧାନ୍ୟାଦି ଦୁହିଁଲେ
ପୃଥୁଙ୍କ ପରି ମଧ ଅନ୍ୟାନ୍ୟ ବିଜ୍ଞ ଜନ
ସକଳ ସ୍ଥାନରୁ ସାର କରନ୍ତି ଗ୍ରହଣ

ପୃଥୁ ଅଧୀନ ପୃଥ୍ୱୀରୁ ଅଭୀଷ୍ଟ ବସ୍ତୁମାନ
ସମସ୍ତେ ଅନାୟାସରେ କରିଲେ ଦୋହନ
ଋଷିମାନେ ଯେ ବୃହସ୍ପତିଙ୍କୁ ବତ୍ସାକଲେ ଇନ୍ଦ୍ରିୟ
ମାନସ ଶ୍ରୋତ୍ର ରୂପକ ପାତ୍ରରେ

ପୃଥିବୀ ବେଦ ସ୍ୱରୂପ ପବିତ୍ର ଦୁଗ୍ଧ
ଦୋହନ କରିଲେ ହୋଇ ଆନନ୍ଦିତ
ଦେବତାମାନେ ଦେବରାଜଙ୍କୁ ବତ୍ସାକଲେ
ବୀର୍ଯ୍ୟ ସୁଧା ଓଜ ଦୈହିକ ବଳକୁ ଦୁହିଁଲେ

ଅସୁର ଦାନବ ପ୍ରହ୍ଲାଦକୁ ବତ୍ସାକଲେ
ଲୌହ ପାତ୍ରରେ ମଦିରା ଆସବ ଦୁହିଁଲେ
ବିଶ୍ୱାବସୁ ସ୍ୱରୂପ ଯେ ବତ୍ସା ସାହାଯ୍ୟରେ
ଗନ୍ଧର୍ବ ଅପସରାମାନେ କମଳ ପାତ୍ରରେ

ସଙ୍ଗୀତ ମାଧୁର୍ଯ୍ୟ ସୌନ୍ଦର୍ଯ୍ୟ ଦୁଗ୍ଧକୁ ଦୁହିଁଲେ
ଶୋଭା ସଙ୍ଗୀତ ଗାୟନେ ଜଗତ ମୋହିଲେ
ଶ୍ରାଦ୍ଧ ଅଧିଷ୍ଠାତା ମହାଭାଗ ପିତୃଗଣ
ଅର୍ଯ୍ୟମା ନାମ ପିତୃଙ୍କୁ ବତ୍ସା ଯେ କରିଣ

ଶ୍ରଦ୍ଧା ସହକାରେ କଞ୍ଚା ମାଟିର ପାତ୍ରରେ
କବ୍ୟ ରୂପକ ଦୁଗ୍ଧକୁ ଦୋହନ କରିଲେ
ସିଦ୍ଧମାନେ କପିଳଦେବଙ୍କୁ ବତ୍ସା କଲେ ଆକାଶ
ପାତ୍ରେ ଅଣିମାଦି ସିଦ୍ଧିକୁ ଦୁହିଲେ

ସର୍ବ ବିଦ୍ୟାଧରମାନେ ଆକାଶ ଗମନ
ପ୍ରଭୃତି ବିଦ୍ୟା ସମୂହ କରିଲେ ଦୋହନ
କିଂପୁରୁଷ ପ୍ରଭୃତି ଅନ୍ୟାନ୍ୟ ମାୟାବୀଗଣ
ମୟଦାନବଙ୍କୁ ବତ୍ସାକରି ତତକ୍ଷଣ

ଅନର୍ଦ୍ଧାନର ଓ ବିଚିତ୍ର ସ୍ୱରୂପ ଧାରଣ
ସଙ୍କଳ୍ପମୟୀ ମାୟାକୁ କରିଲେ ଦୋହନ
ଯକ୍ଷ ରାକ୍ଷସ ପିଶାଚ, ମାଂସାହାରୀ ଗଣ
ଭୂତନାଥ ରୁଦ୍ରଦେବଙ୍କୁ ବତ୍ସା କରିଣ

ଅତି ଆନନ୍ଦ ଚିତ୍ତରେ କପାଳ ପାତ୍ରରେ
ରୁଧିର ଆସବ ରୂପ ଦୁଗ୍ଧକୁ ଦୁହିଁଲେ
ଫଣାହୀନ ଫଣାଯୁକ୍ତ ସର୍ପ ନାଗ ଗଣ
ବୃଶ୍ଚିକ ପ୍ରଭୃତି ବିଷଧର ଜନ୍ତୁ ପୁଣ

ତକ୍ଷକକୁ ବତ୍ସା କରି ସ୍ୱ ମୁଖ ପାତ୍ରରେ
ବିଷ ରୂପକ ଦୁଗ୍ଧକୁ ଦୋହନ କରିଲେ
ଅନ୍ୟ ପଶୁମାନେ ବୃଷଭକୁ ବତ୍ସା କଲେ
ଅରଣ୍ୟ ପାତ୍ରେ ତୃଣ ଦୁଗ୍ଧକୁ ଦୁହିଁଲେ

ସୁଦୃଢ଼ ଦନ୍ତ ମାଂସାହାରୀ ଜନ୍ତୁଗଣ
ରାଜ ସିଂହକୁ ବତ୍ସା ଯେ କରିଣ
ନିଜ ଶରୀର ପାତ୍ରରେ ଅତି ଆନନ୍ଦରେ
ମାଂସ ରୂପକ ଦୁଗ୍ଧକୁ ଦୋହନ କରିଣ

ଗରୁଡକୁ ବତ୍ସାକରି ସର୍ବ ବିହଙ୍ଗମ
ଚର ଅଚର ପଦାର୍ଥ କରିଲେ ଦୋହନ
ବୃକ୍ଷମାନେ ବଟ ବୃକ୍ଷ ବତ୍ସା ସାହାଯ୍ୟରେ
ରସ ରୂପକ ଦୁଗ୍ଧକୁ ଦୋହନ କରିଲେ

ହିମାଳୟକୁ ବତ୍ସାକରି ସକଳ ପର୍ବତ
ଶିଖର ପାତ୍ରରେ ନାନା ଧାତୁ ଦୁହିଁଲେ ତ
ମହାରାଜ ପୃଥୁଙ୍କର ଶାସନରେ ରହି
ସମସ୍ତଙ୍କୁ ଇଷ୍ଟ ବସ୍ତୁ ଦେଉଥିଲା ମହୀ

ତେଣୁ ସର୍ବେ ସ୍ୱଜାତୀୟ ବତ୍ସା ସାହାଯ୍ୟରେ
ବିଭିନ୍ନ ପଦାର୍ଥ ରୂପ ଦୁଗ୍ଧକୁ ଦୁହିଲେ
ପୃଥୁଆଦି ଅନ୍ନଭୋଜୀ ପ୍ରାଣୀଗଣ ଧୀରେ
ବିଭିନ୍ନ ଦୋହନ ପାତ୍ର ବତ୍ସା ସାହାଯ୍ୟରେ

ନିଜ ନିଜ ଅନ୍ନ ରୂପ ପଦାର୍ଥ ଦୁହିଁଲେ
ଜୀବନ ଯାପିଲେ ସୁଖରେ ଏହି ବିଶ୍ୱରେ
ମହାରାଜ ପୃଥୁ ଅତି ପ୍ରସନ୍ନ ଚିତ୍ତରେ
ସ୍ନେହେ ପୃଥିବୀକୁ କନ୍ୟା ସ୍ୱରୂପେ ପାଳିଲେ

ପୃଥୁ ନିଜର ଧନୁରେ ପର୍ବତ କରି ଚୂର୍ଣ୍ଣ
ସମଗ୍ର ଧରାତଳକୁ କରିଲେ ସମାନ
ପିତୃ ପରି କଲେ ପ୍ରଜା ପାଳନ ପୋଷଣ
ସମତଳ ସ୍ଥାନେ ନିର୍ମାଣ କଲେ ବାସସ୍ଥାନ

ଗ୍ରାମ ନଗର ଦୁର୍ଗ ପଶୁଙ୍କର ବାସସ୍ଥାନ
ଶିବିର ଖଣି ଯେ କୃଷି ଜୀବଙ୍କର ଗ୍ରାମ
ପାହାଡ ତଳିରେ ଗ୍ରାମମାନ ବସାଇଲେ
ସେ ପଶୁପାଳଙ୍କର ପାଇଁ ବସ୍ତି ନିର୍ମାଣିଲେ

ପୃଥୁ ପୂର୍ବୁ ନଥିଲା ବିଭାଗ ପୁର ଗ୍ରାମ
ଲୋକେ ସ୍ୱେଚ୍ଛାରେ ବାସ କରୁଥିଲେ ନାନା ସ୍ଥାନ
ମହାପୁରାଣ ଭାଗବତ ଚତୁର୍ଥ ସ୍କନ୍ଧରେ ବର୍ଣ୍ଣିତ
ପୃଥୁ ନୃପ ପୁଣ୍ୟ ଚରିତ ଏଠାରେ ହୋଇଲା ସମାପ୍ତ

ଇତି ଶ୍ରୀମଦ ଭାଗବତେ ଚତୁର୍ଥ ସ୍କନ୍ଧେ ପୃଥୁ ବିଜୟେ ନାମ ଅଷ୍ଟା ଦଶୋଽଧ୍ୟାୟ ।

*******

## ଏକୋନବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

କହେ ମୈତ୍ରେୟ ମୁନିବର ଶୁଣ ହେ ଭକତ ବିଦୁର
ମନୁ କ୍ଷେତ୍ର ବ୍ରହ୍ମାବର୍ତ୍ତରେ ପ୍ରାଚୀ ସରସ୍ୱତୀ ମଧ୍ୟରେ
ସରସ୍ୱତୀ ନଦୀ ଯେଠାରେ ବହିଛି ପୂର୍ବାଭି ମୁଖରେ
ପୃଥୁ ସେହି ପୁଣ୍ୟ କ୍ଷେତ୍ରରେ ଶତାଶ୍ୱମେଧ ସଂକଳ୍ପିଲେ

ଏହା ଦେଖିଣ ଭଗବାନ ଇନ୍ଦ୍ର ବିଚାର କଲେ ମନ
ପୃଥୁ ରାଜାଙ୍କ ଏହି କର୍ମ ତାଙ୍କ କର୍ମୁ ହେବ ମହାନ
ଯଜ୍ଞକୁ ସହି ନ ପାରିଲେ ଶତ୍ରୁ ଭାବ ହୃଦେ ଧରିଲେ
ଅନ୍ତରାତ୍ମା ସର୍ବ ଜୀବର ଲୋକ ପୂଜ୍ୟ ଜଗଦୀଶ୍ୱର

ହରି ଯଜ୍ଞେଶ୍ୱର ରୂପରେ ଦର୍ଶନ ଦେଲେ ସେ ଯଜ୍ଞରେ
ହରିଙ୍କ ସହ ବ୍ରହ୍ମାହର ଲୋକ ପାଳ ମାନେ ନିଜର
ଅନୁଚର ସଙ୍ଗେ ଆସିଲେ ଗନ୍ଧର୍ବେ ସ୍ତୁତି ଗାନ କଲେ
ସିଦ୍ଧ ଦାନବ ବିଦ୍ୟାଧର ଯକ୍ଷ ରକ୍ଷ ଦେବ କଂନ୍ନର

ସନକ ଆଦି ଯୋଗେଶ୍ୱର କପିଳ ନାରଦ ଆବର
ଦତ୍ତାତ୍ରେୟାଦି ଭକ୍ତଗଣ ପ୍ରେମ ଭକତି ପରାୟଣ
ପ୍ରଭୁ ଶ୍ରୀହରିଙ୍କର ସହିତ ସେଠାରେ ହେଲେ ଉପସ୍ଥିତ
ଆହେ ବିଦୁର ସେ ଯଜ୍ଞରେ ଭୂମି କାମ ଧେନୁ ରୂପରେ

ଯଜମାନ ଇଚ୍ଛାନୁସାରେ ଯଜ୍ଞ ସାମଗ୍ରୀ ସମର୍ପିଲା
କିଛି ଅଭାବ ନ ରହିଲା ଶୁଣ ଏହାପରେ ଯା ହେଲା
ସେହି ଯଜ୍ଞକୁ ନଦୀଗଣ ଦ୍ରାକ୍ଷା ମଧୁଆ ବିଭିନ୍ନ
ସେଯଜ୍ଞ ଘୃତ ଦଧି ଅନ୍ନ ବସ୍ତୁରେ ହେଲା ପରିପୂର୍ଣ୍ଣ

ବୃକ୍ଷ ସୁମିଷ୍ଟ ଫଳମାନ ଆନନ୍ଦେ କରିଲେ ପ୍ରଦାନ
ସମୁଦ୍ର ଦେଲା ବହୁ ରତ୍ନ ପର୍ବତ ଚତୁର୍ବିଧ ଅନ୍ନ
ଲୋକ ଓ ଲୋକ ପାଳ ଗଣ ଉପହାର କଲେ ପ୍ରଦାନ
ସେ ଭକ୍ତ ପୃଥୁ ମହୀପାଳ ସର୍ବଦା ହରିଙ୍କୁ କେବଳ

ପୂଜଇ ସ୍ୱ ପ୍ରଭୁ ଭାବରେ ପ୍ରଭୁଙ୍କ କୃପା ପ୍ରଭାବରେ
ଏ ଯଜ୍ଞର ଅନୁଷ୍ଠାନରେ ଯଶ ବିସ୍ତାରିଲେ ମହୀରେ
ଦେବେନ୍ଦ୍ର ଏହା ସହି ନପାରିଲେ ବିଘ୍ନ ନିମିତ୍ତ ଚେଷ୍ଟା କଲେ
ଅନ୍ତିମ ଯଜ୍ଞ ସମୟରେ ଇନ୍ଦ୍ର ଗୁପ୍ତେ ଅଶ୍ୱ ହରିଲେ

ସୁରକ୍ଷା କବଚ ରୂପରେ ଇନ୍ଦ୍ର ପାଖଣ୍ଡ ରୂପ ହେଲେ
ଏବେଶ ଅଧର୍ମରେ ଧର୍ମ କରାଇ ଥାଏ ମତି ଭ୍ରମ
ପାପୀ ହିଁ ଏହାର ଆଶ୍ରୟରେ ଧାର୍ମିକ ପରି ଜଣାଯାଇ
ଇନ୍ଦ୍ର ଅଶ୍ୱଧରି ବେଗରେ ଆକାଶେ ଯିବା ସମୟରେ

ଅତ୍ରିର ପଡିଲା ନଜର ସେ କହିବାରୁ ପୃଥୁଙ୍କର
ମହାରଥୀ ପୁତ୍ର କ୍ରୋଧରେ ଇନ୍ଦ୍ର ପଛେ ପଛେ ଧାଇଁଲେ
ଇନ୍ଦ୍ର ଜଟା ଜୁଟ ଶିରରେ ଭସ୍ମ ବୋଳି ଥିଲେ ଦେହରେ
ଏହି ବେଶ ଦେଖି ତାଙ୍କର ସେହି ପୃଥୁରାଜ କୁମାର

ମୂର୍ତ୍ତିମାନ ଧର୍ମ ଭାବିଲେ ବାଣ ପ୍ରୟୋଗ ନ କରିଲେ
ଇନ୍ଦ୍ରଙ୍କୁ ନିଧନ ନକରି ରାଜପୁତ୍ର ଆସନ୍ତେ ଫେରି
ଅତ୍ରି ଇନ୍ଦ୍ରଙ୍କ ବଧ ପାଇଁ ଏହା କହିଲେ ଆଜ୍ଞାଦେଇ
ଯଜ୍ଞରେ କରୁଅଛି ବିଘ୍ନ ଏହାକୁ କର ତୁ ସଂହାର

ଅତ୍ରି ମୁନିଙ୍କର କଥାରେ ରେ ପୁତ୍ର ବିଳମ୍ବ ନ କର
ଇନ୍ଦ୍ର ପଛେ ପଛେ ଧାଇଁଲେ ଜଟାୟୁ ରାବଣ ପ୍ରକାରେ
ଇନ୍ଦ୍ର ରାଜ ପୁତ୍ରେ ଦେଖିଣ ଅଶ୍ୱ ତେଜିଣ ଅନ୍ତର୍ଦ୍ଧାନ
ପୃଥୁ ପୁତ୍ର ଅଶ୍ୱ ସଙ୍ଗରେ ଯଜ୍ଞ ଶାଳାକୁ ଯେ ଫେରିଲେ

ଆହେ ଶକ୍ତି ଶାଳୀ ବିଦୁର ଶକ୍ତି ଦେଖି ରାଜପୁତ୍ରର
ମହର୍ଷି ମାନେ ଆନନ୍ଦରେ ତାଙ୍କୁ ବିଜିତାତ୍ମା ଦେଲେ
ଯଜ୍ଞ ପଶୁ ଯଜ୍ଞଶାଳାରେ ବନ୍ଧା ହୋଇଲା ଯୂପରେ
ଇନ୍ଦ୍ର ଅନ୍ଧାର ସୃଷ୍ଟିକଲେ ସୁବର୍ଣ୍ଣ ଝଂଜିର ସଙ୍ଗରେ

ପୁନର୍ବାର ଅଶ୍ୱ ହରିଲେ ଅତି ମୁନି ସୂକ୍ଷ୍ମ ଦୃଷ୍ଟିରେ
ଆକାଶରେ ଶୀଘ୍ର ଗତିରେ ପଳାଉଥିବାର ଦେଖିଲେ
ଦେବେନ୍ଦ୍ରଙ୍କଠାରେ କପାଳ ଚକ୍ଷୁ ଦେଖି ରାଜ କୁମାର
ତାହାକୁ ଯେ ବାଧା ନ ଦେଲେ ଦୁଃଖ ଫେରିଲେ ଯଜ୍ଞ ସ୍ଥଳେ

ଅତ୍ରିଙ୍କ ଦ୍ୱାରା ଉତ୍ସାହିତ ହୋଇ ପୁନଶ୍ଚ ରାଜ ସୁତ
କ୍ରୋଧେ କଲେ ଶରସନ୍ଧାନ ଏହା ଦେଖି ବିଲୋକି ମଘବାନ
ଅଶ୍ୱକୁ ପରିତ୍ୟାଗ କଲେ ମାୟାରେ ଅଦୃଶ୍ୟ ହୋଇଲେ
ବିତାଶ୍ୱ ଅଶ୍ୱ ସଙ୍ଗରେ ଫେରି ଆସିଲେ ଯଜ୍ଞସ୍ଥଳେ

ଯଜ୍ଞା ହରଣ ଇଛାରେ ଇନ୍ଦ୍ର ଯେବେଶ ଧରିଥିଲେ
ତାହା ଅଟଇ ପାପଖଣ୍ଡ ତାହାଙ୍କୁ ବୋଲନ୍ତି ପାଖଣ୍ଡ
ଖଣ୍ଡ ଶବ୍ଦର ଅର୍ଥ ଚିହ୍ନ ବୋଲି ବୁଝନ୍ତୁ ବିଜ୍ଞ ଜନ
ଯଜ୍ଞର ବିଘ୍ନ ଉଦ୍ଦେଶ୍ୟରେ ଯଜ୍ଞାଶ୍ୱ ହରଣ ବେଳରେ

ଇନ୍ଦ୍ରଙ୍କର ପାଖଣ୍ଡ ଧର୍ମ ମୋହଇ ମାନବର ମନ
ପ୍ରକୃତ ଏହା ନୁହେ ଧର୍ମ ସକଳ ଅଟଇ ନଗ୍ନ
ଯେ କାପାଳିକ ରକ୍ତାମ୍ବର ପ୍ରଭୃତି ନାନା ଦୁରାଚାର
ନାସ୍ତିକ ବାଗ୍ମିତା ଦେଖାଇ ସୁନ୍ଦର ଶରୀରକୁ ବହି

ଭ୍ରମବଶରେ ଜନଗଣ ଏହା କରନ୍ତି ସମର୍ଥନ
ବୃଥାରେ ଆସକ୍ତ ହୁଅନି ଏହା ଧର୍ମ ବୋଲି ମାନନ୍ତି
ଇନ୍ଦ୍ର କୁଚେଷ୍ଟା ବିଷୟରେ ଜାଣି ପୃଥୁ ଅତି କ୍ରୋଧରେ ଇନ୍ଦ୍ର
ତାଙ୍କ ନିଧନ ଉଦ୍ଦେଶ୍ୟରେ ଶର ଯେ ଯୋଖିଲେ ଚାପରେ

ଇନ୍ଦ୍ରଙ୍କ ମାରଣେ ଉଦ୍ୟତ ପୃଥୁଙ୍କୁ ଋତ୍ୱିଜ ସମସ୍ତ
ଏଥିରୁ କଲେ ନିବାରଣ କହିଲେ ହେ ନୃପ ଆପଣ
ଯଜ୍ଞ କର୍ମରେ କରି ବିଘ୍ନ ଇନ୍ଦ୍ର ହୋଇଛି ତେଜହୀନ
ମନ୍ତ୍ରରେ କରିବୁ ଦହନ କ୍ରୋଧ ତେଜହେ ରାଜନ

ଯଜମାନଙ୍କର ସଙ୍ଗରେ ମନ୍ତ୍ରଣା କରି ଏ ପ୍ରକାରେ
ଋତ୍ୱିଜମାନେ କୋପଭରେ ଇନ୍ଦ୍ରକୁ କଲେ ଆବାହନ
ସ୍ରୁବେ ଆହୁତି ଦେବାବେଳେ ବ୍ରହ୍ମା ଆସିଣ ନିବାରିଲେ
ଇନ୍ଦ୍ର ଭଗବାନଙ୍କର ମୂର୍ତ୍ତି ସ୍ୱୟଂ ଯଜ୍ଞ ନାମ ବୋଲାନ୍ତି

ଯଜ୍ଞ ପୂଜିତ ଦେବଗଣ ଇନ୍ଦ୍ର ଦେବଙ୍କ ଅଙ୍ଗ ଜାଣ
ତୁମେମାନେ ଏହି ଯଜ୍ଞରେ ମାରିବା ଇଛା କି ପ୍ରକାରେ
ପୃଥୁନୃପତିଙ୍କ ଯଜ୍ଞରେ ବିଘ୍ନ ଘଟାଇବା ଇଛାରେ
ଇନ୍ଦ୍ର କିପରି ଏ ଅଧର୍ମ ପାଖଣ୍ଡ ପଥ ପ୍ରବର୍ତ୍ତନ

କରିଛନ୍ତି ତାହା ଦେଖନ୍ତୁ ଋତ୍ୱିଜ କ୍ରୋଧ ତେଜନ୍ତୁ
ପୃଥୁ ନୃପତି ଅନେଶ୍ୱତ ଯଜ୍ଞରୁ କରି ହୁଅନ୍ତୁ ନିବୃତ୍ତ
ହେ ପୃଥୁ ନୃପତି ଆପଣ ଜାଣି ଅଛନ୍ତି ମୋକ୍ଷଧର୍ମ
ତୁମେ ଯେ ଯଜ୍ଞାନୁଷ୍ଠାନ କିଛି ହିଁ ନାହିଁ ପ୍ରୟୋଜନ

ଇନ୍ଦ୍ର ଅଟନ୍ତି ଆତ୍ମା ତୁମ ତୁମେ ଉଭୟେ ତ ସମାନ
ଉତ୍ତମ ଶ୍ଳୋକ ବିଶ୍ୱପତି ହରିଙ୍କ ତୁମେ ଦୁହେଁ ମୂର୍ତ୍ତି
ଦେବରାଜଙ୍କ ପ୍ରତି କୋପ ନୁହେଁ ଉଚିତ ଆହେ ନୃପ
ଯଜ୍ଞ ସମାପ୍ତ ହେଲା ନାହିଁ ଚିନ୍ତା ନ କର ନରସାଇଁ

ହେ ନୃପ ହୋଇ ସାବଧାନ ମୋ କଥା କରନ୍ତୁ ଶ୍ରବଣ
ଦୈବ ଯହିଁ ଘଟାଏ ବିଘ୍ନ କରିଲେ ପୁନ ସେହିକର୍ମ
ଚିନ୍ତାରେ ମନ ଅତିଶୟ ଲାଭ କରଇ ମହାମୋହ
ଇନ୍ଦ୍ର ଦେବତାଙ୍କ ପ୍ରଧାନ ଦୁଃସାଧ୍ୟ ତାଙ୍କ ନିବାରଣ

ଯେଉଁ ପଥ ଧର୍ମ ନାଶଇ ଇନ୍ଦ୍ର ସେପଥେ ଛନ୍ତି ଯାଇ
ତେଣୁ ଯଜ୍ଞରୁ ବର୍ତ୍ତମାନ ବିରତି ହୁଅନ୍ତୁ ଆପଣ
ଯଜ୍ଞରେ ବିଘ୍ନ ଉଦ୍ଦେଶ୍ୟରେ ଅଶ୍ୱ ହରଣ ତ୍ୟାଗ ବେଳେ
ଯେ ପାଖଣ୍ଡ ବେଶ ଧାରଣ କରିଲେ ସେ ମଘବାନ

ତାହା ଲୋକଙ୍କର ମନ    କରେ କିପରି ଆକର୍ଷଣ
ବେଣଙ୍କ ଅତ୍ୟାଚାରରେ    ଧର୍ମ ଲୋପ ହେବା ବେଳରେ
ଧର୍ମର ସୁରକ୍ଷା ନିମିତ୍ତ    ବେଣ ଶରୀରୁ ହେଲ ଜାତ
ଅଂଶ ଧରିଣ ହରିଙ୍କର    ତୁମେ ହୋଇଛ ଅବତାର

ନିଜ ଅବତାର ଉଦ୍ଦେଶ୍ୟ    ବିଚାର ଆହେ ନରଈଶ
ସ୍ରଷ୍ଟାଙ୍କ ସଂକଳ୍ପ ପୂରଣ    କରନ୍ତୁ ଆହେ ଯଶୋଧନ
ଇନ୍ଦ୍ର କୁଟ ମାୟା ବଳରେ    ଗଲେ ସେ ପାଷାଣ୍ଡ ମାର୍ଗରେ
ତାହା ଅଧର୍ମର ଜନନୀ    ଭାବନ୍ତୁ ଆହେ ନରମଣି

ଲୋକ ଗୁରୁ ଶ୍ରୀବ୍ରହ୍ମାଙ୍କର୍    ଉପଦେଶରେ ନରବର
ପୃଥୁ ଯଜ୍ଞାଗ୍ରହ ତେଜିଲେ    ଇନ୍ଦ୍ରଙ୍କ ସହ ସନ୍ଧି କଲେ
ଯଜ୍ଞାନ୍ତ ସ୍ନାନର ଶେଷରେ    ଦେବତାମାନେ ସନ୍ତୋଷରେ
ପୃଥୁଙ୍କ ମନ ଅନୁସାରେ    ଅମୋଘ ବର ଦାନ କଲେ

ଅତି ଶ୍ରଦ୍ଧା ଭକ୍ତି ଭାବରେ    ବିପ୍ରଙ୍କୁ ବହୁ ଦକ୍ଷିଣାରେ
ତୋଷି ଶୁଭା ଶୀଷ ଲଭିଲେ    ଋଷି ପିତୃ ଦେବ ସେଠାରେ
ଯେମାନେ ଉପସ୍ଥିତ ଥିଲେ    ତାହାଙ୍କୁ ଦାନ ସମ୍ମାନରେ
ତୋଷିକଲେ ଯଥା ବିଧିରେ    ସେ ପୃଥୁ ନୃପ ଆନନ୍ଦରେ

ଏ ପୁଣ୍ୟ ଭାଗବତ ବାଣୀ    ଏ ଭବ ସାଗର ତରଣୀ
ନାବିକ କୃଷ୍ଣ ଭଗବାନ    ଶ୍ରୀଚରଣେ ନିଅ ସରଣ
ଭଣଇ ଦାଶ ଧନେଶ୍ୱର    ସୁଜନେ କୃଷ୍ଣ ନାମ ସ୍ମର

ଇତି ଶ୍ରୀମଦ ଭାଗବତ ଚତୁର୍ଥ ସ୍କନ୍ଧେ ପୃଥୁ ବିଜୟେ ନାମ ଏକୋନବିଂଶୋଽଧ୍ୟାୟ ।

*******

## ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ସେ ମହାରାଜ ପୃଥୁଙ୍କର    ଯଜ୍ଞରେ ଯଜ୍ଞେଶ ଶ୍ରୀଧର
ତୋଷ ହୋଇ ଇନ୍ଦ୍ର ସଙ୍ଗରେ    ଉପସ୍ଥିତ ହୋଇ କହିଲେ
ଶତାଶ୍ୱମେଧ ସଂକଳ୍ପରେ    ଯେ ଇନ୍ଦ୍ର ବାଧା ଦେଇଥିଲେ
କ୍ଷମା ମାଗନ୍ତୁ ବର୍ତ୍ତମାନ    ହେ ନୃପ, କ୍ଷମା କର ଦାନ

ମାନବ ଶ୍ରେଷ୍ଠ ସାଧୁ ସିଏ    ଯାହାର ସଦବୁଦ୍ଧି ଥାଏ
ସେ ନକରେ ଦ୍ରୋହ କାହାର    ଆତ୍ମା ତ ନୁହେଁ ଏ ଶରୀର
ତୋପରି ଲୋକ ଯଦି କେହି    ମୋ ମାୟାରେ ମୋହିତ ହୋଇ
ତେବେ ଜ୍ଞାନୀର ବହୁଦିନ    ମୋପାଦ ସେବା ବୃଥା ଶ୍ରମ

ଅବିଦ୍ୟା କାମ୍ୟ କର୍ମଫଳ    ଏ ଶରୀର ଅଟଇ କେବଳ
ଏ କଥା ବୁଝି ଜ୍ଞାନବନ୍ତ    ଏ ଦେହେ ନ ହୁଏ ଆସନ
ଯେବା ବୁଦ୍ଧି ବିବେକ ବନ୍ତ    ଶରୀରେ ନ ହୁଏ ଆସକ୍ତ
ସେ କିପରି ଦେହରୁ ଜନ୍ମ    ଗୃହ ପୁତ୍ର ସଂପଦ ଧନ

ରଖିବ ବା ମମତା ମୋହ    ଏହା ବୁଝହେ ମହାଶୟ
୭.ଆତ୍ମା ଏକ ଶୁଦ୍ଧ ନିର୍ଗୁଣ    ସ୍ୱପ୍ରକାଶ ଆବରଣ ଶୂନ୍ୟ
ସାକ୍ଷୀରୂପ ସର୍ବ ବ୍ୟାପକ    ଏ ଜଡ ଶରୀରୁ ପୃଥକ
ଯେ ପୁରୁଷ ଏ ଦେହସ୍ଥିତ    ଆତ୍ମାକୁ ଜାଣଇ ଏମନ୍ତ

ସମ୍ବନ୍ଧ ପ୍ରକୃତି ସହିତ    ରଖିବି ହୁଅଇ ଲିପ୍ତ
ପରମାତ୍ମରେ ମଜ୍ଜିରହି    ସର୍ବ ଆତ୍ମମୟ ଦେଖଇ
ଯେ ବ୍ୟକ୍ତି ନିଷ୍କାମ ଚିତ୍ତରେ    ନିଜ ବର୍ଣ୍ଣାଶ୍ରମ ଧର୍ମରେ
ମୋ ପୂଜା କରଇ ଶ୍ରଦ୍ଧାରେ    ଚିତ୍ତ ପ୍ରସନ୍ନ ହୁଏ ଧୀରେ

ପ୍ରସନ୍ନ ହୁଏ ଯାର ଚିତ୍ତ    ସେ ଗୁଣରେ ଦେହେ ଅନାଶକ୍ତ
ଲାଭ କରଇ ତତ୍ତ୍ୱ ଜ୍ଞାନ    ସର୍ବଦା ରହେ ଉଦାସୀନ
ଏହା ବ୍ରହ୍ମଭାବ ଅଟଇ    କୈବଲ୍ୟ ବୋଲି ଯାକୁ କହି
ତତ୍ତ୍ୱଜ୍ଞ କୈବଲ୍ୟ ଲଭଇ    ଚିର ଶାନ୍ତି ଲାଭ କରଇ

ଏ ଆତ୍ମା ଦେହ ମନ କର୍ମ    ସାକ୍ଷୀ ସ୍ୱରୂପ ଉଦାସୀନ
ମନର ଅଟଇ ଅଧକ୍ଷ    ନିର୍ବିକାର ଯେ ନିତ୍ୟ ସତ୍ୟ
ଯେ ଏହା ପ୍ରତ୍ୟକ୍ଷ ସଂପୂର୍ଣ୍ଣ ଜାଣଇ    ଦେଖଇ ସେ ପୁରୁଷ ମୁକ୍ତି ଲଭଇ
ପଞ୍ଚଭୂତ ପଞ୍ଚ ଇନ୍ଦ୍ରିୟ    ଇନ୍ଦ୍ରିୟର ଦେବ ସମୂହ

ଚିଦା ଭାସର ସମଷ୍ଟିରେ    ପୁଣି ତ୍ରିଗୁଣ ପ୍ରବାହରେ
ଲିଙ୍ଗ ଶରୀରୁ ହୁଏ ଜନ୍ମ    ଏ ସାକ୍ଷୀ ଆତ୍ମା ଠାରୁ ଭିନ୍ନ
ଏ ଜ୍ଞାନ ଲଭେ ଯେଉଁ ବ୍ୟକ୍ତି    ହାଦ୍ରେ କରଇ ପ୍ରେମ ଭକ୍ତି
ସେହି ସଂପଦ ବିପଦର    ହରଷ ଶୋକ ବିଷାଦର

କେବେ ହେଁ ନହୁଏ ଅଧୀନ  ତାର ଜୀବନ ହୁଏ ଧନ୍ୟ
ଉତ୍ତମ ଅଧମ ଅଧମ  ପୁରୁଷଙ୍କୁ ମଣେ ସମାନ
ସୁଖ ଦୁଃଖ ବୁଝି ସମାନ  ଜୟକରି ଇନ୍ଦ୍ରିୟ ମନ
ପାତ୍ର ମନ୍ତ୍ରୀଙ୍କ ସାହାଯ୍ୟରେ  ଲୋକ ରକ୍ଷାକରେ ନ୍ୟାୟରେ

ପ୍ରଜାଙ୍କୁ କରିଲେ ପାଳନ  ରାଜାର ହୁଅଇ କଲ୍ୟାଣ
ପ୍ରଜାପୁଣ୍ୟର ଷଷ୍ଠ ଅଂଶ  ପରଲୋକେ ଲଭେ ନରେଶ
ଯେ ନୃପ ପ୍ରଜା ନ ପାଳଇ  କର ଅଦାୟ ଯେ କରଇ
ସେହି ରାଜାର ସର୍ବ ପୁଣ୍ୟ  ପ୍ରଜାଏ କରନ୍ତି ହରଣ

ଏହି କଥା କରି ବିଚାର  ତୁମେ ବ୍ରାହ୍ମଣ ମାନଙ୍କର
ସମ୍ମତିରେ ଧର୍ମ ନୀତିରେ  ନମଜି ବିଷୟ ଭୋଗରେ
ହେ ନରନାଥ ପ୍ରଜାଙ୍କୁ ପାଳ  ତୁମର ହୋଇବ ମଙ୍ଗଳ
ତୁମେ ଅଳ୍ପକାଳ ମଧ୍ୟରେ  ରହି ବି ଗୃହସ୍ଥା ଶ୍ରମରେ

ସିଦ୍ଧ ଯେ ସନକାଦି ଗଣ  ଲଭିବ ନିଶ୍ଚୟ ଦର୍ଶନ
ଯା ଚିତ୍ତେ ସମ ଭାବେଥାଇ  ସେ ମତେ ସହଜେ ଲଭଇ
ମାତ୍ର ଜପ ଯୋଗ ତପସ୍ୟାରେ ମୋ ସାକ୍ଷାତ ମିଳେ କଷ୍ଟରେ
ତୋ ଗୁଣ ସ୍ୱଭାବରେ ମୁହିଁ  ବଶୀଭୂତ ହେ ନର ସାଇଁ
ହେ ନୃପ ପୃଥୁ ମହାମନା  ଇଷ୍ଟ ବର କର ପ୍ରାର୍ଥନା

**ମୈତ୍ରେୟ ଉବାଚ**

ଜଗତର ଗୁରୁ ଶ୍ରୀହରି  କହିବାରୁ କଥା ଏପରି
ମହାରାଜ ପୃଥୁ ତାଙ୍କର  ଆଦେଶ କରିଲେ ସ୍ୱୀକାର
ଇନ୍ଦ୍ର ନିଜ କୁକର୍ମ ପାଇ  ଅତିଶୟ ଲଜ୍ଜିତ ହୋଇ

ପୃଥୁଙ୍କୁ ପ୍ରେମେ ଆଲିଙ୍ଗନ  ଦୂର କଲେ ମନୋ ମାଳିନ୍ୟ
ଏ ଅନ୍ତେ ପୃଥୁ ନୃପବର  ଭକ୍ତବତ୍ସଳ ହରିଙ୍କର
ପୂଜା କଲେ ଏକ ଭକ୍ତିରେ  ନିମଜ୍ଜି ବିଷୟ ଭୋଗରେ
ଚରଣ ଯୁଗଳ ଧରିଲେସେ  ଅନନ୍ୟ ଅତିଶୟ ପ୍ରେମ ଭକ୍ତିରେ

ସେ ସ୍ଥାନ ଚାଲି ଯିବା ପାଇଁ  ଇଚ୍ଛା ଥିଲେ ବି ଭାବଗ୍ରାହୀ
ପୃଥୁଙ୍କ ପ୍ରତି ବାତ୍ସଲ୍ୟରେ  ଯିବାରେ ବିଳମ୍ବ କରିଲେ
ନିଜର କମଳ ନେତ୍ରରେ  ଚାହିଁ ସେସ୍ଥାନରେ ରହିଲେ
ନେତ୍ର ଅଶ୍ରୁପୂର୍ଣ୍ଣ ହୋଇଲା  ଦୃଷ୍ଟିର ଶକ୍ତି ଲୋପ ହେଲା

ପୃଥୁ ଗଦ ଗଦ କଣ୍ଠରେ  କିଛି ହିଁ ନ କହି ପାରିଲେ
ହରି ପ୍ରେମ ସିକ୍ତ ହୃଦୟରେ  ହାତକୁ ଯୋଡି ଠିଆ ହେଲେ
ପୃଥ୍ୱୀ ସ୍ପର୍ଶକରି ପାଦରେ  ଶ୍ରୀହରି ତହିଁ ରହିଥିଲେ
ହସ୍ତ ଅଗ୍ରଭାଗ ତାଙ୍କର  ଥିଲା କାନ୍ଧରେ ଗରୁଡର

ପୃଥୁ ନେତ୍ରୁ ଅଶ୍ରୁ ପୋଛିଲେ  ଅନାଇ ଅତୃପ୍ତ ଦୃଷ୍ଟିରେ
ପ୍ରଭୁଙ୍କୁ ଏପରି କହିଲେ  ଅନନ୍ୟ ପ୍ରେମ ଭକତିରେ
ଯେ ଦେବତା ବ୍ରହ୍ମା ପ୍ରକୃତି  ତୋଷ ଲଭି ବର ଦିଅନ୍ତି
ତାହାଙ୍କୁ ମଧ୍ୟ ବରଦାନ  ସମର୍ଥ ଅଟନ୍ତି ଆପଣ

ବିଚାରନ୍ତୁ ହେ ମହାବାହୁ  ତୋ ପରି ପ୍ରଭୁ ଥାଉଁ ଥାଉଁ
ଏ ତୁଚ୍ଛ ବିଷୟ ବାସନା  କିଏବା କରିବ ପ୍ରାର୍ଥନା
ଦିଅନ୍ତୁ ଶତକୋଟି କର୍ଣ୍ଣ  ତୋ ଲୀଳା କରିବି ଶ୍ରବଣ
ଯେଉଁ ବିଜ୍ଞାନୀ ସାଧୁ ଜନ  ଚିନ୍ତନ୍ତି ତୋ ପଦ୍ମଚରଣ

ବାସ କରି ତାଙ୍କ ସଙ୍ଗରେ  ତୋର ଦିବ୍ୟ ଲୀଳା ଶ୍ରବରେ
ଭକ୍ତ ଯେ ଆନନ୍ଦ ଲଭଇ  ସେ ସୁଖ ମୁକତିରେ ନାହିଁ
ସେ କାରଣରୁ ବିଶ୍ୱପତି  ଲୋଡା ନାହିଁ ମୋର ମୁକତି
ରହି ମଧ୍ୟ ଅତି ଦୂରରେ  ସନ୍ଥଜନ ମୁଖରୁ ଥରେ

ତୋ ଲୀଳା କରିଲେ ଶ୍ରବଣ  କୁ ଯୋଗୀ ଲଭେ ତତ୍ତ୍ୱଜ୍ଞାନ
ତେଣୁ ଆହେ ପରମେଶ୍ୱର  ମୁ ଇଚ୍ଛେ ନାହିଁ ଅନ୍ୟବର
ସାଧୁ ସଙ୍ଗରେ କରିବାସ  ତୋ ମଙ୍ଗଳମୟ ସୁଯଶ
ଦୈବ ବଶରେ ଗୁଣୀ ଜନ  ଥରେ ମାତ୍ର କରେ ଶ୍ରବଣ

କେବେ ହେଁ ଛାଡି ପାରେ ନାହିଁ ପାଶବ ବୁଦ୍ଧି ପୁରୁଷ ହିଁ
ତହିଁରୁ ବିରତ ହୁଅଇ  ସର୍ବ ପ୍ରକାର ପୁରୁଷାର୍ଥ
ସଂଗ୍ରହ କରିବା ନିମିତ୍ତ  ଲାଭରେ ନୁହଁଇ ସମର୍ଥ
ସ୍ୱୟଂ ଲକ୍ଷ୍ମୀ ମଧ୍ୟ ତୁମର  ଯଶ ଶୁଣିବାକୁ ତତ୍ପର

ଆପଣ ସର୍ବ ଗୁଣାଧାର  ପୁରୁଷୋତ୍ତମ ସର୍ବେଶ୍ୱର
ଲକ୍ଷ୍ମୀଙ୍କ ପରି ମଧ୍ୟ ମୁହିଁ  ଅତ୍ୟନ୍ତ ଉତ୍ସାହିତ ହୋଇ
ତୋ ପାଦ ସେବା ଇଚ୍ଛାକରେଏକ ପତି ସେବାପଣରେ
ତୋ ପାଦ ସେବାନୁ ରାଗିଣୀ ଲକ୍ଷ୍ମୀଦେବୀ ଜଗଜ୍ଜନନୀ

ହେ ବିଶ୍ୱେଶ ମୁ ଭକ୍ତିରେ ଚିତ୍ତ ଅର୍ପିଲେ ତୋ ପାଦରେ
ନିଶ୍ଚୟ ହୃଦୟ ମଧ୍ୟରେ ମୋ ବିରୁଦ୍ଧ ଚିନ୍ତା କରିବେ
ଆମେ ଦୁହେ ସେବା ନିମିତ୍ତ ଅଟୁ ଅତ୍ୟନ୍ତ ଲାଳାୟିତ
କିନ୍ତୁ ଆପଣ ଦୀନ ପ୍ରତି ସର୍ବଦା ଦୟା ଆଚରନ୍ତି

ତୁଚ୍ଛ କର୍ମ ବଡ ମଣନ୍ତି ଦୀନ ଭକ୍ତ ହିତ ଚିନ୍ତନ୍ତି
ତେଣୁ ମୁ ଦୃଢ଼ ଆଶା କରେ ଆମ ଦୁହିଁଙ୍କ କଳହରେ
ମତେ କରିବେ ସମର୍ଥନ ଏହା ମୋ ନମ୍ର ନିବେଦନ
ସ୍ୱରୂପେ ରମନ୍ତି ଆପଣ ଲକ୍ଷ୍ମୀରେ କିବା ପ୍ରୟୋଜନ

ହେ ବିଶେଶ୍ୱର ଭଗବାନ୍ ମାୟା ଚରିତ ତିନିଗୁଣ
ଅହଙ୍କାରାଦି କାର୍ଯ୍ୟମାନ ଊର୍ଦ୍ଧ୍ୱରେ ରହନ୍ତି ଆପଣ
ତେଣୁ ନିଷ୍କାମ ସାଧୁଗଣ ଲଭିବାପରେ ତତ୍ତ୍ୱଜ୍ଞାନ
ତୋ ପାଦ କରନ୍ତି ଭଜନ ବ୍ୟତୀତ ତୋ ପାଦ ସ୍ମରଣ

ସେ ସାଧୁ ସନ୍ଥଙ୍କର ଅନ୍ୟ କାର୍ଯ୍ୟେ ନଥାଏ ପ୍ରୟୋଜନ
ଏକାନ୍ତ ନିଷ୍କାମ ଭାବରେ ମୁ ତବ ସେବା ଇଚ୍ଛା କରେ
ବିଷୟ ବର ପ୍ରାର୍ଥନାରେ ପଡିବି ସଂସାର ମୋହରେ
ଅଜ୍ଞ ଜନ ତୋ ମାୟାରେ ତୋ ଠାରୁ ରହି ବହୁଦୂରେ

ପୁତ୍ର ଧନ ଦାରା ପ୍ରଭୃତି ଅଲୀକ ବିଷୟ ଇଛନ୍ତି
ଯଥା ଶିଶୁର ହିତ ପାଇଁ ପିତା ସ୍ୱୟଂ ଚେଷ୍ଟା କରଇ
ସେପରି ପ୍ରଭୁ ଆପଣ କରନ୍ତୁ ମୋ ହିତ ସାଧନ

### ମୈତ୍ରେୟ ଉବାଚ

ପୃଥୁଙ୍କ ଏହିପରି ସ୍ତୁତି ଶୁଣି କହିଲେ ବିଶ୍ୱପତି
ହେ ବେଣ ପୁତ୍ର ନର ବର ମୋ ପାଦେ ଭକ୍ତି ହେଉ ତୋର
ଏହି ଭକ୍ତି ଯୁକ୍ତ ବୁଦ୍ଧିରେ ମୋ ମାୟାରୁ ତର ହେଲେ
ସର୍ବଦା ହୋଇ ସାବଧାନ ମୋ ଆଦେଶ କର ପାଳନ

ଯେ ମୋ ଆଦେଶ ପାଳଇ ସର୍ବତ୍ର କଲ୍ୟାଣ ଲଭଇ
ହେ ବିଦୁର ଏହିପରି ଉପଦେଶ ଦେଇ ଶ୍ରୀହରି
ପୃଥୁଙ୍କ ପୂଜା ଘେନିଲେ ଯିବାକୁ ଉଦ୍ୟତ ହୋଇଲେ
ଋଷି ଚାରଣ ବିଦ୍ୟାଧର ଗନ୍ଧର୍ବ ଅପସରା କିନ୍ନର

ପ୍ରଭୃତି ଭକ୍ତିର ଭାବରେ ହାତ ଯୋଡିଣ ବିନୟରେ
ଯଥାବିଧି ପୂଜା କରିଲେ ଧନ ଧାନ୍ୟ ପ୍ରିୟ ବାକ୍ୟରେ
ବିଦାୟ ଦେଲେ ଆନନ୍ଦରେ ଏହା କେ ବର୍ଣ୍ଣିବ ବାକ୍ୟରେ
ଶ୍ରୀ ଭଗବାନ ସେ ଅଚ୍ୟୁତ ପୃଥୁ ମହାରାଜ ସହିତ

ପୁରୋଧାଙ୍କ ଚିତ୍ତ ହରଣ କରି ଗମିଲେ ନିଜ ଧାମ
ସ୍ୱରୂପରେ ଦେଉ ଦର୍ଶନ ହରି ହୁଅନ୍ତେ ଅନ୍ତର୍ଦ୍ଧାନ
ତାହାଙ୍କୁ କରି ନମସ୍କାର ପୃଥୁ ଫେରିଲେ ନିଜ ପୁର
ଏହି ପୃଥୁ ନୃପ ସମ୍ବାଦ ବିଷୟା ବିଷୟର ଅଗଦ
କହଇ ଦାଶ ଧନେଶ୍ୱର ସଜ୍ଜନେ କୃଷ୍ଣ ନାମ ସ୍ମର

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ଚତୁର୍ଥ ସ୍କନ୍ଧେ ପୃଥୁ ମହାରାଜ ସମ୍ବାଦେ ନାମ ବିଂଶୋଽଧ୍ୟାୟ ।

*******

## ଏକବିଂଶ ଅଧ୍ୟାୟ

ପୃଥୁ ମହାରାଜ ନଗର ସକଳ ସୁଷମା ଆଧାର
ବିଭିନ୍ନ ରଙ୍ଗର ବସନ ସୁବର୍ଣ୍ଣ ବୈଦୁର୍ଯ୍ୟ ତୋରଣ
ମୁକ୍ତାମାଳା ପୁଷ୍ପ ମାଳାରେ ସୁବାସିତ ଧୂପ ଦୀପରେ
ଦର୍ଶକ ଜନ ମନ ହରେ ନାହିଁ ତୁଳନା ମର୍ତ୍ତ୍ୟରେ

ନଗର ମୁଖ୍ୟ ମାର୍ଗମାନ ଅଗୁରୁ କେତକୀ ଚନ୍ଦନ
ଜଳରେ ହୋଇଥିଲା ସିକ୍ତ ତାହା ପୁଷ୍ପ ଫଳ ଅକ୍ଷତ
ଯବା ଲାଜା ଦୀପ ସହିତ ମାଙ୍ଗଳିକ ଦ୍ରବ୍ୟେ ସଜ୍ଜିତ
ଚଉଦିଗ ସୁପରିଷ୍କୃତ କଦଳୀ ସ୍ତମ୍ଭ ଫଳ ଯୁକ୍ତ

ତରୁ ପଲ୍ଲବେ ଅଳଙ୍କୃତ ହରଇ ଜନ ମନ ନେତ୍ର
ମହାରାଜ ପୁର ମଧ୍ୟରେ ପ୍ରବେଶ କରିବା ବେଳରେ
ସୁନ୍ଦରୀ ପୁର କନ୍ୟାଗଣ ପିନ୍ଧି ନାନା ଦିବ୍ୟ ଭୂଷଣ
ଆନନ୍ଦେ ହୁଳ ହୁଳି ଦେଲେ ବନ୍ଦିଲେ ସ୍ୱର୍ଣ୍ଣ ପ୍ରଦୀପରେ

ପ୍ରଜାମାନେ ନାନା ପ୍ରକାରେ ମାଙ୍ଗଳିକ ଉପହାରରେ
ଭକ୍ତିରେ ସ୍ୱାଗତ କରିଲେ ବ୍ରାହ୍ମଣେ ବେଦଧ୍ୱନି କଲେ
ଶଙ୍ଖ ଦୁନ୍ଦୁଭି ନିନାଦରେ ପ୍ରଜାଙ୍କର ସ୍ତୁତି ମଧ୍ୟରେ
ନିରହଙ୍କାର ମହାବୀର ମହାରାଜ ପୃଥୁ ନିଜର

ନଗର ମଧ୍ୟେ ପ୍ରବେଶିଲେ ପୁର ରାଜ୍ୟ ବାସୀ ପ୍ରଜାରେ
ପୃଥୁ ଅତି ପ୍ରୀତ ମନରେ ବିଭିନ୍ନ ଉପହାର ଦେଲେ
ସେ ପୃଥୁ ନୃପ ମହତ୍ତମ କଲେ ନାନା ଉଦାର କର୍ମ
ନ୍ୟାୟରେ ପୃଥିବୀ ଶାସିଲେ ବିପୁଳ ଯଶ ଅରଜିଲେ
ଶେଷରେ ଶ୍ରୀହରି କୃପାରେ ପରମ ପଦକୁ ଲଭିଲେ

### ସୂତ ଉବାଚ

ଶୌନକ ମୁନିଙ୍କ ଆଗରେ କହନ୍ତି ସୂତ ଆନନ୍ଦରେ
ମୈତ୍ରେୟ ଠାରୁ ଏ ପ୍ରକାର ଆଜି ନୃପତି ପୃଥୁଙ୍କର
ଶୁଣ ଯଶ କରି ଶ୍ରବଣ ବିଦୁର ଭକତ ପ୍ରଧାନ
ଅତି ଆନନ୍ଦିତ ଚିତ୍ତରେ ପୁଣି ମୈତ୍ରେୟଙ୍କୁ ପୁଚ୍ଛିଲେ

### ବିଦୁର ଉବାଚ

ବ୍ରାହ୍ମଣେ ବେଦ ବିଧାନରେ ପୃଥୁଙ୍କୁ ଅଭିଷେକ କଲେ
ସର୍ବ ଦେବତା ଗଣ ସନ୍ତୋଷେ କଲେ ଉପହାର ପ୍ରଦାନ
ସେ ନିଜ ବୈଷ୍ଣବ ତେଜରେ ପୃଥିବୀ ଦୋହନ କରିଲେ
ସେ ନିଜ ପରାକ୍ରମରେ ଯେ ସବୁ ବିଷୟ ଭୋଗିଲେ

ତାହାର ଉଚ୍ଛିଷ୍ଟ ସ୍ୱରୂପ ବିଜୟଙ୍କୁ ଆଜି ପର୍ଯ୍ୟନ୍ତ
ସ୍ୱେଚ୍ଛାରେ ଭୋଗ କରୁଛନ୍ତି ସୁଖରେ ଜୀବନ ବିତାନ୍ତି
ଏପରି କେ ବୁଦ୍ଧିମାନ ନାହିଁ ଯେ ତାଙ୍କ କୀର୍ତ୍ତି ନଶୁଣଇ
ହେ ବ୍ରାହ୍ମଣ୍ୟ ମୂର୍ତ୍ତି ଆପଣ ସୁଚରିତ କର ବର୍ଣ୍ଣନ

### ମୈତ୍ରେୟ ଉବାଚ

ଗଙ୍ଗା ଯମୁନାର ମଧ୍ୟରେ ପୁଣ୍ୟ ପବିତ୍ର ପ୍ରଦେଶରେ
ନିବାସ କରି ଆନନ୍ଦରେ ନିଜ ପୁଣ୍ୟ କ୍ଷୟ ଇଚ୍ଛାରେ
ପ୍ରାରବ୍ଧ କର୍ମ ଅନୁସାରେ ବିଷୟ ସୁଖ ଭୋଗ କଲେ
ବ୍ରାହ୍ମଣ ବୈଷ୍ଣବ ବ୍ୟତୀତ ସପତ ଦ୍ୱୀପର ସମସ୍ତ

ସମସ୍ତ ଲୋକଙ୍କ ଉପରେ ଶାସନ କଲେ ଅବାଧରେ
ସେ ପୃଥୁ ମହାରାଜ ଥରେ ମହାଯଜ୍ଞ ଆରମ୍ଭ କଲେ
ଦେବତା ଓ ବ୍ରହ୍ମର୍ଷି ଗଣ ସେ ସ୍ଥାନେ କଲେ ଆଗମନ
ରାଜା ପୃଥୁ ଭକ୍ତି ଭାବରେ ସମସ୍ତଙ୍କୁ ପୂଜା କରିଲେ

ଚନ୍ଦ୍ର ପରି ତାରା ମଧ୍ୟରେ ପୃଥୁନୃପ ଶୋଭା ପାଇଲେ
ଉଚ୍ଚ ଶରୀର ବର୍ଣ୍ଣ ଗୌର ଭୁଜ ଦ୍ୱୟ ଦୀର୍ଘ ବିଶାଳ
ଅରୁଣ ସୁତ୍ୱଳ ନୟନ ନାସା ଉନ୍ନତ ମନୋରମ
ଉଚ୍ଚ ସ୍କନ୍ଧ ସ୍ୱରୂପ ସୌମ୍ୟ ସ୍ମିତ ହାସ୍ୟ ଶୋଭି ବଦନ

ବକ୍ଷସ୍ଥଳ ଅତି ବିସ୍ତୀର୍ଣ୍ଣ ଶ୍ରୋଣୀ ଅଶ୍ୱପୁ ପତ୍ର ସମ
ତ୍ରିବଳି ରେଖା ଉଦରରେ ଆବର୍ତ୍ତ ନାଭି ମନହରେ
ଶରୀର ତେଜସ୍ୱୀ ଅଟଇ ସୁବର୍ଣ୍ଣର ଛବି ନିନ୍ଦଇ
ପଦାଗ୍ର ଉନ୍ନତ ସୁନ୍ଦର କେଶ କୁଂଚିତ ମନୋହର

ଚିକ୍କଣ ନୀଳ କୃଷ୍ଣ ବର୍ଣ୍ଣ ଜନ ମନ କରେ ହରଣ
ଶଙ୍ଖ ପରି ରମ୍ୟ ଗ୍ରୀବାରେ ତ୍ରିବଳି ରେଖା ଚିତ୍ତ ହରେ
ମହାର୍ଘ ବିଶୁଦ୍ଧ ବସନ ସେ କରିଥିଲେ ପରିଧାନ
ସେ ଯଜ୍ଞ ଦୀକ୍ଷା ଅନୁସାରେ ଆଭୂଷଣକ ମାନ ତେଜିଥିଲେ

ଅଙ୍ଗ ପ୍ରତ୍ୟେଙ୍ଗର ପ୍ରାକୃତ ଶୋଭା ହୁଅଇ ପ୍ରକାଶିତ
ଶରୀରେ କୃଷ୍ଣ ମୃଗ ଚର୍ମ ହସ୍ତେ କୁଶ କଲେ ଧାରଣ
ତେଣୁ ତାଙ୍କ ଶରୀର କାନ୍ତି ବୃଦ୍ଧି ଯେ ପାଇଥିଲା ଅତି
ସେନିଜ ନିତ୍ୟ କୃତ୍ୟ ମାନ ଯଥାବିଧି କଲେ ସଂପନ୍ନ

ସେ ସ୍ନିଗ୍ଧ ଶୀତଳ ଚକ୍ଷୁରେ ଚାହିଁ ସଭାସଦ ମଧ୍ୟରେ
ଆନନ୍ଦ ବିସ୍ତାର କରିଲେ ସକଳ ସଂବୋଧି କହିଲେ
ଭୂଷଣ ସୁନ୍ଦର ଅତ୍ୟନ୍ତ ସ୍ପଷ୍ଟ ପଦଯୁକ୍ତ ବିଚିତ୍ର
ମଧୁର ଗମ୍ଭୀର ଉତ୍ତମ ସର୍ବ ବ୍ୟାକୁଳତା ବିହୀନ

ମନେ ହେଉଥିଲା ପ୍ରତୀତ ଯେପରି କି ସେ ସମସ୍ତ
ଲୋକ ଉପକାର ନିମିତ୍ତ ସର୍ବଦା ଅଛନ୍ତି ପ୍ରସ୍ତୁତ
ନିଜ ଅନୁଭୂତି ଭାଷାରେ ପ୍ରକାଶୁ ଅଛନ୍ତି ସେଠାରେ

### ରାଜୋବାଚ

ହେ ଉପସ୍ଥିତ ସନ୍ଥଗଣ ଆପଣଙ୍କ ହେଉ କଲ୍ୟାଣ
ଯେ ମହାତ୍ମା ମନୀଷୀଗଣ କରିଅଛନ୍ତି ଆଗମନ
ସମସ୍ତେ ମୋ ପ୍ରାର୍ଥନା ଶୁଣ କରେ ମୁଁ ନମ୍ର ନିବେଦନ
ଜିଜ୍ଞାସୁ ନିଜର ବୁଦ୍ଧିରେ ବିଚାର କରି ହୃଦୟରେ

ନିଜର ଅନୁଭୂତି ମାନ ପ୍ରକାଶ ଅତି ପ୍ରିୟ ଜନ
ପ୍ରଜାଙ୍କୁ ଶାସିବା ରଖିବା ତାହାଙ୍କୁ ବୃତ୍ତି ଯୋଗାଇବା
ସମସ୍ତଙ୍କୁ ପୃଥକ ଭାବରେ ନିଜ ନିଜର ମର୍ଯ୍ୟାଦାରେ
ସ୍ଥିର ରଖିବା ଉଦ୍ଦେଶ୍ୟରେ ମୁନିଯୁକ୍ତ ଇହ ଲୋକରେ

ଏ ସମସ୍ତ କର୍ମମାନ ଯଥା ବିଧି କରେ ପାଳନ
କର୍ମର ସାକ୍ଷୀ ଭଗବାନ ମୋ ପ୍ରତି ହୋଇବେ ପ୍ରସନ୍ନ
ବ୍ରହ୍ମଜ୍ଞ ମୁନି ଏଥିପାଇଁ ଯେଉଁ ନିର୍ଦ୍ଦେଶ ଛନ୍ତି ଦେଇ
ସେ ସବୁ ଏ ଲୋକେ ମିଳିବ ମୋ ଅଭିଳାଷ ପୂର୍ଣ୍ଣ ହେବ

ଯେ ଧର୍ମର ଶିକ୍ଷା ନ ଦେଇ ପ୍ରଜାଠାରୁ କର ଆଣଇ
ସେ ରାଜା ପ୍ରଜାଙ୍କ ପାପରେ ଭାଗୀ ହୁଏ ଏହି ସଂସାରେ
ତାର ଐଶ୍ୱର୍ଯ୍ୟ ହୁଏ ନାଶ ଅନ୍ତେ ସେ ନର୍କେ କରେ ବାସ
ହେ ମୋର ପ୍ରିୟ ପ୍ରଜା ଗଣ ମୋ କଥା ସାବଧାନ ଶୁଣ

ରାଜାଙ୍କର ପର ଲୋକରେ ହିତ ସାଧନ ଉଦ୍ଦେଶ୍ୟରେ
ସଦା ପରସ୍ପର ମଧ୍ୟରେ ଅସୂୟା ତେଜି ହୃଦୟରେ
ଈଶ୍ୱରଙ୍କୁ କରି ସ୍ମରଣ କରନ୍ତୁ ସ୍ୱଧର୍ମ ପାଳନ
ଆପଣ ମାନଙ୍କ ଏଥିରେ ମଙ୍ଗଳ ହୋଇବ ଅଚିରେ

ଏହି କର୍ମ ମୋ ପ୍ରତି ମଧ୍ୟ ଯଥାର୍ଥ ଅନୁଗ୍ରହ ହେବ
ହେ ଶୁଦ୍ଧ ଚେତା ଋଷିଗଣ ପିତୃ ଦେବତା ଭକ୍ତ ଜନ
ଏହି ପ୍ରାର୍ଥନା ମଧ୍ୟ ମୋର ସର୍ବେ ଅନୁମୋଦନ କର
କର୍ତ୍ତା କୌଣସି କର୍ମ କରିଲେ ସଦା ଉପଦେଷ୍ଟା ସଙ୍ଗରେ

ସମର୍ଥକ ବି ମୃତ୍ୟୁ ପରେ ଫଳ ପାନ୍ତି ସମଭାବରେ
ଜ୍ଞାନୀମାନେ ଏହା କହନ୍ତି ଶାସ୍ତ୍ରର ମଧ ଏହି ନୀତି
ଯଜ୍ଞ ପ୍ରତି ହରି ବେଦନ ସଫଳ ହୁଏ ସର୍ବ କର୍ମ

ଏହି କାରଣୁ ଇହ ଲୋକ ପର ଲୋକେ ମଧ କେତେକ
ଦେହ ଦିଶଇ ତେଜୀୟାନ କହନ୍ତି କେତେ ବିଜ୍ଞଜନ
ମୋହର ପିତାମହ ଅଙ୍ଗ ବିଧାତା ଧ୍ରୁବେ ବଳି ଶିବ
ମନୁ ନୃପ ଉତ୍ତାନ ପାଦ ରାଜର୍ଷି ପ୍ରିୟବ୍ରତ ପ୍ରହ୍ଲାଦ
ଅନ୍ୟାନ୍ୟ ମହାତ୍ମା ଗଣର ମତରେ ଶ୍ରୀହରି ଗଦାଧର

ଧରମ ଅର୍ଥ ସର୍ବ କାମ ମୁକତି କରନ୍ତି ପ୍ରଦାନ
ଧର୍ମ ମୂଢ଼ ବେଣ ପ୍ରଭୃତି ଭିନ୍ନ ଭିନ୍ନ ମତ ଦିଅନ୍ତି
କର୍ମ କିମ୍ବା ଦେବତା ଗଣ କରିଥାନ୍ତି ଫଳ ପ୍ରଦାନ
ଈଶ୍ୱରେ ନାହିଁ ପ୍ରୟୋଜନ ଏହା ଅଟେ ମିଥ୍ୟା ବଚନ

ଜଡ ଅଟଇ ସର୍ବ କର୍ମ ଫଳ ଦାନରେ ନୁହେଁ କ୍ଷମ
ଦେବତା ସ୍ୱାଧୀନ ନୁହନ୍ତି ତାଙ୍କର ଅନ୍ତର୍ଯ୍ୟାମୀ ଛନ୍ତି
ଏହା ଅଟଇ ବେଦମତ ପୁନଶ୍ଚ କର୍ମ ଫଳ ଅର୍ଥ
ଧର୍ମ କାମ ମୋକ୍ଷ ପ୍ରଭୃତି ବିଭିନ୍ନ ପ୍ରକାର ଅଛନ୍ତି

ଯଦ୍ୟପି କେବଳ କରମ କରୁଥାନ୍ତା ଫଳ ପ୍ରଦାନ
ଫଳେ ତାରତମ୍ୟ ନଥାନ୍ତା ସର୍ବ କର୍ମ ସିଦ୍ଧ ହୁଅନ୍ତି
କେବେ ନ ହୁଏ ସେ ପ୍ରକାର ତେଣୁ ଯେ ଅଛି ଈଶ୍ୱର
ସେ କର୍ମଫଳ ଦିଅନ୍ତ ପ୍ରଭୁ ସେ ସ୍ୱତନ୍ତ୍ର ଅଟନ୍ତି

କର୍ମ ଫଳ ଦାନେ ସମର୍ଥ ତେଣୁ କର୍ମ ଫଳ ନିମିତ୍ତ
ଶ୍ରୀହରି ଚରଣ ନିଃସୃତ ଗଙ୍ଗା ଦର୍ଶନରେ ଯେମନ୍ତ
ସକଳ ପାପ ହୁଏ ନାଶ ସେପରି ପ୍ରଭୁ ଜଗଦୀଶ
ପାଦ ସେବାରେ ଦେଲେ ମନସାତ୍ତ୍ୱିକ ଭାବେ ଦିନୁ ଦିନ

ପୂର୍ବ ସଞ୍ଚିତ ମନୋବଳ ବିନାଶ ଲଭଇ ତତ୍କାଳ
ମନୋବଳର ବିନାଶରେ ବୈରାଗ୍ୟ ଜନ୍ମଇ ଚିତ୍ତରେ
ବୈରାଗ୍ୟ ଜନ୍ମେ ତତ୍ତ୍ୱଜ୍ଞାନ ମିଳେ ଭଗବତ ଦର୍ଶନ
ହରି ପଦାଶ୍ରୟ ମିଳଇ ଭବ ଚକ୍ରରେ ନ ଘୁରଇ

ନିଜ ବର୍ଣ୍ଣାଶ୍ରମ ବୃତ୍ତିରେ ମନ ବାକ୍ୟ ଦେହ କ୍ରିୟାରେ
ସର୍ବକାମ ପ୍ରଦ ହରିଙ୍କର ପାଦ ପଦ୍ମକୁ ନିରନ୍ତର
ଭଜ ନିଷ୍କାପଦ ଭାବରେ ସିଦ୍ଧି ଲାଭ ହେବ ଅଚିରେ

ସେ ବିଶୁଦ୍ଧ ବିଜ୍ଞାନ ଘନ  ନିର୍ଗୁଣ ମୂର୍ତ୍ତି ଭଗବାନ
ତଥାପି ସେ କର୍ମ ମାର୍ଗରେ  ଦ୍ରବ୍ୟ ଗୁଣ କ୍ରିୟା ରୂପରେ
ଅର୍ଥାଶ୍ରୟ ତନ୍ତ୍ର ବସ୍ତୁ ଶକ୍ତି  ତଥା ଜ୍ୟୋତିଷ୍ଟୋମ ପ୍ରଭୃତି
ଗୁଣାଶ୍ରୟ ନାନା ନାମରେ  ପ୍ରକାଶିତ ଯଜ୍ଞ ରୂପରେ

ଭିନ୍ନ ଭିନ୍ନ କାଷ୍ଠ ଖଣ୍ଡରେ  ଅନଳ ସଂଯୋଗ କରିଲେ
ଅଗ୍ନି ଭିନ୍ନ ଭିନ୍ନ ଆକାରରେ  ଜଳଇ ବିବିଧ ରଙ୍ଗରେ
ଆନନ୍ଦ ରୂପ ଭଗବାନ  ନାନା ଶରୀରେ ଭିନ୍ନ ଭିନ୍ନ
ବିଷୟ ବୁଦ୍ଧିକୁ ସ୍ୱୀକାର  କରି ପୃଥକ ପୃଥକ ପ୍ରକାର

ଆନନ୍ଦର ଅଳ ସ୍ୱରୂପ  ସଦା ହୁଅନ୍ତି ପ୍ରକାଶିତ
ଏଣୁ ଯଜ୍ଞ କର୍ମ ଫଳ  ଉଭୟ ରୂପ ହରିଙ୍କର
ଏ ବିଷୟ ଚିତ୍ତେ ରଖିଣ  ଯଜ୍ଞ କରିବ ଅନୁଷ୍ଠାନ
କର୍ମ ଫଳ ଯଜ୍ଞ କର୍ମ  ଭଗବାନରୁ ନୁହେ ଭିନ୍ନ

ପୃଥିବୀ ମଧ୍ୟରେ ଯେ ମୋର  ପ୍ରଜାମାନେ ଯଜ୍ଞ ଅଧୀର
ହରିଙ୍କୁ ଅନନ୍ୟ ନିଷ୍ଠାରେ  ନିଜର ଧର୍ମ ଅନୁସାରେ
ନିରନ୍ତର ପୂଜୁ ଅଛନ୍ତି  ସେ ମତେ ଅନୁଗ୍ରହ କରନ୍ତି
ସହିଷ୍ଣୁତା ତପସ୍ୟା ଜ୍ଞାନ  ବିଭୂତି ଯୋଗରୁ ବ୍ରାହ୍ମଣ

ବୈଷ୍ଣବ ମାନଙ୍କର କୁଳ  ସର୍ବଦା ହୁଅଇ ଉଜ୍ଜ୍ୱଳ
କ୍ଷତ୍ରି ରାଜ କୁଳର ଧନ  ତେଜ ରାଜ କୁଳର ଧନ
ବୈଷ୍ଣବ ମାନଙ୍କ ଉପରେ  କେବେ ପ୍ରଭାବ ନ ବିସ୍ତାରେ
ବ୍ରହ୍ମାଦି ଦେବ ଅଗ୍ରଗଣ୍ୟ  ପୁରାଣ ପୁରୁଷ ଉତ୍ତମ

ହରି ବ୍ରାହ୍ମଣଙ୍କୁ ସେବନ୍ତି  ବ୍ରାହ୍ମଣ ଚରଣ ବନ୍ଦନ୍ତି
ଏଣୁ ହରି ପବିତ୍ର କୀର୍ତ୍ତି  ଲକ୍ଷ୍ମୀ ଦେବୀଙ୍କୁ ଲଭିଛନ୍ତି
ସର୍ବାନ୍ତର୍ଯ୍ୟାମୀ ସର୍ବେଶ୍ୱର  ସ୍ୱୟଂ ପ୍ରକାଶ ଦାମୋଦର
ବ୍ରାହ୍ମଣ ପ୍ରିୟ ଯେ ଅଟନ୍ତି  ସେବାରେ ଆନନ୍ଦ ଲଭନ୍ତି

ତୁମେମାନେ ସେ ହରିଙ୍କର  ସେ ଲୋକ ସଂଗ୍ରହ ଧର୍ମର
ଅନୁସାରେ ନମ୍ର ଭାବରେ  ଆପଣମାନେ ଯେ ଭକ୍ତିରେ
ଆପଣମାନେ ନିରନ୍ତର  ବ୍ରାହ୍ମଣଙ୍କର ସେବାକର
କେବଳ ବ୍ରାହ୍ମଣ ସେବାରେ  ବିନା ଜ୍ଞାନାଦି ଅଭ୍ୟାସରେ

ଚିତ୍ତ ପରିଶୁଦ୍ଧ ହୁଅଇ  ଶାନ୍ତିରୁ ମୁକତି ମିଳଇ
ନିତ୍ୟ ଅନନ୍ତ ଭଗବାନ  ସର୍ବ ଦେବ ମୟ ଚୈତନ୍ୟ
ମୂରତି ବୋଲି ଯେ ଜାଣନ୍ତି  ସେ ତତ୍ତ୍ୱକୋବିଦ ବ୍ୟକ୍ତି
ଇନ୍ଦ୍ରାଦି ଦେବତା ନାମରେ  ଯଦି ବ୍ରାହ୍ମଣର ମୁଖରେ

ଶ୍ରଦ୍ଧାରେ କରଇ ହବନ  ତେବେ ଅନନ୍ତ ଭଗବାନ
ଯଥା ଭୁଂଜନ୍ତି ସନ୍ତୋଷରେ  ତଥା ସେପରି ଜଡ ଆନନ୍ଦରେ
ଘୃତ ଆହୁତିର ପ୍ରଦାନ  ନ କରନ୍ତି କେବେ ଗ୍ରହଣ
ସେ ସର୍ବାତ୍ମା ଭଗବାନ୍  ବିଶ୍ୱେଶ ସର୍ବ ଶକ୍ତିମାନ

ନିତ୍ୟ ବିଶୁଦ୍ଧ ସନାତନ  ବେଦ ଯେ ଦର୍ପଣ ସମାନ
ପ୍ରତିବିମ୍ବ ଯଥା ତହିଁରେ  ଦେଖାଯାଏ ପୂର୍ଣ୍ଣ ଭାବରେ
ପ୍ରତ୍ୟେକ ପଦାର୍ଥର ତତ୍ତ୍ୱ  ଦେବରେ ହୁଏ ପ୍ରକଶିତ
ବ୍ରାହ୍ମଣ ପରମାର୍ଥ ତତ୍ତ୍ୱ  ସଂପୂର୍ଣ୍ଣ ଜାଣିବା ନିମିତ୍ତ

ବେଦ ବେଦାଙ୍ଗ ଅଧ୍ୟୟନ  ଜ୍ଞାନକୁ କରନ୍ତି ଧାରଣ
ଶ୍ରଦ୍ଧାରେ ତପସ୍ୟା କରନ୍ତ  ଶୁଦ୍ଧ ମଙ୍ଗଳ ଆଚରନ୍ତି
ଇନ୍ଦ୍ରିୟ ମାନଙ୍କୁ ସଂଯମ  ସମାଧିରେ ହୁଅନ୍ତି ମଗ୍ନ
ମଉନ ବ୍ରତ ଆଚରନ୍ତି  ବୃଥା ବାର୍ତ୍ତାଳାପ ତେଜନ୍ତି

ସେ ବ୍ରାହ୍ମଣ ମାନଙ୍କର  ଚରଣ ରେଣୁକୁ ନିରନ୍ତର
ମୁ ମୋର ମୁକୁଟ ଉପରେ  ଧାରଣ ପାଇଁ ଇଚ୍ଛା କରେ
ଯେ ଏହା ସର୍ବଦା ଶିରରେ  ବହନ କରଇ ଭକ୍ତିରେ
ତାହାର ପାପ ନାଶ ଯାଇ  ସକାଳ ସୁଗୁଣ ମିଳଇ

ସେ ସୁଶୀଳ ଗୁଣବାନ  କୃତଜ୍ଞ ଗୁରୁଜନ ଗଣ
ଚରଣ ଯେ ନିତ୍ୟ ସେବଇ  ସକଳ ସଂପଦ ଲଭଇ
ଗୋରୁ ବ୍ରାହ୍ମଣ ହରି ଭକ୍ତ  ସହିତ ହରି ଜଗନ୍ନାଥ
ହୁଅନ୍ତୁ ମୋ ପ୍ରତି ପ୍ରସନ୍ନ  ଏହା ମୋ ନମ୍ର ନିବେଦନ

**ମୈତ୍ରେୟ ଉବାଚ**

ସେ ମହାରାଜ ପୃଥୁଙ୍କର  ଶୁଣି ବଚନ ଏ ପ୍ରକାର
ଦେବତା ପିତର ବ୍ରାହ୍ମଣ  ପ୍ରଭୃତି ସର୍ବ ସାଧୁଜନ
ଅତ୍ୟନ୍ତ ପ୍ରସନ୍ନ ହୋଇଲେ  ସାଧୁ ସାଧୁ ଯେ ପ୍ରଶଂସିଲେ
ପୁତ୍ର ପିତାକୁ ପୁଣ୍ୟ ଲୋକ  ନିଏ ସତ୍ୟ ଏ ବେଦ ବାକ୍ୟ

ବ୍ରାହ୍ମଣ ପାପେ ପାପୀ ବେଣ ମୃତ୍ୟୁ କରିଲା ବରଣ
ପୁଣ୍ୟ ବଳରେ ପୃଥୁଙ୍କର ନରକୁ ଲଭିଲା ଉଦ୍ଧାର
ହିରଣ୍ୟ କଶିପୁ ସେପରି ଭଗବାନଙ୍କୁ ନିନ୍ଦାକରି
ନର୍କରେ ପତିତ ହୋଇଲା ପ୍ରହ୍ଲାଦ ଯୋଗୁ ମୁକ୍ତ ହେଲା

ହେ ପୃଥୁ ନୃପ ବୀରବର ପୃଥ୍ୱୀବୀ ପତି ସର୍ବେଶ୍ୱର
ଶ୍ରୀହରି ଚରଣେ ତୁମର ଭକ୍ତି ଥିବାରୁ ଏ ପ୍ରକାର
ଅନେକ ବରଷ ପର୍ଯ୍ୟନ୍ତ ଆପଣ ରହନ୍ତୁ ଜୀବିତ
ହେ ପୁତ କୀର୍ତ୍ତି ନୃପବର ବ୍ରାହ୍ମଣ୍ୟ ଦେବ ହରିଙ୍କର

କଥା କରୁଛନ୍ତି ପ୍ରଚାର ଅତ୍ୟନ୍ତ ସୌଭାଗ୍ୟ ଆମର
ଆପଣଙ୍କୁ ପ୍ରଭୁ ଭାବରେ ପାଇ ଈଶ୍ୱରଙ୍କ ରାଜ୍ୟରେ
ଏଠାରେ ରହିଛୁ ସୁଖରେ ଅତି ଆନନ୍ଦିତ ଚିତ୍ତରେ
ଆଶ୍ରିତଙ୍କୁ ଏହି ପ୍ରକାର ଉପଦେଶ ଆପଣଙ୍କର

ପକ୍ଷରେ ଆଶ୍ଚର୍ଯ୍ୟ ନୁହଇ ମହାତ୍ମାଙ୍କର ସ୍ୱଭାବ ଏହି
ଆମେ ପ୍ରାରବ୍ଧର ବଶରେ ବିବେକ ହାରି ଅଜ୍ଞାନରେ
ଭ୍ରମୁ ଜନ୍ମ ମୃତ୍ୟୁ ଚକ୍ରରେ ଅସାର ସଂସାର ମଧରେ
ହେ ପ୍ରଭୁ ଉପଦେଶ ତୋର ଅଜ୍ଞାନ ତାର ହେଲୁ ପାର

ଶୁଦ୍ଧ ସତ୍ତ୍ୱମୟ ଆପଣ ଅଟନ୍ତି ପୁରୁଷ ପରମ
ବ୍ରାହ୍ମଣ କ୍ଷତ୍ରିୟ ମଧରେ ପ୍ରବେଶି ନିଜର ତେଜରେ
ରକ୍ଷା କରୁଛନ୍ତି ସଂସାର ଘେନନ୍ତୁ ଆମ ନମସ୍କାର
ପୁଣ୍ୟ ଏ ଭାଗବତ କଥା ହରଇ ଜନ୍ମ ମୃତ୍ୟୁ ବ୍ୟଥା

ସୁଜନେ ବିଷ୍ଣୁ ନାମ ସ୍ମର ଭବସାଗରୁ ହେବ ପାର
ଭଣଇ ଧନେଶ୍ୱର ଦାଶ ମୁ ତୁମର ଦାସ ଅନୁଦାଶ

ଇତି ଶ୍ରୀମଦ୍ ଭାଗବତେ ପୃଥୁଚରିତେ ମହାପୁରାଣେ ଚତୁର୍ଥ ସ୍କନ୍ଧେ ଏକବିଂଶୋଽଧ୍ୟାୟ ।

* * * * * * *

## ଦ୍ୱାବିଂଶ ଅଧ୍ୟାୟ

ପ୍ରଜାମାନେ ଏହି ପ୍ରକାରେ ପ୍ରାର୍ଥନା କରିବା ବେଳରେ
ସୂର୍ଯ୍ୟ ସମାନ ତେଜୀୟାନ ସନକ ଆଦି ଚାରି ଜଣ
ମୁନି ଈଶ୍ୱର ସ୍ୱଇଚ୍ଛାରେ ପ୍ରବେଶ କରିଲେ ସେଠାରେ
ଏ ବିଖ୍ୟାତ ସିଦ୍ଧେଶ୍ୱର ଦିବ୍ୟ କାନ୍ତିରେ ସଂସାରର

ପାପ ତାପ କରି ମୋଚନ ବ୍ୟୋମ କଲେ ଅବତରଣ
ବିଷୟୀ ସକ୍ତ ଜୀବ ଯେହି ଯଥା ବିଷୟକୁ ଦେଖି ଧାମଇ
ପୃଥୁ ନୃପତି ସେ ପ୍ରକାରେ ଧାଇଁଲେ ତାଙ୍କ ସାମପରେ
ସଦସ୍ୟ ମାନଙ୍କ ସଙ୍ଗରେ କର ଯୋଡିଣ ଉଭା ହେଲେ

ଭକ୍ତିରେ ଅର୍ଘ୍ୟ ପାଦ୍ୟ ଦେଇ ମହାର୍ଘ ଆସନରେ ବସାଇ
ବିନୟ ଅବନତ ଶିରେ ସେମାନଙ୍କୁ ପୂଜା କରିଲେ
ନିଜ କେଶ ପୁଣି ଶିରରେ ତାଙ୍କ ପାଦୋକ ଛିଞ୍ଚିଲେ
ପୃଥୁ ନିଜ ଶିଷ୍ଟାଚାରରେ ଲୋକ ମାନଙ୍କୁ ଶିକ୍ଷା ଦେଲେ

ସଜ୍ଜନ ମାନଙ୍କ ସହିତ ଶିଷ୍ଟ ବ୍ୟବହାର ଉଚିତ
ସନକ ଆଦି ମୁନିବର ଅଗ୍ରଜ ମଧେ ହରିଙ୍କର
ସେମାନେ ପୂର୍ଣ୍ଣ ସିଂହାସନ ବିଜୟ କରି ନିଜ ସ୍ଥାନ
ଅଗ୍ନିପରି ଶୋଭା ପାଇଲେ ମହାରାଜ ଅତି ଶ୍ରଦ୍ଧାରେ

ଅତ୍ୟନ୍ତ ସଂଯମ ଚିତ୍ତରେ ପ୍ରେମ ସହକାରେ କହିଲେ
ରାଜା ଅନୁଚର ସଙ୍ଗରେ ଦେଖିଣ ସହସା ନ ଚିହ୍ନିଲେ
ହେ ଶୁଭଙ୍କର ମୁନିଗଣ ଆପଣ ମାନଙ୍କ ଦର୍ଶନ
ଦୁର୍ଲ୍ଲଭ ଯୋଗୀଙ୍କ ପକ୍ଷରେ ମୁଁ ପୂର୍ବଜନ୍ମ ପୁଣ୍ୟରେ

ତୁମକୁ ଦେଖିଲି ନେତ୍ରରେ ମୋ ଜୀବନ ଧନ୍ୟ ଏ ସଂସାରେ
ଧନ୍ୟ ହୋଇଣ ମୁନିଗଣ ପାଇଲି ତୁମର ଦର୍ଶନ
ଅନୁଚରଣ ସହ ଭଗବାନ ଶିବ ବ୍ରହ୍ମା ବ୍ରାହ୍ମଣ ଗଣ
ଯା ପ୍ରତି ହୁଅଇ ପ୍ରସନ୍ନ ଇହ ପରଲୋକ ତା ପାଇଁ

କିଛି ହିଁ ଦୁର୍ଲ୍ଲଭ ନୁହଇ ଆତ୍ମା ସମସ୍ତଙ୍କୁ ଦେଖଇ
ତଥା ଆପଣ ସବୁସ୍ଥାନ କରୁଥିଲେ ବି ପର୍ଯ୍ୟଟନ
ଆପଣ କୁ କେ ନ ଦେଖନ୍ତି ଆପଣ ସମସ୍ତ ଦେଖନ୍ତି
ଯେ ଗୃହେ ଆପଣଙ୍କ ସମ ପୂଜାଆସ୍ପଦ ମୁନିଗଣ

ଭୂମି ଉଦକଙ୍କ ତୃଣାସନ ମାଙ୍ଗଳିକ ସ୍ତୁତି ଗାୟନ
ସେବକରେ ଗୃହପତିର ସେବାକୁ କରନ୍ତି ସ୍ୱୀକାର
ସେହି ଗୃହସ୍ଥ ଧନ ହୀନ ହେଲେ ବି ସଂସାରରେ ଧନ୍ୟ
ବିପ୍ର ପାଦ ଜଳ ଯେ ଗୃହରେକେବେ ହେ ନ ପଡଇ ଥରେ

ଧନ ସଂପଦ ସୁବିପୁଳ ସେ ଗୃହେ ହୋଇଲେ ବି ଠୁଳ
କାଳ ସରପ ବାସସ୍ଥାନ ବୃକ୍ଷ ସମାନ ଗୃହ ଜାଣ
ହେ ପୂଜ୍ୟ ମୁନୀଶ୍ୱର ଗଣ ଘେନନ୍ତୁ ସ୍ୱାଗତ ପ୍ରଣାମ
ବାଲ୍ୟକାଳରୁ ଏହିପରି ମୁମୁକ୍ଷ ମାର୍ଗ ଅନୁସରି

ଏକାଗ୍ର ଚିତ୍ତରେ ସତତ ବ୍ରହ୍ମ ଚର୍ଯ୍ୟାଦି ମହାବ୍ରତ
କରୁଅଛନ୍ତି ଆଚରଣ ହରି ଚରଣ କରି ଧ୍ୟାନ
ଏ ବିଶ୍ୱ ବିପଦର ସ୍ଥାନ ନିଜ ନିଜ କର୍ମ ଅଧୀନ
ଆମେ ପଡିଛୁ ଏ ସଂସାରେ ମଜିଛୁ ବିଷୟ ଭୋଗରେ

ଏ ସଂସାରୁ ନିସ୍ତାର ପାଇଁ କୌଣସି ଉପାୟ କି ନାହିଁ
ନିରନ୍ତର ଯେଣୁ ଆପଣ ଆତ୍ମାରେ କରନ୍ତି ରମଣ
ଶୁଭା ଅଶୁଭର ବିଚାର ମନୋବୃତ୍ତି ନାହିଁ ତୁମର
ଏ ହେତୁ କୁଶଳର ପ୍ରଶ୍ନ ପୁଛିବାରେ କି ପ୍ରୟୋଜନ

ତାପ ସନ୍ତପ୍ତ ଜୀବଗଣ ପରମ ସୁହୃଦ ଆପଣ
କି ଉପାୟରେ ସହଜରେ କଲ୍ୟାଣ ମିଳଇ ସଂସାରେ
ଏହା ମୁ ଜାଣିବା ଇଛାରେ ପୁଛଇ ଅତି ବିଶ୍ୱାସରେ
ନିତ୍ୟ ଅବ୍ୟକ୍ତ ସନାତନ ଜନ୍ମ ରହିତ ଭଗବାନ

ସର୍ବଦା ଧୀର ବ୍ୟକ୍ତିଠାରେ ପ୍ରକାଶିତ ଆତ୍ମା ରୂପରେ
ଉପାସକ ହୃଦେ ରହନ୍ତି ନିଜ ସ୍ୱରୂପ ପ୍ରକାଶନ୍ତି
ଏକଥା ଅଟେ ଧ୍ରୁବ ସତ୍ୟ ସେହି ନାରାୟଣ ଅଚ୍ୟୁତ
ଭକତ ମାନଙ୍କ ଉପରେ କୃପା କରିବା ଉଦ୍ଦେଶ୍ୟରେ
ଭ୍ରମଣ କରନ୍ତି ସଂସାରେ ସିଦ୍ଧ ମୁନୀଶ୍ୱର ରୂପରେ

### ମୈତ୍ରେୟ ଉବାଚ

ରାଜା ପୃଥୁଙ୍କର ଏ ପ୍ରକାର ଯୁକ୍ତି ଯୁକ୍ତ ଅତି ଉଦାର
ମଧୁର ବଚନ ଶୁଣିଣ ସନତ୍ କୁମାର ହୋଇ ସୁପ୍ରସନ୍ନ
ସ୍ମିତହାସ୍ୟ ପୂର୍ଣ୍ଣ ମୁଖରେ ପୃଥୁଙ୍କୁ ଏପରି କହିଲେ

### ସନତ କୁମାର ଉବାଚ

ହେ ପୃଥୁ ନୃପ ମହାମତି ଆପଣ ସମସ୍ତ ଜାଣନ୍ତି
ମାତ୍ର ପ୍ରାଣୀଗଣ କଲ୍ୟାଣ ପାଇଁ ଅଛନ୍ତି ଏହି ପ୍ରଶ୍ନ
ସଜ୍ଜନ ବୃଦ୍ଧି ଏ ପ୍ରକାରେ ହୋଇଥାଏ ସିନା ସଂସାରେ
ମଧୁସୂଦନ ହରିଙ୍କର ଗୁଣ କୀର୍ତ୍ତନରେ ତୁମର

ରହିଛି ଅବଚଳା ପ୍ରୀତି ଯା ପାଇବା କଠିନ ଅତି
ବକ୍ତା ଶ୍ରୋତା ଅଭିମତରେ ସାଧୁ ସଙ୍ଗ ହୁଏ ସଂସାରେ
ସେମାନଙ୍କର ପ୍ରଶ୍ନୋତ୍ତର କଲ୍ୟାଣ ସାଧେ ଜଗତର
ମଧୁସୂଦନଙ୍କ ଚରଣ କମଳର ଗୁଣ କୀର୍ତ୍ତନ

ଶ୍ରବଣ ବନ୍ଦନରେ ଅତି ତୁମର ଅବିଚଳା ପ୍ରୀତି
ତାହା ସହଜେ ନ ମିଳଇ ହୃଦ କାମ ମଳ ନାଶଇ
ଅନାତ୍ମବ ସ୍ଥୂରେ ବିରକ୍ତି ନିର୍ଗୁଣ ବ୍ରହ୍ମେ ଅନୁରକ୍ତି
କଲ୍ୟାଣ ସାଧଇ ଜୀବର ସୁନିଶ୍ଚିତ ମତ ଶାସ୍ତ୍ରର

ଗୁରୁ ଓ ଶାସ୍ତ୍ର ବଚନରେ ବିଶ୍ୱାସ ରଖିଲା ହୃଦରେ
ଭାଗବତ ଧର୍ମାଚରଣ ଜ୍ଞାନ ଯୋଗରେ ନିଷ୍ଠା ବାନ
ଯୋଗେଶ ହରିଙ୍କ ଅର୍ଚ୍ଚନ ନିତ୍ୟ ପୁଣ୍ୟ କଥା ଶ୍ରବଣ
ତତ୍ତ୍ୱର ଜିଜ୍ଞାସା ଯେ ପୁଣ ଜୀବର ସାଧଇ କଲ୍ୟାଣ

ଏହା ମଧ ଶାସ୍ତ୍ରର ମତ ହେତୁ ରଖନ୍ତୁ ନର ନାଥ
ଶ୍ରୀହରି କଥା ସୁଧାପାନ ନିଃସଙ୍ଗ ଜୀବନ ଯାପନ
ଧନାର୍ଥୀ କାମ ପରାୟଣ ବ୍ୟକ୍ତିଙ୍କର ସଙ୍ଗମ ବର୍ଜନ
ତୋଷ ନିଜ ଆତ୍ମ ଲାଭରେ ଜୀବ ଶୁଭ ଶାସ୍ତ୍ର ବିଚାରେ

ଜୀବକୁ ହିଂସା ନ କରିବା ନିବୃତ୍ତି ପଥରେ ରହିବା
ନିଜ ହିତ ଅନୁସନ୍ଧାନ ହରି ଚରିତ ସୁଧା ପାନ
ଯମ ନିୟମାଦି ପାଳନ ନିଷ୍କାମ କରମ ସାଧନ
ଶ୍ରୀତୋଷ୍ଣାଦି ଦ୍ୱନ୍ଦ ସହିବା ଯୋଗକ୍ଷେମ ଚେଷ୍ଟା ତେଜିବା

ମାନବ ଜାତିର କଲ୍ୟାଣ ଏହାହିଁ ଶାସ୍ତ୍ରର ବଚନ
ଶ୍ରୀହରି ଗୁଣ ବାରବାର କୀର୍ତ୍ତନ କଲେ ନିରନ୍ତର
ପ୍ରେମ ଭକ୍ତି ଭାବ ବଢ଼ଇ ସଂସାରେ ବୈରାଗ୍ୟ ଜନ୍ମଇ
ନିର୍ଗୁଣ ପରମ ବ୍ରହ୍ମରେ ପ୍ରୀତି ଜନମଇ ହୃଦରେ

ବ୍ରହ୍ମରେ ବୃଦ୍ଧି ହେଲେ ପ୍ରୀତି ଗୁରୁ ଚରଣ ହୁଏ ପ୍ରାପ୍ତି
ଅଗ୍ନିକାଷ୍ଠରୁ ଜନ୍ମ ହୋଇ ଯେପରି କାଷ୍ଠକୁ ଦହଇ
ସେପରି ବଇରାଗ୍ୟ ଜ୍ଞାନ ବଳେ ହୋଇ ବାସନା ଶୂନ୍ୟ
ଅବିଦ୍ୟା ଆଦି ପଞ୍ଚ କ୍ଲେଶ ଲିଙ୍ଗ ଶରୀରକୁ ପୁରୁଷ

ଅନାୟାସେ କରେ ଦହନ ସଫଳ ହୁଅଇ ଜୀବନ
ଲିଙ୍ଗ ଶରୀରର ବିନାଶ ହୋଇ ଯିବା ହେତୁ ପୁରୁଷ
କର୍ତ୍ତୃତ୍ୱ ପ୍ରଭୃତି ସମସ୍ତ ଗୁଣରୁ ହୁଅଇ ମୁକତ
ଜୀବାତ୍ମା ପରମାତ୍ମାର ଦ୍ୱୈତ ଭାବନା ହୁଏ ଦୂର

ସ୍ୱପ୍ନ ଦୃଷ୍ଟା ପଦାର୍ଥ ଯେହି ଯଥା ଜାଗ୍ରତେ ନ ଦିଶଇ
ତଥା ବାହ୍ୟ ବସ୍ତୁ ଦର୍ଶନରେ ଅନ୍ତର ସୁଖ ଦୁଃଖା ଦିରେ
ପୁରୁଷ ହୁଅଇ ନିର୍ଲିପ୍ତ ନର ଜନ୍ମ କରେ କୃତାର୍ଥ
ଉପାଧି ଅଛଇ ଯାବତ ଭେଦ ବୁଦ୍ଧି ରହେ ତାବତ

ଜୀବ ଇନ୍ଦ୍ରିୟ ବିଷୟର ସଂଯୋଗକାରୀ ଅହଙ୍କାର
ଅନୁଭୂତ ଯେ ହୋଇଥାଇ ଉପାଧି ନାଶେ ନ ହୁଅଇ
ଯେପରି ଦର୍ପଣ ଜଳରେ ବିମ୍ବ ପ୍ରତିବିମ୍ବ ମଧରେ
ଭେଦଭାବ ଦୃଶ୍ୟ ହୁଅଇ ଅନ୍ୟ ସମୟରେ ନୁହଁଇ

ଯେ ସଦା ବିଷୟ ଚନ୍ତଇ ଇନ୍ଦ୍ରିୟ ଲିପ୍ତ ରହି ତହିଁ
କରନ୍ତି ଆକର୍ଷଣ ଚିତ୍ତ ଯଥା ଜଳାଶ୍ରୟ ତୀରସ୍ଥ
କୁଶ ଘାସର ବେଣା ବୁଦାମାନ ଜଳାଶୟ ଜଳ ତକ୍ଷଣ
ଚେର ଦ୍ୱାରା ଜଳ ଶୋଷଣ ତଥା ଇନ୍ଦ୍ରିୟାସକ୍ତ ମନ

ବୁଦ୍ଧିର ବିଚାର ଶକତି କ୍ରମଶଃ ହରଣ କରନ୍ତି
ନାଶ ହେଲେ ବିଚାର ଶକ୍ତି ନରହେ ପୂର୍ବାପର ସ୍ମୃତି
ସ୍ମୃତି ଭ୍ରଂଶେ ନ ରହେ ଜ୍ଞାନ ଏହା ସିଦ୍ଧ ଶଶସ୍ତ୍ରବ ବନ
ଜ୍ଞାନ ନାଶକୁ ଆତ୍ମକୃତ ଆତ୍ମ ନାଶ କହେ ପଣ୍ଡିତ

ଆତ୍ମା ଯୋଗୁଁ ଅନ୍ୟ ପଦାର୍ଥ ପ୍ରିୟ ବୋଲି ହୁଏ ପ୍ରତୀତ
ନିଜ ବ୍ୟତିକ୍ରମ ଫଳରେ ଜୀବାତ୍ମାର ଇହ ଲେଶକରେ
ଯେଉଁ ସ୍ୱାର୍ଥ ହାନି ଘଟଇ ତହୁଁ ଅଧିକ ଯେ କ୍ଷତି ନାହିଁ
ଯେ ଧନ ବିଷୟ ଚିନ୍ତଇ ସର୍ବ ପରୁଷାର୍ଥ ହରାଇ

ଜ୍ଞାନ ବିଜ୍ଞାନ ଭ୍ରଷ୍ଟ ହୋଇ ସ୍ଥାବର ଯୋନିରେ ଜନ୍ମଇ
ଯେଉଁ ଯେଉଁ ବିଷୟ ମାନ ମୋକ୍ଷ ମୋକ୍ଷାନୁ କୂଳ ଧର୍ମ
ଧର୍ମ କାମ ଚତୁଃବର୍ଗରେ ବାଧା ଜନ୍ମାଏ ସଂସାରେ
ଘୋର ଅଜ୍ଞାନ ଅନ୍ଧକାର ପାର ଇଛଇ ଯେଉଁ ନର

ସେ ବିଷୟରେ ଅନାସକ୍ତ ରହିବା ଅଟଇ ଉଚିତ୍
ଏ ଚତୁଃ ବର୍ଗ ମଧ୍ୟେ ସାର ମୁକତି ଅଟଇ କେବଳ
ଅନ୍ୟ ତିନି ପୁରୁଷାର୍ଥେ ହିଁ ସର୍ବଦା କାଳ ଭୟ ଥାଇ
ଶ୍ରେଷ୍ଠ ନିକୃଷ୍ଟ ଜୀବଗଣ ପ୍ରକୃତି ଗୁଣର ବୈଷମ୍ୟ

ହେତୁ ଯେ ଜାତ ହୋଇଛନ୍ତି ସେମାନଙ୍କ ଧର୍ମ ପ୍ରଭୃତି
ତ୍ରି ବର୍ଗକୁ କାଳ ରୂପରେ ଭଗବାନ ହିଁ ନାଶ କରେ
ତେଣୁ ତ୍ରିବର୍ଗରୁ ଜୀବର କେବେ ହେଁ ନୁହଁଇ ନିସ୍ତାର
ଶରୀର ଇନ୍ଦ୍ରିୟ ପ୍ରାଣରେ ବୁଦ୍ଧି ତଥା ଅହଙ୍କାରରେ

ଆବୃତ୍ତ ସମସ୍ତ ସ୍ଥାବର ଜଙ୍ଗମ ପ୍ରାଣୀ ମାନଙ୍କର
ହୃଦେ ଅନ୍ତର୍ଯ୍ୟାମୀ ରୂପରେ ଯେ ପ୍ରକାଶିତ ପ୍ରତ୍ୟକ୍ଷରେ
ମୁଁ ଅଟେ ସେହି ଭଗବାନ ନିଜକୁ ବୁଝ ହେ ରାଜନ
କାର୍ଯ୍ୟ କାରଣେ ରୂପେ ପ୍ରକାଶିତ ଏହି ବିଶ୍ୱ ମାୟା କଳ୍ପିତ

ଯେପରି ମାଳା ହେଲେ ଜ୍ଞାନ ତହିଁ ନ ରହେ ସର୍ପ ଭ୍ରମ
ତଥା ବିବେକ ହେଲେ ଜାତ ତିରୋହିତ ମାୟା ଜଗତ
ଏ ବିଶ୍ୱ ଯହିଁ ପ୍ରକାଶିତ ସେ ଭଗବାନ ନିତ୍ୟ ସତ୍ୟ
ପରିଶୁଦ୍ଧ ମୁକ୍ତ ନୂତନ ପ୍ରକୃତି ମଧ୍ୟେ ଅବସ୍ଥାନ

କରି ମଧ୍ୟ ନୁହେଁ ମଳିନ ପ୍ରକୃତି ଯାହାଙ୍କ ଅଧୀନ
ତାଙ୍କ ପଦେ ନିଅ ଶରଣ ବରଜି ବିଷୟା ଚିନ୍ତନ
ବାସୁଦେବଙ୍କ ଶ୍ରୀଚରଣ ଅଙ୍ଗୁଳିର ଶୋଭା ସ୍ମରିଣ
ଭକ୍ତ ଯଥା ଅନାୟାସରେ ହୃଦ ଗଣ୍ଠି ଛେଦନ କରେ

ସେପରି ଜିତେନ୍ଦ୍ରିୟ ଯତୀ ହୃଦ ଗ୍ରନ୍ଥି ଛେଦି ନ ପାରନ୍ତି
ନେଇ ବାସୁଦେବ ଶରଣ ତୁମେ ତାଙ୍କୁ କର ଭଜନ
ସଂସାର ସାଗର ଅଟଇ ଷଡ଼ରିପୁ ନକ୍ର ବିଚରଇ
ଯେ ହରିଙ୍କୁ ଭୋଗ ରୂପରେ ନଧରି ଯୋଗୀଙ୍କ ପଥରେ

ଭବାବିଧ ତରିବା ଇଛଇ ଅତିଶୟ କ୍ଲେଶ ଭୋଗଇ
ତେଣୁ ହେ ରାଜନ ଆପଣ ଭେଳା କରି ହରି ଚରଣ
ଏ ଦୁସ୍ତର ଭବ ସାଗର ଅକ୍ଲେଶ ହୋଇ ଯାଅ ପାର

### ମୈତ୍ରେୟ ଉବାଚ

ବ୍ରହ୍ମାଙ୍କ ଆତ୍ମଜ କୁମାର ସେ ସନତ କୁମାରଙ୍କର
ପାଇ ଏପରି ଉପଦେଶ ସେ ମହାତ୍ମା ପୃଥୁ ନରେଶ
ତାଙ୍କୁ ଅତ୍ୟନ୍ତ ଆନନ୍ଦରେ ପ୍ରଶଂସା କରିଣ କହିଲେ
ଦୟାଳୁ ହରି ପ୍ରଥମରେ ମୋ ପ୍ରତି ଯେ ଦୟା କରିଥିଲେ

ହେ ଭଗବାନ ଋଷି ଗଣ ତାହା କରିବାକୁ ପୂରଣ
ଆପଣଙ୍କ ଏ ଆଗମନ ମୋର ଜୀବନ ହେଲା ଧନ୍ୟ
ହେ କୃପାଳୁ ଋଷିଗଣ ଯେଉଁ କାର୍ଯ୍ୟ ପାଇଁ ଆପଣ
କରିଥିଲେ ଆଗମନ ତା ସବୁ କଲେଣି ସଂପନ୍ନ

ତା ବଦଳେ ବର୍ତ୍ତମାନ ମୁ ଦେଇପାରିବି ବା କ'ଣ
ମୋର ଏ ଶରୀର ସହିତ ଯାହା କିଛି ଅଛି ପଦାର୍ଥ
ସେ ସକଳ ଅଟଇ ତ ଆପଣଙ୍କ ପ୍ରସାଦ ମାତ୍ର
ହେ ବ୍ରାହ୍ମଣ୍ୟ ମୋର ପ୍ରାଣ ସ୍ତ୍ରୀ ପୁତ୍ର ଧନ ପରିପୂର୍ଣ୍ଣ

ରାଜ ଭବନ, ସିଂହାସନ କୋଷ ମୋର ରାଜ୍ୟ ସୈନ୍ୟ
ସକଳ କଲି ସମର୍ପଣ ସଦୟେ ଘେନନ୍ତୁ ଆପଣ
ସେନାପତିତ୍ୱ ଦଣ୍ଡ ଦାନ ରାଜ୍ୟର ସଂପୂର୍ଣ୍ଣ ଶାସନ
ଏ ସମସ୍ତ ଅଧିକାର ବେଦ ଶାସ୍ତ୍ରଜ୍ଞ ବ୍ରାହ୍ମଣର

ବ୍ରାହ୍ମଣ ମାନେ ନିଜ ଅନ୍ନ ସର୍ବଦା କରନ୍ତି ଭୋଜନ
ନିଜ ନିଜ ବସ୍ତ୍ର ପିନ୍ଧନ୍ତ ସ୍ୱସଂପଦ ଦାନ କରନ୍ତି
କ୍ଷତ୍ରିୟ ଆଦି ଅନ୍ୟ ବର୍ଣ୍ଣ ବିପ୍ର କୃପାରୁ ଭୁଂଜନ୍ତି ଅନ୍ନ
ଆପଣ ବେଦ ପାରଙ୍ଗମ ଆତ୍ମ ତତ୍ତ୍ୱ ବାଦ ନିପୁଣ

ଆପଣମାନେ ଦୟା ବହି ମତେ ଦେଲେ ଏହା ବୁଝାଇ
ଅଭେଦ ଭକ୍ତି ଯାର ଥାଇ ସେ ଶ୍ରୀହରିଙ୍କୁ ଜାଣଇ
ହରି ପଦ ଲାଭ ସାଧନ ପରମ କୃପାଳୁ ଆପଣ
ଦେଇ ଅଧ୍ୟାତ୍ମ ତତ୍ତ୍ୱଜ୍ଞାନ କରନ୍ତି ଦୀନ ଉଦ୍ଧାରଣ
ଏପରି ଉପକାର ପାଇଁ ଦେବାକୁ ମୋର କିଛି ନାହିଁ

### ମୈତ୍ରେୟ ଉବାଚ

ସେ ଆତ୍ମ ନିଷ୍ଠ ମୁନୀଶ୍ୱର ଆଦିନୃପତି ପୃଥୁଙ୍କର
ପୂଜାରେ ସନ୍ତୋଷ ଲଭିଲେ ତାଙ୍କ ସ୍ୱଭାବ ପ୍ରଶଂସିଲେ
ସମସ୍ତଙ୍କ ଦୃଷ୍ଟି ଆଗରେ ଆକାଶେ ଅଦୃଶ୍ୟ ହୋଇଲେ
ମହାତ୍ମା ମାନଙ୍କ ଅଗ୍ରଣୀ ସେ ବେଣୁ ସୁତ ନରମଣି

ଏପରି ଆତ୍ମୋପଦେଶରେ ଚିତ୍ତ ଏକାଗ୍ରତା ଫଳରେ
ସର୍ବଦା ଆତ୍ମସ୍ଥ ହୋଇଲେ ନିଜକୁ କୃତାର୍ଥ ମଣିଲେ
ସେ ବ୍ରହ୍ମ ଅର୍ପଣ ବୁଦ୍ଧିରେ ଦେଶ କାଳ ଶକ୍ତି ବିଚାରେ
ସମସ୍ତ କର୍ମ ଆଚରିଲେ ସ୍ଥିର ଚିତ୍ତେ ଦୃଢ଼ ଭକ୍ତିରେ

ସକଳ କର୍ମ ଫଳ ମାନ ହରିଙ୍କୁ କରି ସମର୍ପଣ
ଆତ୍ମା ପ୍ରକୃତିରୁ ଅତୀତ କର୍ମ ଫଳର ସାକ୍ଷୀ ମାତ୍ର
ବୋଲି ସେ ଉପଲବ୍ଧି କଲେ ସର୍ବଥା ନିର୍ଲିପ୍ତ ରହିଲେ
ସୂର୍ଯ୍ୟ ସମସ୍ତ ପ୍ରକାଶନ୍ତି ଗୁଣ ଦୋଷେ ଲିପ୍ତ ନୁହନ୍ତି

ସେହି ପ୍ରକାର ସର୍ବଭୌମ ସାମ୍ରାଜ୍ୟ ଲକ୍ଷ୍ମୀରେ ସଂପନ୍ନ
ପୃଥୁ ଗୃହସ୍ଥ ଶ୍ରମେ ଥାଇ ଅହଙ୍କାର ରହିତ ହୋଇ
ଇନ୍ଦ୍ରିୟ ବିଷୟ ଭୋଗରେ ସର୍ବଦା ଅନାସକ୍ତ ଥିଲେ
ରହି ସଦା ଆତ୍ମ ନିଷ୍ଠାରେ ସକଳ କର୍ତ୍ତବ୍ୟ କରିଲେ

ନିଜ ଭାର୍ଯ୍ୟା ଅର୍ଚ୍ଚି ଗର୍ଭରେ ପାଞ୍ଚୋଟି ପୁତ୍ର ଜନ୍ମାଇଲେ
ବୃକ ଧୂମ୍ରକେଶ ଦ୍ରବିଣ ହର୍ଯ୍ୟକ୍ଷ ବିଜିତାଶ୍ୱ ନାମ
ଶ୍ରୀହରି ଅଂଶ ପୃଥୁ ରାଜା ସୁଖେ ପାଳିଲେ ଜନ ପ୍ରଜା
ପୃଥୁ ସମୟ ସମୟରେ ପ୍ରୟୋଜନର ବଶରେ

ଲୋକପାଳ ଗୁଣ ଧରିଣ ଚଳାଉଥିଲେ ସୁଶାସନ
ସେ ନିଜର ଉଦାର ମନ ପ୍ରିୟ ହିତକର ବଚନ
ରମ୍ୟ ମୂର୍ତ୍ତି ସୌମ୍ୟ ଗୁଣରେ ପ୍ରଜାଙ୍କୁ ପାଳିଲେ ଧର୍ମରେ

ସାକ୍ଷାତ ଚନ୍ଦ୍ରମା ସମାନ  ସାର୍ଥକ କଲେ ରାଜା ନାମ
ଯଥା ସୂର୍ଯ୍ୟ ଗ୍ରୀଷ୍ମ କାଳରେ  ଜଳ ଶୋଷିଣ ପୃଥିବୀରେ
ବର୍ଷାକାଳେ ବର୍ଷା କରନ୍ତି  ସର୍ବତ୍ର କିରଣ ଦିଅନ୍ତି
ତଥା ପୃଥୁ କର ରୂପରେ  ଧନ ଆଣି ଦୁଃସମୟରେ

ମୁକ୍ତ ହସ୍ତେ ପ୍ରଜାହିତରେ  ବ୍ୟୟ କରନ୍ତି ସ୍ୱଚ୍ଛନ୍ଦରେ
ବିଶ୍ୱରେ ସମସ୍ତ ଉପରେ  ପ୍ରଭାବ ବିସ୍ତାର କରିଲେ
ଅଜେୟ ଇନ୍ଦ୍ରଙ୍କ ସମାନ  ତେଜେ ଦୁର୍ଦ୍ଧର୍ଷ ଅଗ୍ନି ସମ
କ୍ଷମାଶୀଳ ପୃଥ୍ୱୀ ସମାନ  ଅଭୀଷ୍ଟ ଦାତା ସ୍ୱ   ର୍ଗସମ

ପ୍ରଜାଙ୍କର ତୋଷ ନିମିତ୍ତ  ମେଘପରି ସଞ୍ଚିତ ଅର୍ଥ
ପ୍ରଜାଙ୍କୁ କରୁଥିଲେ ଦାନ  ମେରୁପରି ସେ ଧୈର୍ଯ୍ୟବାନ
ସାଗର ସମାନ ଗମ୍ଭୀର  କାମପରି ମୂର୍ତ୍ତି ସୁନ୍ଦର
ଦୁଷ୍ଟଦମନେ ଯମ ସମ  ବସ୍ତୁ ସଂଚୟେ ହିମବାନ

ସେ କୁବେର କୋଷ ବୃଦ୍ଧିରେ ବରୁଣ ଧନ ଗୋପନରେ
ସେ ଶାରୀରିକ ବଳରେ  ଇନ୍ଦ୍ରିୟଗଣ ଦକ୍ଷତାରେ
ପ୍ରଭାବ ଓ ପରାକ୍ରମରେ  ଗତିଶୀଳ ବାୟୁ ପ୍ରକାରେ
ଅସହ୍ୟ ତେଜରେ ଶଙ୍କର  ସୌନ୍ଦର୍ଯ୍ୟରେ ସେ ରତିବର

ଉତ୍ସାହରେ ସିଂହ ସମାନ  ବାତ୍ସଲ୍ୟେ ମନୁଙ୍କର ସମ
ଆଧିପତ୍ୟେ ସର୍ବ ସମର୍ଥ  ସାକ୍ଷାତରେ ଯଥା ବିଧାତ
ବ୍ରହ୍ମବିଚାରେ ବୃହସ୍ପତି  ଇନ୍ଦ୍ରିୟ ଜୟେ ଲକ୍ଷ୍ମୀପତି
ଗୋ ବିପ୍ର ଗୁରୁ ବୈଷ୍ଣବରେ  ସେ ସଦା ଭକ୍ତି କରୁଥିଲେ

ଲଜ୍ଜା ବିନୟ ଶୀଳତାରେ  ପରୋପ କରାଦି ଗୁଣରେ
ତ୍ରିଲୋକରେ କୀର୍ତ୍ତି ଗାୟନ  ସୀତା ପତି ଶ୍ରୀ ରାମ ସମ
ତ୍ରିଲୋକ ଥିଲେ ଅନୁପମ  ନଥିଲେ କେହି ତାଙ୍କ ସମ
ସର୍ବତ୍ର ସତ୍‌ପୁରୁଷ ଗଣ  କିରତି କରୁଥିଲେ ଗାନ
ମହାପୁରାଣ ଭାଗବତ  ପୃଥୁନୃପ ପୁଣ୍ୟ ଚରିତ
ଏଠାରେ ହୋଇଲା ଯେ ଶେଷ ଭଣଇ ଧନେଶ୍ୱର ଦାସ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ଚତୁର୍ଥ ସ୍କନ୍ଧେ ପୃଥୁ ନୃପ ଚରିତେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

*******

## ତ୍ରିୟୋବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ ମୁନି କହୁଛନ୍ତି  ଶୁଣ ବିଦୁର ଶୁଦ୍ଧମତି
ସେହି ମନସ୍ୱୀ ପ୍ରଜାପତି  ପୃଥୁ ଗ୍ରାମ ପୁର ପ୍ରଭୃତି
ଯଥାରୀତି ବ୍ୟବସ୍ଥା କଲେ  ପ୍ରଚୁର ଅନ୍ନାଦି ସୃଜିଲେ
ଚରାଚର ପ୍ରାଣୀ ନିମିତ୍ତ  ଜୀବିକା କଲେ ଯଥୋଚିତ

ସାଧୁଙ୍କୁ ଧର୍ମ କଲେ ରକ୍ଷା  ପ୍ରଜାଙ୍କୁ ଦେଲେ ଧର୍ମ ଶିକ୍ଷା
ବାର୍ଦ୍ଧକ୍ୟ ଉପସ୍ଥିତ ଜାଣି  ବିଚାରିଲେ ପୃଥୁ ନୃମଣି
ଯେଉଁ ପ୍ରଜାପାଳକ ନ କର୍ମ  ପାଇଁ ସେ ଲଭିଲେ ଜନ୍ମ
ତା ସବୁ ହେଲାଣି ସଂପୂର୍ଣ୍ଣ  ବୈଭବେ କିବା ପ୍ରୟୋଜନ

ତେଣୁ ରାଜ୍ୟ ଭାର ସମସ୍ତ  ପୁତ୍ର ଉପରେ କରି ନ୍ୟସ୍ତ
ନିଜର ଭାର୍ଯ୍ୟାଙ୍କ ସଙ୍ଗରେ  ପ୍ରବେଶିଲେ ତପୋବନରେ
ପୃଥିବୀ କରିଲା ରୋଦନ  ବ୍ୟାକୁଳ ହେଲେ ପ୍ରଜାଗଣ
ପୂର୍ବେ ପୃଥ୍ୱୀ ଜୟ ନିମିତ୍ତ  ଯେପରି କରିଥିଲେ ଯତ୍ନ

ସେହି ପ୍ରକାରେ ବର୍ତ୍ତମାନ  ପାଳିଣ ଯମାଦି ନିୟମ
ବାନ ପ୍ରସ୍ଥାଶ୍ରମ ବିହିତ  କଠୋର ତପେ ହେଲେ ରତ
ଆଦ୍ୟେ ଫଳ ମୂଳ ଭୋଜନ  କରି କାଟିଲେ କେତେ ଦିନ
ପତ୍ର ଖାଇଣ କିଛି ଦିନ  କେତେକ ପକ୍ଷ ଜଳ ପାନ

ତାପରେ ପବନ ଆହାର  କରି ବଞ୍ଚିଲେ ନର ବର
ବାକ୍ୟ ମନ କରି ସଂଯମ  ବ୍ରହ୍ମଚର୍ଯ୍ୟ କରି ପାଳନ
ଜୟ କରି ପ୍ରାଣ ପବନ  କଲେ ଶ୍ରୀକୃଷ୍ଣଙ୍କ ଅର୍ଚ୍ଚନ
ଗ୍ରୀଷ୍ମେ ପଞ୍ଚାତପ ସହିଲେ  ମୁନି ବୃତ୍ତିକୁ ଆଚରିଲେ

ବର୍ଷାରେ ମୁକ୍ତାକାଶ ତଳେ  ବରଷା ଅସାର ସହିଲେ
ଶୀତରେ ଆକଣ୍ଠ ଜଳରେ  ଠିଆ ହୋଇ ସ୍ଥିର ଚିତ୍ତରେ
ମାଟି ବେଦୀରେ ପ୍ରତିଦିନ  ପୃଥୁ ନୃପ କଲେ ଶୟନ
ଏହି ପ୍ରକାରେ ଧୀରେ ଧୀରେ ସିଦ୍ଧି ଲଭିଲେ ତପସ୍ୟାରେ

କରମ ଫଳ ନାଶ ହେଲା   ଚିତ୍ତ ପରିଶୁଦ୍ଧ ହୋଇଲା
ନିତ୍ୟ ପ୍ରାଣାୟାମ ଯୋଗରେ   ଇନ୍ଦ୍ରିୟ ନିରୁଦ୍ଧ କରିଲେ
ବାସନା କାମନା ବନ୍ଧନ   ସମୂଳେ ହୋଇଗଲା ଛିନ୍ନ
ସନତ୍ କୁମାର ମହାଭାଗ   ଯେ ଶ୍ରେଷ୍ଠ ଆଧାତ୍ମିକ ଯୋଗ

ତାହାଙ୍କୁ ଶିକ୍ଷା ଦେଉଥିଲେ   ପୃଥୁ ନୃପ ସେହି ପ୍ରକାରେ
ଅନନ୍ୟ ଭକତି ଭାବରେ   ହରିଙ୍କୁ ଆରାଧନା କରେ
ହୋଇ ଶ୍ରୀହରି ପରାୟଣ   ସଦାଚାର କଲେ ପାଳନ
ସାଧନା କରନ୍ତେ ଶ୍ରଦ୍ଧାରେ   ପରମ ବ୍ରହ୍ମ ଶ୍ରୀହରିରେ

ଅନନ୍ୟ ଭକ୍ତି ହେଲା ଜାତ   ଆନନ୍ଦେ ମଗ୍ନ ହେଲା ଚିତ୍ତ
କରିବାକୁ ହରି ଅର୍ଚ୍ଚନ   ଶୁଦ୍ଧ ହେଲା ଅନ୍ତଃକରଣ
ବିଶୁଦ୍ଧ ସାତ୍ତ୍ୱିକ ଭାବରେ   ବିଭୂଚିନ୍ତନରେ ମଜ୍ଜିଲେ
ଭକ୍ତି ବଇରାଗ୍ୟ ସହିତ   ଆଧ୍ୟାତ୍ମ୍ୟ ଜ୍ଞାନ ହେଲା ଜାତ

ଉପାଧି ସ୍ୱରୂପ ଜୀବର   ନଷ୍ଟ ହୋଇଲା ଅହଙ୍କାର
ଏ ଅହଙ୍କାର ହିଁ କେବଳ   ସଂଶୟ ବିପର୍ଯ୍ୟୟ ମୂଳ
ଦେହାତ୍ମ ବୁଦ୍ଧି ହେଲା ଦୂର   ସିଦ୍ଧିରେ ନ ହେଲା ଆଦର
ଯେ ତତ୍ତ୍ୱ ଜ୍ଞାନ ପ୍ରଥମରେ   ନାଶିଥିଲେ ଜୀବ କୋଷରେ

ସେ ତତ୍ତ୍ୱଜ୍ଞାନେ ଲାଭ ପାଇ   ଆଉ ସେ ଚେଷ୍ଟା କଲେ ନାହିଁ
ଭକ୍ତି ବିନା ଯୋଗ ପଥରେ   ଶ୍ରୀକୃଷ୍ଣଙ୍କ କଥାମୃତରେ
ଜାତ ହୁଏନି ଅନୁରାଗ   ଯାଏ ନି ସାଧନା ପ୍ରମାଦ
ପ୍ରାଣ ପ୍ରୟାଣର କାଳରେ   ନିଜ ଚିତ୍ତ ଦୃଢ଼ ଭାବରେ

ପରଂବ୍ରହ୍ମରେ କରି ସ୍ଥିର   ପୃଥୁ ତେଜିଲେ କଳେବର
ମଳଦ୍ୱାରକୁ ସେ ଗୁଲ୍ଫରେ   ଚାପି ପ୍ରାଣକୁ ଧୀରେ ଧୀରେ
ମୂଳାଧାରୁ ଉର୍ଦ୍ଧ୍ୱେ ଟେକିଲେ   ନାଭି ହୃଦ ବକ୍ଷ କ୍ରମରେ
କଣ୍ଠ ଦେଇଣ ଭ୍ରୂମଧ୍ୟରେ   ସ୍ଥାପି ପୁନ ପ୍ରାଣ ବାୟୁକୁ

ବ୍ରହ୍ମ ରନ୍ଧ୍ରରେ କଲେ ସ୍ଥିର   ଭୋଗ ଲାଳସା ହେଲା ଦୂର
ଯଥା ସ୍ଥାନର ବିଭାଗରେ   ପ୍ରାଣକୁ ସମଷ୍ଟି ବାୟୁରେ
ଦେହ କଠିନାଂଶ ପୃଥ୍ୱୀରେ   ତେଜକୁ ତେଜ ସମଷ୍ଟିରେ
ଇନ୍ଦ୍ରିୟ ଛିଦ୍ର ମାନଙ୍କରେ   ସ୍ଥିତା ଆକାଶ ମହାକାଶରେ

ଦୈହିକ ଜଳାଂଶକୁ ଧୀରେ   ସମଷ୍ଟି ଜଳେ ଲୀନ କରେ
ଜଳକୁ ତେଜର ମଧ୍ୟରେ   ତେଜକୁ ପବନ ଭିତରେ
ବାୟୁ ଆକାଶେ ଲୀନ କରେ   ମନକୁ ଇନ୍ଦ୍ରିୟ ମଧ୍ୟରେ
ଇନ୍ଦ୍ରିୟକୁ ତନ୍ମାତ୍ରାରେ   ତନ୍ମାତ୍ରାକୁ ଅହଙ୍କାରରେ

ଅହଙ୍କାର ମହତତ୍ତ୍ୱରେ   ଲୀନ କରିଲେ ତତ୍ତ୍ୱ
ମାୟିକ ଜୀବ ଉପାଧିରେ   ମହତତତ୍ତ୍ୱକୁ ସ୍ଥାପନ କଲେ
ଜ୍ଞାନ ବୈରାଗ୍ୟ ପ୍ରଭାବରେ   ଜୀବଉପାଧିକୁ ବ୍ରହ୍ମରେ
ସ୍ଥାପି ତାହାକୁ ତ୍ୟାଗ କଲେ   ପରମ ନିର୍ବାଣ ଲଭିଲେ

ମହାରାଜ ପୃଥୁଙ୍କ ନାରୀ   ମହାରାଣୀ ଅର୍ଚ୍ଚି ସୁନ୍ଦରୀ
ପତିବ୍ରତା ଧର୍ମ ନିଷ୍ଠାରେ   ପତି ସହ ବନେ ଗମିଲେ
ବ୍ରତ ନିୟମାଦି ପାଳନ   ପତି ସେବାରେ ଦେଇ ମନ
ଫଳ ମୂଳ କରି ଭୋଜନ   ମୁନି ପରି ବଞ୍ଚିଲେ ଦିନ

ଦୁର୍ବଳ ହେଲେ ବି ଶରୀର   କରସ୍ପର୍ଶରେ ସ୍ୱାମୀଙ୍କର
ଅତ୍ୟନ୍ତ ଆନନ୍ଦିତା ହେଲେ   କଷ୍ଟ ଅନୁଭବ ନ କଲେ
ସସା ଗରା ଧରା ଈଶ୍ୱର   ସ୍ୱ ପ୍ରିୟତମ ପୃଥୁଙ୍କର
ଦେହ ଅଚେତ ଜୀବ ହୀନ   ଦେଖି ଅର୍ଚ୍ଚି କଲେ କ୍ରନ୍ଦନ

ଚିତା ଜଳି ଅଦ୍ରି ଉପରେ   ସ୍ୱାମୀ ମୃତ ଦେହ ରଖିଲେ
ସମସ୍ତ କର୍ମ ସମାପନ   ହ୍ରଦ ଜଳରେ କଲେ ସ୍ନାନ
ପତିକୁ ଜଳାଞ୍ଜଳି ଦେଲେ   ଦେବତା ମାନଙ୍କୁ ବନ୍ଦିଲେ
ଚିତା ଅନଳେ ତିନି ବାର   ପ୍ରଦକ୍ଷିଣ କରି ସ୍ୱାମୀର

ପଦ ଦ୍ୱୟକୁ ଧ୍ୟାନ କଲେ   ଚିତାରେ ପ୍ରବେଶ କରିଲେ
ସାଧ୍ୱୀ ଅର୍ଚ୍ଚି ଏ ପ୍ରକାର   ସେ ବୀର ପତି ପୃଥୁଙ୍କର
ଅନୁଗମ କରିଣ ଦର୍ଶନ   ବରଦାୟୀ ଯେ ଦେବଗଣ
ପତିଙ୍କ ସଙ୍ଗେ ଆକାଶରେ   ରହି ତାଙ୍କୁ ସ୍ତୁତି କରିଲେ

ଦେବେ ଦୁନ୍ଦୁଭି ବଜାଇଲେ   ମନ୍ଦରାଚଳ ଶିଖରରେ
ଦେବାଙ୍ଗନା ପୁଷ୍ପ ବର୍ଷିଲେ   ଏପରି କୁହା କୁହି ହେଲେ

### ଦେବ୍ୟଃ ଉବାଚ

ଯଜ୍ଞପତି ଶ୍ରୀହରିଙ୍କର ଲକ୍ଷ୍ମୀ ସେବା କଲା ପ୍ରକାର
ତଥା ଏ ରମଣୀ ନିଜର ରାଜ ରାଜେଶ୍ୱର ପତିଙ୍କର
ସେବା ଯେ କରୁଥିଲା ନିତ୍ୟ ଏହି ସତୀ ନିଜ ଅଚିନ୍ତ୍ୟ
କର୍ମେ ଅତିକ୍ରମି ଆମକୁ ଯାଏ ଉଚ୍ଚତର ଲୋକକୁ

ମର୍ତ୍ତ୍ୟରେ ଅଳ୍ପାୟୁ ମଧରେ ଜ୍ଞାନ ସାଧନା ପ୍ରଭାବରେ
ଯେ ଲଭେ ଭଗବତ୍ ପଦ ତାର ଦେବ ପଦ ଦୁର୍ଲ୍ଲଭ
ଶ୍ରେଷ୍ଠ ମାନବ ଜନ୍ମ ଏହି ଅତ୍ୟନ୍ତ କଷ୍ଟରେ ମିଳଇ
ଯେ ଏ ଦୁର୍ଲଭ ଦେହ ପାଇଁ ବିଷୟରେ ମଜ୍ଜି ରହଇ

ଚେଷ୍ଟା ନକରେ ମୁକ୍ତି ପାଇଁ ନିଶ୍ଚୟ ଆତ୍ମଘାତୀ ସେହି
ଉତ୍ତର ଲୋକ ତାର ନାହିଁ ଜୀଉ ଥାଉ ଥାଉ ମହଇ
ପୃଥୁ ଆତ୍ମଜ୍ଞାନ ବଳରେ ଗମିଲେ ପରମ ଧାମରେ
ଅର୍ଚ୍ଚି ପାତି ବ୍ରତ୍ୟ ଧର୍ମରେ ସେହି ଧାମକୁ ମଧ ଗଲେ

ସକାମେ ଯେ ଏହା ପଢ଼ଇ କ୍ଷତ୍ରି ପୃଥ୍ୱୀ ପତି ହୁଅଇ
ବ୍ରାହ୍ମଣ ବ୍ରହ୍ମ ତେଜ ପାଇ ବୈଶ୍ୟ ବ୍ୟବସାୟ ବଢ଼ଇ
ଶୂଦ୍ର ଯେ ସାଧୁତା ଲଭଇ ସଂସାରେ କୀର୍ତ୍ତି ଅରଜଇ
ସ୍ତ୍ରୀ ପୁରୁଷ ଯେହି ଆଦରରେ ଏହା ତିନିଥର ଶୁଣଇ

ଲାଭ କରଉ ସୁସନ୍ତାନ ନିର୍ଦ୍ଧନ ଲାଭ କରେ ଧନ
କୀର୍ତ୍ତି ହୀନକୁ ଯଶ ମିଳେ ମୂର୍ଖ ପଣ୍ଡିତ ହୁଏ ହେଳେ
ଅମଙ୍ଗଳ ଦୂର ହୁଅଇ କଲ୍ୟାଣ ସୁଖ ଯେ ମିଳଇ
ସେହି ପରମ ଭାଗବତ ପୃଥୁଙ୍କ ଉଦାର ଚରିତ

ତୁମ ଆଗରେ ବର୍ତ୍ତମାନ ହେ ବିଦୁର କଲି ବର୍ଣ୍ଣନ
ଆୟୁ ଯଶ ଧନ ବଢ଼ଇ ଦେହାନ୍ତେ ସ୍ୱର୍ଗ ବାସ ହୋଇ
କଳିର ଦୋଷ କ୍ଷୟ ହୋଇ ଚତୁର୍ବର୍ଗ ଫଳ ମିଳଇ
ଶ୍ରଦ୍ଧାରେ କରିଲେ ଶ୍ରବଣ ସିଦ୍ଧି ଧର୍ମାର୍ଥ ମୋକ୍ଷ କାମ

ଶତ୍ରୁ ବିଜୟ କାମନାରେ ଯାତ୍ରା କରିବା ସମୟରେ
ହେ ରାଜା କରଇ ଶ୍ରବଣ ଶତ୍ରୁଠାରୁ ପାଏ ସମ୍ମାନ
ତେଜିଣ ସକଳ ଆସକ୍ତି ହରିଠାରେ ନିଷ୍କାମ ଭକ୍ତି
ରଖି ଏହି ପୁଣ୍ୟ ଚରିତ ପଢ଼ିବା ଶୁଣିବା ଉଚିତ

ଭଗବାନଙ୍କର ମହାତ୍ମ୍ୟ ସୂଚକ ଏ ପୁତ ଚରିତ
ଆହେ ବିଦୁର ବର୍ତ୍ତମାନ ମୋଠାରୁ କରିଛ ଶ୍ରବଣ
ଯେ ଏଥିରେ ମନ ଦିଅଇ ସେ ପୃଥୁଙ୍କର ଗତି ଲଭଇ
ଭବ ସାଗର ପାର ପାଇଁ ହରି ଚରଣ ନୌକା ଏହି

ଯେ ନିଷ୍କାମ ଭାବେ ଆଦରେ ସଂକୀର୍ତ୍ତନ ଶ୍ରବଣ କରେ
ଶ୍ରୀ ହରିଙ୍କ ଠାରେ ଅନନ୍ୟ ଶ୍ରଦ୍ଧା ଭକତି ହୁଏ ଜନ୍ମ
ଏ ପୁଣ୍ୟ ଭାଗବତ କଥା ଶୁଣିଲେ ଖଣ୍ଡେ ଭବ ବ୍ୟଥା
ହାତ ଯୋଡି କରେ ପ୍ରାର୍ଥନା ସୁଜନେ ଦୋଷ କର କ୍ଷମା

କହଇ ଧନେଶ୍ୱର ଦାଶ ସଜନେ କୃଷ୍ଣ ନାମ ରସଇତି
ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମ ହାସ୍ୟାଂ ସଂହିତାୟାଂ

ଚତୁର୍ଥ ସ୍କନ୍ଧେ ବିଦୁର ମୈତ୍ରେୟ ସମ୍ବାଦେ ପୃଥୁ ମହାରାଜ
ଚରିତେ ନାମ ତ୍ରୟୋବିଂଶୋଽଧ୍ୟାୟଃ ।

* * * * * * * * * *

## ଚତୁର୍ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ ଅତି ଆନନ୍ଦରେ କହନ୍ତି ବିଦୁରଙ୍କୁ ଧୀରେ
ପୃଥୁ ମହାଜଙ୍କର ପରେ ତାଙ୍କ ପଞ୍ଚ ପୁତ୍ର ମଧରେ
ବିଜି ତାଶ୍ୱ ଯେ ହେଲେ ରାଜା ସୁଖେ ପାଳିଲେ ଜନ ପ୍ରଜା
ଛୋଟ ଭାଇ ମାନଙ୍କ ପ୍ରତି ତାଙ୍କର ସ୍ନେହଥିଲା ଅତି

ତାଙ୍କ ଏକ ଏକ ଦିଗରେ ଦାନ କଲେ ଅଧିକାରକୁ
ଧୂମ୍ରକେଶଙ୍କୁ ଯେ ଦକ୍ଷିଣ ବୃକଙ୍କୁ ଦେଲେ ସେ ପଶ୍ଚିମ
ହର୍ଯ୍ୟକ୍ଷ ଯେ ପୂର୍ବ ଦିଗର ଦ୍ରବିଣ ନୃପ ଉତ୍ତର ଦିଗରେ
ଶୁଚି ପାବକ ପବମାନ ଅଗ୍ନି ଥିଲେ ଏ ତିନି ଜଣ

ବଶିଷ୍ଠଙ୍କ ଅଭିଶାପରେ ମାନବ ଜନମ ଲଭିଲେ
ପରେ ପୁଣି ଯୋଗ ବଳରେ ଅଗ୍ନିର ସ୍ୱରୂପ ହୋଇଲେ
କର ଗ୍ରହଣ ଦଣ୍ଡଦାନ ଶୁଳ୍କ ଆଦାୟ ଆଦି କର୍ମ
ସେଠାର ନିର୍ମମ ଅତି କଷ୍ଟ ଦାୟକ ଅନ୍ୟ ପ୍ରତି

ତେଣୁ ଦୀର୍ଘ ଘାଳ ଯଜ୍ଞରେ ଦୀକ୍ଷିତ ହୋଇବା ଛଳରେ
ରାଜ କାର୍ଯ୍ୟ ତ୍ୟାଗ କରିଲେ ପରମାତ୍ମାଙ୍କୁ ସେ ଆରାଧିଲେ
ସୁଦୃଢ଼ ସମାଧି ଯୋଗରେ ଦିବ୍ୟ ଲୋକ ପ୍ରାପ୍ତ ହୋଇଲେ
ଶୁଣ ହେ ସୁଜ୍ଞାନୀ ବିଦୁର ସେ ହବିର୍ଦ୍ଧାନ ନୃପତିର

ପତ୍ନୀ ହବିର୍ଦ୍ଧାନୀ ଗର୍ଭରେ ଛ ପୁତ୍ର ଜନମ ଲଭିଲେ
ଶୁକ୍ଳ ପୁଣି କୃଷ୍ଣ ସତ୍ୟ ବର୍ହିଷଦ ଓ ସତ୍ୟବ୍ରତ
ବିଜିତାଶ୍ୱ ଇନ୍ଦ୍ରଙ୍କୁ ନିତି ଲଭିଲେ ଅନ୍ତର୍ଦ୍ଧାନ ଶକ୍ତି
ଏଣୁ ଅନ୍ତର୍ଦ୍ଧାନ ନାମରେ ବିଦିତ ସେ ତିନି ଲୋକରେ

ତାହାଙ୍କ ପତ୍ନୀ ଶିଖଣ୍ଡିନୀ ତାଗର୍ଭୁ ଜାତ ପୁତ୍ର ତିନି
ସେହି ଅନ୍ତର୍ଦ୍ଧାନ ନୃପତି ଉଦାର ତାହାଙ୍କ ପ୍ରକୃତି
ଇନ୍ଦ୍ର ଯେବେଳେ କପଟରେ ପିତାଙ୍କ ଯଜ୍ଞାଶ୍ୱ ହରିଲେ
ତାହା ଜାଣି ମଧ ସେ ସେବଳରେ ଇନ୍ଦ୍ରଙ୍କୁ ବଧ ନ କରିଲେ

ଇନ୍ଦ୍ରଙ୍କର ବର ପ୍ରଭାବରେ ଅନ୍ତର୍ଦ୍ଧାନ ନ ଶକ୍ତି ପାଇଲେ
ଅନ୍ତର୍ଦ୍ଧାନଙ୍କର ନଭସ୍ୱତୀ ନାମରେ ଥିଲା ଏକ ପତ୍ନୀ
ତା ଗର୍ଭୁ ହବିର୍ଦ୍ଧାନ ନାମ ତନୟ ହୋଇଲା ଜନମ
ହବିର୍ଦ୍ଧାନ ସୁତ ହବିର୍ଷଦ ଯଜ୍ଞାଦି କର୍ମ କାଣ୍ଡ ଯୋଗ

ଅଭ୍ୟାସେ ନିପୁଣ ହୋଇଲେ ପ୍ରଜାପତି ପଦ ପାଇଲେ
ପୃଥ୍ୱୀର ବିଭିନ୍ନ ସ୍ଥାନରେ ବହୁ ସଂଖ୍ୟକ ଯଜ୍ଞ କଲେ
ପୂର୍ବ ଦିଗ ଅଗ୍ର କୁଶରେ ପୃଥିବୀ ପୂର୍ଣ୍ଣ ହେଲା ଧୀରେ
ସେ ପ୍ରଚୀନ ବର୍ହି ନାମରେ ତ୍ରିଲୋକେ ବିଖ୍ୟାତ ହୋଇଲେ

ପ୍ରାଚୀନ ବର୍ହି ବ୍ରହ୍ମାଙ୍କର ନିର୍ଦ୍ଦେଶରେ ସାଗରର
ଦୁହିତା ସର୍ବାଙ୍ଗ ସୁନ୍ଦରୀ ନବୀନ ଯୌବନା କିଶୋରୀ
ଶତଦ୍ରୁତିଙ୍କୁ ବିବାହ କଲେ ସେ କନ୍ୟା ବିବାହ କାଳରେ
ଭୂଷିତା ନାନା ଅଳଙ୍କାରେ ଯେବେଳେ ଅନନ୍ୟ ଭକ୍ତିରେ

ଅଗ୍ନିକୁ ପ୍ରଦକ୍ଷିଣ କଲେ ତାଙ୍କୁ ଦେଖି ଅଗ୍ନି ସେବେଳେ
କାମରେ ଅବଶ ହୋଇଲେ ଏକଦା ସପ୍ତର୍ଷି ଯଜ୍ଞରେ
ଅଗ୍ନିଦେବ ଯେ ପ୍ରକାରେ ସପ୍ତର୍ଷି ଭାର୍ଯ୍ୟା ଶୁକୀଙ୍କର
ରୂପକୁ ଦେଖିଣ ତେମନ୍ତ କାମେ ବଶ ହେଲେ ଅତ୍ୟନ୍ତ

ବର୍ତ୍ତମାନ ସେ ପ୍ରକାର ନବୋଢ଼ାବଧୂର ନୂପୁର
ଧ୍ୱନିରେ ଗନ୍ଧର୍ବ ଅସୁର ମୋହିତ ମୁନି ସିଦ୍ଧ ନର
ଶତଦ୍ରୁତିର ଗର୍ଭରେ ପ୍ରାଚୀନ ବର୍ହିଙ୍କ ବୀର୍ଯ୍ୟରେ
ଦଶଟି ପୁତ୍ର ଜନ୍ମ ହେଲ ପ୍ରଚେତା ନାମ ବୋଲାଇଲେ

ସମସ୍ତେ ଧର୍ମ ପରାୟଣ ଏକ ପ୍ରକାର ଆଚରଣ
ସେମାନେ ପିତୃ ଆଦେଶରେ ସନ୍ତାନ ଜନମ ଇଛାରେ
ସମୁଦ୍ର ମଧ୍ୟେ ପ୍ରବେଶିଲେ ଦଶ ସହସ୍ର ବର୍ଷ ସେଠାରେ
ଘୋର ତପେ ହେଲେ ନିମଗ୍ନ ଫଳ ଦାତା ଶ୍ରୀ ଭଗବାନ

କୃଷ୍ଣଙ୍କୁ ପୂଜିଲେ ନିଷ୍ଠାରେ ସେ ଦେଖା ଦେଇ ପଥ ମଧ୍ୟରେ
ମହାଦେବ ଶିବ କୃପାରେ ଯେ ତତ୍ତ୍ୱ ଉପଦେଶ ଦେଲେ
ସେମାନେ ସେହି ଅନୁସାରେ ସର୍ବଦା ଏକାଗ୍ର ଚିତ୍ତରେ
ଜପ ଧ୍ୟାନ ପୂଜା କରିଲେ ସକଳ ସିଦ୍ଧି ଲାଭ କଲେ

ପ୍ରଣମି ମୈତ୍ରେୟ ପଦରେ ବିଦୁ ପୁଛିଲେ ଭକ୍ତିରେ
ସେ ପ୍ରଚେତାମାନେ ବାଟରେ କିପରି ଶିବଙ୍କୁ ଭେଟିଲେ
ଶଙ୍କର ହୋଇ ସୁପ୍ରସନ୍ନ କି ଉପଦେଶ କଲେ ଦାନ
ସେହି ସସଂାର କଥା ମାନ ବର୍ତ୍ତମାନ କର ବର୍ଣ୍ଣନ

ଶିବଙ୍କ ସହ ସମାଗମ ଦେହଧାରୀ ପକ୍ଷେ କଠିନ
ଆସକ୍ତି ତେଜି ମୁନିଗଣ ତାଙ୍କ ଚରଣ କରି ଧ୍ୟାନ
ନ ପାନ୍ତି ଯାହାଙ୍କ ଦର୍ଶନ ସେ ସଦାଶିବ ଭଗବାନ
ହୋଇଲେ ମଧ ଆତ୍ମାରାମ ସର୍ବଦା ଭକ୍ତ ଭାବାଧୀନ

ତ୍ରିଲୋକ ପାଳନ ନିମିତ୍ତ ଘୋର ରୂପା ଶକ୍ତି ସହିତ
ସଦା କରନ୍ତି ବିଚରଣ ସକଳେ ମଣନ୍ତି ସମାନ
ପିତୃ ଆଦେଶ ଧରିଶିରେ ଚିତ୍ତ ନିବେଶି ତପସ୍ୟାରେ
ଚିତ୍ତ ନିବେଶି ତପସ୍ୟାରେ ପ୍ରଚେତା ଗଣ କି ପ୍ରକାରେ

କଲେ ପଶ୍ଚିମକୁ ଗମନ ପଥରେ ସାଗର ସମାନ
ସରୋବର କଲେ ଦର୍ଶନ ମହାପୁରୁଷ ଚିତ୍ତସମ
ସୁ ନିର୍ମଳ ଏହାର ବାରି ଏ ଜଳରେ ମତ୍ସ୍ୟ ପ୍ରଭୃତି
ପ୍ରସନ୍ନ ଚିତ୍ତେ ବିହରନ୍ତି ନଥାଏ ତାଙ୍କ ଚିତ୍ତେ ଭୀତି

ଦିବା ରାତ୍ରି ସନ୍ଧ୍ୟାରେ ଯହିଁ   ନୀଳ ରକ୍ତ ପଦ୍ମ ଫୁଟଇ
ଏ ସରୋବର ଆଦି ପୁଷ୍କରେ ଏ ସରୋବର ଚିତ୍ତ ହରେ
ହଂସ ସାର ସାର ପକ୍ଷୀ ଗଣ   କରନ୍ତି ଯେ କାଳ କୂଜନ
ବୃକ୍ଷ ଲତା ନାନା ପ୍ରକାରେ   ପରିପୂର୍ଣ୍ଣ ଚତୁପାର୍ଶ୍ୱରେ

ତହି ମତ୍ତ ଭ୍ରମର ଗଣ   ସର୍ବଦା କରନ୍ତି ଗୁଂଜନ
ତାଙ୍କର ମଧୁର ଧ୍ୱନିରେ   ବୃକ୍ଷ ଲତିକା ଆନନ୍ଦରେ
ହୋଇଲାପରି ରୋମାଞ୍ଚିତ   ଜଣା ଯାଉଥିଲେ ସାକ୍ଷାତ
ପଦ୍ମ ପରାଗ ପବନରେ   ବିଞ୍ଚିହୋଇ ଚତୁର୍ଦିଗରେ

କୌଣସି ଉତ୍ସବ ସମାନ   ଜଣା ଯାଉଥିଲା ସେ ସ୍ଥାନ
ମୃଦଙ୍ଗାଦି ବାଦ୍ୟ ସହିତ   ଦିବ୍ୟ ରାଗ ରାଗିଣୀ ଯୁକ୍ତ
ଗୀତର ସୁମଧୁର ଧ୍ୱନି   ରାଜ କୁମାର ମାନେ ଶୁଣି
ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଲେ   ଏ ବେଳେ ସେମାନେ ଦେଖିଲେ

ଦେବାଧି ଦେବତା ଶଙ୍କର   ସହିତ ନିଜ ଅନୁଚର
ସେ ସରୋବକୁ ଆସୁଛନ୍ତି   ଶରୀର ତପ୍ତ ସ୍ୱର୍ଣ୍ଣ କାନ୍ତି
ବିରାଜେ କଣ୍ଠ ନୀଳବର୍ଣ୍ଣ   ତିନୋଟି ବିଶାଳ ନୟନ
ମୁଖ ମଣ୍ଡଳେ ଶୋଭମାନ   ପଶୁପତି ସର୍ପ ଭୂଷଣ

ଭକ୍ତାନୁ ଗ୍ରହ ପରାୟଣ   ଗନ୍ଧର୍ବ ଅପସରା ଗଣ
କୀରତି କରନ୍ତି ଗାୟନ   କରି ଶଙ୍କରଙ୍କୁ ଦର୍ଶନ
କୌତୁକେ ସେ ପ୍ରଚେତା ଗଣ ଚରଣେ କରିଲେ ପ୍ରଣାମ
ଶରଣାଗତ ଭୟ ହାରୀ   ଭକ୍ତ ବତ୍ସଳ ତ୍ରିପୁରାରି
ପ୍ରଚେତା ମାନଙ୍କୁ କହିଲେ   ଅତ୍ୟ ପ୍ରସନ୍ନ ଚିତ୍ତରେ

## ଶ୍ରୀ ରୁଦ୍ର ଉବାଚ

ରାଜା ପ୍ରାଚୀନ ବର୍ହିଙ୍କର   ତୁମ୍ଭେମାନେ ଅଟ କୁମାର
ତୁମ ହେଉ ସୁକଲ୍ୟାଣ   କୃପା ବହି ମୁଁ ବର୍ତ୍ତମାନ
ତୁମର ଦେଇଛି ଦର୍ଶନ   ହେଉ ତୁମର ସୁକଲ୍ୟାଣ
ଯେଉଁ ଜ୍ଞାନ ବନ୍ତ ବ୍ୟକ୍ତି   ଅବ୍ୟକ୍ତ ଅଚିନ୍ତ୍ୟ ପ୍ରକୃତି

ଜୀବ ପୁରୁଷର ନିୟନ୍ତା   ଅଖିଳ ବ୍ରହ୍ମାଣ୍ଡ କରତା
ବାସୁଦେବଙ୍କ ଶ୍ରୀଚରଣ   କମଳେ ନିଅଇ ଶରଣ

ସେହି ପରମ ପ୍ରିୟ ମମ   ମୁ ଜାଣେ ତୁମ ମନସ୍କାମ
ନିଜର ବର୍ଣ୍ଣାଶ୍ରମ ଧର୍ମ   ଶ୍ରଦ୍ଧାରେ ଯେ କରେ ପାଳନ
ସେ ଏକଚିତ ଜନ୍ମପରେ   ପାଏ ବ୍ରହ୍ମପଦ ଅଚିରେ
ତହୁ ଅଧିକ ଯାର ପୁଣ୍ୟ   ସେ ଲଭଇ ମୋର ଦର୍ଶନ

ମାତ୍ର ଯେ ଭଗବତ ଭକ୍ତ   ସେ ମୃତ୍ୟୁ ପରେ ମାୟାତୀତ
ପରମ ଧାମକୁ ଗମଇ   ଉଭୟ ଲୋକେ ଧନ୍ୟ ସେହି
ଯେ ଧାମ ଅନ୍ୟ ଦେବଗଣ   ମୁହିଁ ରୁଦ୍ର ସ୍ୱରୂପଣ ପୁଣ
ନିଜ ଅଧିକାର ଶେଷରେ   ଲାଭ କରୁ ହରି କୃପାରେ

ତେଣୁ ଶ୍ରୀହରି ଭଗବାନ   ସମାନ ତୁମେ ପ୍ରିୟ ମମ
ପୁନଶ୍ଚ ହରି ଭକ୍ତ ଯେହି   ମତେ ଅତି ପ୍ରିୟ ମଣଇ
ମୁ ତୁମକୁ ବର୍ତ୍ତମାନ   ଏକ ଯେ ପବିତ୍ର ତମ
ଶୁଣାଉଛି ମଙ୍ଗଳ ସ୍ତୋତ   ଏହାକୁ ଶୁଣ ଶୁଦ୍ଧ ଚିତ୍ତ

ମୈତ୍ରେୟ ବୋଲେ ହେ ବିଦୁର ଶୁଣ ଏ ପୁଣ୍ୟ ସମାଚାର
ଏ ଅନ୍ତେ ହରି ପରାୟଣ   ଦୟାଳୁ ଶିବ ଭଗବାନ
ହାତ ଯୋଡି ସମ୍ମୁସ୍ଥିତ   ସୁଶୀଳ ବିନୟା ବନତ
ରାଜ ପୁତଙ୍କୁ ସୁଦୟାରେ   ମଙ୍ଗଳ ସ୍ତୋତ ଶୁଣାଇଲେ

## ରୁଦ୍ର ଉବାଚ

ରୁଦ୍ର ଭଗବାନ ଭକ୍ତିରେ   ସ୍ତୁତି କରି ଏହା କହିଲେ
ହେ ଭଗବାନ ନାରାୟଣ   ଆତ୍ମଜ୍ଞ କଲ୍ୟାଣ ସାଧନ
ମୋ ମଧ୍ୟ ଶୁଭ ହେଉ ତହିଁ   ହେ ଅଖିଳ ବ୍ରହ୍ମାଣ୍ଡ ଗୋସାଇଁ
ହେ ସର୍ବରୂପ ସର୍ବାତ୍ମନ   ଚରଣରେ ମୋର ପ୍ରଣାମ

ହେ ପଦ୍ମନାଭ ଭଗବାନ   ସର୍ବ ଲୋକ ଆଦି କାରଣ
ଭୂତ ସୂକ୍ଷ୍ମ ଇନ୍ଦ୍ରି ନିୟନ୍ତା   ହେ ଜଗତ ଭାଗ୍ୟ ବିଧାତା
ନିତ୍ୟ ପ୍ରଶାନ୍ତ ଏକ ରସ   ସଚ୍ଚିଦା ନନ୍ଦ ସ୍ୱ ପ୍ରକାଶ
ହେ ବାସୁଦେବ ଆପଣ   ଘେନନ୍ତୁ ସାଷ୍ଟାଙ୍ଗ ପ୍ରଣାମ

ଆପଣ ଅବ୍ୟକ୍ତ ଅନନ୍ତ   ମୁଖାଗ୍ନିରେ ଲୋକ ସମସ୍ତ
ସର୍ବ ଲୋକ ସଂହାର କର୍ତ୍ତା   ଅହଙ୍କାରର ଅଧିଷ୍ଠାତା
ସଂକର୍ଷଣ ରୂପ ଆପଣ   ଉତକୃଷ୍ଟ ଜ୍ଞାନ ଜନ୍ମ ସ୍ଥାନ
ବୁଦ୍ଧି ଅଧିଷ୍ଠାତା ପ୍ରଦ୍ୟୁମ୍ନ   ହେ ଭକ୍ତ ପ୍ରିୟ ଭଗବାନ

ଆହେ ଚରାଚର ଈଶ୍ୱର ଘେନ ଆମର ନମସ୍କାର
ଆପଣ ସ୍ୱାମୀ ଇନ୍ଦ୍ରିୟର ମନସ୍ତତ୍ତ୍ୱର ଅଧୀଶ୍ୱର
ହେ ଅନିରୁଦ୍ଧ ଭଗବାନ ତୋ ପାଦେ କରଇ ପ୍ରଣାମ
ତୁମେ ସୂର୍ଯ୍ୟ ଦେବ ରୂପରେ ବିଶ୍ୱେ ବ୍ୟାପିଅଛ ତେଜରେ

ସଦା ସଂପୂର୍ଣ୍ଣ ଅଟୁ ତୁହି ତୋହର କ୍ଷୟ ବୃଦ୍ଧି ନାହିଁ
ହେ ତେଜୋମୟ ଦିବାକର ଘେନନ୍ତୁ ଆମ ନମସ୍କାର
ଆପଣ ସ୍ୱର୍ଗ ମୋକ୍ଷ ଦ୍ୱାର ପବିତ୍ର ହୃଦେ ବାସ ତୋର
ସୁବର୍ଣ୍ଣ ରୂପ ବୀର୍ଯ୍ୟ ଯୁକ୍ତ ଆପଣ ରତୁ ହୋତ୍ର ପାତ୍ର

କର୍ମ ସାଧନ ବିସ୍ତାରଣ କର୍ତ୍ତା ଅଗ୍ନିଦେବ ଆପଣ
ଦେବ ପିତୃ ପୋଷକ ସୋମ ତ୍ରୟୀ ଅଧିଷ୍ଠାତା ଆପଣ
ସର୍ବ ରସ ଜଳ ରୂପରେ ତୋଷ କରନ୍ତି ଚରାଚରେ
ହେ ସର୍ବ ରସ ମୟ ସୋମ ଘେନନ୍ତୁ ଆମର ପ୍ରଣାମ

ସର୍ବ ଚରାଚର ପ୍ରାଣୀର ଆପଣ ଅଟନ୍ତି ଶରୀର
ପୃଥ୍ୱୀ ବିରାଟ୍ ରୂପେ ଆପଣ ତ୍ରିଲୋକ କରନ୍ତି ପାଳନ
ଶରୀର ଇନ୍ଦ୍ରିୟ ଓ ମନ ଶକ୍ତି ପ୍ରାଣ ବାୟୁ ଆପଣ
ଆହେ ଶକ୍ତି ସ୍ୱରୂପ ପବନ ଘେନନ୍ତୁ ଆମର ପ୍ରଣାମ

ଆପଣ ଗଗନ ରୂପରେ ନିଜର ଶବଦ ଗୁଣରେ
ପ୍ରକାଶନ୍ତି ସର୍ବ ପଦାର୍ଥ ତୁମ ଯୋଗୁଁ ହେ ମହାସତ୍ତ୍ୱ
ଆପଣ ବାହ୍ୟ ଅନ୍ତରରେ ପରିପୂର୍ଣ୍ଣ ସର୍ବ ବସ୍ତୁରେ
ବହି ଅନ୍ତରାତ୍ମା ଆପଣ ଘେନନ୍ତୁ ଏ ଦୀନ ପ୍ରଣାମ

ଯାହା ମହା ପୁଣ୍ୟେ ମିଳଇ ପରମ ତେଜୋମୟ ଯେହି
ସେ ସ୍ୱର୍ଗ ବୈକୁଣ୍ଠ ପ୍ରଭୃତି ଲୋକ ଆପଣ ହିଁ ଅଟନ୍ତି
ପ୍ରବୃତ୍ତି ନିବୃତ୍ତି କରମ ରୂପରେ ପ୍ରାଣୀଙ୍କୁ ଆପଣ
ପିତୃ ଦେବ ଲୋକର ପ୍ରାପ୍ତି ଆପଣ ହିଁ କରାଇ ଥାନ୍ତି

ଅଧର୍ମର ଫଳ ସ୍ୱରୂପ ଅତିଶୟ ଦୁଃଖ ଦାୟକ
ମୃତ୍ୟୁ ହିଁ ଅଟନ୍ତି ଆପଣ ଘେନନ୍ତୁ ଆମର ପ୍ରଣାମ
ହେ ଲୋକନାଥ ଭଗବାନ ତୁମେ ହିଁ ପୁରୁଷ ପୁରାଣ
ସାଂଖ୍ୟ ଓ ଯୋଗ ଅଧିକାରୀ ଆପଣ ଶ୍ରୀକୃଷ୍ଣ ମୁରାରି

ସକଳ କାମନା ପୂରଣ କରନ୍ତି କେବଳ ଆପଣ
ସାକ୍ଷାତ ସ୍ୱୟଂ ମନ୍ତ୍ର ମୂର୍ତ୍ତି ମହାଧର୍ମ ରୂପ ଅଟନ୍ତି
ଆପଣଙ୍କର ଜ୍ଞାନ ଶକ୍ତି କୁଣ୍ଠିତ ନୁହଁଇ କଦାପି
ହେ ଜ୍ଞାନ ମୟ ସର୍ବେଶ୍ୱର ଘେନ ଆମର ନମସ୍କାର

କର୍ତ୍ତୃକରଣ କ୍ରିୟା ଶକ୍ତି ଆପଣଙ୍କ ଠାରେ ହିଁ ସ୍ଥିତି
ଜ୍ଞାନ କ୍ରିୟାରୂପ ବିଧାତ ବେଦ ତୋ ଠାରୁ ପ୍ରକାଶିତ
ଅହଙ୍କାରାତ୍ମା ରୂପ ଆପଣ ନମଇ ତୋହର ଚରଣ
ହେ ପ୍ରଭୋ ତୋ ଦର୍ଶନ ପାଇଁ ଆମ ଅଭିଳାଷ ଅଛଇ

ଯାହା ସଜନ ପ୍ରିୟ ଅତି ଯେଉଁ ରୂପକୁ ଭକ୍ତେ ପୂଜନ୍ତି
ସେ ଦିବ୍ୟ ରୂପରେ ଆପଣ ଆମକୁ ଦିଅନ୍ତୁ ଦର୍ଶନ
ସେହି ରୂପ ନିଜ ଗୁଣରେ ଇନ୍ଦ୍ରିୟ ପରି ତୃପ୍ତ କରେ
ସେହି ରୂପ ଜ୍ଞାତା ରୂପରେ ବିଷୟକୁ ଗ୍ରହଣ କରେ

ବର୍ଷାକାଳର ମେଘ ସମ ସ୍ନିଗ୍ଧ ଶ୍ୟାମଳ ମନୋରମ
ସକଳ ସୌନ୍ଦର୍ଯ୍ୟ ଆଧାର ମୁଖାର ବିନ୍ଦ ମନୋହର
କମଳ ପଳାଶ ନୟନ ଚତୁର୍ଭୁଜ ବିଶାଳ ରମ୍ୟ
ବଙ୍କିମ ଭ୍ରୂଲତା ଯୁଗଳ ସୁ ଉଚ୍ଚ ନାସିକା ଯୁଗଳ

କୁନ୍ଦ ସମାନ ଦନ୍ତପଙ୍କ୍ତି ମଣି ମେଖଳା ବିରାଜନ୍ତି
ଅତି ରମଣୀୟ କପୋଳ ସ୍ମିତ ଶୋଭୀ ମୁଖ ମଣ୍ଡଳ
ସୁସମ ଶ୍ରବଣ ଯୁଗଳ ଗଳାରେ ଶୋହେ ବନମାଳ
ସୁରମ୍ୟ ଅଳକା ବଳିରେ ପ୍ରେମ ସୁହାସ୍ୟ କଟାକ୍ଷରେ

ବଦନ ମଣ୍ଡଳ ଶୋଭନ ପରିଧାନ ପୀତ ବସନ
ଉଜ୍ଜ୍ୱଳ କୁଣ୍ଡଳ କାନ୍ତିରେ କର୍ଣ୍ଣ ଯୁଗଳ ଚିତ୍ତ ହରେ
ଉଜ୍ଜ୍ୱଳ ମୁକୁଟ ଶିରରେ କଙ୍କଣ ଶୋଭଇ କରରେ
କଙ୍କଣ ଶୋଭଇ ହସ୍ତରେ ବକ୍ଷେ ହାର ପାଦେ ନୂପୁର

କଟି ମେଖଳ ମନୋହରେ କଉସ୍ତୁଭ ମଣି ଗଳାରେ
ସୁବର୍ଣ୍ଣ ମେଖଳା କଟିରେ ଚିତ୍ତହରେ ଦର୍ଶନରେ
ଶଙ୍ଖ ଚକ୍ର ଗଦା ନଳୀନ ଚତୁର ଭୁଜେ ଶୋଭମାନ
ସିଂହ ସମାନ ସ୍କନ୍ଧ ଦୁଇ କୁଣ୍ଡଳ କାନ୍ତିରେ ଶୋଭଇ

କୌସ୍ତୁଭ ମଣି ଗ୍ରୀବାଦେଶେ ଅପୂର୍ବ ସୁସମା ପ୍ରକାଶେ
କଷଟି ପଥର ଉପରେ ସୁବର୍ଣ୍ଣର ରେଖା ପ୍ରକାରେ
ଶ୍ୟାମଳ ବିଶାଳ ବକ୍ଷରେ ଲକ୍ଷ୍ମୀ ଦର୍ଶକ ମନହରେ
ଅଶ୍ୱତ୍ଥ ପତ୍ର ତୁଳ ତ୍ରିବଳି ଶୋଭିତ ଉଦର

ଶ୍ୱାସ ପ୍ରଶ୍ୱାସରେ ଚଳିତ ବିଶେ ମନୋରମ ଅତ୍ୟନ୍ତ
ଆବର୍ତ୍ତ ନାଭି ସୁଗଭୀର ଯହିଁରୁ ଉତ୍ପନ୍ନ ସଂସାରୁ
ଲୀନ ହେବା ପରି ତହିଁ ଦର୍ଶନେ ପ୍ରତୀତ ହୁଅଇ
ପୀତ ବସନ ନିତମ୍ବରେ ଶୋଭଇ ସ୍ୱର୍ଣ୍ଣ ମେଖଳାରେ

ଚାରୁ ସମାନ ପଦ ଯୁଗ, ଅତି ବିଶାଳ ଦୁଇ ଜଙ୍ଘ
ଅନୁନ୍ନତ ଜାନୁ ଦ୍ୱୟରେ ଶ୍ରୀ ବିଗ୍ରହ ଯେ ଚିତ୍ତହରେ
ଆପଣଙ୍କ ପଦ ଯୁଗଳ ଶାରଦ ପଦ୍ମ କସୁମର
ସୁସମା କରଇ ଧିକ୍କାର ନାହିଁ ତାହାର ପଟାନ୍ତର

ପଦ ନଖ ଜ୍ୟୋତି ପ୍ରକାଶ ଅଜ୍ଞାନ ତାମସ ନାଶଇ
ଭକ୍ତ ଆଶ୍ରୟ ଭୟହାରୀ ସେହି ରୂପକୁ କୃପାକରି
ଆପଣୁ କରାନ୍ତୁ ଦର୍ଶନ ଜଗତ ଗୁରୁ ଭଗବାନ
ଆଜ୍ଞାନା ବୃତ୍ତ ପ୍ରାଣୀଗଣ ଲଭିବାକୁ ତୋର ଚରଣ

ଆପଣ ଗୁରୁ ରୂପରେ ସୁପଥ ଦେଖାନ୍ତି ସଂସାରେ
ହେ ପ୍ରଭୋ ଚିତ୍ତ ଶୁଦ୍ଧି ପାଇଁ ଯେଉଁଜନ ଇଚ୍ଛା କରଇ
ସେ ସଦା ତୋହର ସ୍ୱରୂପ ଧ୍ୟାନ କରିବା ସମୁଚିତ
ସ୍ୱଧର୍ମ ପାଳୁଥିବାକ୍ତି ତୋର ଚରଣେ କଲେ ଭକ୍ତି

ଅଭୟ ଆଶ୍ରୟ ଲଭଇ ଭବ ଚକ୍ରରୁ ପାଏ ତ୍ରାହି
ସ୍ୱର୍ଗ ସଦ୍ୱର ଶଚୀ ସାଇଁ ତ ତେ ପାଇବାକୁ ଇଛଇ
ବିଶୁଦ୍ଧ ଆତ୍ମଜ୍ଞାନୀ ଗଣ ଗତି ଏକ ମାତ୍ର ଆପଣ
ଭକ୍ତି ବ୍ୟତୀତ ଅନ୍ୟ କେହି ତୋ ପଦ ଲଭି ନ ପାରୁଇ

ଦୁରାରାଧ୍ୟ ହେଲେ ବି ତୁହି ଭକ୍ତ ଅଧୀନେ ଥାଉ ରହି
ସାଧୁଜନ ଅତି କଷ୍ଟକରେ ତୋ ପାଦ ଆରାଧନା କରେ
କେବା ତେ ଉପାସନା ବିନା କରେ ସ୍ୱର୍ଗ ସୁଖ କାମନା
ଯେ କାଳ ଏକ ପଲକରେ ସଂପୂର୍ଣ୍ଣ ବିଶ୍ୱକୁ ସଂହାରେ

ତୋ ପଦାଶ୍ରିତ ପ୍ରାଣୀଠାରେ ସେପ୍ରଭାବ ବିସ୍ତାର ନକରେ
ପ୍ରେମୀ ହରି ଭକ୍ତ ସହିତ ସଙ୍ଗମ କ୍ଷଣ ଅର୍ଦ୍ଧମାତ୍ର
ସ୍ୱର୍ଗ ଅପବର୍ଗ ତୁଳନା କେବେହେଲେ ହୋଇପାରେ
ପ୍ରଭୋ ଆପଣଙ୍କ ଚରଣ ସର୍ବ ପାପ କରେ ହରଣ

ଯେ ଭକ୍ତ ଆପଣଙ୍କ କୀର୍ତ୍ତି ନିରନ୍ତର ଗାନ କରନ୍ତି
ତୋପଦ ନିଃସୃତ ଗଙ୍ଗାରେ ପ୍ରତ୍ୟହ ପ୍ରାତଃ ସ୍ନାନ କରେ
ବାହ୍ୟ ଅନ୍ତର ପାପଭାର ବିନାଶ ଲଭଇ ସତ୍ୱର
ରାଗ ଦ୍ୱେଷ ନାହିଁ ଯାହାର ସକଳ ଜୀବେ ଦୟାପର

ପ୍ରଶାନ୍ତ ସରଳ ପ୍ରକୃତି ଭକତ ସଙ୍ଗ ହୁଏ ପ୍ରାପ୍ତି
ହେ ଦେବ କରି ଅନୁଗ୍ରହ ଆମକୁ ଦରଶନ ଦିଅ
ଭକ୍ତି ବିଶୁଦ୍ଧ ଯାର ଚିତ୍ତ ବିଷୟରେ ନୁହେଁ ମୋହିତ
ପ୍ରକୃତି ଅଜ୍ଞାନ ଗୁହାରେ ଯା ଚିତ୍ତ ଅଜ୍ଞାନ ବଶରେ

ଲୀନ ନ ହୁଏ ପ୍ରକୃତିରେ ସେ ସାଧକ ଅନାୟାସରେ
ତୋ ସ୍ୱରୂପ ଦର୍ଶନ କରେ ହେ ଚିଦାନନ୍ଦ ଭଗବାନ
ଯେ ବ୍ରହ୍ମତତ୍ତ୍ୱେ ଏହି ବିଶ୍ୱ ସତତ ହୁଅଇ ପ୍ରକାଶ
ଯାହା ଏ ବିଶ୍ୱେ ଭାସମାନ ଆପଣ ହିଁ ସେ ଆକାଶ ସମ

ବିସ୍ତୃତ ଜ୍ୟୋତି ସ୍ୱରୂପେଣ ନିତ୍ୟ ଅବ୍ୟକ୍ତ ପରଂବ୍ରହ୍ମ
ଆହେ ପ୍ରଭୋ ମାୟା ତୋହର ରୂପଧରେ ନାନା ପ୍ରକାର
ଆପଣ ଏ ମାୟା ଶକ୍ତିରେ ପ୍ରତିଯୁଗେ ଏହି ପ୍ରକାରେ
ସୃଜି ପାଳନ୍ତି ଏ ଜଗତ ଏହା ହୋଇଲେ ବି ଅସତ

ସତ୍ୟ ପରି ହୁଏ ପ୍ରତୀତ ଆପଣ ହିଁ ନିର୍ବିକାର ନିତ୍ୟ
ଯେ ମାୟା ଶକ୍ତି ତୋ ଉପରେ ପ୍ରଭାବ ବିସ୍ତାର ନ କରେ
ଭେଦ ରହିତ ପରଂବ୍ରହ୍ମ ହୋଇଥିଲେ ମଧ ଆପଣ
ସ୍ୱରୂପ ହିଁ ଆପଣଙ୍କର ଇନ୍ଦ୍ରିୟ ଅନତକରଣର

ପଞ୍ଚଭୂତ ନିୟନ୍ତା ରୂପରେ ଉପଲକ୍ଷିତ ଏ ସଂସାରେ
କର୍ମ ଯୋଗେ ସିଦ୍ଧି ଇଛାରେ ବୈଦିକ ତାନ୍ତ୍ରିକ ବିଧିରେ
ତୁମର ସାକାର ସଗୁଣ ରୂପକୁ କରଇ ଅର୍ଚ୍ଚନ
ହେ ପ୍ରଭୋ ହରେ ଜଗଦୀଶ ଅଦ୍ୱିତୀୟ ଆଦି ପୁରୁଷ

ଏ ଦୃଶ୍ୟ ସୃଷ୍ଟିର ପୂର୍ବରେ ପ୍ରସୁପ୍ତ ତୋ ମାୟା ଶକ୍ତିରେ
ସତ୍ତ୍ୱ ରଜ ତମୋଗୁଣରେ ବୈଷମ୍ୟ ଜନମିଲା ଧୀରେ
ସେ ତ୍ରିଗୁଣରୁ ମହତତ୍ତ୍ୱ ଅହଙ୍କାର ନଭ ମରୁତ
ଅଗ୍ନି ଜଳ ପୃଥ୍ୱୀ ପବନ ଦେବତା ପୁଣି ଋଷିଗଣ

ଏହି ପ୍ରାଣୀମୟ ଜଗତ ସମସ୍ତ ହୋଇଲା ସମ୍ଭୂତ
ଆପଣ ସ୍ୱମାୟା ଶକ୍ତିରେ ଚତୁର୍ବିଧ ଜୀବ ସୃଜିଲେ
ଜୀବମାନଙ୍କ ଶରୀରରେ ଅଂଶ ସ୍ୱରୂପେ ପ୍ରବେଶିଲେ
ମଧୁ ମକ୍ଷିକାର ପ୍ରକାରେ ଆପଣ ଜୀବ ଶରୀରରେ

ରଚିତ ଅଂଶ ସ୍ୱରୂପରେ ଇନ୍ଦ୍ରିୟ ଗଣ ସାହାଯ୍ୟରେ
ବିଷୟକୁ ଭୋଗ କରନ୍ତି ପୁରୁଷ ନାମକୁ ବହନ୍ତି
ଅନୁମାନ ବା ପ୍ରତ୍ୟକ୍ଷରେ ତୋ ତତ୍ତ୍ୱଜ୍ଞାନ ନୁହେଁ ସଂସାରେ
ମେଘକୁ ମେଘ ସଂଘାତରେ ଯେପରି ବାୟୁ ଧ୍ୱଂସକରେ

ସେପରି ପ୍ରଳୟ କାଳରେ ଆପଣ କାଳ ସ୍ୱରୂପରେ
ପ୍ରାଣୀକୁ ପ୍ରାଣୀ ସାହାଯ୍ୟରେ ବିଚଳିତ କରି ସତ୍ୱରେ
ବିନାଶନ୍ତି ଲୋକ ସମସ୍ତ ବିଶ୍ୱ ନିୟନ୍ତା ଆପଣତ
ମୋହ ଗ୍ରସ୍ତ ଜୀବ ଅଜ୍ଞାନରେ ସଦା ବିଷୟ ଲାଳସାରେ

ନାନା କାର୍ଯ୍ୟ ଚିନ୍ତା କରଇ କ୍ରମେ ଲୋଭ ତାର ବଢ଼ଇ
କିନ୍ତୁ ତୁମେ ସଦା ଜାଗ୍ରତ ଯେଉଁ ପରି ସର୍ପ କ୍ଷୁଧାର୍ତ୍ତ
ନିଜ ଲହ ଲହ ଜିହ୍ୱାରେ ମୂଷାକୁ ଆକ୍ରମଣ କରେ
ତଥା କାଳ ରୂପେ ଆପଣ ଜୀବକୁ କରନ୍ତି ଆକ୍ରମଣ

ସଂସାରେ ଅଜ୍ଞ ଜ୍ଞାନୀ ଜନ କେହି ନିଜ ଆୟୁ ବୃଥା କଟାଇ
ଅବଜ୍ଞାରେ ତୋର ଚରଣ ସେବାକୁ କରେ କି ବର୍ଜନ
କାଳର ଭୟରେ ଆମର ନିଜ ଗୁରୁ ବେଦ ବର
ଚତୁର୍ଦ୍ଦଶ ମନୁ ଆବର ଏସିର ସର୍ବ ଚରାଚର

ବିନା କୌଣସି ବିଚାରରେ ତୋ ଚରଣରେ ଶ୍ରଦ୍ଧା କରେ
ହେ ବହ୍ମଣ୍ୟ ଏ ପ୍ରକାରେ ରୁଦ୍ର ରୂପ କାଳ ଭୟରେ
ବ୍ୟାକୁଳ ବୋଲି ଏହି ତତ୍ତ୍ୱ ଆମେ ହୋଇଛୁ ଅବଗତ
ହେ ପରମାତ୍ମା ବର୍ତ୍ତମାନ ଆପଣ ଅଭୟ ଶରଣ

ତୁମେମାନେ ଶୁଦ୍ଧ ଚିତ୍ତରେ ଚିତ୍ତ ନିବେଶି ଶ୍ରୀହରିରେ
ମୋ ଉପଦେଶେ ବର୍ତ୍ତମାନ ସ୍ୱଧର୍ମ କରିଣ ପାଳନ
ଏହି ସ୍ତୋତ୍ରକୁ ଜପକର ମଙ୍ଗଳ ହୋଇବ ତୁମର
ନିଜ ଅନ୍ତରେ ଅବସ୍ଥିତ ସର୍ବାନ୍ତର୍ଯ୍ୟାମୀ ଜଗନ୍ନାଥ

ଶ୍ରୀହରିଙ୍କୁ ବାର ବାର ସ୍ତୁତି ଚିନ୍ତନ ପୂଜାକର
ତୁମେ ଏ ଯୋଗାଦେଶ ନାମ ଯେ ସ୍ତୋତ୍ର କରିଲ ଶ୍ରବଣ
ଏହାକୁ ଧରିଣ ଚିତ୍ତରେ ସଦା ରହି ମୁନି ବ୍ରତରେ
ଶ୍ରଦ୍ଧାରେ ଏ ପବିତ୍ର ସ୍ତୋତ୍ର ଅଭ୍ୟାସ କରନ୍ତୁ ସତତ

ଏ ସ୍ତୋତ୍ରକୁ ପୂର୍ବ କାଳରେ ସଂସାର ବିସ୍ତାର ଇଚ୍ଛାରେ
ଶ୍ରୀ ପ୍ରଜାପତି ଭଗବାନ ପ୍ରଜା କରିବାକୁ ଉତ୍ପନ୍ନ
ଏହି ସ୍ତୋତ୍ର ପତି ଶୁଣାଇଥିଲେଭୃଗୁ ପ୍ରଭୃତିକୁ କହିଲେ
ଅଜ୍ଞାନ ହୋଇଗଲା ଦୂର ସର୍ବେ ଲଭିଲେ ଜ୍ଞାନସୀର

ନାନା ପ୍ରକାର ପ୍ରଜାଗଣ ଆମେମାନେ କଲୁ ଉତ୍ପନ୍ନ
ଯେ ବାସୁଦେବ ପରାୟଣ ପୁରୁଷ ମଧ ବର୍ତ୍ତମାନ
ଏକାଗ୍ରଚିତ୍ତେ ଏହି ସ୍ତୋତ୍ର ଜପିବ ପ୍ରତିଦିନ ପ୍ରାତଃ
ସେ ଶୀଘ୍ର କଲ୍ୟାଣ ଲଭିବ ଦେହାନ୍ତେ ବୈକୁଣ୍ଠକୁ ଯିବ

ଏ ଅନିତ୍ୟ ମର୍ତ୍ତ୍ୟ ଲୋକରେ କଲ୍ୟାଣ ସାଧନ ମଧ୍ୟରେ
ମୋକ୍ଷ ଦାୟକ ଏହି ଜ୍ଞାନ ସର୍ବ ଶ୍ରେଷ୍ଠ ଅଟଇ ଜାଣ
ବସି ଏହି ଜ୍ଞାନ ନାବରେ ପୁରୁଷ ଯେ ଅନାୟାସରେ
ଏହି ଯେ ଦୁସ୍ତର ସଂସାର ସାଗର ହୋଇ ଯିବ ପାର

ହରି ଆରାଧନା କଠିନ ହୋଇଲେ ମଧ୍ୟ ଯେଉ ଜନ
ମୋର କଥିତ ଏହି ସ୍ତୋତ୍ର ଶ୍ରଦ୍ଧାରେ ପଢ଼ିବ ଯେ ନିତ୍ୟ
ଅଚିରେ ହରିଙ୍କୁ ଲଭିବ ତା ଜନ୍ମ ସାର୍ଥକ ହୋଇବ
ସକଳ ସାଧନାର ମୂଳ ଶ୍ରୀହରି ଲାଭ ହିଁ କେବଳ

ଏ ସ୍ତୋତ୍ର କରିଲେ ପଠନ ତୁଷ୍ଟ ହୁଅନ୍ତି ନାରାୟଣ
ଯେ ଯାହା ଇଚ୍ଛା କରଇ ସକଳ ସଂପଦ ଲଭଇ
ଯେ ପୁରୁଷ ଉଷା କାଳରେ ଶଯ୍ୟା ତେଜି ଯୋଡ ହସ୍ତରେ
ଏ ସ୍ତୋତ୍ର ଶୁଣେ ବା ଶୁଣାଏ କର୍ମ ବନ୍ଧନୁ ମୁକ୍ତ ହୁଏ

ଆହେ ରାଜ କୁମାର ଗଣ ମୁଁହି ତୁମଙ୍କୁ ବର୍ତ୍ତମାନ
ପରମ ପୁରୁଷ ଶ୍ରୀଧର ପରମାତ୍ମା ହରିଙ୍କର
ଶୁଣାଇଲି ଯେଉଁ ସ୍ତୋତ୍ର ତାହା ଏକାଗ୍ର ଚିତ୍ତେ ନିତ୍ୟ
ଜପି ତପକର ସାଧନ ତପସ୍ୟା ହୋଇଲେ ସମ୍ପୂର୍ଣ୍ଣ

ଅଭୀଷ୍ଟ ଫଳକୁ ଲଭିବ ସଂସାର ଦୁଃଖ ଦୂର ହେବ
ଚତୁର୍ବିଂଶାଧ୍ୟାୟ ବର୍ଣ୍ଣିତ ରୁଦ୍ର ଗୀତା ହେଲା ସମାପ୍ତ
ବୋଲ ଆନନ୍ଦେ ହରି ହରି ହରି କରିବେ ଭବୁ ପାରି

ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମ ହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥେ ସ୍କନ୍ଧେ ରୁଦ୍ର ଗୀତେଃନାମ ଚତୁର୍ବିଂଶୋଽଧ୍ୟାୟ ।

*******

## ପଞ୍ଚବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ ମୁନି ଆନନ୍ଦରେ କହନ୍ତି ବିଦୁର ଆଗରେ
ଶ୍ରୀଶଙ୍କର ଏ ପ୍ରକାରେ ପ୍ରଚେତା ମାନଙ୍କୁ ତୋଷରେ
ରୁଦ୍ର ଗୀତାର ଉପଦେଶ ଦେଇ ପୂଜାପାଇ ବିଶେଷ
ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ପ୍ରଚେତା ଜଳର ମଧରେ

ରହିଣ ଏକାତ୍ମ ଚିତ୍ତରେ ଜପି ରୁଦ୍ର ସ୍ତୋତ୍ର ଭକ୍ତିରେ
ଦଶସସ୍ର ବର୍ଷ ପର୍ଯ୍ୟନ୍ତ ହୋଇଲେ ତପସ୍ୟା ନିରତ
ପ୍ରାଚୀନ ବର୍ହି ଏ ବେଳରେ ମଜ୍ଜିଥିଲେ କର୍ମ କାଣ୍ଡରେ
ଆଧ୍ୟାତ୍ମ ବିଦ୍ୟା ବିଶାରଦ ପରମ କୃପାଳୁ ନାରଦଂ

ଉପଦେଶ ଦେଇ କହିଲେ ହେ ନୃପ ଏ କର୍ମ କାଣ୍ଡରେ
ତୁମେ ନିଜର କି ପ୍ରକାର କଲ୍ୟାଣ ଲାଭ ଇଚ୍ଛାକର
ଏକାନ୍ତ ବିନାଶ ଦୁଃଖର ପରମ ଆନନ୍ଦ ପ୍ରାପ୍ତିର
ନାମ ହିଁ କଲ୍ୟାଣ ଅଟଇ କର୍ମରେ ତାହା ମିଳେ ନାହିଁ

ତୁ କର୍ମ କାଣ୍ଡେ ମଜ୍ଜି ରହି କର୍ମ କରୁଛୁ କାହିଁ ପାଇ
ନିରୀହ ପଶୁଙ୍କୁ ମରିଣ କି ଶୁଭ ଲାଭ ହେବ ତୁମ

### ରାଜୋବାଚ

ହେ ମହାଭାଗ ଧାତା ସୁତ ମୋ ବୁଦ୍ଧି କର୍ମରେ ଜଡିତ
ଅନ୍ୟାନ୍ୟପରମ କଲ୍ୟାଣ ବିଷୟେ ମୋର ନାହିଁ ଜ୍ଞାନ
ଦିଅ ବିଶୁଦ୍ଧ ଆତ୍ମଜ୍ଞାନ ଛିଡିବ କରମ ବନ୍ଧନ
ଯେ ରହି ଗୃହସ୍ଥାଶ୍ରମରେ କପଟ ଧରମ ଆଚରେ

ପୁତ୍ର କଳତ୍ରକୁ ପୋଷଇ ସର୍ବଦା ଧନ ଅରଜଇ
ସେ ଜନ ଅଜ୍ଞାନ ବଶରେ ଭ୍ରମଇ ସଂସାର ଚକ୍ରରେ
କେବେ ହେଁ ସେହି ମୂଢ଼ ଜନନ ଲଭେ ପରମ କଲ୍ୟାଣ

### ନାରଦ ଉବାଚ

ଶୁଣି ପ୍ରାଚୀନ ବର୍ହିଙ୍କ ବଚନ ଶୁଣି ବୋଲେ ଧାତା ନନ୍ଦନ
ହେ ରାଜନ ତୁ ଅବିଚାରେ ଯେ ପଶୁ ବଧିଲୁ ଯଜ୍ଞରେ
ସେମନେ ଆକାଶେ ଅଛନ୍ତି ଦେଖନ୍ତୁ ଆହେ ନରପତି
ସେମାନେ ପ୍ରତିଶୋଧ ପାଇଁ ଅପେକ୍ଷା କରିଛନ୍ତି ରହି

ଆପଣ ମୃତ୍ୟୁ ପରେ ଯେବେ ପରଲୋକ ଯାତ୍ରା କରିବେ
ସେମାନେ ଅତ୍ୟନ୍ତ କ୍ରୋଧରେଲୌହପରି ଦୃଢ଼ ଶିଙ୍ଗରେ
ଆପଣଙ୍କୁ ବଳେ ଭୂଷିବେ ଦେହ ଛିନ୍ନ ଭିନ୍ନ କରିବେ
ଏ ବିଷୟରେ ହେ ନରେଶ ପୁରଞ୍ଜନ ନୃପ ଚରିତ

କହୁଛି ମୁହିଁ ବର୍ତ୍ତମାନ ସାବଧାନ ହୋଇ ତା ଶୁଣ
ପୂର୍ବେ ପୁରଞ୍ଜନ ନାମରେ ଜଣେ ଯଶସ୍ୱୀ ରାଜା ଥିଲେ
ତାଙ୍କ ଅବଜ୍ଞାତ ନାମରେ ଜଣେ ପରମ ମିତ୍ର ଥିଲେ
ସେ ଯେବେଳେ ଯାହା କରଇ ତା ବୁଝି ନ ପାରନ୍ତି କେହି

ସ୍ୱ ଉପଯୁକ୍ତ ବାସସ୍ଥାନ ଖୋଜିବାକୁ ସେ ପୁରଞ୍ଜନ
ସମଗ୍ର ପୃଥିବୀ ଭ୍ରମିଲେ ମନୋଜ୍ଞ ସ୍ଥାନ ନ ପାଇଲେ
ବିଷୟ ଭୋଗ ଲାଳସାରେ ସେ ବେଳେ ନଗର ଦେଖିଲେ
ସେଥିରୁ କୌଣସି ନଗର ମନୋନୀତ ନ ହେଲା ତାଙ୍କର

ସେ ଦିନେ ହିମାଳୟର ଦକ୍ଷିଣ ପାରୁଷ ଶିଖର
ଊର୍ଦ୍ଧ୍ୱ ଦେଶରେ ନବ ଦ୍ୱାର ଦେଖିଲେ ଗୋଟିଏ ନଗର
ତହିଁ ପ୍ରାଚୀନ ଉପବନ ପ୍ରସାଦ ଗବାକ୍ଷ ତୋରଣ
ସ୍ୱର୍ଣ୍ଣ ରୌପ୍ୟ ଲୌହ ନିର୍ମିତ ଗୃହାଦିର ଶୋଭା ବିଚିତ୍ର

ଇନ୍ଦ୍ର ନୀଳ ମୁକ୍ତା ମର୍କତ ସ୍ଫଟିକ ମଣିରେ ନିର୍ମିତ
ହର୍ମ୍ୟସ୍ଥଳିରେ ସେ ନଗରୀ ସୌନ୍ଦର୍ଯ୍ୟ ମୟୀ ନାଗ ପୁରୀ
ଭୋଗବତୀ ପରି ସୁନ୍ଦର ପୁରୀ ସଭାଗୃହ ଚତ୍ୱର
ମାର୍ଗ ଦ୍ୟୁତ କ୍ରୀଡାର ସ୍ଥାନ ବଜାର ବିଶ୍ରାମର ସ୍ଥାନ

ପତାକା ପ୍ରବଳ ବେଦୀରେ ଦର୍ଶକ ଗଣ ଚିତ୍ତ ହରେ
ଏ ନଗରୀର ବାହାରେ ପରିପୂର୍ଣ୍ଣ ବୃକ୍ଷ ଲତାରେ
ଥିଲା ଗୋଟିଏ ଉପବନ ହରେ ଦର୍ଶକ ମନ ପ୍ରାଣ
ତା ମଧ୍ୟେ ଏକ ସରୋବର ସେଠାରେ ବିଭିନ୍ନ ପ୍ରକାର

ବିହଗ କରନ୍ତି କୂଜନ ଭ୍ରମର କରେ ଗୁଂଜରଣ
ସରୋବର ତୀର ବୃକ୍ଷର ଶାଖା ପ୍ରଶାଖା ପତ୍ରର
ଶୀତ ଝର ଜଳ କଣାରେ ମିଶ୍ରିତ ବାସନ୍ତୀ ବାୟୁରେ
ଅତ୍ୟନ୍ତ ଆନ୍ଦୋଳିତ ହୁଏ ତୀର ବନ ଶୋଭା ବଢ଼ାଏ

ଏ ବନ ବନ୍ୟ ପଶୁ ପଂକ୍ତି ଅହିଂସା ବ୍ରତକୁ ପାଳନ୍ତି
କାହାକୁ କଷ୍ଟ ନ ଦିଅନ୍ତି ବୃକ୍ଷରେ କୋକିଳ ଭାବନ୍ତି
ସେତେ ଉପବନ ଯେ ପ୍ରକାରେ ପକ୍ଷୀ କୋଳାହଳ ଛଳରେ
ପଥିକ ମାନଙ୍କୁ ବିଶ୍ରାମ ନେବା ପାଇ କରେ ଆହ୍ୱାନ

ରାଜା ପୁରଞ୍ଜନ ସେଠାରେ ଏକ ସୁନ୍ଦରୀ ସ୍ତ୍ରୀ ଦେଖିଲେ
ଦଶ ଜଣ ଭୃତ୍ୟ ସଙ୍ଗରେ ସେ ନାରୀ ଆସୁଥିଲା ଧୀରେ
ପଞ୍ଚ ଫଣା ସର୍ପ ସେଠାରେ ସର୍ବଦା ପ୍ରହରୀ ରୂପରେ
ସେ ନାରୀକୁ ଚତୁର୍ଦ୍ଦିଗରେ ରକ୍ଷା କରେ ସାବଧାନରେ

ଏ ଷୋଳ ବର୍ଷିୟା କାମିନୀ ଗଜ ଗତି ମନ ମୋହିନୀ
ନିଜେ ବିବାହ ହେବା ପାଇଁ ଶ୍ରେଷ୍ଠ ପୁରୁଷକୁ ଖୋଜଇ
ନାସିକା ଦଶନ କପୋଳ ସୁରମ୍ୟ ବଦନ ମଣ୍ଡଳ
କର୍ଣ୍ଣରେ କୁଣ୍ଡଳ ଦୋଳଇ ଚାଲିଲେ ନୂପୁର ବାଜଇ

କଟି ମେଖଳା ମନୋହର ଶ୍ୟାମଳ ବରନ ଶରୀର
ପୀତ ବସନ ପରିଧାନ ଜଣାଯାଏ ଦେବୀ ସମାନ
ସ୍ତନ ଯୁଗଳ ଗୋଲାକାର ଲାଗି ରହିଣ ପରସ୍ପର
କିଶୋର ବୟସ ସୂଚାଏ ଯୁବକ ଗଣ ମନ ମୋହେ

ସେ ଗଜ ଗାମିନୀ ଲଜ୍ଜାରେ ସ୍ତନ ଆବରେ ଅଂଚଳରେ
ସଲଜ୍ଜ ମନ୍ଦ ସ୍ମିତ ହାସ୍ୟ ପ୍ରେମରେ ପୂର୍ଣ୍ଣ ଭ୍ରୂବିଳାସ
ବିମୁଗ୍ଧ ସ୍ନିଗ୍ଧ ଅପାଙ୍ଗରେ ପୁରଞ୍ଜନ ତାକୁ ପୁଛିଲେ
ହେ କମଳ ନୟନା ବାମା ତୁମେ ଅଟ କାହାର କନ୍ୟା

ଏଠାକୁ ଆସିଲେ କିପରି କିଂପାଇ ବୁଲୁଅଛ ଘୁରି
କି କାର୍ଯ୍ୟ କରିବା ଇଛାରେ ଆସିଅଛ ଏହି ବନରେ
ତୁମ ସହିତ ଏଗାର କିଏ ଅଟନ୍ତି ମହାବୀର
କିଏ ବା ଏ ଅନ୍ୟ ରମଣୀ କିଏ ସର୍ପ ସପ୍ତଫେଣୀ

ଲଜ୍ଜାଦେବୀ କିଅବା ଉମା ତୁମେ ବ୍ରହ୍ମାଣୀ କି ବାରମା
ମୁନି ପରି ଏହି ବନରେ ନିବାସ କରି ଏକାନ୍ତରେ
ନିଜର ମନୋଗତ ପତି କିବା ଖୋଜୁଛୁ ହେ ଯୁବତୀ
ତୋ ପାଦ ସେବା କାମନାରେ ତୁମ ପତି ଏ ସଂସାରରେ

ସକଳ ଇପ୍‌ସିତ ପଦାର୍ଥ ନିଶ୍ଚୟ ହୋଇଛନ୍ତି ପ୍ରାପ୍ତ
ତୁ ଯଦି ଲକ୍ଷ୍ମୀ ପ୍ରକୃତରେ ହସ୍ତ ଲୀଳା କମଳ କେଉଁଠାରେ
ହେ ସୁନ୍ଦରୀ ତୁ ନୁହଁ ଦେବୀ ତୋ ଚରଣ ଛୁଏଁ ପୃଥିବୀ
ଯଦି ମାନବୀ ପ୍ରକୃତରେ ଶ୍ରୀହରିଙ୍କୁ ଲକ୍ଷ୍ମୀ ପ୍ରକାରେ

ତେବେ ତୁହି ମୋର ସହିତ ଏ ପୁରୀ କର ଅଳଙ୍କୃତ
ମୁ ମହା ପରାକ୍ରମୀ ବୀର ଦେଖ ତୋର କଟାକ୍ଷ ଶର
ମୋର ଇନ୍ଦ୍ରିୟ ଛିନ୍ନ ଭିନ୍ନ ତୋର ସ୍ମିତ ହାସ୍ୟ ବଦନ
ସଲଜ୍ଜ ହାବ ଭାବ ମାନ ବଙ୍କିମ ଭ୍ରୂଲତା ଚାଳନ

କାମ ବାଣ ମତେ ପୀଡଇ ଅନାଥ ବାରେ ଦୟା ବହି
ସୁଧା ମଧୁର ତୋର ବାଣୀ ଜନ ମାନସ ନିଏ କିଣି
ହେ ବାଳେ ତୋ ଚନ୍ଦ୍ର ବଦନତୋ ଭ୍ରୂଲତା କାମ କମାଣ
ଭ୍ରୂଲତା ସୁଢ଼ଳ ନୟନ ସୁଶୋଭିତ ତୋର ବଦନ

ନୀଳ କୁନ୍ତଳରେ ଆବୃତ ମାତ୍ର ତୁମେ ଲଜ୍ଜା ବଶତ
ମୋର ଆଡକୁ ଚାହୁଁ ନାହଁ ଥରେ ତୋ ବଦନ ଦେଖାଅ

### ନାରଦ ଉବାଚ

ହେ ପ୍ରାଚୀନ ବର୍ହି ପ୍ରବୀର ପୁରଞ୍ଜନ ହୋଇ ଅଧୀର
ପ୍ରାର୍ଥନା କଲେ ଏ ପ୍ରକାର ବାଳା ହସି କଲା ସ୍ୱୀକାର
ରାଜାଙ୍କୁ ଦେଖି ବିମୋହିତ ସେ ନାରୀ କହିଲଣ ଏମନ୍ତ
କିଏ ମୋ ଜନନୀ ପିଅର କିଅବା ନାମ ଗୋତ୍ର ମୋର

ହେ ବୀର ଆମେ ଏ ପୁରୀରେ ରହିଅଛୁ ଏକ ସଙ୍ଗରେ
ମୁଁ ଆଉ କିଛି ଜାଣେ ନାହିଁ ଏହି ପୁରୀକୁ ଆମ ପାଇଁ
କିଏ କରିଅଛି ନିର୍ମାଣ ଜାଣେ ନି ହେ ପୁରୁଷୋତ୍ତମ
ନାରୀଏ ସହଚରୀ ମୋର ପୁରୁଷ ମାନେ ସଖା ମୋର

ମୁ ଶୟନ କଲେ ନିଦ୍ରାରେ ଏ ସର୍ପ ପୁର ରକ୍ଷା କରେ
ହେ ଶତ୍ରୁ ଦମନ ରାଜନ ଆପଣଙ୍କର ଆଗମନ
ପରମ ସୌଭାଗ୍ୟ ମୋହର ସୁମଙ୍ଗଳ ହେଉ ତୁମର
ବିଷୟ ଭୋଗ କରିବାର ଯେ କାମନା ଅଛି ତୁମର

ତାହାର ପୂରଣ ନିମିତ୍ତ ମୁ ମୋ ସହଚରୀ ସହିତ
କରିବି ସମସ୍ତ ପ୍ରସ୍ତୁତ ବିଳମ୍ବ ନ କର ହେ ନାଥ
ସକ କମ୍ୟ ବସ୍ତୁମାନ ଉପଭୋଗ କରି ଆପଣ
ଏହି ନବ ଦ୍ୱାର ପୁରୀରେ ଶତ ବର୍ଷଁ ରହ ଏଠାରେ

ମୁ ଆପଣଙ୍କୁ ଛାଡି ଅନ୍ୟ ନ କରିବି ଆନ ରମଣ
ଅନ୍ୟମାନେ ଅଜ୍ଞାନ ମୂର୍ଖ ନ ଜାଣେ ରତି ରସ ସୁଖ
ପର ଲୋକ ନ ଜାଣନ୍ତି ଉଚିତ ଭୋଗ୍ୟ ନ ଭୋଗନ୍ତି
ଆସନ୍ତା କାଲି ହେବ କ'ଣ ତାହା ନ କରନ୍ତି ଚିନ୍ତନ।

ସେମାନେ ପଶୁଙ୍କ ସମାନ ତାଙ୍କ ଜୀବନ ଅକାରଣ
ଏ ପୃଥ୍ୱୀରେ ଗୃହସ୍ଥାଶ୍ରମ ସର୍ବ ସୁଖଠାରୁ ଉତ୍ତମ
ଧର୍ମ ଅର୍ଥ ସନ୍ତାନ ସୁଖ ଯଶ ସୁକୀର୍ତ୍ତି କାମ ମୋକ୍ଷ
ଦେବଲୋକ ସ୍ୱର୍ଗ ପ୍ରଭୃତି ଅନାୟାସେ ହୁଅଇ ପ୍ରାପ୍ତି

ସନ୍ୟାସୀ ବଇରାଗୀ ଯତି କଳ୍ପନା କରି ନ ପାରନ୍ତି
ମହାପୁରୁଷଙ୍କର ମତ ଗୃହାଶ୍ରମ ହିଁ ଏକମାତ୍ର
ପିତୃ ଦେବ ଋଷି ନରର ତଥା ସକଳ ପ୍ରାଣୀଙ୍କର
ଗୃହସ୍ଥ ମାନବର ପୁଣ ସାଧଇ ସକାଳ କଲ୍ୟାଣ

ଏହା ବିଚାକରନ୍ତୁ ଆପଣ ଶୁଣନ୍ତୁ ଆହେ ନରରାଣ
ପୃଥ୍ୱୀରେ ମୋପରି ରମଣୀ କିଏ ବା ଅଛି ନରମଣି
ଯେକି ଆପଣଙ୍କ ପରି ସର୍ବ ସଗୁଣ ଅଧିକାରୀ
ଉଦାର ଚରିତ ସୁଠାମ ପତି ନ କରିବା ବରଣ

ଆହେ ମହା ବାହୋ ତୁମର ସର୍ପ ପରି କୁଣ୍ଡଳା କାର
ଭୁଜରେ ପାଇବାକୁ ସ୍ଥାନ କେ ନାରୀ ବଳାଇବ ମନ
ସ୍ମିତ ହାସ୍ୟ ଭରା ମୁଖରେ କରୁଣାପୂର୍ଣ୍ଣ ଚାହାଣୀରେ
ମୋପରି ଅନାଥା ନାରୀର ମନସ୍ତାପ କରିବାକୁ ଦୂର
ଏହି ପୃଥିବୀରେ ଆପଣ କରୁଅଛନ୍ତି ବିଚରଣ

### ନାରଦ ଉବାଚ

କହନ୍ତି ବିଧାତା ନନ୍ଦନ ଶୁଣ ହେ ପ୍ରାଚୀନ ରାଜନ
ସେ ସ୍ତ୍ରୀ ପୁରୁଷ ଦୁଇଜନ ଅନ୍ୟୋ ପରସ୍ପର କଥା ସମର୍ଥନ
କରି ସେହି ପୁରେ ମଧ୍ୟରେ ଶତ ବର୍ଷ ସୁଖ ଭୁଞ୍ଜିଲେ

ଗାୟକ ମାନେ ସେ ପୁରରେ ପୁରଞ୍ଜନଙ୍କ କୀର୍ତ୍ତି ଗାଇଲେ
ପୁରଞ୍ଜନ ଗ୍ରୀଷ୍ମ ଋତୁରେ ଅନେକ ରମଣୀ ସଙ୍ଗରେ
ରମ୍ୟ ସରୋବର ମଧ୍ୟରେ ଜଳରେ କ୍ରୀଡା କରୁଥିଲେ
ସେ ନବ ଦ୍ୱାର ମଧ୍ୟରେ ସାତ ଦ୍ୱାର ଥିଲା ଉପରେ

ଦୁଇଗୋଟି ଦ୍ୱାର ତଳରେ ଯେ ଦ୍ୱାର ଅଛଇ ସେଠାରେ
ଭିନ୍ନ ଭିନ୍ନ ଦେଶ ଯିବା ପାଇ ଏହି ନବ ଦ୍ୱାର ନିର୍ମିତ
ସେ ନଗ୍ର ରାଜା ଏ ଦ୍ୱାର ଦେଇଭିନ୍ନ ଭିନ୍ନ ଦେଶ ଗମଇ
ପଞ୍ଚଦ୍ୱାରା ଥିଲା ପୂର୍ବରେ ଏକ ଏକ ସବ୍ୟ ଉତ୍ତରେ

ଦୁଇଟିର ମୁଖ ପଶ୍ଚିମ ତାହାଙ୍କ ନାମ ଏବେ ଶୁଣ
ଖଦ୍ୟୋତା ଆର୍ମୁଖୀ ନାମରେ ଏକ ସ୍ଥାନେ ପୂର୍ବ ଦିଗରେ
ହୋଇଥିଲା ତହିଁ ନିର୍ମାଣ ସେ ପଥେ ରାଜା ପୁରଞ୍ଜନ
ମିତ୍ର ଦ୍ୟୁମ୍ନଙ୍କୁ ସଙ୍ଗେ ନେଇ ବିଭ୍ରଜିତ ଦେଶେ ଗମଇ

ପୂର୍ବ ଦିଗେ ଏକ ସ୍ଥାନରେ ନଳିନୀ ନାଳିନୀ ନାମରେ
ନିର୍ମିତ ଦୁଇଟି ଦ୍ୱାରରେ ଅବଧୂତଙ୍କର ସଙ୍ଗରେ
ସୌରଭ ନାମକ ଯେ ଦେଶ ଗତାଗତ କରେ ନରେଶ
ପୂର୍ବ ଦିଶେ ଥିବା ପଞ୍ଚମ ଦ୍ୱାରର ଅଟେ ମୁଖ୍ୟନାମ

ପୁରଞ୍ଜନ ସେହି ପଥରେ ରସଜ୍ଞ ବିପଣି ସଙ୍ଗରେ
କ୍ରମେ ବହୁଜନ ଆପଣ ଦେଶକୁ କରଇ ଗମନ
ନଗର ଦକ୍ଷିଣ ଦିଗରେ ପିତୃହୁ ନାମକ ଦ୍ୱାରରେ
ସେ ରାଜା ଶ୍ରୁତଧର ଗମଇ ପାଞ୍ଚାଳ ଦେଶର

ଉତ୍ତରେ ଦେ ବହୂ ଦ୍ୱାରରେ ଯାଏ ଉତ୍ତର ପାଞ୍ଚାଳରେ
ପଶ୍ଚିମ ଆସୁରୀ ମାର୍ଗରେ ସଖା ଦୁର୍ମଦଙ୍କ ସଙ୍ଗରେ
ପୁରଞ୍ଜନ ଗ୍ରାମକ ନାମ ଦେଶକୁ କରଇ ଗମନ
ପଶ୍ଚିମ ନୈରିତ ଦ୍ୱାରରେ ଲୁବ୍ଧକ ସଖାଙ୍କ ସଙ୍ଗରେ

ସେ ପୁରଂଜନ ନରପତି ବୈଶସ ଦେଶକୁ ଯାଆନ୍ତି
ସେ ନଗର ବାସୀଙ୍କ ମଧ୍ୟରେ ନିର୍ବାକ ପେଶକୃତ ନାମରେ
ଦୁଇଅନ୍ଧ ବ୍ୟକ୍ତି ସଙ୍ଗରେ ପୁରଂଜନ ନୃପ ସ୍ୱେଚ୍ଛାରେ
ନାନାଦି ସ୍ଥାନକୁ ଯାଆନ୍ତି ସମସ୍ତ କରମ କରନ୍ତି

ଭୃତ୍ୟ ବିଷୂଚୀନ ସଙ୍ଗରେ ପ୍ରବେଶିଣ ଅନ୍ତଃ ପୁରରେ
ତନୟ କଳତ୍ର ପ୍ରଭୃତି ସ୍ନେହରେ ବିମୋହିତ ମତି ନରପତି
ସେ ପୁରଂଜନ ନରପତି ଅତ୍ୟନ୍ତ ଆନନ୍ଦ ଲଭନ୍ତି
ସେ ପୁରଂଜନଙ୍କର ଚିତ୍ତ ହେଲା ନାନା କର୍ମେ ଆସକ୍ତ

ନିଜର ଅଜ୍ଞାନତା ପାଇଁ ସର୍ବଦା କାମ ବଶ ହୋଇ
ଇଚ୍ଛା ଅନୁସାରେ ରାଣୀର କର୍ମ କରନ୍ତି ନିରନ୍ତର
ମଦ ପିଇ ରାଣୀ ସହିତ ହୁଅନ୍ତି ବିହ୍ୱଳିତ ଚିତ୍ତ
ରାଣୀ ଖାଇଲେ ସେ ଖାଆନ୍ତି ସଙ୍ଗହୋଇ ଗୀତ ଗାଆନ୍ତି

ହାସ୍ୟ କ୍ରନ୍ଦନ ସଂଭାଷଣ ଗମନ ଦର୍ଶନ ଭୋଜନ
ସ୍ଥିତି ଶୟନ ଜାଗରଣ ଶ୍ରବଣ ଆଘ୍ରାଣ ସ୍ପର୍ଶନ
ରାଣୀ ସହିତ ପୁରଞ୍ଜନ କରନ୍ତି କାୟା ଛାୟା ସମ
ପ୍ରସନ୍ନେ ପ୍ରସନ୍ନ ହୁଅନ୍ତି ଶୋକରେ ସେ ବ୍ୟାକୁଳ ଅତି

ନିଜର ମୂଢ଼ତା ଅଧୀନ ସେ ନରପତି ପୁରଞ୍ଜନ
ପାଳିତ ବାନର ପ୍ରକାରେ ରାଣୀଙ୍କୁ ସକଳ କାର୍ଯ୍ୟରେ
ଅନୁରାଗ କରି ନିତି ହୋଇଲେ ପ୍ରତାରିତ ଅତି

ଶ୍ରୀମଦ୍ ଭଗବତେ ମହାପୁରାଣେ ପାରମ ହସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ପୁରଞ୍ଜନୋପାଖ୍ୟାନଂ ନାମ ପଞ୍ଚବିଂଶୋଽଧ୍ୟାୟ ।

*******

## ଷଡବିଂଶ ଅଧ୍ୟାୟ

### ନାରଦ ଉବାଚ

ସେ ଧନୁର୍ଦ୍ଧର ରାଜା ଥିଲେ ଆରୋହଣ କରି ରଥରେ
ମୃଗୟା କରିବାର ପାଇଁ ଘୋର ବନକୁ ଥିଲେ ଯାଇ
ସେ ଶୀଘ୍ରଗାମୀ ରଥରେ ପାଞ୍ଚେ ଅଶ୍ୱ ଯୋଚି ତହିଁରେ
ଦୁଇଟି ଈଶ ଦୁଇ ଚକ ତିନି ଧ୍ୱଜାଯେ ଅକ୍ଷ ଏକ

ଏକ ରଶି ପାଞ୍ଚ ବନ୍ଧନ ଏକ ସୂତ୍ର ଏକ ରଥୀ ସ୍ଥାନ
ଦୁଇ ଯୁଆଳି ବନ୍ଧନ ସ୍ଥାନ ପଞ୍ଚ ଆୟୁଧ ସପ୍ତାବରଣ
ପାଞ୍ଚ ପ୍ରକାର ଗତି ପଥ ସ୍ୱର୍ଣ୍ଣ ଆଭରଣେ ଭୂଷିତ
ବିଶାଳ ଧନୁ ଅକ୍ଷୟ ତୁଣ ସୁବର୍ଣ୍ଣ କବଚ ଧାରଣ

ଏଗାର ଜଣ ସେନାପତି ସଙ୍ଗରେ ସେ ରାଜା ବୁଲନ୍ତି
ପଞ୍ଚ ସାନୁରେ ସେ ବନସ୍ତ ହୋଇଣ ଥିଲା ଯେ ବିଭକ୍ତ
ସେ ପୁରଞ୍ଜନ ନରପତି ରାଣୀକୁ କେବେ ନ ଛାଡନ୍ତି
ମାତି ମୃଗୟା ବିଳାସରେ ରାଣୀ ତେଜି ଅନ୍ତଃପୁରେ

ଧନୁଶର ଧରି ଗର୍ବରେ ବନେ ଭ୍ରମିଲେ ଦୃପ୍ତ ଚିତ୍ତରେ
ଆସୁରୀ ବୃତ୍ତି ପ୍ରଭାବରେ ନିର୍ଦ୍ଦୟ କଠୋର ଚିତ୍ତରେ
ସୁତୀକ୍ଷ୍ଣ ବାଣ ପ୍ରୟୋଗରେ ବହୁ ବନ୍ୟ ଜନ୍ତୁ ବଧିଲେ
ଯେ ମାଂସ ଭୋଜନ ଇଚ୍ଛଇ ସେ ରାଜା ବନସ୍ତକୁ ଯାଇ

ଶାସ୍ତ୍ର ଦର୍ଶିତ ନିୟମରେ ସ୍ୱ ପ୍ରୟୋଜନ ଅନୁସାରେ
କେବଳ ଖାଦ୍ୟ ଉପଯୁକ୍ତ ପଶୁଙ୍କୁ ବାଧିବା ଉଚିତ
ହେ ରାଜନ ଯେ ବିଜ୍ଞଜନ ଶାସ୍ତ୍ର ନିୟମେ କରେ କର୍ମ
କର୍ମ ଅନୁଷ୍ଠାନ ଜନିତ ଜ୍ଞାନ ଯୋଗୁ କର୍ମେ ନୁହେ ଲିପ୍ତ

ହେ ଅହଙ୍କାର ବଶ ହୋଇ ସ୍ୱେଚ୍ଛାରେ କରମ କରଇ
କର୍ମ ବନ୍ଧନେ ବନ୍ଧା ହୋଇ ସଂସାର ଚକ୍ରରେ ଘୁରଇ
ବୁଦ୍ଧି ବିବେକକୁ ହରାଇ ସେ ଅଧୋ ଗତିକୁ ଭଜଇ
ପକ୍ଷଯୁକ୍ତ ନାନା ପ୍ରକାର ତୀକ୍ଷ୍ଣ ଶରରେ ଛିନ୍ନ ଶରୀର

ବନ୍ୟ ଜନ୍ତୁ ଅତି କଷ୍ଟରେ ଜୀବନ ତେଜିଲେ ବନରେ
ମହାପୁରୁଷ ଦୟାବନ୍ତ ଏ ନିର୍ଦ୍ଦୟ କର୍ମରେ ଦୁଃଖିତ
ଶୂକର ମହିଷ ଶଲୀକ ନୀଳଗାଇ ଉରୁ ଶଶକ
କୃଷ୍ଣମଗାଦି ନାନା ଜାତି ପଶୁଙ୍କୁ ବିନାଶି ନୃପତି

କ୍ଷୁଧା ତୃଷା ଆତୁର ହେଲେ ନିଜ ପ୍ରସାଦକୁ ଫେରିଲେ
ସ୍ନାନ ଭୋଜନ ବିଶ୍ରାମରେ ଶ୍ରମ କଷ୍ଟକୁ ଦୂର କଲେ
ଚନ୍ଦନ ସୁଗନ୍ଧ ପଦାର୍ଥ ମାଳାଦିରେ ହୋଇ ଭୂଷିତ
ନାନା ଅଳଙ୍କାର ପିନ୍ଧିଲେ ପ୍ରିୟା ନିକଟକୁ ଗମିଲେ

ନୃପତି ଅତି ତୃପ୍ତ ହେଲେ ପରମ ଆନନ୍ଦ ଲଭିଲେ
ମଦନେ ଉନ୍ମତ୍ତ ହୋଇଲେ କାମ ବ୍ୟଥା ଅନୁ ଭବିଲେ
ସ୍ୱ ପ୍ରାଣ ପ୍ରିୟାକୁ ଖୋଜିଲେ ନ ପାଇ ଉଦାସ ହୋଇଲେ
କାମ ଭାବେ ଅତି ଆତୁର ସଖୀକୁ ପୁଛିଲେ ନୃବର

କାହିଁ ଅଛି ମୋ ପ୍ରାଣ ସହୀ ଦେଖିଣ ଥିଲେ ଦିଅ କହି
ସେତ ଧର୍ମପତ୍ନୀ ମୋହର ସ୍ୱଭାବେ ମୋ ଅର୍ଦ୍ଧ ଶରୀର
ସେ ଗୃହରେ ଛନ୍ତି ତ କୁଶଳେ ସଜନୀ ମାନଙ୍କର ମେଳେ
ଗୃହ ସଂପଦେ ବର୍ତ୍ତମାନ ତୃପ୍ତ ନ ହୁଏ ମୋର ମନ

ଗୃହାଶ୍ରମ ବିଧି ବିଧାନ କହୁଛି ଶୁଣ ସଖୀଗଣ
ଯେ ଗୃହରେ ନ ଥାନ୍ତି ମାତା କିଅବା ପତ୍ନୀ ପତିବ୍ରତା
ଚକ୍ରହୀନ ରଥ ସମାନ ସେ ଗୃହେ କେବା ବିଜ୍ଞଜନ
ରହି ପାରିବ ନିଶ୍ଚିନ୍ତରେ ଏ କଥା ବିଚାର ଚିତ୍ତରେ

ବିପଦ ସାଗରେ ନିମଗ୍ନ ମତେ ସୁବୁଦ୍ଧି କରି ଦାନ
ଯେ ମତେ ଉଦ୍ଧାର କରିଛି ସେ ବରନାରୀ କାହିଁ ଅଛ

**ରାମାଃ ଉଚୁଃ**

ପ୍ରିୟାର ଅଭିପ୍ରାୟ କ'ଣ ଆମେ ଜାଣିନୁ ହେ ରାଜନ
ଦେଖନ୍ତୁ ସେ ବିନା ଶଯ୍ୟାରେ ଶୋଇ ଅଛନ୍ତି ଭୂମିପରେ

**ନାରଦ ଉବାଚ**

ନାରଦ କହନ୍ତି ଆଦରେ ପ୍ରାଚୀନ-ବର୍ହିଙ୍କ ଆଗରେ
ପୁରଞ୍ଜନ ନାରୀ ସଙ୍ଗରେ ବିବେକ ବୁଦ୍ଧି ହରାଇଲେ
ନିଜ ରାଣୀକୁ ଭୂମିପରେ ଅସ୍ତ ଅବ୍ୟସ୍ତ ଅବସ୍ଥାରେ

ପଡଥିବା ଦେଖି ସେ ଅତ୍ୟନ୍ତ ହୋଇଲେ ବ୍ୟାକୁଳିତ ଚିତ୍ତ
ସେ ଦୁଃଖିତ ହୃଦୟରେ ମଧୁର ବିନୟ ବାଣୀରେ
ପ୍ରିୟାକୁ ବହୁ ବୁଝାଇଲେ କୋପ କାରଣ ନ ଜାଣିଲେ
ପାଦ ଛୁଇଁ କୋଳେ ବସାଇଲେ ପ୍ରେମରେ ଏପରି କହିଲେ

**ପୁରଞ୍ଜନ ଉବାଚ**

ଦୋଷୀ ଭୃତ୍ୟକୁ ଯେଉଁ ସ୍ୱାମୀ ନିଜ ଆତ୍ମୀୟ ବୋଲି ମଣି
ତାର ଉଚିତ ଶିକ୍ଷା ପାଇଁ କେବେ ହେଁ ଦଣ୍ଡ ନ ଦିଅଇ
ସେ ଭୃତ୍ୟ ନିଶ୍ଚେ ଭାଗ୍ୟ ହୀନ ଏହା ଅଟେ ଶାସ୍ତ୍ର ବଚନ
ଦୋଷୀ ସେବକେ ଦଣ୍ଡ ଦାନ ପ୍ରଭୁର ଅନୁଗ୍ରହ ଜାଣ

ଯେଉଁ ଭୃତ୍ୟ ମୂର୍ଖ ଅଟଇ ସେ କ୍ରୋଧ ପରବଶ ହୋଇ
ନିଜ ହିତ-କାରୀ ପ୍ରଭୁର ଅର୍ଥ ନ ବୁଝେ ଉପକାରର
ନୀଳ ଅଳି ମାଳା ସମାନ ଅଳକା ବୃତ୍ତ ମନୋରମ
ଉନ୍ନତ ନାସା ଅନୁପମ ମୁଖରେ ମଧୁର ବଚନ

କହ ଆରେ ରମା ରତନ ଧରୁଛି ତୋହର ଚରଣ
ଆହେ ସୁଭ୍ରୁ ଆହେ ସୁଦତି ମୁ ପରାଣେ ନେତ୍ର ସଂପତ୍ତି
ଅନୁରାଗ ଲଜ୍ଜା ହାସ୍ୟରେ ବଙ୍କିମ କଟାକ୍ଷ ଛଟାରେ
ମନୋରମ ଚନ୍ଦ୍ର ବଦନ ଦେଖାଇ ରଖ ମୋର ପ୍ରାଣ

ହେ ବୀର ନାରୀ ସୁନାଗୋରୀ ଯଦି ଥାଏ କେ ଦୋଷ କରି
କହ କହ ଶୀଘ୍ର ତା ନାମ ନିଶ୍ଚେ କରିବି ଦଣ୍ଡ ଦାନ
ଯଦି ହୋଇଥାଏ ବ୍ରାହ୍ମଣ ରକ୍ଷା ନାହିଁ ତାହାର ଜାଣ
ପୃଥିବୀ ବା ଅନ୍ୟ ଲୋକର କିଅବା ତାହାର ବାହାରେ

ବ୍ୟକ୍ତି ନାହିଁ କେହି ଏପରି ଯେ ତୋପଦେ ଦୋଷ କରି
ନିର୍ଭୟରେ ଏ ସଂସାରରେ ରହି ପାରିବ ଆନନ୍ଦରେ
ତୋ ବଦନ ତିଳକ ହୀନ ଉଦାସୀନ ଆନନ୍ଦ ଶୂନ୍ୟ
ଦୁଃଖ ଆକୁଳ ଅଶୋଭନ କେବେ କରିନି ମୁଁ ଦର୍ଶନ

ଦୀନ ସ୍ତନ ଯୁଗଳ ତୋର ଶୋକାଶ୍ରୁରେ ସିକ୍ତ ହେବାର
କେବେ ହେ ବିମ୍ବାଧର ତୁମ ନ ହେବା କୁଙ୍କୁମ ରଂଜନ
ଏ ଦାସ ନେତ୍ରେ ଦେଖି ନାହିଁ ଏ ଅଘଟଣ କାହିଁ ପାଇଁ
ତୋର ଅନୁମତି ନ ନେଇ ମୃଗୟାକୁ ମୁଁ ଥିଲି ଯାଇ

ତେଣୁ ମୁଁ ନିଶ୍ଚେ ଅପରାଧୀ ଦୋଷ କ୍ଷମ ହେ ହୃଦ ନିଧି
ପ୍ରସନ୍ନ ହୁଅ ମୋର ପ୍ରତି ପୀଡା ଦିଅଇ ରତି ପତି
ମୁହିଁ ଧୈର୍ଯ୍ୟହରା ହେଲିଣି ବାରେ କୃପା କର କାମିନୀ
ଗଲି ତୋ ଚରଣେ ଶରଣ ପ୍ରେମରେ କର ଆଲିଙ୍ଗନ

ଇତି ଶ୍ରୀମଦ ଭାଗବତେ ମହାପୁରାଣେ ସଂହିତାୟା ବୈୟାସିକ୍ୟାଂ ୪ର୍ଥ ସ୍କନ୍ଧେ ପୁରଂଜନୋପାଖ୍ୟାନେ ନାମ ଷଡ୍‌ବିଂଶୋଽଧ୍ୟାୟ ।

*******

## ସପ୍ତବିଂଶ ଅଧ୍ୟାୟ

### ନାରଦ ଉବାଚ

କହନ୍ତି ବିଧାତା ନନ୍ଦନ ଆହେ ପ୍ରାଚୀନବର୍ହି ଶୁଣ
ସେହି ପୁରଞ୍ଜନୀ ସୁନ୍ଦରୀ ନିଜ ସ୍ୱାମୀଙ୍କୁ ବଶ କରି
ତା ସଙ୍ଗେ ନାନା ବିଳାସରେ ମଜ୍ଜିଲେ ସୁରତି କ୍ରୀଡାରେ
ସୁବାସ ଜଳେ କରି ସ୍ନାନ ଲଗାଇ ମଙ୍ଗଳ କୁଙ୍କୁମ

ଅତିଶୟ ତୁଷ୍ଟ ଚିତ୍ତରେ ରାଜାଙ୍କ ପାଖକୁ ଆସିଲେ
ଦେଖି ତାହାର ଆଗମନ ରାଜା କଲେ ଅଭିନନ୍ଦନ
ପୁରଞ୍ଜନୀ ଅତି ପ୍ରେମରେ ରାଜାଙ୍କୁ ଆଲିଙ୍ଗନ କଲେ
ରାଜା ମଧ୍ୟ ତାଙ୍କୁ ଗଳାରେ ଲଗାଇ ଆନନ୍ଦ ଲଭିଲେ

ଉଭୟେ ରହି ଏକାନ୍ତରେ ନାନା ବନ୍ଧେ କ୍ରୀଡା କରିଲେ
ପ୍ରେମରେ ବିମୋହିତ ଚିତ୍ତ ଜଣା ନଗଲା ଦିବା ରାତ୍ର
ମଦ ବିହ୍ୱଳିତ ଚିତ୍ତରେ ଶିର ରଖୀ ରାଣୀ ଭୁଜରେ
ସେ ରାଜା ମହାର୍ଘ ଶଯ୍ୟାରେ ଗଭୀର ନିଦ୍ରାରେ ଶୋଇଲେ

ସେ ବଶହୋଇ ଅଜ୍ଞାନରେ ପରମାତ୍ମ ଜ୍ଞାନ ହରିଲେ
ରମଣୀ ସମ୍ଭୋଗ କେବଳ ଜୀବନର ପରମ ଫଳ
ଏ ଭାବେ ହୋଇ କାମାତୁର କରି ନାରୀ ସଙ୍ଗେ ବିହାର
କ୍ଷଣ ଅର୍ଦ୍ଧ ସମ ଯୌବନ କାଳକୁ ଯାପିଲେ ରାଜନ

ସେ ପୁରଞ୍ଜନୀର ଗର୍ଭରେ ପୁରଞ୍ଜନ ରାଜା ବୀର୍ଯ୍ୟରେ
ଏଗାର ଶହ ଯୋଗ୍ୟ ପୁତ୍ର ଏକା ଶଦଶ କନ୍ୟା ସମ୍ଭୂତ
ଉଦାର ଶୀଳତା ଗୁଣରେ ପିତାଙ୍କ ଯଶ ବଢ଼ାଇଲେ
ପୁରଞ୍ଜନୀ ନାମେ ସଂସାରେ ସେମାନେ ବିଖ୍ୟାତ ହୋଇଲେ

ପୁରଞ୍ଜନଙ୍କର ଏମିତି ଆୟୁଷ ଅର୍ଦ୍ଧ ଗଲା ବିତି
ନିଜ ବଂଶ ବୃଦ୍ଧି ନିମିତ୍ତ ପୁତ୍ରଙ୍କୁ ବଧୂଙ୍କ ସହିତ
କନ୍ୟାଙ୍କୁ ସୁଯୋଗ୍ୟ ପାତ୍ରରେ ବିବାହ ଦେଲେ ଆନନ୍ଦରେ
ତାହାଙ୍କର ପ୍ରତ୍ୟେକ ପୁତ୍ର ଏକ ଶ ସୁତ କଲେ ଜାତ

କ୍ରମେ ତାଙ୍କ ବଂଶ ବଢ଼ିଲା ସାରା ପୃଥିବୀରେ ବ୍ୟାପିଲା
ପୁତ୍ର ପଉତ୍ର କୋଷ ଭୃତ୍ୟ ମମତାରେ ହୋଇ ମୋହିତ
ସେ ବିଷୟ ବନ୍ଧନେ ପଡିଲେ ଆତ୍ମ ମୁକ୍ତି ପଥ ହୁଡିଲେ
ହେ ପ୍ରଚୀନ ବର୍ହି ରାଜନ ସେ ନୃପ ପୁରଞ୍ଜନ ପୁନ

ବିଷୟ ଭୋଗ କାମନାରେ ଦୀକ୍ଷିତ ହୋଇଣ ଯଜ୍ଞରେ
ନାନାଦି ପଶୁଙ୍କୁ ବଧିଲେ ବୁଡି ରହି ହିଂସା ମାର୍ଗରେ
ଦେବ ପିତୃ ଭୂତ ପୂଜିଲେ ସକମ କର୍ମ ଅଚରିଲେ
ସେ ନୃପତି ସାରା ଜୀବନ ଭୁଲି ନିଜ ଆତ୍ମ କଲ୍ୟାଣ

କୁଟୁମ୍ବ ପାଳନ କରିଲା ଶେଷରେ ବୃଦ୍ଧାବସ୍ଥା ହେଲା
ସ୍ତ୍ରୀ ଲମ୍ପଟ ପୁରୁଷ ପାଇଁ ଯାହା କେବେ ପ୍ରିୟ ନୁହଇ
ହେ ନୃପ ଚଣ୍ଡବେଗ ନାମ ଜଣେ ଯେ ଗନ୍ଧର୍ବ ରାଜନ
ତିନି ଶହ ଷାଠିଏ ଜଣ ଗନ୍ଧର୍ବ ଅତି ବଳବାନ

ଥାଆନ୍ତି ତାଙ୍କର ଅଧୀନ ପ୍ରତ୍ୟେକ ବୀର ଅଗ୍ରଗଣ୍ୟ
ଧଳା କଳା ବର୍ଣ୍ଣର ପୁଣି ସେତେ ସଂଖ୍ୟକ ଗନ୍ଧବାଣୀ
ସେହି ମାନଙ୍କର ସଙ୍ଗରେ ଥାଆନ୍ତି ମିଥୁନ ଭାବରେ
ନାନା ଦିଗରେ ସେ ବୁଲନ୍ତି ନଗରୀ ଲୁଣ୍ଠନ କରନ୍ତି

ଚଣ୍ଡବେଗର ଭୃତ୍ୟଗଣ ପୁରଞ୍ଜନ ପୁର ଲୁଣ୍ଠନ
ଆରମ୍ଭ କରିବା ବେଳରେ ପଞ୍ଚ ଫଣା ସର୍ପ ଦଂଶିଲେ
ପୁରଜନ ପୁରୀ ଅଧ୍ୟକ୍ଷ ସେ ମହା ବଳବାନ ସର୍ପ
ଏକାକୀ ବର୍ଷ ଏକଶତ ଯୁଦ୍ଧ କଲା ତାଙ୍କ ସହିତ

ବହୁତ ଯୋଦ୍ଧାଙ୍କ ସହିତ ସଂଗ୍ରାମ କରି ଏକମାତ୍ର
ସେ ପ୍ରଜାଗର ଭୁଜଙ୍ଗମ ହୋଇଲା କ୍ରମେ ବଳହୀନ
ତେଣୁ ପୁରଞ୍ଜନ ସହିତ ପୁରବାସୀ ହେଲେ ଚିନ୍ତିତ
ପାଞ୍ଚାଳ ଦେଶ ନଗରରେ ପ୍ରଜାଙ୍କ କର ସଂପଦରେ

ବିଷୟ ଭୋଗରେ ମାତିଲା ରମଣୀ ଅଧୀନେ ରହିଲା
ନିଶ୍ଚିତ ଭୀତିକୁ କଳନା ନ କରି ହେଲା ଖିନ୍ନମନା
ହେ ପ୍ରାଚୀନ-ବର୍ହି ରାଜନ ମୋ କଥା ସାବଧାନେ ଶୁଣ
କାଳର କନ୍ୟା ଏ ବେଳରେ ବର ଖୋଜଇ ତ୍ରିଲୋକରେ

ଗ୍ରହଣ ନ କଲେ ଯେ କେହି ସେତ ଭାଗ୍ୟ ହେଁ ନ ଅଟଇ
କାଳର କନ୍ୟା "ଜରା" ସେହି ଲୋକେ ଦୁର୍ଭାଗା ବୋଲି କହି
ଗ୍ରହଣ ନ କରିଲେ କେହି ସେ ସଦା ବୃଥାରେ ଭ୍ରମଇ
ପୂର୍ବେ ରାଜର୍ଷି ପୁରୁ ଥରେ ଏହାକୁ ଅଙ୍ଗୀକାର କଲେ

ସେ ପିତାଙ୍କୁ ନିଜ ଯୌବନ ଅକାତରେ କରି ପ୍ରଦାନ
ଶୁକ୍ର ଅଭିଶାପରୁ ଜନ୍ମ ଜରାକୁ କରିଲେ ଗ୍ରହଣ
କାଳ କନ୍ୟା ସନ୍ତୋଷ ହେଲେରାଜ୍ୟ ପ୍ରାପ୍ତିବର ବରଦେଲେ
ବ୍ରହ୍ମ ଲୋକରୁ ମୁହିଁ ଥରେ ଆସୁଥିଲି ମର୍ତ୍ତ୍ୟ ଲୋକରେ

ଏ କନ୍ୟା ଭ୍ରମି ତ୍ରିଲୋକରେ ମିଳିଲା ମୋର ସମ୍ମୁଖରେ
ଜାଣି ବି ମତେ ବ୍ରହ୍ମଚାରୀ କାମ ଆବେଗେ ସେ ସୁନ୍ଦରୀ
ବାରିବାକୁ କଲା ପ୍ରାର୍ଥନା ମୁଁ ତାହା କରିବାରୁ ମନା
ସେହି କନ୍ୟା କୋପ ବଶରେ ଦୁଃସହ ଶାପ ମତେ ଦେଲେ

ତେଣୁ ମୁଁ ଗୋଟିଏ ସ୍ଥାନରେ ନ ରହି ବୁଲଇ ସଂସାରେ
ସେ ଭଗ୍ନ ମନୋରଥ ହୋଇ ମୋହର ଉପଦେଶ ପାଇ
ଯବନେଶ ସମୀପେ ଗଲା ପ୍ରାର୍ଥନା କରିଣ କହିଲା
ଆହେ ବିରବର ଆପଣ ଯବନ ମଧ୍ୟରେ ପ୍ରଧାନ

ଆପଣଙ୍କୁ ପତି ରୂପରେ ବରିବାକୁ ମୁଁ ଇଚ୍ଛା କରେ
ଜୀବମାନଙ୍କର ସଂକଳ୍ପ ତବ ପାଖେ ନ ହୁଏ ବ୍ୟର୍ଥ
ଶାସ୍ତ୍ର ଅନୁସାରେ ଯେଜନ ଦେୟ ବସ୍ତୁ ନ କରେ ଦାନ
ଯେ ଦାନର ଅଧିକାରୀ ହୋଇ ଦାନ ଗ୍ରହଣ କରେ ନାହିଁ

ଦୁରାଚାର ମୂର୍ଖ ଏ ଦୁଇ ଶୋଚନାର ଯୋଗୀ ଅଟଇ
ହେ ବୀର ମୁ ତବ ସେବାରେବର୍ତ୍ତମାନ ଅଛି ଏଠାରେ
ମୋ ପ୍ରତି ନ ହୋଇ ନିର୍ଦ୍ଦୟ ବିବାହ କର ମହାଶୟ
ଦୀନ ଜନର ଉପକାର ଶ୍ରେଷ୍ଠ ଧରମ ପୁରୁଷର

କଥା ଶୁଣି କାଳ କନ୍ୟାର ସେ ଯବନେଶ ଧାତାଙ୍କର
ଦେବଙ୍କ ଗୁପ୍ତ ଯେ ମରଣ ତାହା ସାଧିବା ଚିନ୍ତିମନ
ମନ୍ଦେ ମନ୍ଦେ ହସି କହିଲେ ଆହେ କନ୍ୟା ତୁ ଶୁଣ ଧୀରେ
ଯୋଗ ଦୃଷ୍ଟିରେ ଦେଖି ମୁହିଁ ପତି ବାଛିଛି ତୋର ପାଇଁ

ତୁ ଅନିଷ୍ଟ କରୁ ନିତି କେହି ଆଦର ନ କରନ୍ତି
ଏହି କର୍ମ ଫଳ ଜନିତ ମର୍ତ୍ତ୍ୟ ଲୋକରେ ତୁ ସତତ
ରହିଣ ସଦା ଅଲକ୍ଷ୍ୟରେ ଭୋଗ କରୁଛୁ ବଳାତ୍କାରେ
ମୋ ସେନାଙ୍କୁ ନିଅ ସାଙ୍ଗରେ ସେମାନଙ୍କର ସାହାଯ୍ୟରେ

ତୁମେ ଏହି ସକଳ ଜୀବ ଅକ୍ଳେଶେ ବିନାଶ କରିବ
ଏ ପ୍ରଜ୍ୱାର ଭାଇ ମୋର ତୁ ହୁଅ ଭଗିନୀ ମୋହର
ମୁଁ ତୁମ ଦୁହିଁଙ୍କ ସଙ୍ଗରେ ଅତ୍ୟନ୍ତ ଅବ୍ୟକ୍ତ ଗତିରେ
ଭୟଙ୍କର ସେନା ସଙ୍ଗରେ ଭ୍ରମିବି ଏ ମର୍ତ୍ତ୍ୟ ଲୋକରେ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥ ସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ ନାମ ସପ୍ତବିଂଶୋଽଧ୍ୟାୟ ।

*******

# ଅଷ୍ଟବିଂଶ ଅଧ୍ୟାୟ

## ନାରଦ ଉବାଚ

କହନ୍ତି ଦେବର୍ଷି ନାରଦ ଶୁଣ ପୁରଞ୍ଜନ ସମ୍ବାଦ
ଭୟ ନାମକ ଯେ ଯବନ ରାଜା ଆଦେଶେ ସୈନ୍ୟଗଣ
ପ୍ରଜ୍ୱାର ଓ କାଳକନ୍ୟା ଘେନି ଭ୍ରମଣ କରିଲେ ଅବନୀ
ପୁରଞ୍ଜନ ପୁରୀ ପାଖରେ ସେମାନେ ପ୍ରବେଶିଲେ ଥରେ

ଦେଖିଲେ ଏ ମହାନଗରୀ ଭୋଗ୍ୟ ବସ୍ତୁରେ ଅଛି ପୁରୀ
କ୍ଷୀଣ ବଳ ସର୍ପ ଏକଇ ଏ ପୁରୀକୁ ରକ୍ଷା କରଇ
ଏହା ଦେଖି ମହା ବେଗରେ ପୁରୀକୁ ଅବରୋଧ କଲେ
ସେହି କାଳ କନ୍ୟା ସତ୍ତ୍ୱରେ ପଶାଇ ପ୍ରବେଶିଲା ପୁରେ

ପୁରୁଷ ହେଲେ ଯା ଅଧୀନ ହୁଅଇ ଅନ୍ତସାର ଶୂନ୍ୟ
ବଳାତ୍କାରରେ ସେହି ନାରୀ ଭୁଂଜିଲା ପୁରଞ୍ଜନ ପୁରୀ
ଯବନ ସେନା ଏ ବେଳରେ ଚତୁର୍ଦ୍ଦିଗରେ ପୁରୀ ଘେରିଲେ
ପ୍ରବେଶି ବିଭିନ୍ନ ଦ୍ୱାରରେ ଏହାକୁ ଧ୍ୱଂସ ଯେ କରିଲେ

ପୁରର ଅବସ୍ଥା ଦେଖିଣ ସେହି ପୁରଞ୍ଜନ ରାଜନ
ପୁର କୁଟୁମ୍ବ ମମତାରେ ଦାରୁଣ ଦୁଃଖ ଭୋଗ କଲେ
କାଳ କନ୍ୟା ଆଲିଙ୍ଗନରେ ପୁରଞ୍ଜନ ଶ୍ରୀହୀନ ହେଲେ
ମଜ୍ଜି ବିଷୟ ଆସକ୍ତିରେ ବିବେକ ଶକ୍ତି ହରାଇଲେ

ସେ ଗନ୍ଧର୍ବ ଯବନ ଗଣ କରିଲେ ଐଶ୍ୱର୍ଯ୍ୟ ହରଣ
ନଷ୍ଟ ଭ୍ରଷ୍ଟ ହେଲା ନଗର ନାହିଁ ପୁତ୍ର ପୌତ୍ର ଆଦର
ବିରୋଧୀ ଭୃତ୍ୟ ମନ୍ତ୍ରିଗଣ ରମଣୀ ହେଲା ସ୍ନେହ ହୀନ
ନିଜେ କାଳ କନ୍ୟା ଆୟତ୍ତ ଦେଶ ଶତ୍ରୁରେ କବଳିତ

ଏ ଦୁର୍ଦ୍ଦଶା କରି ଦର୍ଶନ ସେହି ପୁରଂଜନ ରାଜନ
ଅତିଶୟ ହେଲେ ଚିନ୍ତିତ ବିପତ୍ତିରୁ ରକ୍ଷା ନିମିତ୍ତ
କୌଣସି ଉପାୟ ନ ପାଇ ବିବ୍ରତ ହେଲେ ନରସାଇଁ
ଯେ ସବୁ ସବୁ ଭୋଗ୍ୟ ବସ୍ତୁମାନ ସେ କନ୍ୟା କଲା ଶିରୀ ହୀନ

ସେହି ପଦାର୍ଥ ଲାଳସାରେ ପୁରଞ୍ଜନ ବ୍ୟାକୁଳ ହେଲେ
ନିଜ ପାର ଲୌକିକ ଗତି ବଞ୍ଚିତ ବନ୍ଧୁ ସ୍ନେହ ପ୍ରୀତି
ପୁତ୍ର ପଉତ୍ର ଓ କଳତ୍ରର ଲାଳନ ପାଳନ ତତ୍ପର
ନିଜର ଇଚ୍ଛା ବିରୁଦ୍ଧରେ ପୁରୀ ଛାଡିବା ବାଧ୍ୟ ହେଲେ

ଯବନ ରାଜ ବଡ ଭାଇ ଯା ନାମ ପ୍ରଜ୍ୱାର ଅଟଇ
ନିଜ ଭାଇ ପ୍ରୀତି ଉଦ୍ଦେଶ୍ୟରେ ଆନଳ ଲଗାଇଲା ପୁରେ
ପ୍ରବଳ ପବନ ଯୋଗରେ ସେ ପୁରୀ ଜଳିବା ବେଳରେ
ପୁରବାସୀ ଭୃତ୍ୟ ସମସ୍ତ ରମଣୀ କୁଟୁମ୍ବ ସହିତ

ଦାରୁଣ ଦୁର୍ଦ୍ଦଶା ଦର୍ଶନ ଦୁଃଖିତ ହେଲେ ପୁରଞ୍ଜନ
ତା ବାସସ୍ଥାନ ସେ ନଗର ଯବନେ କଲେ ଅଧିକର
ପ୍ରଜ୍ୱାର ସେ ନଗ୍ରକୁ ପୁଣ କରିଲା ବଳେ ଆକ୍ରମଣ
ସେ ବେଳେ ସେ କାଳ କନ୍ୟାର ନଗରୀ ହେଲା ନାରଖାର

ଦେଖି ନଗର ରକ୍ଷକ ସେ ସର୍ପ ଦୁଃଖିତ ଅତ୍ୟନ୍ତ
ନଗ୍ର ରକ୍ଷାରେ ଅସମର୍ଥ ହୋଇ ସେ ପଞ୍ଚ ମୁଖୀ ସର୍ପ
ଜଳନ୍ତା ବୃକ୍ଷ କୋରଡରେ ରହୁଥିବା ସର୍ପ ପ୍ରକାରେ
କମ୍ପି କମ୍ପି ମହାକଷ୍ଟରେ ଚାହିଁଲା ପଳାଇ ଯିବାରେ

ଗନ୍ଧର୍ବ ମାନେ ଏକମେଳେ ତାହାର ଶକତି ହରିଲେ
ସେ ପଳାଇ ଯିବା ବେଳରେ ଶତ୍ରୁଏ ତାକୁ ବାଧାଦେଲେ
ଶିଥିଳ ଅଙ୍ଗ ଭୁଜଙ୍ଗମ ଭାଗ୍ୟ ନିନ୍ଦି କଲା କ୍ରନ୍ଦନ
ବନ୍ଧା ହୋଇ ନାରୀ ପ୍ରେମରେ ମମତା ରଖି ଗୃହାଦିରେ

ସେ ଗୃହାସକ୍ତ ପୁରଞ୍ଜନ ହୋଇଲା ଦୀନ ବୁଦ୍ଧିହୀନ
ଦୁହିତା ପୁତ୍ରବଧୂ ପୁତ୍ର ଗୃହ ଓ ରାଜକୋଷ ଭୃତ୍ୟ
ଯା କିଛି ଅବଶେଷ ଥିଲା ସେହି ବିଷୟ ଚିନ୍ତା କଲା
ବହୁ କୁଟୁମ୍ବିନୀ ମୋ ନାରୀ ମୋ ମୃତ୍ୟୁପରେ ସେ ବିଚାରୀ

କିପରି ଜୀବନ ଧରିବ ନିଶ୍ଚେ ସେ ମତେ ଝୁରି ମରିବ
ମୁ ନ ଖାଇଲେ ସେ ଖାଏନି ମୁ ଗାଧୋଇଲେ ଗାଧୁଏ ନି
ସଦା ତତ୍ପର ମୋ ସେବାରେ ମୁ ରାଗିଲେ ଥରେ ଭୟରେ
ମୁ ତାକୁ କରିଲେ ଭର୍ତ୍ସନା ତୁନି ରହଇ ସେ ଲଳନା

ମୋର କିଛି ଭ୍ରମ ହୋଇଲେ   କରେ ସେ ସଦା ସଚେତନ କରେ
ମୁ ରହିଲେ ବିଦେଶରେ   ସେ ଭାଙ୍ଗି ପଡଇ ଦୁଃଖରେ
ହେଲେ ମଧ୍ୟ ବୀର ଜନନୀ   ମୁ ଯିବାପରେ ସେ ରମଣୀ
ଏ ଗୃହ ଚଳାଇବ ସତେ   ମନେ ନଆସେ ପରତେ

ମୋର ଏ ପୁତ୍ର କନ୍ୟାଗଣ   କିପରି ଧରିବେ ଜୀବନ
ନୌକା ଭାଙ୍ଗିଲେ ଯେ ପ୍ରକାରେ   ଯାତ୍ରୀଏ ସମୁଦ୍ର ମଝିରେ
ହୁଅନ୍ତି ଅତି ବ୍ୟାକୁଳିତ   ତଥା ହେବେ ମୋ କନ୍ୟା ପୁତ୍ର
ସେ ରାଜା ବୁଦ୍ଧି ହରାଇଲ   ଅଯଥାରେ ଶୋକ କରିଲ

ଯବନେଶ୍ୱର ଅଟେ ଯେହି   ତାର ନାମ ଭୟ ଅଟଇ
ତାର ଆଦେଶେ ସୈନ୍ୟଗଣ   ପଶୁପରି କଲେ ବନ୍ଧନ
ସେ ରାଜାଙ୍କର ଅନୁଚର   ଭୟରେ ହୋଇଣ କାତର
ଦୁଃଖରେ ବିଳାପ କରିଲେ   ତାର ପଛେ ପଛେ ଚଳିଲେ

ଯବନ ଠାରୁ ପୀଡା ପାଇ   ସେହି ସର୍ପ ଗଲା ପଳାଇ
ସେ ପୁର ହୋଇ ଛିନ୍ନ ଭିନ୍ନ   ମହାଭୂତରେ ହେଲା ଲୀନ
ଯବନ ରାଜା ବଳାତ୍କାରେ   ପୁରଞ୍ଜନକୁ ଟାଣିବା ବେଳେ
ଅଜ୍ଞାନ ପୁରଂଜନ ନୃପ   ହିତୈଷୀ ପୁରାତନ ମିତ୍ର

ଅବିଜ୍ଞାତଙ୍କୁ ନିଜ ହୃଦରେ   ତଥାପି ସ୍ମରଣ ନ କଲେ
ସେ ରାଜା ନିର୍ଦ୍ଦୟ ଚିତ୍ତରେ   ପଶୁଙ୍କୁ ବଧିଲା ଯଜ୍ଞରେ
ପୂର୍ବ କଷ୍ଟ ସ୍ମରି ହୃଦରେ   ସେ ପଶୁମାନେ କ୍ରୋଧରେ
ରାଜାଙ୍କୁ ଛେଦିଲେ କୁଠାରେ   ଅତ୍ୟନ୍ତ ନିର୍ମମ ଚିତ୍ତରେ

ସେ ବିବେକ ହୀନ ଅବସ୍ଥାରେ   ଘୋର ଅନ୍ଧାର ମଧରେ
କଷ୍ଟ ଭୋଗିଲେ ନିରନ୍ତର   ସ୍ତ୍ରୀ ଆସକ୍ତିରୁ ତାଙ୍କର
ଦୁର୍ଗତି ହେଲା ଏ ପ୍ରକାର   ଶୁଣ ପ୍ରାଚୀନ ନରବର
ଅନ୍ତକାଳେ ବି ପୁରଞ୍ଜନ   ନାରୀକୁ କରିଣ ସ୍ମରଣ

ତେଣୁ ସେ ପର ଜନମରେ   ବିଦର୍ଭ ରାଜ କନ୍ୟା ହେଲେ
ଶ୍ରୀବିଷ୍ଣୁ ଭକତ ପ୍ରଧାନ   ସେ ପାଣ୍ଡ୍ୟ ଦେଶ ନରରାଣ
ମଳୟ ଧ୍ୱଜ ସଂଗ୍ରାମରେ   ଅନ୍ୟ ରାଜାଙ୍କୁ ଜିଣି ହେଲେ
ବୈଦର୍ଭୀଙ୍କୁ ବିବାହ କଲେ   ପୃଥିବୀରେ ଖ୍ୟାତି ଲଭିଲେ

ମଳୟ ଧ୍ୱଜ ମହାମନା   ଶ୍ୟାମ ଲୋଚନା ଏକ କନ୍ୟା
ପୁଣି ସପ୍ତ ସଂଖ୍ୟକ ସୁତ   ତା ଗର୍ଭେ କରାଇଲେ ଜାତ
ପୁତ୍ରମାନେ ଯଥା କାଳରେ   ଦ୍ରାବିଡ ଦେଶେ ରାଜା ହେଲେ
ତାହାଙ୍କର ପୁତ୍ର ପ୍ରପୌତ୍ର   ମନ୍ୱନ୍ତର ଶେଷ ପର୍ଯ୍ୟନ୍ତ

ତା ପରେ ମଧ ରାଜା ହେଲେ   ଏ ପୃଥିବୀକୁ ଭୋଗ କଲେ
ମଳୟ ଧ୍ୱଜଙ୍କର ପ୍ରଥମା   କନ୍ୟକା ବ୍ରତ ପରାୟଣା
ଅଗସ୍ତ୍ୟଙ୍କୁ ବିବାହ କଲେ   ତହୁଁ ଦୃଢ଼ଚ୍ୟୁତ ଜନ୍ମିଲେ
ଦୃଢଚ୍ୟୁତଙ୍କ ଇଧ୍ମବାହ   ଜନମ ହୋଇଲା ତନୟ

ରାଜ୍ୟକୁ ପୁତ୍ରଙ୍କ ମଧରେ   ସେ ବଣ୍ଟନ କରି ଶେଷରେ
ଶ୍ରୀକୃଷ୍ଣ ଅର୍ଚ୍ଚନ ଇଚ୍ଛାରେ   ମଳୟ ପର୍ବତକୁ ଗଲେ
ଚନ୍ଦ୍ରମାକୁ ଜ୍ୟୋତ୍ସ୍ନା ଯେପରି   ଅନୁ ସରଇ ସେହିପରି
ବୈଦର୍ଭୀ ଅରୁଣ ନୟନା   ତେଜି ସର୍ବ ଭୋଗ କାମନା

ପାଣ୍ଡ୍ୟ ନରେଶଙ୍କ ସଙ୍ଗରେ   ଗମନ କରିଲେ ସ୍ୱେଚ୍ଛାରେ
ଚନ୍ଦ୍ର ବସା ଓ ତାମ୍ରପର୍ଣ୍ଣୀ   ବଟୋ ଦକା ନାମକ ତିନି
ନଦୀର ପବିତ୍ର ଜଳରେ   ସ୍ନାନ କରିଲେ ପ୍ରଭାତରେ
ପ୍ରତ୍ୟହ କରିବାରୁ ସ୍ନାନ   ହେଲା ପୂତ ଅନ୍ତକରଣ

ଫଳ ମୂଳ କୁସୁମ ତୃଣ   ଜଳ ପାନେ ଧରି ଜୀବନ
ମଳୟ ଧ୍ୱଜା ରାଜାଙ୍କର   କ୍ରମେ ହେଲା କୃଶ ଶରୀର
ଶୀତ ଉଷ୍ଣ କ୍ଷୁଧା ପିପାସା   ପବନ ଅନଳ ବରଷା
ସକଳ ଦ୍ୱନ୍ଦକୁ ସହିଲେ   ଶତ୍ରୁ ମିତ୍ର ସମ ମଣିଲେ

ଦୃଢ ତପ ଉପାସନାରେ   ବାସନା କାମନା କହିଲେ
ଆଚରିଣ ଯମ ନିୟମ   ଜିଣି ଇନ୍ଦ୍ରିୟ ପ୍ରାଣ ମନ
ବ୍ରହ୍ମ ଧ୍ୟାନରେ ମଗ୍ନ ହେଲେ   ସ୍ଥାଣୁ ପରି ଏକ ସ୍ଥାନରେ
ଦିବ୍ୟ ଶତବର୍ଷ ବସିଲେ   ଭଗବାନ ବାସୁଦେବରେ

ଦୃଢ଼ ପ୍ରେମରୁ ସେବକରେ   କାମନା ବାସନା ବହିଲେ
ତାଙ୍କର ଶରୀର ପ୍ରଭୃତି   ହୋଇଲା ସଂପୂର୍ଣ୍ଣ ବିସ୍ମୃତି
ସାକ୍ଷାତ ଗୁରୁ ହରିଙ୍କର   ଉପଦେଶରେ ନୃପବର
ସ୍ୱ ଅନ୍ତକରଣ ମଧରେ   ପ୍ରକାଶ ଜ୍ଞାନ ପ୍ରଦୀପରେ

ଦେଖିଲେ ଅନ୍ତଃକରଣର ବୃତ୍ତି ପ୍ରକାଶକ ଈଶ୍ୱର
ଆତ୍ମା ସ୍ୱପ୍ନାଦି ଅବସ୍ଥାରେ ବ୍ୟାପ୍ତ ଦେହାଦି ଉପାଧିରେ
ତହୁ ଥାଏ ପୃଥକ ଭାବରେ ଅନୁଭବ କରି ଏପରି ହୃଦରେ
ମଳୟ ଧ୍ୱଜ ଦଣ୍ଡଧାରୀ ସର୍ବ ବିଷୟ ତ୍ୟାଗକରି

ରହିଲେ ଉଦାସୀ ଭାବରେ ନିଜ ଆତ୍ମାକୁ ପରଂବ୍ରହ୍ମରେପରଂ
ବ୍ରହ୍ମଙ୍କୁ ନିଜର ଆତ୍ମାରେ ଦେଖିଲେ ଅଭିନ୍ନ ରୂପରେ
ସେ ଦ୍ୱୈତ ଚିନ୍ତାକୁ ଶେଷରେ ତେଜି ସର୍ବଥା ଶାନ୍ତ ହେଲେ
ପତି ପ୍ରାଣା ବୈଦର୍ଭୀ ଧୀରେ ସର୍ବ ଭୋଗ ତ୍ୟାଗ କରିଲେ

ପତିଙ୍କୁ ଅତ୍ୟନ୍ତ ପ୍ରେମରେ ସେବା କରିବାକୁ ଲାଗିଲେ
ଚୀର ବସନ ପରିଧାନ ବ୍ରତ ଉପବାସ ପାଳନ
କରି କୃଶ ହେଲା ଶରୀର କେଶ ପାଶ ହେଲା ଜଟୀଳ
ସେ ନିଜ ସ୍ୱାମୀଙ୍କ ପାଖରେ ଶାନ୍ତ ଅଗ୍ନି ଶିଖା ପ୍ରକାରେ

ଅତିଶୟ ଶୋଭା ଦିଶିଲେ ଧ୍ୟାନ ରଖି ପତି ସେବାରେ
ଏ ରୂପେ ତିବ୍ର ସାଧନାରେ ବ୍ରହ୍ମରେ ଆତ୍ମା ନିବେଶିଲେ
ନିଜ ପତିଙ୍କୁ ପୂର୍ବ ପରି ବସି ଥିବା ଦେଖି ସୁନ୍ଦରୀ
ମୃତ ବୋଲି ଜାଣି ନ ପାରି ଚରଣ ସେବିଲ ସୁନ୍ଦରୀ

ତାଙ୍କ ଚରଣରେ ଉଷତା ନ ଅନୁଭବି ନକରି ସେବନିତା
ଯୂଥ ବଣା ମୃଗୀ ପ୍ରକରେ ବ୍ୟାକୁଳିତ ଚିତ୍ତ ହୋଇଲେ
ଏକାକିନୀ ବନ ମଧରେ ସେ ଅସହାୟ ଅବସ୍ଥାରେ
ନିଜକୁ ଦେଖିଣ କାନ୍ଦିଲେ ନେତ୍ରୁ ଅଶ୍ରୁଧାର ପୋଛିଲେ

ସ୍ତନ ଯୁଗଳ ସିକ୍ତ ହେଲା ଚିତ୍ତ ହେଲା ଅତି ବ୍ୟାକୁଳ
ସେ କ୍ରନ୍ଦନ କରି ଉଚ୍ଚସ୍ୱରେ ସ୍ୱାମୀଙ୍କୁ ସଂବୋଧି କହିଲେ
ଉଠ ହେ ରାଜର୍ଷି ପ୍ରବର ବସୁନ୍ଧରାକୁ ରକ୍ଷା କର
ଅଧାର୍ମିକ ନୃପତି ଗଣ ରାଜ୍ୟକୁ କରନ୍ତି ଲୁଣ୍ଠନ

ଅତି ଶୀଘ୍ର ଉଠି ଆପଣ କରନ୍ତୁ ତାହାଙ୍କୁ ନିଧନ
ସେ ଏପରି ବିଳାପ କଲେ ମୃତ ସ୍ୱାମୀ ପାଦେ ଲୋଟିଲେ
କାଠ ଆଣି ଚିତା ଜାଳିଲେ ପତି ଶବ ରଖି ତା ଉପରେ
ସତୀ ହେବାକୁ ଇଚ୍ଛା କଲେ ସେ ଚିତାଗ୍ନି ପ୍ରଦକ୍ଷିଣ କଲେ

ଏ ସମୟରେ ହେ ରାଜନ ତାଙ୍କର ମିତ୍ର ପୁରାତନ
ଆତ୍ମଜ୍ଞ ବ୍ରାହ୍ମଣ ସେଠାରେ ପ୍ରବେଶି ମଧୁର ବାଣୀରେ
ତାହାଙ୍କୁ ସେ ସାନ୍ତ୍ୱନା ଦେଲେ ଏପରି ବୁଝାଇ କହିଲେ
ତୁମେ କିଏ କନ୍ୟା କାହାର ପ୍ରକାଶ କର ନାରୀ ବର

ଯେଉଁ ପୁରୁଷ ଅଛି ଶୋଇ ଯା ପାଇଁ ଶୋକ କୁରୁ ତୁହି
ସେ ପୁରୁଷ କିଏ ଅଟଇ ମତେ ଚିହ୍ନି ପାରେ କି ନାହିଁ
ମୁହି ପରା ତୋହର ମିତ୍ର ତୁ ପୂର୍ବେ ଥିଲୁ ମୋ ସହିତ
ଅବିଜ୍ଞାତ ନା ସଖା ମୁହିଁ ଏହା କି ତୁମ ମନେ ନାହିଁ

ତୁମେ ପୃଥ୍ୱୀ ଭୋଗ ଇଛାରେ ବାସସ୍ଥାନ ଖୋଜିବା ବେଳେ
ମୋ ସଙ୍ଗ ତେଜି ଚାଲିଗଲ ମାନସ ବାସୀ ହଂସ ତୁଲ୍ୟ
ତୁମେ ମୁ ପରସ୍ପର ମିତ୍ର ସହସ୍ର ବରଷ ପର୍ଯ୍ୟନ୍ତ
ନଥିଲା ଆମର ସାକ୍ଷାତ ହେ ନାରୀ ବର ଏହା ସତ୍ୟ

ବିଷୟ ଭୋଗ ଲାଳସାରେ ମତେ ତ୍ୟାଗ କରି ସ୍ୱେଚ୍ଛାରେ
ପୃଥିବୀକୁ ଚାଲି ଆସିଲୁ ବିଭିନ୍ନ ସ୍ଥାନରେ ଭ୍ରମିଲୁ
ନାରୀ ନିର୍ମିତ ରମ୍ୟ ସ୍ଥାନ ଶେଷରେ କରିଲ ଦର୍ଶନ
ପାଞ୍ଚ ଉଦ୍ୟାନ ନବ ଦ୍ୱାର ଛ ବୈଶ୍ୟ ପଞ୍ଚ ବଜାର

ଦ୍ୱାର ପାଳକ ଏକ ମାତ୍ର ତିନୋଟି ପ୍ରକୋଷ୍ଠ ସୁସଜ୍ଜ
ଏ ସ୍ଥାନ ପଞ୍ଚ ଉପାଦାନ କରଣରେ ଅଟେ ନିର୍ମାଣ
ଗୋଟିଏ ମାତ୍ରକ କାମିନୀ ଥିଲା ଏ ସ୍ଥାନର ସ୍ୱାମିନୀ
ପଞ୍ଚ ବିଷୟ ଇନ୍ଦ୍ରିୟର ଅଟଇ ଉଦ୍ୟାନ ଏହାର

ନବ ଇନ୍ଦ୍ରିୟ ଛଦ୍ରମାନ ଏ ସ୍ଥାନର ଦ୍ୱାର ଜାଣ
ତେଜ ସଳିକ ଅନ୍ନ ଘେନି ଏ ସ୍ଥାନର କ୍ରକୋଷ୍ଠ ତିନି
ମାନସ ଓ ପଞ୍ଚ ଇନ୍ଦ୍ରିୟ ଏହାର ବୈଶ୍ୟ କୁଳ ଛଅ
କର୍ମେନ୍ଦ୍ରିୟର କ୍ରିୟା ଶକ୍ତି ଏହାର ବଜାର ଅଟନ୍ତି

ଅବ୍ୟୟ ପଞ୍ଚ ଭୂତ ଗଣ ଏହି ପୁରୀର ଉପାଦାନ
ବୁଦ୍ଧିର ଶକତି କେବଳ ସ୍ୱାମିନୀ ଅଟଇ ଏହାର
ଏଥିରେ କରିଲେ ପ୍ରବେଶ ଜ୍ଞାନ ହୀନ ହୁଏ ପୁରୁଷ
ସ୍ୱାମୀନୀର ସଂସର୍ଗରେ କରି ତା ସଙ୍ଗରେ ବିବାହ

ସ୍ୱରୂପ ଭୁଲିଲ ନିଜର ସଙ୍ଗ ଦୋଷ ବଶେ ତାହାର
ଏପରି ଦୁର୍ଦ୍ଦଶା ତୁମର ହୃଦୟେ କର ତୁ ବିଚାର
ତୁ ନୋହୁ ବିଦର୍ଭ ଦୁହିତୀ ମଳୟ ଧ୍ୱଜ ନୁହେ ପତି
ନବଦ୍ୱାର ପୁରେ ଯେ ନାରୀ ରଖିଲା ତତେ ବନ୍ଦୀ କରି

ତୁ ମଧ ପୁରଞ୍ଜନୀର ପତି ନୋହୁ ବୋଲି ବିଚାର
ପୂର୍ବଜନ୍ମେ ପୁରୁଷ ଥିଲୁ ବର୍ତ୍ତମାନ ନାରୀ ହୋଇଲୁ
ଏହା ମୋର ମାୟା ଅଟଇ ଏହା ବିଚାରୀ କରି ତୁହିଁ
ତୁ ପୁରୁଷ କି ନାହୁ ନାରୀ ଏହା ସତ୍ୟ ଆରେ ସୁନ୍ଦରୀ

ଆମେ ତ ହଂସ ଅଟେ ହୁଇ ନିଜ ସ୍ୱରୂପେ ବୁଝ ତୁହି
ତୁହି ଜୀବ ଈଶ୍ୱର ମୁହିଁ ଆମ ମଧ୍ୟେ ପ୍ରଭେଦ ନାହିଁ
ଦେଖ ତୁହି ବିଚାର କରି ତୁ ପ୍ରକୃତ ଅଟୁ ମୋପରି
ଆମ ଦୁଇ ମଧେ ସାମାନ୍ୟ ଭେଦ ନ ଦେଖେ ଜ୍ଞାନୀ ଜନ

ସ୍ୱଦେହ ପ୍ରତିବିମ୍ବ ଜଣେ . ଦେଖଇ ନିର୍ମଳ ଦର୍ପଣେ
ଅନ୍ୟ ଯେ ନେତ୍ର ପରଦାରେ ତାହା ଦେଖି ଭିନ୍ନ ରୂପରେ
ଦୁଇ ମଧରେ ଭେଦ ଯାହା ଆମ ମଧରେ ପ୍ରେମ ତାହା
ସେ ମାନସ ହଂସ ଈଶ୍ୱର ବୁଝାଇବାରୁ ଏ ପ୍ରକାର

ସେ ଜୀବ ହଂସ ସ୍ୱରୂପରେ ରହି ଆତ୍ମଜ୍ଞାନ ଲଭିଲେ
ପୁରଞ୍ଜନ କଥା ଛଳରେ ମୁହି ଯେ ପରୋକ୍ଷ ଭାବରେ
ଆତ୍ମ ଜ୍ଞାନର ଦିଗ୍‌ଦର୍ଶନ ଦେଲି ହେ ରାଜା ବର୍ହିଷ୍ମନ
ଜଗତ କର୍ତ୍ତା ଦୟାମୟ ପରୋକ୍ଷ କର୍ଣ୍ଣନାର ପ୍ରିୟ

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମ ହଂସ୍ୟା ସଂହିତାୟା ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ପୁରଂଜନୋପାଖ୍ୟାନେ ଅଷ୍ଟା ବିଂଶୋଽଧ୍ୟାୟ ।

*******

## ଏକୋନତ୍ରିଂଶ ଅଧ୍ୟାୟ

### ପ୍ରାଚୀନବର୍ହିଉବାଚ

ହେ ନାରଦ ଭଗବାନ ଯାସବୁ କହିଲେ ଆପଣ
ସେ କଥା ଅଭିପ୍ରାୟ ମୁହି ଅଜ୍ଞାନେ ବୁଝି ନ ପାରଇ
କର୍ମ ଜଡିତ ମୋର ମତି ତାହାବା ବୁଝିବି କେମିତି
କେବଳ ଆତ୍ମଜ୍ଞାନୀ ବ୍ୟକ୍ତି ତୋ ବଚନ ତତ୍ତ୍ୱ ଜାଣନ୍ତି

ନାରଦ ଉବାଚ

ନାରଦ କହିଲେ ବୁଝାଇ ପୁରଞ୍ଜନ ଜୀବ ଅଟଇ
ସେ କର୍ମ-ଦ୍ୱାରା ନିଜର ନିର୍ମାଣେ ଦେହ ରୂପ ପୁର
ଏହା ଏକ ପାଦ ଦ୍ୱିପାଦ ତ୍ରିପାଦ ପୁଣି ଚାରି ପାଦ
ବହୁପାଦ ହୋଇ ପାରଇ ଏହାର ପାଦ ବି ନଥାଇ

ଅବିଜ୍ଞାତ ନାମ ଯାହାର ଯେ ସଖା ଅଟେ ଏ ଜୀବର
ସେତ ଈଶ୍ୱର ଉପବନ ଅରୂପ ଅନାମ ନିର୍ଗୁଣ
ନାମ ଗୁଣ ରୂପ କର୍ମରେ ଜୀବ ତାକୁ ଜାଣି ନ ପାରେ
ବିଷୟ ଭୋଗ ଲାଳସାରେ ଏ ଜୀବ ନର ଦେହ ଧରେ

ସକଳ ଶରୀର ମଧରେ ନର ଦେହ ଶ୍ରେଷ୍ଠ ସଂସାରେ
ପୁରଞ୍ଜନୀ ରମଣୀ ଯେହି ଜୀବର ବୁଦ୍ଧି ଅଟେ ସେହି
ଦେହ ଇନ୍ଦ୍ରିୟ ପ୍ରଭୃତିରେ ମମତା ଜନ୍ମେୟା ଯୋଗରେ
ପୁରୁଷ ଏହା ଆଶ୍ରୟରେ ଦେହ ଇନ୍ଦ୍ରିୟ ସଂଯୋଗରେ

ସର୍ବଦା ବିଷୟ ଭୋଗଇ ମାୟାରେ ବିମୋହିତ ହୋଇ
ଦଶ ଇନ୍ଦ୍ରିୟ ବୁଦ୍ଧିର ମିତ୍ର ଏହା ସାହାଯ୍ୟରେ ସମସ୍ତ
କରାଯାଏ କରମ ଜ୍ଞାନ ଇନ୍ଦ୍ରିୟର ଯେ ବୃତ୍ତି ଗଣ
ସେମାନଙ୍କ ମୁଖ୍ୟ ଜାଣ ପ୍ରାଣ ଆଦି ପଞ୍ଚ ପବନ

ସେ ପଞ୍ଚ ପଣା ଭୁଜଙ୍ଗମ ଏହା ବିଚାକର ମନ
ଶତାଦି - ପଞ୍ଚ ବିଷୟ ହିଁ ପାଞ୍ଚାଳ ଦେଶ ଯେ ଅଟଇ
ଯା ମଧରେ ଏ ନବ ଦ୍ୱାର ସ୍ଥାପିତ ହୋଇଛି ନଗର
ଉଭୟେନ୍ଦ୍ରିୟ କର୍ମ ଜ୍ଞାନ ଚାଳକ ଏହି ମନ ପୁଣ

ଏକାଦଶ ବଳବାନ ଯୋଦ୍ଧା ଅଟଇ ବୋଲି ଜାଣ
ନୟନ ନାସିକା ଶ୍ରବଣ ଦୁଇ ଦୁଇଟି ଦ୍ୱାର ଜାଣ
ବଦନ ଶିଶ୍ନ ମଳଦ୍ୱାର ଏ ହେଲେ ତିନୋଟି ଦ୍ୱାର
ଜୀବ ଏହି ଦ୍ୱାର ବାଟରେ ଇନ୍ଦ୍ରିୟ ମାନଙ୍କ ସଙ୍ଗରେ

ସଂଯୁକ୍ତ ବାହ୍ୟ ବିଷୟରେ ହେ ରାଜା ଶୁଣ ମନ ସ୍ଥିରେ
ମୁଖ ଦ୍ୱି ନେତ୍ର ନାସା ଦୁଇ ପଞ୍ଚ ପୂର୍ବ ଦ୍ୱାର ଅଟଇ
ଦକ୍ଷ କର୍ଣ୍ଣ ଦକ୍ଷିଣ ଦ୍ୱାର ବାମ କର୍ଣ୍ଣ ଯେ ବାମ ଦ୍ୱାର
ଉପସ୍ଥ ମଳଦ୍ୱାର ଏହି ପଶ୍ଚିମ ଦ୍ୱାର ବୋଲି କହି

ଖଦ୍ୟୋତା ଆବିର୍ମୁଖୀ ନାମ ନେତ୍ର ଗୋଲକ ଅଟେ ଜାଣ
ଜୀବ ଏହି ଦ୍ୱାର ପଥରେ ଚକ୍ଷୁ ଇନ୍ଦ୍ରିୟ ସାହାଯ୍ୟରେ
ବିଭ୍ରାଜିତ ଦେଶ ନାମ ରୂପକୁ କରଇ ଦର୍ଶନ
ନଳିନୀ ନାଳିନୀ ଏ ଦୁଇ ନାସା ଛିଦ୍ର ଦ୍ୱାର ଅଟଇ

ଗନ୍ଧ ହିଁ ନାସିକା ବିଷୟ ସୌରଭ ଦେଶ ଘ୍ରାଣେନ୍ଦ୍ରିୟ
ମଇତ୍ର ଅବଧୂତ ନାମ ମୁଖ୍ୟ ଦ୍ୱାର ଅଟେ ବଦନ
ବାଗିନ୍ଦ୍ରିୟ ବିଷଣ ନାମ ଏଥିରେ ରହିଥାଏ ଜାଣ
ନାସାର ରସ ବିଦ ନାମ ମଇତ୍ର ଅଟଇଟି ଜାଣ

ବାଣୀର ବ୍ୟାପାର ଆପଣ ବିଭିନ୍ନ ଅନ୍ନ ବହୁଜନ
ପିତୃହୂ ଯେ ଦକ୍ଷିଣ କର୍ଣ୍ଣ ଦେବ ହୂ ଅଟେ ବାମ କର୍ଣ୍ଣ
ପ୍ରବୃତ୍ତି ନିବୃତ୍ତି ଏ ଦୁଇ ପାଞ୍ଚାଳ ଦେଶ ବୋଲି କହି
ଶ୍ରୁତଧର କର୍ଣ୍ଣର ନାମ ଏହା ସାହାଯ୍ୟେ ଜୀବଗଣ

ସକଳ ଶୁଣି ପିତୃଯାନ ଦେବଯାନ ମାଗେ ଗମନ
ଲିଙ୍ଗ ଚକ୍ର ଆସୁରୀ ନାମ ପଶ୍ଚିମ ଦ୍ୱାର ଅଟେ ଜାଣ
ଦୁର୍ମଦ ଉପସ୍ଥ ଅଟଇ ତା ଯୋଗେ ରତି କ୍ରୀଡା ହୋଇ
ନାନା ପ୍ରକାର ଜୀବଗଣ ତଦ୍ୱାରା ହୁଅନ୍ତି ସର୍ଜନ

ନରକ ବୈଶସ ଅଟଇ ଲୁବ୍ଧକ ବାୟୁ ରହେ ତହିଁ
ଜୀବ ଏହାର ସାହାଯ୍ୟରେ ମଳକୁ ଉତ୍ସର୍ଗ କରେ
ଅନ୍ଧ ଅଟେ କର ଚରଣ ହସ୍ତରେ ଜୀବ କରେ କର୍ମ
ପାଦ ସାହାଯ୍ୟେ ସ୍ୱଇଚ୍ଛାରେ ଏ ଜୀବ ଯାତାୟାତ କରେ

ହୃଦ ଅନ୍ତଃ ପୁର ଅଟଇ ମନକୁ ବକ୍ଷୁଚୀନ ବହି
ଜୀବ ମନରେ ବଶ ହୋଇ ହର୍ଷ ଶୋକ ମୋହ ଲଭଇ
ବୁଦ୍ଧି ପୁରଞ୍ଜନୀ ଅଟଇ ଏ ସ୍ୱପ୍ନେ ବିକାର ଲଭଇ
ଜାଗ୍ରତ ଅବସ୍ଥାରେ ଏହି ଇନ୍ଦ୍ରିଙ୍କୁ ବିକୃତ କରଇ

ଏହା ଗୁଣରେ ହୋଇ ଲିପ୍ତ ନିର୍ବିକାର ଯେ ସାକ୍ଷୀ ମାତ୍ର
ଜୀବ ବୁଦ୍ଧି ବୃତ୍ତିକୁ ଅନୁସଇ ଶୁଣ ହେ ରାଜା ମନ ଦେଇ
ରଥ ଅଟଇ ଏ ଶରୀର ପଞ୍ଚଇନ୍ଦ୍ରିୟ ଅଶ୍ୱ ତାର
ସଂବତ୍ସର ରୂପ କାଳରେ ଏହା ଚଳେ ବିନା ବାଧାରେ

ଦ୍ୱିଚକ୍ର ପାପ ପୁଣ୍ୟ କର୍ମ ପତାକ ଅଟଇ ତ୍ରିଗୁଣ
ବନ୍ଧନ ରଜ୍ଜୁ ପଞ୍ଚ ପ୍ରାଣ ମନ ହିଁ ଏହାର ଲଗାମ
ବୁଦ୍ଧି ସୂତ ହୃଦ ଆସ୍ଥାନ ଏହାକୁ ଭଲ ଭାବେ ଚିହ୍ନ
ଯୁଆଳି ସୁଖ ଦୁଃଖ ଦୁଇ ପଞ୍ଚ ବିଷୟ ଅସ୍ତ ହୋଇ

ସପ୍ତଧାତୁ ଚର୍ମାବରଣ ପଞ୍ଚ କର୍ମେନ୍ଦ୍ରି ପତି ଜାଣ
ଜୀବ ରୂପକ ରଥୀ ଏହି ଏ ଦେହ ରଥକୁ ଆରୋହି
ବିଷୟ ମୃଗ ତୃଷ୍ଣା ପରି ଆଶାରେ ଜୀବ ବୁଲେ ଘୁରି
ତିଳେ ହେଁ ଶାନ୍ତି ନ ମିଳଇ ଦିନୁ ଦିନ ଦୁଃଖ ବଢ଼ଇ

ଜ୍ଞାନ ଯେ କର୍ମନ୍ଦ୍ରିୟ ମନ ସେନାନୀ ଏକାଦଶ ଜାଣ
ପଞ୍ଚ ଇନ୍ଦ୍ରିୟର ଯୋଗରେ ଜୀବ ମଜ୍ଜଇ ବିଷୟରେ
ଚଣ୍ଡ ବେଗ ଗନ୍ଧର୍ବ ନାମ ତିନି ଶହ ଷାଠିଏ ଜଣ
ଗନ୍ଧର୍ବ ଯେ ତାର ଅଧୀନ ସେ ତ୍ରିଶତ ଷାଠିଏ ଦିନ

ତ୍ରିଶତ ଷଷ୍ଟି ଗନ୍ଧବାଣୀ ସେମାନେ ଅଟନ୍ତି ରଜନୀ
ଏହିମାନେ ତ ପ୍ରତିଦିନ କରି ସଦା ପରିକ୍ରମଣ
ମନୁଷ୍ୟର ଆୟୁ ହରନ୍ତି ଶୁଣ ହେ ପ୍ରାଚୀନ ନୃପତି
କାଳ କନ୍ୟା ଜରା ଅଟଇ ଏହାକୁ କେହି ନ ଇଛଇ

ମୃତ୍ୟୁରୂପ ଯବନେଶ୍ୱର ଲୋକ କରିବାକୁ ସଂହାର
କାଳ କନ୍ୟା ଭଗ୍ନୀ ସଙ୍ଗରେ ଭ୍ରମଣ କରଇ ସଂସାରେ
ମନର ବ୍ୟଥା ଅଟେ ଆଧି ଶରୀର ପୀଡାମାନ ବ୍ୟାଧି
ଯବନ ରାଜାର ଏମନ ଅଟନ୍ତି ପଦାତିକ ସୈନ୍ୟ

ଶୀତ ଉଷ୍ଣ ଏ ଜ୍ୱର ଦୁଇ ଅଟଇ ପ୍ରଜ୍ୱରର ଭାଇ
ପ୍ରାଣକୁ ପୀଡା ଦିଅନ୍ତି ଜୀବର ମରଣ ଘଟାନ୍ତି
ଜୀବ ଅଜ୍ଞାନ ବଶ ହୋଇ ଦେହେ ଅଭିମାନ ରଖଇ
କ୍ଲେଶ ଭୋଗି ନାନା ପ୍ରକାରେ ଏହି ମାନବ ଶରୀରରେ

ଶତ ସମ୍ୱତ୍ସର ବଞ୍ଚଇ ନିଜକୁ ଚିହ୍ନି ନ ପାରଇ
ଏ ଜୀବ ସ୍ୱଭାବେ ନିର୍ଗୁଣ କିନ୍ତୁ ଇନ୍ଦ୍ରିୟ ମନ ପ୍ରାଣ
ଧର୍ମ ଆରୋପି ନିଜ ଠାରେ ବାନ୍ଧି ହୋଇଣ ମମତାରେ
ତୁଚ୍ଛ ବିଷୟ ଲାଳସାରେ ନାନାଦି କାମ୍ୟ କର୍ମ କରେ

ଯଦ୍ୟପି ଜୀବ ସ୍ୱପ୍ରକାଶ ତଥାପି ପରମ ପୁରୁଷ
ନିଜ ଗୁରୁ ଜଗଦୀଶଙ୍କୁ ଯେବେ ନ ଜାଣେ ସ୍ୱରୂପକୁ
ବନ୍ଧନ ହୁଏ ତ୍ରିଗୁଣରେ ଜୀବ ଗୁଣ ଅଭିମାନରେ
ହୋଇ ନିରନ୍ତର ବିବଶ ସାତ୍ତ୍ୱିକ ରାଜସ ତାମସ

ଅହର୍ନିଶ କର୍ମ କରଇ ତେଣୁ ସେ କର୍ମବଶ ହୋଇ
ନିଜର କର୍ମ ଅନୁସାରେ ଜନ୍ମଇ ବିଭିନ୍ନ ଯୋନୀରେ
ସାତ୍ତ୍ୱିକ କର୍ମ ପ୍ରଭାବରେ ବସଇ ସ୍ୱର୍ଗାଦି ଲୋକରେ
ରାଜସକର୍ମ ଦୁଃଖ ପୂର୍ଣ୍ଣ ଏ ଜୀବ ସହେ କ୍ଲେଶ ମାନ

ଗୁଣ କର୍ମର ଅନୁସାରେ ଜନ୍ମଇ ବିଭିନ୍ନ ଯୋନୀରେ
ଜୀବ ଅଜ୍ଞାନି ଅନ୍ଧ ହୋଇ ପଶୁ ଜନମକୁ ଲଭଇ
ଯେପରି ଶ୍ୱାନ କ୍ଷୁଧାତୁର ଆକୁଳେ ବୁଲେ ଦ୍ୱାର ଦ୍ୱାର
କେଉଁଠୁ କିଛି ଅନ୍ନପାଏ କେଉଁଠି ବା ପ୍ରହାର ଖାଏ

ଜୀବ ବାସନା ଅନୁସାରେ ଭ୍ରମେ ଉଚ୍ଚ ନିଚ ପଥରେ
ପ୍ରାରବ୍ଧ କରମ ବଶରେ ଜନ୍ମେ ନାନା ବିଧ ଯୋନିରେ
ଦୁଃଖ ସୁଖ ଭୋଗ କରଇ ଶୁଣ ପ୍ରାଚୀନ ନରସାଇ
ତ୍ରିବିଧ ଦୁଃଖରୁ ଜୀବର କେବେ ହେଁ ମିଳେ ନିସ୍ତାର

ମସ୍ତକେ ଭାରି ବୋଝ ବହି ଯଥା ଲୋକ କାନ୍ଧେ ରଖଇ
ସର୍ବ ସୁଖ ଦୁଃଖ ନିବୃତ୍ତି ପ୍ରତିକ୍ରିୟା ଅଟେ ଏମିତି
ଯଦି କୌଣସି ଉପାୟରେ ଏ ଦୁଃଖରୁ ନିସ୍ତାର ମିଳେ
ସଙ୍ଗେ ସଙ୍ଗେ ଦୁଃଖ ଏକଇ ପ୍ରଭାବ ବିସ୍ତାର କରଇ

ଯେପରି ସ୍ୱପ୍ନ ଅବସ୍ଥାରେ ସ୍ୱପ୍ନ ପରେ ସ୍ୱପ୍ନ ଦେଖିଲେ
ସ୍ୱପ୍ନର ନିବୃତ୍ତି ନୁହଇ ନିବୃତ୍ତି ପରି ଜଣାଯାଇ
କର୍ମ ଦ୍ୱାର ସେହି ପ୍ରକାର ଫଳରୁ ନ ମିଳେ ନିସ୍ତାର
ତଥା କର୍ମ ଫଳ ତଥା କରମ ଉଭୟ ଅବିଦ୍ୟାରୁ ଜନ୍ମ

ସ୍ୱପ୍ନ ରାଜ୍ୟ ନୁହେଁ ବାସ୍ତବ କିନ୍ତୁ ସ୍ୱପ୍ନ ରାଜ୍ୟରେ ଜୀବ
ମନୋହର ଲିଙ୍ଗ ଶରୀରେ ବିଚରଣ କରଇ ଧରାରେ
ଯେ ଜାଗତିକ ପ୍ରୟୋଜନ ନଥିଲେ ମଧ୍ୟ ବିଦ୍ୟାମାନ
ଅଜ୍ଞାନ ନୋହିଲେ ଦୂର ଜୀବ ଜନ୍ମମୃତ୍ୟୁ ସଂସାର

ଚକ୍ରରୁ ନ ପାଏ ନିସ୍ତାର ହେ ରାଜା ଏହା ସତ୍ୟପୀର
ଜୀବ ପରମାତ୍ମା ସ୍ୱରୂପ କିନ୍ତୁ ସେ ଅଜ୍ଞାନ ବଶତ
ଜନମ ମରଣ ଅନର୍ଥ କ୍ରମାନୁସାରେ ହୁଏ ପ୍ରାପ୍ତ
ପରମ ଗୁରୁ ଶ୍ରୀହରିରେ ସୁଦୃଢ଼ ଭକ୍ତି ଜନ୍ମହେଲେ

ଅବିଦ୍ୟାରୁ ମୁକ୍ତି ଲଭଇ ସଂସାର ଚକ୍ରୁ ମିଳେ ତ୍ରାହି
ଭଗବାନ ବାସୁ ଦେବରେ ସର୍ବଦା ଏକାଗ୍ର ଚିତ୍ତରେ
ଅନନ୍ୟ ସୁଦୃଢ଼ ଭକ୍ତିରେ ଜ୍ଞାନ ଓ ବୈରାଗ୍ୟ ମିଳେ
ଶ୍ରୀଭଗବାନଙ୍କ କଥାରେ ଭକ୍ତି ସଦା ଆଶ୍ରୟକରେ

ଯେ ଏହା ଶ୍ରଦ୍ଧାରେ ଶୁଣଇ କିଅବା ଶୁଣାଏ ପଢ଼ଇ
ଯେଠାରେ ଭଗବାନଙ୍କର ଗୁଣକଥା ଶ୍ରୁତି ତତ୍‌ପର
ଶୁଦ୍ଧ ଚିତ୍ତ ଭକ୍ତ ରହଇ ଶ୍ରୀ ହରିଲୀଳା ମୃତ ନଈ
ସର୍ବଦା ବହଇ ସେଠାରେ ସେ ବ୍ୟକ୍ତି ଶ୍ରଦ୍ଧା ଭକତିରେ

ସେ ଲୀଳାମୃତ ପାନ କରେ ତାହାକୁ କ୍ଷୁଧା ତୃଷା ଭୟ
ଶୋକ ଦୁଃଖ ମୋହ ତହିଁ କେବେ ହେଁ ସ୍ପର୍ଶ କରେ ନାହିଁ
ନର ଜନ୍ମ ସଫଳ ହୋଇ ଅନ୍ତେ ବୈକୁଣ୍ଠକୁ ଗମଇ
ଜୀବ ସମୂହ ସ୍ୱଭାବରେ ପ୍ରତ୍ୟେହ କ୍ଷୁଧା ପିପାସାରେ

ପୀଡା ପାଇ ମଧ୍ୟ ସଂସାରେ ହରି କଥା ମୃତ ସିନ୍ଧୁରେ
ସ୍ନାନ ନ କରନ୍ତି ପ୍ରେମରେ ହେ ରାଜା ଭାବ ତୁ ହୃଦରେ
ସାକ୍ଷାତ ପ୍ରଜାପତି ପତି ବ୍ରହ୍ମା ଦକ୍ଷାଦି ପ୍ରଜାପତି
ବ୍ରହ୍ମଙ୍କ ସନକ ପ୍ରଭୃତି ଶଙ୍କର ମରୀଚି ଅତ୍ରି

ଅଙ୍ଗିରା ପୁନହ ପୁଲସ୍ତ୍ୟ କ୍ରତୁ ଭୃଗୁ ଆମେ ସମସ୍ତ
ହୋଇଲେ ମଧ୍ୟ ବ୍ରହ୍ମବାଦୀ ତଥା ବାଙ୍‌ମୟ ଅଧିପତି
ବିଦ୍ୟା ତପସ୍ୟା ସମାଧିରେ ଅନ୍ୱେଷଣ କରି ନିଷ୍ଠାରେ
ସକଳ ସାକ୍ଷୀ ଜଗନ୍ନାଥ ନ ପାଇଲୁ ହରି ସାକ୍ଷାତ

ବେଦ ବାଣୀ ଅତି ଗହନ ଆୟତ କରିବା କଠିନ
ମହାପୁରୁଷ ମହାମନା ତାହାକୁ କରି ଆଲୋଚନା
ମନ୍ତ୍ରରେ ଦେବଙ୍କୁ ପୂଜନ୍ତି ମାତ୍ର ତାଙ୍କୁ କେ ନଜାଣନ୍ତି
ବାରମ୍ବାର ହୃଦ ମଧରେ ଭଗବାନଙ୍କୁ ଚିନ୍ତା କଲେ

ସେ ଜୀବ ପ୍ରତି ଯେତେବେଳେ ଦୟା କରନ୍ତି ସେତେବେଳେ
ଜୀବ ଲୌକିକ ବ୍ୟବହାର ବୈଦିକ କରମ ମାର୍ଗର
ଦୃଢ଼ ଆସକ୍ତିକୁ ତେଜଇ ଶ୍ରୀ ହରିଙ୍କୁ ଜାଣି ପାରଇ
ଆହେ ବର୍ହିଷ୍ମନ ରାଜନ ଏ କର୍ମ କାଣ୍ଡକୁ ଆପଣ

ପରମାର୍ଥ ବୁଦ୍ଧି ଆରୋପ ନ କରନ୍ତୁ ହେ ନରନାଥ
ଏହା ଶୁଣିବାକୁ ଭଲ ଲାଗଇ ମାତ୍ର ପରମାର୍ଥ ନୁହଇ
ଅଜ୍ଞାନର ହେତୁରୁ ଏହି ପରମାର୍ଥ ଜଣା ଯାଇ
ଯେ ବେଦବାଦୀ ମନ୍ଦ ମତି ବେଦର ମର୍ମ ନ ଜାଣନ୍ତି

ସ୍ୱର୍ଗାଦି ଫଳ ଲାଭପାଇ କର୍ମ କାଣ୍ଡକୁ ଉପ ଦିଶଇ
ସେ ନରେ ସ୍ୱରୂପ ଭୂତ ନ ଜାଣନ୍ତି ଆତ୍ମାର ତତ୍ତ୍ୱ
ଯେଉଁଠାରେ କି ଭଗବାନ ବିଜେ କରନ୍ତି ଜନାର୍ଦ୍ଦନ
ପୂର୍ବାଗ୍ର କୁଶରେ ଆପଣ କରିଛ ପୃଥ୍ୱୀ ଆଚ୍ଛାଦନ

ଯଜ୍ଞେ କରି ପଶୁ ନିଧନ କର୍ମ ଅହଂକାରେ ଆପଣ
କର୍ମ ଅହଂକାରୀ ଉଦ୍ଧତ ହୋଇଅଛ ହେ ନରନାଥ
ଉପାସନା ହିଁ ବାସ୍ତବ କର୍ମ ତାହା ଜାଣି ନାହିଁ ଆପଣ
ଯହିଁରେ ଶ୍ରୀହରି ପ୍ରସନ୍ନ ତାହାହିଁ ପ୍ରକୃତ କର୍ମ

ଯେ ବିଦ୍ୟାରେ ଶ୍ରୀହରିଠାରେ ଚିତ୍ତ ରହଇ ଏକାଗ୍ରରେ
ତାହାହିଁ ବିଦ୍ୟା ଯେ ଅଟଇ ହେ ରାଜା ଶୁଣ ମନ ଦେଇ
ସେହି ଶ୍ରୀହରି ହିଁ ସପୂର୍ଣ୍ଣ ଦେହ ଧାରୀଙ୍କ ଆତ୍ମା ଜାଣ
ନିୟନ୍ତା ସ୍ୱତନ୍ତ୍ର କାରଣ ତାହାଙ୍କ ବିନା ନାହିଁ ଆନ

ଚରଣ ତଳ ହିଁ ତାଙ୍କର ଶ୍ରେଷ୍ଠ ଆଶ୍ରୟ ମାନବର
ତାଙ୍କ ପାଦ ଆଶ୍ରୟ ହିଁ ଜଗତ କଲ୍ୟାଣ ସାଧଇ
ଯହିଁ କାହାର ଅଣୁମାତ୍ର ଭୟ ନାହିଁ ସେହି ଆତ୍ମାତ
ହରିଙ୍କର ପ୍ରିୟ ଅଟଇ ଯେ ପୁରୁଷ ଏହା ଜାଣଇ

ସେ ପ୍ରକୃତ ଜ୍ଞାନୀ ବୋଲାଇ ଶୁଣ ହେ ରାଜା ମନ ଦେଇ
ଯେ ଜ୍ଞାନୀ ସେ ଗୁରୁ ସାକ୍ଷାତ ପୁଣି ସେ ସ୍ୱୟଂ ଜଗନ୍ନାଥ

## ନାରଦ ଉବାଚ

କହେ ନାରଦ ମୁନିବର ଶୁଣ ହେ ପୁରୁଷ ପ୍ରବର
ଭକ୍ତର ଗୁପତ ସାଧନ କହୁଛି ସାବଧାନେ ଶୁଣ
ଏକ ମୃଗ ମୃଗୀ ସଙ୍ଗରେ ବିହରେ ପୁଷ୍ପ ବାଟିକାରେ
ଦୁର୍ବାଙ୍କୁର ଯେ ଚରେ ସେହି ଅଳି ଗୁଂଜନେ କର୍ଣ୍ଣଦେଇ

ହିଂସ୍ର ବ୍ୟାଘ୍ର ସମ୍ମୁଖରେ ତାର ଜୀବବଧି ପୋଷେ ଉଦର
ଏକ ବ୍ୟାଧ ପରେ ରହି ମାରିବାକୁ ଶର ପେଷଇ
ମୃଗ ଯେ ଅନ୍ୟ ମନା ହୋଇ ସେ ପ୍ରତି ଧ୍ୟାନ ନ ଦିଅଇ
ବର୍ତ୍ତମାନ ସେ ହରିଣର ଦଶା କ'ଣ ହେବ ବିଚାର

ଏ ରୂପକର ପ୍ରକୃତ ଅର୍ଥ କହୁଛି ଶୁଣ ନର ନାଥ
ଏହି ମୃତ ପ୍ରାୟ ହରିଣ ସମାନ ଅଟନ୍ତି ଆପଣ
ଏ ସ୍ତ୍ରୀ ମାନେ ପୁଷ୍ପ ପ୍ରକାର ଦେଖିବାକୁ ଅତି ସୁନ୍ଦର
ସ୍ତ୍ରୀ ମାନଙ୍କ ବାସସ୍ଥାନ ଅଟଇ କୁସୁମ ଉଦ୍ୟାନ

ପୁଷ୍ପର ମଧୁ ଗନ୍ଧ ପରି ସକାମ ଫଳ ଅନୁସରି
ଜିହ୍ୱା ଲାଳସାରେ ମଜ୍ଜିଣ କରୁଛ ସୁମିଷ୍ଟ ଭୋଜନ
ଉପସ୍ଥ ଇନ୍ଦ୍ରିୟର ପ୍ରୀତି ପାଇଁ ସ୍ତ୍ରୀ ସଙ୍ଗମ କରନ୍ତି
ନାରୀଏ ସଦା ବେଢ଼ିଛନ୍ତି ଆପଣଙ୍କ ଚିତ୍ତ ହରନ୍ତି

ସ୍ତ୍ରୀ ପୁତ୍ର ମଧୁର ବଚନ ଅଟଇ ଭ୍ରମର ଗୁଞ୍ଜନ
ଆପଣଙ୍କ କର୍ଣ୍ଣ ଅତ୍ୟନ୍ତ ତହିଁରେ ସର୍ବଦା ଆସକ୍ତ
ହିଂସ୍ର ବ୍ୟାଘ୍ର ଦଳ ସମାନ ଆୟୁ ହରନ୍ତି ରତ୍ରି ଦିନ
ଭ୍ରୂକ୍ଷେପ ନ କରି ତହିଁରେ ବୁଡ଼ିଛ ଗାର୍ହସ୍ଥ୍ୟ ସୁଖରେ

ଆପଣଙ୍କ ପଛରେ କାଳରୂପୀ ବ୍ୟାଧ ଗୁପ୍ତରେ
ବିନ୍ଧିବାକୁ ହୃଦ ତୁମର ନିକ୍ଷେପ କରିଲାଣି ଶର
ହେ ନୃପ ପୁରୁଷ ପ୍ରବର ଏ ବିଷୟ କର ବିଚାର
ଆପଣ ଚିତ୍ତକୁ ହୃଦରେ ନିରୁଦ୍ଧ କରନ୍ତୁ ସଧୀରେ

ଶ୍ରବଣ ଇନ୍ଦ୍ରିୟ ବୃତ୍ତିକୁ ସଦା ଅନ୍ତର୍ମୁଖୀ କରନ୍ତୁ
କାମୀ ପୁରୁଷଙ୍କର ଯହିଁ ସର୍ବଦା ଚରଚା ହୁଅଇ
ତେଜି ସେ ଗୃହସ୍ଥାଶ୍ରମକୁ ହରିଙ୍କୁ ପ୍ରସନ୍ନ କରାନ୍ତୁ
ପରମ ହଂସ ଯୋଗୀଙ୍କର ସଙ୍ଗରେ ରହି ନିରନ୍ତର
ବିଷୟ ଭୋଗରୁ କ୍ରମଶଃ ବିରତ ହୁଅ ହେ ନରେଶ

### ରାଜୋବାଚ

ନାରଦଙ୍କର ପାଦେ ପଡି ରାଜନ କହେ କରଯୋଡି
ଭୋ ମୁନି ଉପଦେଶେ ତୋର ମୋର ସଂଶୟ ହେଲା ଦୂର
ଯେଉଁ ଆଚାର୍ଯ୍ୟ ବିପ୍ରେଛନ୍ତି କର୍ମ ଉପଦେଶ ଦିଅନ୍ତି
ସେମାନଙ୍କର ନାହିଁ ଜ୍ଞାନ କେବଳ ଜ୍ଞାନ ଅଭିମାନ

ସେମାନଙ୍କ ଉପଦେଶରେ ଆଧ୍ୟାତ୍ମତତ୍ତ୍ୱ ବିଷୟରେ
ଯେ ସନ୍ଦେହ ହୋଇଥିଲା ଜନ୍ମ ଆପଣ ଛେଦିଲେ ସଂପୂର୍ଣ୍ଣ
ଏ ବିଷୟ ଇନ୍ଦ୍ରିୟାତୀତ ଋଷିଏ ହୁଅନ୍ତି ମୋହିତ
ପୁରୁଷ ଇହ ଜଗତରେ ଯେ ସ୍ଥୁଳ ଦେହେ କର୍ମ କରେ

ସେହି ଶରୀରକୁ ଏଠାରେ ଛାଡି ଦେଇ ପରଲୋକରେ
କର୍ମ ନିର୍ମିତ ଶରୀରରେ କରମ ଫଳ ଭୋଗ କରେ
ଏହା କିପରି ସମ୍ଭବଇ ମତେତ ଆଶ୍ଚର୍ଯ୍ୟ ଲାଗଇ
ଇହ ଲୋକର କର୍ମମାନେ ଅଦୃଶ୍ୟ ହନ୍ତି ପରକ୍ଷଣେ
ପରଲୋକେ ଫଳ ଦେବା ପାଇଁ କିପରି ପ୍ରକଟ ହୁଅଇ

### ନାରଦ ଉବାଚ

କହନ୍ତି ବିଧାତା ନନ୍ଦନ ହେ ନୃପ ସାବଧାନେ ଶୁଣ
ଲିଙ୍ଗଦେହ ମନ ପ୍ରଧାନ ଯା ଯୋଗେ ଜୀବ କରେ କର୍ମ
ସେ ଲିଙ୍ଗ ଦେହ ମୃତ୍ୟୁପରେ ଗମଇ ପୁରୁଷ ସଙ୍ଗରେ
ପରଲୋକେ ଅପାରୋକ୍ଷରେ ଜୀବ ସ୍ୱୟଂ ଲିଙ୍ଗ ଦେହରେ

କରମ ଫଳ ଭୋଗ କରେ ସ୍ୱପ୍ନାବସ୍ଥାରେ ଏହି ଜୀବ
ଶ୍ୱାସ ପ୍ରଶ୍ୱାସ ନ ଜାଣଇ ଏହା କିପରି ସମ୍ଭବଇ
ଯେଉଁ ଶ୍ରୀପୁତ୍ର ଗୃହାଦିରେ ଏ ଜୀବ୍ ମୁ ମୋର ବିଚାରେ
ତାହାଙ୍କ ପାପ ପୁଣ୍ୟ ନେଇ ସଂସାରେ ଜନମ ଲଭଇ

ଜ୍ଞାନ କର୍ମେନ୍ଦ୍ରିୟ ମାନଙ୍କର ଚେଷ୍ଟାରୁ ଯେମନ୍ତ ପ୍ରକାର
ଚିତ୍ତ ହୁଅଇ ଅନୁମିତ ପୂର୍ବ ଜନ୍ମ କର୍ମ ତେମନ୍ତ
ଚିତ୍ତ ବୃତ୍ତି ଜଣା ପଡଇ ଶୁଣହେ ରାଜା ମନ ଦେଇ
ଜାଗ୍ରତେ ଦେଖା ଶୁଣା ନାହିଁ ସ୍ୱପ୍ନେ ତା ଅନୁଭବ କାହିଁ

ଏହି ଜୀବ ପୂର୍ବ ଜନ୍ମରେ ଯାହା ଜାଣେ ଲିଙ୍ଗ ଶରୀରେ
ସେ ବାସନା ପରଜନ୍ମରେ ଜନ୍ମଇ ଜୀବ ହୃଦୟରେ
ହେ ରାଜା ଶୁଭ ହେଉ ତୋର ଏହି ମନ ହିଁ ମନୁଷ୍ୟର
ପୂର୍ବରୂପ ଓ ଭବିଷ୍ୟତ ଶରୀରକୁ କରେ ସୂଚିତ

ପୁଣି କେବେ କେବେ ସ୍ୱପ୍ନରେ ଦେଶ କାଳ କାର୍ଯ୍ୟରେ
ଦୃଶ୍ୟ ସବୁ ଦେଖା ହୁଅଇ ଯା ପୂର୍ବେ ଦେଖା ଶୁଣା ନାହିଁ
ଯଥା ପର୍ବତରେ ସାଗର ପୁଣି ଶିରଚ୍ଛେଦ ନିଜର
ନିଦ୍ରାଦୋଷରୁ ଦେଖାଯାଇ ବୋଲି ଜାଣ ହେ ନରସାଇଁ

ଜୀବ ଇନ୍ଦ୍ରିୟ ସାହାଯ୍ୟରେ ଯେ ବସ୍ତୁ ଉପଭୋଗ କରେ
ତା ମନ ସମ୍ମୁଖକୁ ଆସଇ ଭୋଗ ପରେ ତା ସ୍ମୃତି ନାହିଁ
ଏହିପରି ପଦାର୍ଥ ନାହିଁ ଯା ମନ ଗୋଚର ହୁଏ ନାହିଁ
ଇନ୍ଦ୍ରି ଅନୁଭବ କରେ ନାହିଁ ଶୁଣନ୍ତୁ ସାବଧାନ ହୋଇ

ଯେ ବସ୍ତୁ ଗୋଟି ଗୋଟି ହୋଇ ମନ ମଧ୍ୟରେ ପ୍ରବେଶଇ
ମାତ୍ର ଶ୍ରୀହରି ଚିନ୍ତନରେ ଶୁଦ୍ଧ ସତ୍ୱଗୁଣ ଜନ୍ମିଲେ
ଏକାବେଳେ ବିଶ୍ୱ ସମସ୍ତ ମନରେ ହୁଏ ପ୍ରକାଶିତ
ରାହୁ ଯଥା ଚନ୍ଦ୍ର ସଂସ୍ପର୍ଶରେ ଦେଖାଯାଏ ସେହି ପ୍ରକାରେ

ତଥା ଶ୍ରୀହରି ସଂସର୍ଗରେ ବିଶ୍ୱ ପ୍ରକାଶଇ ମନରେ
ଗୁଣ ତ୍ରୟର ପରିଣାମ ବୁଦ୍ଧି ପୁଣି ଇନ୍ଦ୍ରିୟ ମନ
ସମୂହରେ ବିନିର୍ମିତ ଲିଙ୍ଗ ଦେହ ଥିବା ପର୍ଯ୍ୟନ୍ତ
ସ୍ଥୁଳ ଦେହରେ ମନୁଷ୍ୟର ରହେ ମୁ ମୋର ଅହଙ୍କାର

ସୁସୁପ୍ତି ମୂର୍ଚ୍ଛା ଜ୍ୱରାଦିରେ  ଦୁଃଖ ରୋଗ ମୃତ୍ୟୁ କାଳରେ
ମୁଁ ମୋର ବୋଲି ଅହଙ୍କାର  ଜଣା ନ ଗଲେ ବି ତାହାର
ଅଭିମାନ ସଦା ରହଇ  ଏହା ବୁଝ ହେ ନରସାଇଁ
ଅମାବାସ୍ୟାରେ ଚନ୍ଦ୍ର ଥାଇ  ମାତ୍ର ଦେଖାଯାଏ ନାହିଁ

ଗର୍ଭରେ ଥିବା ଅବସ୍ଥାରେ  ପୁଣି ବାଲ୍ୟ ସମୟରେ
ଏକାଦଶ ଇନ୍ଦ୍ରିୟ ଯୁକ୍ତ  ଏ ଲିଙ୍ଗ ଶରୀର ଯେମନ୍ତ
ସୁସ୍ପଷ୍ଟ ନ ହୁଏ ପ୍ରତୀତ  ଶୁଣ ପ୍ରାଚୀନ ନରନାଥ
ସ୍ୱପ୍ନରେ କୌଣସି ପଦାର୍ଥ  ରହି ନଥିଲେ ବି ଅସ୍ତିତ୍ୱ

ଜାଗ୍ରତ ନ ହେବା ପର୍ଯ୍ୟନ୍ତ  ସେ ଅନର୍ଥ ନୁହେ ନିବୃତ୍ତ
ସଂସ୍କାରର ବସ୍ତୁ ସମସ୍ତ  ହୋଇଥିଲେ ମଧ୍ୟ ଅସତ
ମାନବ ଅବିଦ୍ୟା ବଶରେ  ସଦା ସମସ୍ତ ଚିନ୍ତା କରେ
ଜନ୍ମ ମୃତ୍ୟୁ ରୂପ ସଂସାର  ଚକ୍ରରୁ ନପାଏ ନିସ୍ତାର

ପଞ୍ଚ ତନ୍ମାତ୍ରାଂରେ ନିର୍ମିତ  ଷୋଳ ତତ୍ତ୍ୱରୂପେ ବିକସିତ
ତ୍ରିଗୁଣ ମୟ ସମଷ୍ଟି ହିଁ  ଏ ଲିଙ୍ଗ ଶରୀର ଅଟଇ
ଚେତନା ଯୁକ୍ତ ହୋଇ  ଏହା ଜୀବ ନାମ ବହଇ
ଏହାଦ୍ୱାରା ଜୀବ ବିଭିନ୍ନ  ଦେହ ତେବେ କରେ ଗ୍ରହଣ

ଏହା ସାହାର୍ଯ୍ୟେ ଜୀବ ଏହି  ଶୋକ ଦୁଃଖ ଅନୁଭବଇ
ଯୋକ ଯେ ଏକଇ ଚରଣେ  ଯେପରି ସଂଚରଇ ତୃଣେ
ଅନ୍ୟ ତୃଣେ ପାଦ ନ ଥୋଇ ପୂର୍ବ ତୃଣକୁ ତେଜେ ନାହିଁ
ସେପରି ମରଣ ନିକଟେ  ଏ ଜୀବ ଚିନ୍ତେ ଅନ୍ୟ ଘଟେ

ଏ ରାଜା ଏ ଲିଙ୍ଗ ଶରୀର  କାରଣ ଜନମ ମୃତ୍ୟୁର
ଏ ଜୀବ ଯେଉଁ ସମୟରେ  ଇନ୍ଦ୍ରିୟ ଭୋଗ ଲାଳସାରେ
ଅଜ୍ଞାନେ କରମ କରଇ  କର୍ମ ବନ୍ଧନରେ ପଡଇ
ସଂପୂର୍ଣ୍ଣ ଏ ବିଶ୍ୱକୁ ଯେହି  ହରି ରୂପ ବୋଲି ଦେଖଇ

ସର୍ବଦା ସର୍ବାତ୍ମା ଭାବରେ  ହରି ଚରଣେ ସେବା କରେ
କର୍ମ ବନ୍ଧନୁ ଲଭେ ମୁକ୍ତି  ବିଶ୍ୱ ଉତ୍ପତ୍ତି ଲୟ ସ୍ଥିତି
କେବଳ ଶ୍ରୀହରି କରନ୍ତି  ଏ ଭାବେ ଦୃଢ଼ କରି ମତି
ସଦା ସେବ ତାଙ୍କ ଚରଣେ  କର୍ମବନ୍ଧନ ହେବ ଛିନ୍ନ

**ମୈତ୍ରେୟ ଉବାଚ**

ଏବେ ଶୁଣ ଆହେ ବିଦୁର  ସେ ନାରଦ ଭକ୍ତ ପ୍ରବର
ଜୀବ ଈଶ୍ୱର ବିଷୟରେ  ଉପଦେଶ ଦେଇ ସ୍ୱେଚ୍ଛାରେ
ମନ ଯାନେ ସିଦ୍ଧ ଲୋକରେ ତକ୍ଷଣେ ଗମନ କରିଲେ

ପ୍ରାଚୀନ ବର୍ହି ନରବର  ପୁତ୍ରେ ସମର୍ପି ରାଜ୍ୟ ଭାର
ତପ କରିବା ଉଦ୍ଦେଶ୍ୟରେ  କପିଳା ଶ୍ରମକୁ ଗମିଲେ
ଭକ୍ତିରେ ହରିଙ୍କୁ ପୂଜିଲେ  ସାରୁପ୍ୟ ମୁକତି ଲଭିଲେ
ଯେଉଁ ପୁରୁଷ ଆତ୍ମ ଜ୍ଞାନ  ଶୁଣାଏ ବା କରେ ଶ୍ରବଣ

ସେହି ପୁରୁଷ ହିଁ ତୁରିତ  ଦେହ ବନ୍ଧନୁ ହୁଏ ମୁକ୍ତ
ଏହି ଯେ ଶ୍ରୀହରି ଆଖ୍ୟାନ  ପବିତ୍ର କରେ ତ୍ରିଭୂବନ
ପରୋ ଭାବରେ କଥିତ  ଏହି ଯେ ଆତ୍ମଜ୍ଞାନ ତତ୍ତ୍ୱ
ଶ୍ରୀ ଗୁରୁ କୃପାରୁ ମିଳଇ  ଆତ୍ମ ଅହଙ୍କାର ଛେଦଇ

ଭଣଇ ଦାଶ ଧନେଶ୍ୱର  ମୁଁ ତୁମ କିଙ୍କର କିଂକର
ସମସ୍ତ ସାଧୁ ଜନ ମିଳି  ମୋ ମୁଣ୍ଡେ ଦିଅ ପାଦଧୂଳି
ଏ ଭାଗବତ ପୁଣ୍ୟ ବାଣୀ  ଶୁଣି ସଂସାରୁ ତର ପ୍ରାଣୀ

ଇତି ଶ୍ରୀମଦ ଭାଗବତେ ମହାପୁରାଣେ ପାରମଂହସ୍ୟାଂ ସଂହିତାୟା ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଏକୋନତ୍ରିଂଶୋଽଧ୍ୟାୟ ।

******

## ତ୍ରିଂଶୋ ଅଧ୍ୟାୟ

**ବିଦୁର ଉବାଚ**

ଏ ଅନ୍ତେ ପୁଛଇ ବିଦୁର  ଶୁଣ ମୈତ୍ରେୟ ମୁନିବର
ଆହେ ବ୍ରାହ୍ମଣ୍ୟ ତପୋଧନ  ପ୍ରାଚୀନ ବର୍ହି ପୁତ୍ରଗଣ
ରୁଦ୍ର ଗୀତାରେ ଭଜି ହରି  କି ସିଦ୍ଧି ଥିଲେ ଲାଭ କରି
କୈବଲ୍ୟ ନାଥ ହରିଙ୍କର  ଅତ୍ୟନ୍ତ ପ୍ରିୟ ଶିବଙ୍କର

ସୁ ଦୟାରେ ନିଷ୍ଚିତ ଭାବେ ସେମାନେ ମୁକ୍ତି ପାଇଥିବେ
ଇହ ଲୋକ ପର ଲୋକରେ ତା ପୂର୍ବରୁ ଯାହା ପାଇଲେ
କୃପା କରି ତାହା ଆପଣ ବର୍ଣ୍ଣନା କର ବର୍ତ୍ତମାନ

## ମୈତ୍ରେୟ ଉବାଚ

ବିଦୁର ସାବଧାନେ ଶୁଣ ଏ ପରେ ଯେମନ୍ତ ବିଧାନ
ନିଜ ପିତାଙ୍କ ଆଦେଶରେ ପ୍ରଚେତାମାନେ ସାଗରରେ
ରୁଦ୍ର ଗୀତ ରୂପ ଯଜ୍ଞରେ ତପରେ ହରିକୁ ତୋଷିଲେ
ଦଶ ସସ୍ର ବର୍ଷ ପର୍ଯ୍ୟନ୍ତ ସେମାନେ କଲେ ଘୋର ତପ

ପୁରାଣ ପୁରୁଷ ଶ୍ରୀହରି ମନମୋହନ କାନ୍ତି ଧରି
ବିଶୁଦ୍ଧ ସତ୍ତ୍ୱ ବିଗ୍ରହରେ ପ୍ରକଟ ହେଲେ ସମ୍ମୁଖରେ
ସୁମେରୁ ଶିଖର ଉପରେ ଶ୍ୟାମ ମେଘ ମାଳା ପ୍ରକାରେ
ବିଜୟ ଗରୁଡ ପୃଷ୍ଠରେ ପୀତ ବସନ ଶ୍ରୀଅଙ୍ଗରେ

ଗ୍ରୀବାରେ କୌସ୍ତୁଭ ଶୋଭଇ କାନ୍ତିରେ ଅନ୍ଧାର ହଟଇ
ଉଜ୍ଜ୍ୱଳ ସ୍ୱର୍ଣ୍ଣ ଆଭୂଷଣ ଯୋଗେ ମନୋରମ ବଦନ
ଶିରେ ଜ୍ୟୋତିମୟୀ ମୁକୁଟ ଦିବ୍ୟ ସୁଷମା କରଇ ପ୍ରକଟ
ଅଷ୍ଟ ଭୁଜେ ଅଷ୍ଟ ଆୟୁଧ ଦେବ ମୁନି ଋଷି ପାର୍ଷଦ

ଉପସ୍ଥିତ ସେବା ନିମିତ୍ତ ଗରୁଡ ଗାଏ କୀର୍ତ୍ତି ଗୀତ
ଭୁଜେ ବନମାଳା ରଜଇ ଲକ୍ଷ୍ମୀଙ୍କ ସୁଷମା ଗଂଜଇ
ଆଦି ପୁରୁଷ ଭଗବାନ ନାରାୟଣ ଭବ ତାରଣ
ଅନାଇଲେ ଦିବ୍ୟ ଦୃଷ୍ଟିରେ ଜଳଦ ଗମ୍ଭୀର ବାଣୀରେ

ପ୍ରଚେତା ମାନଙ୍କୁ କହିଲେ ଶୁଣ ବିଦୁର ମନ ସ୍ଥିରେ
ଆହେ ନୃପତି ପୁତ୍ରଗଣ ହେଉ ତୁମର ସୁକଲ୍ୟାଣ
ତୁମେ ପରସ୍ପର ମଧ୍ୟରେ ସ୍ନେହ ଓ ସୌହାର୍ଦ୍ଦ୍ୟ ଚିତ୍ତରେ
ଧର୍ମ କରୁଅଛ ପାଳନ ମୋ ଠାରୁ ବର ମାଗି ନେଘେନ

ଯେ ସନ୍ଧ୍ୟାରେ ପ୍ରତିଦିନ ତୁମକୁ କରିବ ସ୍ମରଣ
ସ୍ନେହ ବଢ଼ିବ ଭାଇଠାରେ ମିତ୍ରତା ଜନ୍ମିବ ଜୀବରେ
ଯେ ପ୍ରଭାତ ସନ୍ଧ୍ୟା କାଳରେ ଏକ ଚିତ୍ତେ ରୁଦ୍ର ଗୀତରେ
ସ୍ତୁତି କରିବେ ଯେ ମୋହର ଲଭିବେ ସେ ଅଭୀଷ୍ଟ ବର

ତୁମେ ମାନେ ଅତି ପ୍ରେମରେ ପିତୃ ଆଜ୍ଞା ବହି ଅଛ ଶିରେ
ତୁମର କୀରତି ସମସ୍ତ ଲୋକରେ ହେବ ପରିବ୍ୟାପ୍ତ
ଏକଇ ପୁତ୍ର ହେବ ତୁମ ଗୁଣରେ ବ୍ରହ୍ମାଙ୍କ ସମାନ
ତା ନିଜ ସନ୍ତତି ସନ୍ତାନ ତିନି ଭୁବନେ ହେବେ ପୂର୍ଣ୍ଣ

ଯେ କନ୍ୟା ତୁମେ ହେବ ବିଭା ତା' ଜନ୍ମ ବୃତ୍ତାନ୍ତ କହିବା
କଣ୍ଡୁଋଷିଙ୍କ ତପୋଭାଙ୍ଗ କରିବା ପାଇଁ ଦେବ ଇନ୍ଦ୍ର
ପ୍ରମ୍ଳୋଚା ନାମ ଅପ୍ସରାକୁ ପଠାଇଲେ ତାଙ୍କ ପାଖକୁ
ତାର ଦର୍ଶନେ ମୁନିବର କାମ ବାଣେ ହେଲେ ଅସ୍ଥିର

ତପସ୍ୟା ଧ୍ୟାନ ବରଜିଲେ ବୁଦ୍ଧି ବିବେକ ହରାଇଲେ
ତା ସଙ୍ଗେ ରତି କ୍ରୀଡା କଲେ ଗାର୍ହସ୍ଥ୍ୟ ଧର୍ମ ଆଚରିଲେ
ତା ଉଦରୁ ଏକ କନ୍ୟା ଜନ୍ମିଲା ଗୁଣ ରୂପ ଧନ୍ୟା
ତାହାକୁ ବନେ ତ୍ୟାଗ କଲା ଅପ୍ସରା ସ୍ୱର୍ଗ ପୁରେ ଗଲା

ବନ ବୃକ୍ଷମାନେ ଦୟାରେ ସେ କନ୍ୟାକୁ ପୋଷି ପାଳିଲେ
ସେହି କନ୍ୟା କ୍ଷୁଧା ତୃଷାରେ କ୍ରନ୍ଦନ କରିଲା ବିକଳେ
ଔଷଧୀଶ ଚନ୍ଦ୍ର ଦୟାରେ ସେହି କନ୍ୟାର ବଦନରେ
ତର୍ଜ୍ଜନୀ ଅଙ୍ଗୁଳି ନଜର ତା ମୁଖେ ଥାପିଲେ ସତ୍ତ୍ୱର

ତହିଁରେ ସୁଧା ରସ ଥିଲା କନ୍ୟାର କ୍ଷୁଧା ଦୂର ହେଲା
ସେ କନ୍ୟାର ତୁମେ ଯୋଗ୍ୟ ବର ତାହାକୁ ତୁମେ ବିଭା କର
ତୁମର ପିତା ବର୍ତ୍ତମାନ ସେବୁଛନ୍ତି ମୋର ଚରଣ
ସନ୍ତାନ ଉତ୍ପାଦନ ପାଇଁ ତୁମକୁ ଆଜ୍ଞାଛନ୍ତି ଦେଇ

ଗୁଣ ଧର୍ମରେ ତୁମପରି ସମାନ ସେହି ଯେ ସୁନ୍ଦରୀ
ତୁମ ମାନଙ୍କ ପତ୍ନୀ ହେବ ପ୍ରତ୍ୟେକଙ୍କୁ ପ୍ରେମ କରିବ
ଦିବ୍ୟ ଦଶ ଲକ୍ଷ ବରଷ ତୁମର ହୋଇବ ଆୟୁଷ
ସୁସ୍ଥ ବଳବାନ ହୋଇବ ଦିବ୍ୟ ସୁଖ ଭୋଗ କରିବ

ଶେଷରେ ମୋର ଚରଣରେ ଅବିଚଳିତ ଭକତିରେ
ତୁମ ମାନଙ୍କ ହୃଦୟର ହେବ କମନା ମଳ ଦୂର
ଇହ ପର ସୁଖ ତେଜିବ ପରମ ଧାମକୁ ଗମିବ
ଯେ ଈଶ୍ୱରାର୍ପିତ ବୁଦ୍ଧିରେ କରମ କରେ ନିରନ୍ତରେ

ଯେ ମୋର ଲୀଳା କଥାରେ ଜୀବନ କଟାଏ ସଂସାରେ
ତା ପକ୍ଷେ ଗୃହସ୍ଥ ଆଶ୍ରମ ନୁହଁଇ ବନ୍ଧନ କରଣ
ମୁ ଜ୍ଞାନ ରୂପ ପରଂବ୍ରହ୍ମ କର୍ମ ସାକ୍ଷୀ ନିତ୍ୟ ସନାତନ
ବ୍ରହ୍ମଜ୍ଞ ଶ୍ରୋତା ଠାରୁ ଯେହି ପ୍ରତ୍ୟହ ମୋ ଲୀଳା ଶୁଣଇ
ସେ ଶ୍ରୋତା ହୃଦୟରେ ମୁହି ନିରନ୍ତର ବାସ କରଇ

### ମୈତ୍ରେୟ ଉବାଚ

ସର୍ବାଶ୍ରୟ ପରମ ମିତ୍ର ଶ୍ରୀହରି କହନ୍ତେ ଏମନ୍ତ
ପ୍ରଚେତାମାନେ ଭକତିରେ ହାତ ଯୋଡି ଗଦ୍‌ଗଦ ସ୍ୱରେ
ହେ ପ୍ରଭୋ ଭକ୍ତ କ୍ଳେଶ ହର ଘେନନ୍ତୁ ଆମ ନମସ୍କାର
ବେଦ ତୋର ଉଦାର ଗୁଣ ନାମ କରଇ ନିରୂପଣ

ତୁ ମନ ବାକୀ ଅଗୋଚର ତୋ ପାଦେ ନମୁ ବାରମ୍ବାର
ଆପଣ ସ୍ୱରୂପ ରମନ୍ତି ନିତ୍ୟ ଶୁଦ୍ଧ ଶାନ୍ତ ଅଟନ୍ତି
ଜନ୍ମ ସ୍ଥିତି ଲୟ କାରଣ ମାୟା ଆଶ୍ରୟରେ ଆପଣ
ବ୍ରହ୍ମାଦି ରୂପକୁ ଧରନ୍ତି ଭକ୍ତହିତେ ସଦା ରହନ୍ତି

ଘୁଞ୍ଚାନ୍ତି ସଂସାର ବନ୍ଧନ ଦିଅନ୍ତି ପରମାତ୍ମା ଜ୍ଞାନ
ପ୍ରଭୋ ବାସୁଦେବ ନନ୍ଦନ ତୁମେ ଶ୍ରୀକୃଷ୍ଣ ଭଗବାନ
କଣ୍ଠରେ କମଳ ମାଳ ନାଭିରୁ ପ୍ରକାଶ କମଳ
କମଳ କୋମଳ ଚରଣ କମଳ ନେତ୍ର ମନୋରମ

ହେ ଆଦିକନ୍ଦ ଭଗବାନ ଘେନନ୍ତୁ ଆମର ପ୍ରଣାମ
ସକଳ ଭୂତର ଆଶ୍ରୟ ସାକ୍ଷୀ ସ୍ୱରୂପ ଦୟାମୟ
ସମାନ କମଳ କେଶର ଶ୍ରୀଅଙ୍ଗେ ରାଜେ ପିତାମ୍ବର
ତୋ ପଦ୍ମ ପାଦେ ବାରମ୍ବାର କରନ୍ତୁ ଆଗେ ନମସ୍କାର

ତୋର ଦିବ୍ୟ ରୂପ ସଂପୂର୍ଣ୍ଣ କ୍ଳେଶ କରଇ ନିବାରଣ
ଆମେ ସମସ୍ତେ ଅଜ୍ଞାନରେ କ୍ଳେଶ ପୀଡିତ ଏ ସଂସାରେ
ଆପଣ ଆମ ସମ୍ମୁଖରେ ପ୍ରକଟ ଦିବ୍ୟ ସ୍ୱରୂପରେ
ଏପରି ଦୟା ଆମ ପ୍ରତି ସଦା ଥାଉ ହେ ବିଶ୍ୱପତି

ହେ ଅମଙ୍ଗଳ ନାଶକାରୀ ଦୀନ ବତ୍ସଳ ତାପହାରୀ
ଦରିଦ୍ର ଜନଙ୍କୁ ଆପଣ ଦୟାରେ କରନ୍ତୁ ସ୍ମରଣ

ପ୍ରାଣୀର ଅନ୍ତଃ କରଣରେ ଥାଅ ଅନ୍ତର୍ଯ୍ୟାମୀ ରୂପରେ
କରୁ ତୋ ଉପାସନା ଆମେ ଆମ ନାମ ନଜାଣ ତୁମେ
ଆଶ୍ରିତ ମାନଙ୍କର ଚିତ୍ତ ତୋର କୃପାରେ ହୁଏ ଶାନ୍ତ
ହେ ବିଶ୍ୱପତି ଭଗବାନ ସ୍ୱୟଂ ପୁରୁଷାର୍ଥ ଆପଣ

ଆମ ଠାରେ ପ୍ରସନ୍ନ ହୋଇ ଦେଲ ମୁକ୍ତି ପଥ ଦେଖାଇ
ପ୍ରକୃତି ପରେ ରତୁ ତୁହି ବିଭୂତି ଅନନ୍ତ ଅଟଇ
ଭ୍ରମର କଳ୍ପବୃକ୍ଷ ପାଇ ଅନ୍ୟ ବୃକ୍ଷକୁ ନଇଛଇ
ଲଭିତୋ ଚରଣ ଶରଣ ଆନ ଲୋଡା ନାହିଁ ମମ

ତୋ ମାୟାରେ ହୋଇ ମୋହିତ ସଂସାରେ ଥିବା ପରଯନ୍ତ
ଜନ୍ମ ଜନ୍ମାନ୍ତରେ ତୁମର ସଙ୍ଗମିଳୁ ପ୍ରେମ ଭକ୍ତିର
ଏତିକି ମାତ୍ର ଦିଅବର ହେ ଦୟାମୟ ଦାମୋଦର
କ୍ଷଣେ ମାତ୍ର ଭକତି ସଂଗ ସ୍ୱର୍ଗ ମୋକ୍ଷଠାରୁ ଅଧିକ

ତେଣୁ ମର୍ତ୍ତ୍ୟର ସୁଖ କଥା କହିବା ଅଟଇ ଯେ ବୃଥା
ରହି ଭକତଙ୍କ ମେଳାରେ ଶ୍ରୀହରିଙ୍କ ଲୀଳା ଶୁଣିଲେ
ଭୋଗ ତୃଷ୍ଣା ଦୂର ହୁଅଇ ଦ୍ୱେଷ ଉଦ୍‌ବେଗ ଦୂରେ ଯାଇ
ଭକତମାନେ ନିଷ୍କାମରେ ସଦା ସତ୍‌କଥା ପ୍ରସଙ୍ଗରେ

ଶ୍ରୀନାରାୟଣଙ୍କର ଗୁଣ ଭକ୍ତିରେ କରନ୍ତି ଗାୟନ
ଶ୍ରୀନାରାୟଣ ବିଶ୍ୱପତି ଭକ୍ତର ଏକ ମାତ୍ର ଗତି
ହେ ପ୍ରଭୋ ଆପଣଙ୍କ ଭକ୍ତ ତୀର୍ଥ କରିବାକୁ ପବିତ୍ର
ପୃଥ୍ୱୀରେ ଭ୍ରମଣ କରନ୍ତି ସଂସାରର ଭୀତ ହରନ୍ତି

ଆହେ ଭଗବାନ ତୁମର ପ୍ରିୟ ସଖା ଶଙ୍କରଙ୍କର
କ୍ଷଣେ ମାତ୍ର ସମାଗମରେ ତତେ ଦେଖିଲୁ ସାକ୍ଷାତରେ
ଜନମ ମରଣ ଦୁଃସାଧ ରୋଗର ତୁମେ ଶ୍ରେଷ୍ଠ ବୈଦ୍ୟ
ଆମେ ସମସ୍ତେ ବର୍ତ୍ତମାନ ତୋ ଚରଣେ ନେଲୁ ଶରଣ

ଆମର ବେଦ ଅଧ୍ୟୟନ ସେବା ଶୁଶ୍ରୂଷା ଗୋ ବ୍ରାହ୍ମଣ
ବୃଦ୍ଧ ଜନ ଚିତ୍ତ ତୋଷଣ ଅନାହାରେ ତପ ସାଧନ
ସୁପୁରୁଷ ବନ୍ଧୁ ମଇତ୍ର ସେବା ସର୍ବପ୍ରାଣୀ ଜଗତ
ତୋହର ସନ୍ତୋଷ ନିମିତ୍ତ ଆମେ କରୁଅଛୁ ସମସ୍ତ

ସର୍ବବ୍ୟାପୀ ପୁରୁଷୋତ୍ତମ କରଣ କରମ ଆପଣ
ଆମର ଏ ସମସ୍ତ କର୍ମ କରୁ ତୋ ସନ୍ତୋଷ ବିଧାନ
ଦୟା ସାଗର ଦାମୋଦର ଏ ବର ପ୍ରାର୍ଥନା ଆମର
ଆହେ ସ୍ୱାମୀ ଆପଣଙ୍କର ମହିମା ଅଟଇ ଅପାର

ତଥାପି ମନୁ ସ୍ୱାୟଂଭୁବ ସ୍ୱୟଂ ବ୍ରହ୍ମା ଭଗବାନ ଶିବ
ତପ ଜ୍ଞାନରେ ଶୁଦ୍ଧ ଚିତ୍ତ ତୋ ସ୍ତୁତି କରନ୍ତି ସତତ
ତେଣୁ ଆମେ ମାନେ ନିଜର ବୁଦ୍ଧି ଅନୁସାରେ ତୁମର
ସ୍ତୁତି କରୁଅଛୁ ଗାୟନ ହେ ପ୍ରଭୁ ସତ୍ୟ ସନାତନ

ସତ୍ୟ ମୁରତି ଭଗବାନ ପରମ ପୁରୁଷ ଆପଣ
ହେ ଶୁଦ୍ଧ ରୂପ ଦାମୋଦର ହେ ବାସୁଦେବ ପରାତ୍ପର
ହେ ପ୍ରଭୋ ଶରଣ ସୋଦର ଘେନ ଆମର ନମସ୍କାର

### ମୈତ୍ରେୟ ଉବାଚ

ମୈତ୍ରେୟ ମୁନି ଆନନ୍ଦରେ କହନ୍ତି ବିଦୁରଙ୍କୁ ଧୀରେ
ଭକ୍ତ ବତ୍ସଳ ଭଗବାନ ପ୍ରଚେତା ସ୍ତୁତିରେ ପ୍ରସନ୍ନ
ତଥା ଅସ୍ତୁ ବୋଲି କହିଲେ ପରମ ଧାମକୁ ଗମିଲେ
ତହୁଁ ପ୍ରଚେତା ଭାଇଦଶ ନ ଦେଖି ପ୍ରଭୁ ଜଗଦୀଶ

ବିଚ୍ଛେଦେ କାତର ହୋଇଲେ ଶୋକ ସାଗରେ ନିମଜ୍ଜିଲେ
ଏ ଅନ୍ତେ ସେମାନେ ସାଗର ଜଳରୁ ହୋଇଲେ ବାହାର
ଦେଖିଲେ ପୃଥିବୀ ସମସ୍ତ ବୃକ୍ଷେ ହୋଇଛି ଆଚ୍ଛାଦିତ
ସେମାନେ ଉର୍ଦ୍ଧେ ବଢ଼ିଛନ୍ତି ଆକାଶ ପଥ ରୋଧିଛନ୍ତି

ଏହା ଦେଖିଣ ଦଶ ଭାଇ ବୃକ୍ଷ ଉପରେ କୋପ ବହି
ପୃଥିବୀରୁ ବୃକ୍ଷ ସମସ୍ତ ବିନାଶ କରିବା ନିମିତ୍ତ
ପ୍ରଳୟରେ ରୁଦ୍ର ଯେପରି ବନାଗ୍ନି ତେଜନ୍ତି ସେପରି
ପ୍ରଚେତାମାନେ କୋପଭରେ ମୁଖୁ ବାୟୁ ଅଗ୍ନି ଛାଡିଲେ

ପୃଥିବୀରୁ ବୃକ୍ଷ ସମସ୍ତ ଭସ୍ମହେବା ଦେଖି ବିଧାତ
ନିଜେ ପ୍ରବେଶି ସେ ସ୍ଥାନରେ ପ୍ରଚେତାଙ୍କୁ ଶାନ୍ତ କରିଲେ
ଅବଶିଷ୍ଟ ବୃକ୍ଷ ଭୟରେ ବ୍ରହ୍ମାଙ୍କର ଉପଦେଶରେ
ନିଜର ପାଳିତା କନ୍ୟାଙ୍କ ପ୍ରଦାନ କଲେ ପ୍ରଚେତାଙ୍କୁ

ମରୀଷା ନାମ ସେହି କନ୍ୟା ତ୍ରିଲୋକେ ରୂପ ଗୁଣ ଧନ୍ୟା
କମଳ ପଳାଶ ନୟନା ନାରୀ କୁଳ ଶିରୋ ଭୂଷଣା
କୁନ୍ଦ ଦଶନୀ ବିମ୍ବାଧରୀ ରତି ନୁହେଁ ତା ସମସରି
ପ୍ରଚେତା ଏ ବ୍ରହ୍ମାଦେଶରେ ସେ କନ୍ୟାକୁ ବିବାହ କଲେ

ବ୍ରହ୍ମାସୁତ ଦକ୍ଷ ପୂର୍ବରେ ଶିବ ଅବଜ୍ଞା କାରଣରେ
କାଳାନ୍ତେ ମରୀଶା ଗର୍ଭରେ ପୁନର୍ବାର ଜନ୍ମ ଲଭିଲେ
ଚାକ୍ଷୁଷ ନାମ ମନ୍ୱନ୍ତରେ ଏ ଦକ୍ଷ ହରି ପ୍ରେରଣାରେ
ନିଜର ଇଛା ଅନୁସାରେ ନୂତନ ପ୍ରଜା ସୃଷ୍ଟି କଲେ

ସେ ଦକ୍ଷ ପୁର୍ନଜନ୍ମରେ ନିଜର ଶରୀର କାନ୍ତରେ
ତେଜସ୍ୱୀଙ୍କ ତେଜ ହରିଲେ ସକଳ କର୍ମ ଦକ୍ଷତାରେ
ଖ୍ୟାତ ହେଲେ ଦକ୍ଷ ନାମରେ ସଂସାରରେ ଶ୍ରେଷ୍ଠ ହୋଇଲେ
ପ୍ରଜାପତି ପତି ହୋଇଲେ ସୃଷ୍ଟିକୁ ସେ ରକ୍ଷା କରିଲେ

ମରୀଚି ଅଙ୍ଗିରା ପ୍ରଭୃତି ଅନ୍ୟାନ୍ୟ ସବୁ ପ୍ରଜାପତି
ବିଧାତାଙ୍କର ଆଦେଶରେ ନିଜ କାର୍ଯ୍ୟେ ନିଯୁକ୍ତ ହେଲେ
କହଇ ଦାସ ଧନେଶ୍ୱର ସୁଜନେ ରାମ ନାମ ସ୍ମର
ସେ ରାମ ନାମ କରି ସ୍ମର ଭବସାଗରୁ ହୁଅ ପାର ।

**ଇତି ଶ୍ରୀମଦ ଭାଗବତେ ମହାପୁରାଣେ ପାରମଂହସ୍ୟାଂ ସଂହିତାୟା ବୈୟାସିକ୍ୟାଂ ଚତୁର୍ଥ ସନ୍ଧେ ପ୍ରଚେତା ଉପାଖ୍ୟାନ ନାମ ତ୍ରିଂଶୋଧାୟ ।**

******

## ଏକତ୍ରିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ କହେ ହେ ବିଦୁର ଶୁଣ ପ୍ରଚେତା ସମାଚାର
କ୍ରମେ ଦଶ ଲକ୍ଷ ବରଷ ଆୟୁଷ ହୋଇଗଲା ଶେଷ
ବିବେକ ଉଦୟ ହୋଇଲା ହରି କଥା ମନେ ପଡିଲା
ଭାର୍ଯ୍ୟା ପୁତ୍ର ପାଖେ ଛାଡିଲେ ଗୃହରୁ ବାହାର ହୋଇଲେ

ପଶ୍ଚିମ ସାଗର ତୀରରେ   ପ୍ରବେଶ ହୋଇଲେ ସତ୍ୱରେ
ପୂର୍ବେ ଜାବାଳି ମୁନି ଯହିଁ   ପରମ ସିଦ୍ଧି ଥିଲେ ପାଇ
ଆତ୍ମ ବୁଦ୍ଧି ସର୍ବ ଭୂତରେ   ବ୍ୟାପି ରହିଥିଲା ସେ ଘରେ
ଆତ୍ମ ତତ୍ତ୍ୱ ବିଚାର ରୂପ   ବ୍ରହ୍ମ ଯଜ୍ଞ କଲେ ସଂକଳ୍ପ

ପ୍ରାଣ ମନ ବାକ୍ୟ ନୟନ   ଇନ୍ଦ୍ରିୟଙ୍କୁ କରି ସଂଯମ
ସ୍ଥିରେ ନିଶ୍ଚଳ ଶରୀରରେ   ବସିଲେ ଆସନ ଉପରେ
ଅଦ୍ୱୟ ବିଶୁଦ୍ଧ ବ୍ରହ୍ମରେ   ଚିତ୍ତକୁ ବିଲୀନ କରିଲେ
ଦେବ ଅସୁର ବନ୍ଦନୀୟ   ନାରଦ ବିଧାତା ତନୟ

ନାରଦ ତହିଁ ପ୍ରବେଶିଲେ   ପ୍ରଚେତା ମାନେ ଭକତିରେ
ତାହାଙ୍କୁ ପ୍ରଣାମ କରିଲେ   ଯଥା ବିଧି ପୂଜା କରିଲେ
ବସାଇ ମୁଖ୍ୟ ଆସନରେ   ବିନୟରେ ତାଙ୍କୁ କହିଲେ
ହେ ଦେବର୍ଷି ସ୍ୱାଗତ ତୁମ   ଭାଗ୍ୟେ ପାଇଲୁ ଦରଶନ

ଜୀବକୁ ଜ୍ଞାନ ଆଲୋକରେ   ଅଭୟ ପ୍ରଦାନ ଇଚ୍ଛାରେ
ସୂର୍ଯ୍ୟଙ୍କ ସମାନ ଆପଣ   କରନ୍ତୁ ସଂସାରେ ଭ୍ରମଣ
ଶ୍ରୀବିଷ୍ଣୁ ଶିବ ଦୟା ବହି   ଯେ ଉପଦେଶ ଥିଲେ ଦେଇ
ଗୃହସ୍ଥାଶ୍ରମରେ ଆସକ୍ତ   ଆମେ ଭୁଲିଅଛୁ ସମସ୍ତ

ଆମ ହୃଦେ ସେ ଆତ୍ମଜ୍ଞାନ   ଆପଣ ପ୍ରକାଶନ୍ତୁ ପୁନ
ପରାତ୍ମାଙ୍କୁ ଦର୍ଶନ କରି   ଆମେ ଲଙ୍ଘିବୁ ଭବବାରି
ପରମ ବ୍ରହ୍ମ ପରାୟଣ   ଦେବର୍ଷି ବିଧାତା ନନ୍ଦନ
ପ୍ରଚେତା ମାନଙ୍କ ପ୍ରଶ୍ନର   ଏହିପରି ହେଲେ ଉତ୍ତର

**ନାରଦ ଉବାଚ**

ସର୍ବ ଆତ୍ମା ସର୍ବ ଈଶ୍ୱର   ହରିଙ୍କୁ ସେବଇ ଯେ ନର
ଜନ୍ମ ଆୟୁଷ ମନ କର୍ମ   ସଫଳ ହୁଅଇ ବଚନ
ଲଭିଲେ ଶ୍ରୀହରି ଚରଣ   ଆତ୍ମାର ହୁଅଇ କଲ୍ୟାଣ
ଯେ ମନୁଷ୍ୟ ତାହାନକରେ   ପିତା ମାତା ପବିତ୍ରତାରେ

ଯଜ୍ଞୋପବିତ ସଂସ୍କାରରେ   ଯଜ୍ଞାଦି ଦୀକ୍ଷା ଗ୍ରହଣରେ
ଶ୍ରେଷ୍ଠ ମାନବ ଜନମରେ   ବେଦୋକ୍ତ କର୍ମ ସାଧନରେ
ଦେବ ସମ ଦୀର୍ଘାୟୁଷରେ   ଶାସ୍ତ୍ରଜ୍ଞାନ ଘୋର ତପରେ
ତୀବ୍ର ବୁଦ୍ଧି ଦେବ ବଳରେ   କଥା ଚାତୁରୀ ବୈରାଗ୍ୟରେ

ଶକ୍ତି ଓ ଯୋଗ ସାଧନାରେ   ଇନ୍ଦ୍ରିୟ କର୍ମ ଦକ୍ଷତାରେ
ବେଦ ପଠନ ସନ୍ୟାସଏ   ଜୀବର କଲ୍ୟାଣ ନହୁଏ
ଆତ୍ମାହିଁ ସମସ୍ତ ପ୍ରକାର   ପରାକାଷ୍ଠା କର୍ମ କଲ୍ୟାଣର
ଆତ୍ମଜ୍ଞାନ ଦାତା ଶ୍ରୀହରି   ପ୍ରିୟତମ ଆତ୍ମା ସବୁରି

ବୃକ୍ଷ ମୂଳରେ ଦେଲେ ଜଳ   ଶୋଭଇ ଯେହ୍ନେ ପତ୍ର ଫଳ
ଭୋଜନେ ତୃପ୍ତ ହେଲେ ପ୍ରାଣ   ଯେପରି ତୁଷ୍ଟ ଇନ୍ଦ୍ରିଗଣ
ତେସନେ ଶ୍ରୀହରି ଅର୍ଚ୍ଚନେ   ତୁଷ୍ଟ ହୁଅନ୍ତି ଦେବଗଣେ
ସୂର୍ଯ୍ୟ ତା ବର୍ଷାକାଳରେ   ଜଳ ଜନ୍ମେ ଯଥା ଗ୍ରୀଷ୍ମରେ

ପ୍ରବେଶଇ ସୂର୍ଯ୍ୟ କିରଣେ   ଚରାଚର ପ୍ରାଣୀ ଯେସନେ
ପୃଥିବୁ ହୋଇ ଉତପନ   ପୁଣି ତହିଁ ହୁଅନ୍ତେ ଲୀନ
ସେପରି ଏ ଜଗତ ଜାଣ   ହରିଙ୍କ ଠାରୁ ହୋଇ ଜନ୍ମ
ପ୍ରଳୟ କାଳରେ ସେ ପୁନ   ହରିଠାରେ ହୁଅନ୍ତି ଲୀନ

ଏ ବିଶ୍ୱ ଉପାଧି ରହିତ   ହରିଙ୍କ ସ୍ୱରୂପ ସମାକ୍ଷାତ
ଯେପରି ସୂର୍ଯ୍ୟଙ୍କ କିରଣ   ସୂର୍ଯ୍ୟଙ୍କଠାରୁ ନୁହେଁ ଭିନ୍ନ
ସେପରି ଏ ଦୃଶ୍ୟ ଜଗତ   ହରିଠାରୁ ନୁହେଁ ପୃଥକ
ଇନ୍ଦ୍ରି କ୍ରିୟା ଶକ୍ତି ଜାଗ୍ରତରେ   ଯେପରି ଲୀନ ସୁଷୁପ୍ତିରେ

ସୃଷ୍ଟି କାଳରେ ଏ ଜଗତ   ହରିଙ୍କଠାରେ ପ୍ରକାଶିତ
ସେପରି ଦ୍ରବ୍ୟ କ୍ରିୟା ଜ୍ଞାନ   ସ୍ୱରୂପତ୍ରି ଅହଙ୍କାରେ କର୍ମ
ମେଘ ଅନ୍ଧକାରୁ ପ୍ରକାଶ   କ୍ରମେ ନଭୁ ହୋଇ ପ୍ରକାଶ
ପୁଣି ତହିଁ ଲୀନ ହୁଅଇ   ମାତ୍ର ଆକାଶେ ନ ଲାଗଇ

ସତ୍ୱରଜ ତାମସ ଶକ୍ତି   ହରିଠାରୁ ଜନ୍ମ ହୁଅନ୍ତି
ତହିଁରେ ମିଳାଇ ଯାଆନ୍ତି   ତ୍ରିଗୁଣ ପ୍ରବାହ ଚାଲନ୍ତି
ବ୍ରହ୍ମାଦି ଲୋକ ପାଳ ପତି   କାଳ ସ୍ୱରୂପୀ ବିଶ୍ୱବ୍ୟାପୀ
ହରିଙ୍କୁ ଏକାତ୍ମ ଭାବରେ   ତୁମ୍ଭେମାନେ ଭଜ ଭକ୍ତରେ

ନୟନ୍ତା ପୁରୁଷ ଉତ୍ତମ   ବିଶ୍ୱର ନିମିତ୍ତ କାରଣ
ସେ କାଳ ରୂପୀ ଭଗବାନ   ଉପାଦାନ କାରଣ ପ୍ରଧାନ
ସେ ନିଜ କାଳ ଶକତିରେ   ଏ ବିଶ୍ୱକୁ ସଂହାର କରିଲେ
କରୁଣା ସକଳ ଜୀବରେ   ସଦିଚ୍ଛା ଲାଭ ସନ୍ତୋଷରେ

ଶ୍ରୀଭଗବାନ ଜନାର୍ଦ୍ଦନ ଶୀଘ୍ର ହୁଅନ୍ତୁ ସୁପ୍ରସନ୍ନ
ଯେ ତେଜି କାମନା ସକଳ ନିର୍ମଳ ଚିତ୍ତେ ନିରନ୍ତର
ପ୍ରେମରେ ଭାବନା କରଇ ସେ ହରିଙ୍କୁ ଅନୁଭବଇ
ହୃଦସ୍ଥ ଆକାଶ ଯେପରି ହୃଦରୁ ନ ଯାଏ ବାହାରି

ଭକ୍ତ ଭାବାଧୀନ ଶ୍ରୀପତି ସାଧୁ ହୃଦୟ ନ ତେଜନ୍ତି
ଯେ ମାନେ ଦରିଦ୍ର ଅଟନ୍ତି ହରିଙ୍କୁ ସର୍ବସ୍ୱ ମଣନ୍ତି
ସେତ ସାଧୁ ସନ୍ଥ ନିଶ୍ଚୟ ଭଗବାନଙ୍କ ଅତିପ୍ରିୟ
ମାଧୁର୍ଯ୍ୟ ନିଷ୍କାମ ଭକ୍ତିର କେବଳ ଜାଣନ୍ତୁ ଶ୍ରୀଧର

ଧନ ବିଦ୍ୟା ବଂଶ ମର୍ଯ୍ୟାଦାରେ ଯଜ୍ଞ ଆଦି କାର୍ଯ୍ୟ କର୍ମରେ
ଅହଂକାରେ ପ୍ରମତ୍ତ ହୋଇ ଯେ ସାଧୁଙ୍କୁ ସର୍ବଦା ନିନ୍ଦଇ
ହରି ସେ କୁତ୍ସିତ ମତିର ପୂଜା ନ କରନ୍ତି ସ୍ୱୀକାର
ସ୍ୱରୂପାନନ୍ଦେ ପରିପୂର୍ଣ୍ଣ ସଚ୍ଚିଦାନନ୍ଦ ଭଗବାନ

ସର୍ବଦା ତାଙ୍କୁ ଆରାଧନା କରନ୍ତୁ ଲକ୍ଷ୍ମୀ ଅନ୍ନପୂର୍ଣ୍ଣା
ହୋଇ ତାଙ୍କର ଅନୁବର୍ତ୍ତୀ କେତେ ଯେ ରାଜା ନରପତି
ଦେବତାଏ ମଧ୍ୟ ପୂଜନ୍ତି ହରି ନିରପେକ୍ଷ ରୁହନ୍ତି
ସଦା ଭକ୍ତର ଭାବାଧୀନ ଅଟନ୍ତୁ ପ୍ରଭୁ ଭଗବାନ

ଶ୍ରୀହରି କରୁଣା ସାଗର ପ୍ରତି ଘଟେ କରି ବିହାର
କୃତଜ୍ଞ ସୁପୁରୁଷ ସେହି ଯେ ତାଙ୍କୁ କେବେ ନତେଜଇ

## ମୈତ୍ରେୟ ଉବାଚ

କଲେ ମୈତ୍ରେୟ ମୁନିବର ଶୁଣହେ ଭକତ ବିଦୁର
ପ୍ରଚେତା ମାନଙ୍କୁ ଏପରି ସୁଉପଦେଶ ଦେଇସାରି
ନାରଦ ଆନନ୍ଦ ମନରେ ବ୍ରହ୍ମଲୋକକୁ ଯାତ୍ରା କଲେ
ହରିଙ୍କ କମଳ ଚରଣ ନିରନ୍ତରେ କରି ଚିନ୍ତନ୍

ପ୍ରଚେତାଏ ଅନ୍ତଃ କାଳରେ ଅନନ୍ତ ଧାମକୁ ଲଭିଲେ
ନାରଦ ପ୍ରଚେତା ସମ୍ବାଦ ହରଇ ଏ ଭବ ବିଷାଦ
ଏହା ଯେ ପଢ଼ଇ ଶୁଣଇ ଶ୍ରୀହରିଙ୍କ ଦୟା ଲଭଇ
କଳି କଳୁଷ ଯାଏ ନାଶ ଅନ୍ତେ ବୈକୁଣ୍ଠ କରେ ବାସ

## ଶ୍ରୀ ଶୁକ ଉବାଚ

ଶ୍ରୀ ଶୁକ ଦେବତା କହନ୍ତି ଶୁଣ ହେ ପରୀକ୍ଷ ନୃପତି
ଉତ୍ତାନ ପାଦଙ୍କର ବଂଶ ବର୍ଣ୍ଣନା କରିଲି ମୁଁ ଶେଷ
ପ୍ରିୟବ୍ରତ ବଂଶ କାରଣ ବର୍ତ୍ତମାନ ସାବଧାନେ ଶୁଣ
ନାରଦ ଠାରୁ ଆତ୍ମଜ୍ଞାନ ପାଇ ସେ ପ୍ରିୟବ୍ରତ ପୁନ

ପୃଥ୍ୱୀରେ ରାଜ୍ୟ ଭୋଗକଲେ ରାଜ୍ୟ ଭୋଗକରି ଶେଷରେ
ପୁତ୍ରମାନଙ୍କୁ ସମର୍ପିଲେ ନିଶ୍ଚିନ୍ତରେ ବନେ ଗମିଲେ
ବନକୁ କରିଲେ ଗମନ ଲଭିଲେ ଶ୍ରୀହରି ଶରଣ
ମୈତ୍ରେୟ ଠାରୁ ହରିଙ୍କର ଲୀଳା କଥା ଶୁଣି ବିଦୁର

ନିମଗ୍ନ ହୋଇଲେ ପ୍ରେମରେ ପୁଲକ ଜନ୍ମିଲା ଶରୀରେ
ନେତ୍ରୁ ବୋହିଲା ଅଶ୍ରୁଧାର ବିଭଙ୍ଗ ହୋଇଗଲା ସ୍ୱର
ମୈତ୍ରେୟଙ୍କ ଚରଣରେ ନିଜ ମସ୍ତକ ଲଗାଇଲେ
ଆନନ୍ଦେ କହିଲେ ବିଦୁର ହେ ମହାଯୋଗୀ ମୁନିବର

ଆପଣ ଦୟାର ସାଗର ଅଜ୍ଞାନ ତମ କରି ଦୂର
ହରିଙ୍କ ପରମ ପଦରେ ମତେ ପ୍ରବେଶ କରାଇଲେ
ନମି ମୈତ୍ରେୟ ଚରଣରେ ବିଦୁର ଭକତି ଭାବରେ
ଆଜ୍ଞାନେଇ ଶାନ୍ତ ଚିତ୍ତରେ ଆତ୍ମୀୟ ଦର୍ଶନ ଇଚ୍ଛାରେ

ହସ୍ତୀନା ପୁରକୁ ଗମିଲେ ଯେ ଜନ ସଂଧ୍ୟା ପ୍ରଭାତରେ
ଏ କଥା କରଇ ଶ୍ରବଣ ବଢ଼ଇ ତାର ଆୟୁଧନ
ତୁଷ୍ଟ ହୁଅନ୍ତୁ ବିଶ୍ୱପତି ଅନ୍ତେ ଲଭଇ ସଦଗତି
ବୋଲ ଆନନ୍ଦେ ରାମରାମ ସୁନୀଳ କମଳ ସୁଶ୍ୟାମ

କାଣ୍ଡ କୋଦଣ୍ଡ ବିମଣ୍ଡନ ସୀତା ମାତା ହୃଦ ଚନ୍ଦନ
କହଇ ଧନେଶ୍ୱର ଦାଶ ସୁଜନେ ନ ଧରିବ ଦୋଷ

ଇତି ଶ୍ରୀମଦ ଭାଗବତେ ମହାପୁରାଣେ ପାରମଂହସ୍ୟାଂ ସଂହିତାୟା ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଏକତ୍ରିଂଶୋଽଧ୍ୟାୟ ।

********